# ନିଜସ୍ୱ ଚିତ୍ରନାଟ୍ୟ

## ସ୍ମୃତିପଥ



ଜନ୍ମ - ୦୮.୦୮.୧୯୩୪
ମୃତ୍ୟୁ - ୧୨.୦୫.୨୦୧୪

## ଶରତ ଚନ୍ଦ୍ର ପୂଜାରୀ

ନିଜସ୍ୱ ଚିତ୍ରନାଟ୍ୟ

ସ୍ମୃତିପଥ

ଲେଖକ : ଶରତ ଚନ୍ଦ୍ର ପୂଜାରୀ

ପ୍ରକାଶକ : ଶିକ୍ଷାସନ୍ଧାନ,
ଏନ୍.ଡି.-୭, ଭି.ଆ.ପି. ଏରିଆ,
ଆଇ.ଆର.ସି.ଭିଲେଜ୍, ଭୁବନେଶ୍ୱର-୧୫,
ଫୋନ୍ - ୦୬୭୪-୨୫୫୬୧୦୯, ୨୫୫୦୬୫୬

ସଂପାଦକ : ପ୍ରୀତୀଶ୍ ଆଚାର୍ଯ୍ୟ

ମୁଦ୍ରଣ : ଶିକ୍ଷା ପ୍ରକାଶନୀ,
ଏନ୍.ଡ଼ି -୭, ଭି.ଆ.ପି. ଏରିଆ,
ଆଇ.ଆର.ସି.ଭିଲେଜ୍, ଭୁବନେଶ୍ୱର-୧୫,
ଫୋନ୍ - ୦୬୭୪-୨୫୫୬୧୦୯, ୨୫୫୦୬୫୬

ପ୍ରଚ୍ଛଦପଟ : ଜଗବନ୍ଧୁ ଦାସ

ପ୍ରକାଶନ କାଳ : ୨୦୧୫



ଆଇ.ଏସ୍.ବି.ଏନ୍ : ୧୩-୯୭୮-୮୧-୮୭୯୮୨-୭୩-୯

ମୂଲ୍ୟ : ଟଙ୍କା ୨୦୦

Nijaswa Chitranatya

Smrutipath

Editor : Pritish Acharya

Year of Publication : 2015



Publisher Sikshasadhan
N.D-7, VIP Area, IRC Village,
Bhubaneswar-15
Ph. : 0674-2556109,2550656

Printed at : Sikshaprakasani, Bhubaneswar-15

I.S.B.N : 13-978-81-87982-73-9

Price : Rs. 200/-

# ଭିନ୍ନ ଏକ ଭୂମିକା

ତମର ସବୁ ଲେଖାର ପ୍ରଥମ ଶ୍ରୋତା ଓ ପାଠକ ଭାବରେ ଦୀର୍ଘ ଚାଳିଶ ବର୍ଷ ବିତିଯାଇଛି । ଆଜି ତମର ଆତ୍ମଲିପି ପ୍ରକାଶନ ସମୟରେ, ତମର ଅନୁପସ୍ଥିତିରେ, ମତେ ଏମିତି ଏକ ଭୂମିକା ଲେଖିବାକୁ ପଡ଼ିବ ବୋଲି ଭାବିନଥିଲି । ତମ ଆଶୀର୍ବାଦରେ ପ୍ରୀତୀଶ ବାବୁ, ଅନୀଲ ବାବୁ ଓ ପୁଅମାନେ ତମ ସ୍ୱପ୍ନକୁ ସାକାର କରିବେ ବୋଲି ଆଶା ।

ସାନ୍ତ୍ୱନା ପୂଜାରୀ

# ସ୍ମୃତିପଥ : ଏକ ପ୍ରାକକଥନ

ଶରତ ପୂଜାରୀ (୧୯୩୪-୨୦୧୪) ହେଲେ ଜଣେ ବହୁବିଧ ପ୍ରତିଭା। ଏକାଧାରରେ ସେ ଜଣେ ଅଭିନେତା, ଚିତ୍ରକାର, ଶିକ୍ଷାବିତ ଓ ପ୍ରଶାସକ। ପ୍ରଥମେ ମଞ୍ଚ ଅଭିନୟ ଓ ୧୯୫୯ରୁ ଚଳଚିତ୍ରରେ ଅଭିନୟ ଆରଂଭ କରି ଓଡ଼ିଶାର ଘରେ ଘରେ ସେ ପରିଚିତ। ପ୍ରଥମ ଚଳଚିତ୍ର ତାଙ୍କର 'ଶ୍ରୀ ଶ୍ରୀ ମହାଲକ୍ଷ୍ମୀ ପୂଜା' (୧୯୫୯)ପରେ 'ଦସ୍ୟୁରତ୍ନାକର', ନୂଆବୋଉ', 'ମାଟିର ମଣିଷ', ଧରିତ୍ରୀ, 'ଭାଇ ଭାଉଜ', 'ଜୀବନ ସାଥି', 'ସାଧନା' ଓ 'ଅଶାନ୍ତ ଗ୍ରହ' ଆଦି ଅନେକ ଚଳଚିତ୍ରରେ ତାଙ୍କ ଅଭିନୟ ଏତେ ଜୀବନ୍ତ ଯେ ଆଜି ଅଭିନୟ ଜଗତରୁ ଅବସର ନେଲା ପରେ ବି ଜନମାନସରୁ ସେ ବିସ୍ମୃତ ନୁହନ୍ତି। ଠିକ୍ ସେମିତି, ପଞ୍ଚାୟତ କଲେଜ ବରଗଡ଼ରେ ସେ ଅଧ୍ୟାପନା ଆରମ୍ଭ କରିଥିଲେ ୧୯୬୦ରେ। ତା' ପରେ ଲରଂଭା ନାମକ ଏକ ଗ୍ରାମରେ ସ୍ଥାପିତ ମହାବିଦ୍ୟାଳୟରେ ପ୍ରାୟ ପଚିଶ ବର୍ଷ ଅଧ୍ୟକ୍ଷ ପଦରେ ରହି ଶିକ୍ଷା ପ୍ରଶାସନ କ୍ଷେତ୍ରରେ ଯେଉଁ ଛାପ ଛାଡ଼ି ଯାଇଛନ୍ତି, ତାକୁ ପଶ୍ଚିମ ଓଡ଼ିଶାର ଲୋକେ କେବେ ଭୁଲି ପାରିବେ ନାହିଁ। ତାଙ୍କ ଯୋଗୁଁ ଲରଂଭା କଲେଜ ଏକ ପ୍ରତିଷ୍ଠିତ ଶିକ୍ଷାନୁଷ୍ଠାନ ଭାବରେ ରାଜ୍ୟର ସବୁଆଡ଼ୁ, ବିଶେଷ କରି ପଶ୍ଚିମ ଓଡ଼ିଶାରୁ ଛାତ୍ର-ଛାତ୍ରୀମାନଙ୍କୁ ଆକୃଷ୍ଟ କରିବାରେ ସମର୍ଥ ହୋଇଥିଲା। ଲରଂଭାରୁ ଆସି ସେ ୧୯୯୨-୯୩ରେ ଭୁବନେଶ୍ୱର ସ୍ଥିତ ସଂଗୀତ ନାଟକ ମହାବିଦ୍ୟାଳୟର ଅଧ୍ୟକ୍ଷ ପଦ ସଂଭାଳି ଥିଲେ। ଅର୍ଥାତ୍ ଚଳଚିତ୍ର ଅଭିନେତା ଭାବରେ ତାଙ୍କର ଯେତିକି ଖ୍ୟାତି, ଜଣେ ସୁଦକ୍ଷ ଶିକ୍ଷାବିଦ୍ ରୂପରେ ମଧ୍ୟ ସେତିକି ପରିଚିତି। ଶରତବାବୁ ଲେଖୁଥିଲେ ନିୟମିତ; ତାଙ୍କ ଲେଖା ବିଭିନ୍ନ ପତ୍ର-ପତ୍ରିକାରେ ପ୍ରକାଶିତ ହେଉଥିଲା; ଚର୍ଚ୍ଚା ହେଉଥିଲା। ତାଙ୍କ ବ୍ୟକ୍ତିତ୍ୱ ଓ ବିଚାର ଯେତିକ ସ୍ୱଚ୍ଛ ଓ ଭାବୋଦ୍ଦିପକ, ତାଙ୍କ ହସ୍ତାକ୍ଷର ସେତିକି ସୁନ୍ଦର ଓ ମନଲୋଭା; ଦେଖିଲେ ମନ ପୂରିଯାଏ।

ପିତା ସଚ୍ଚିଦାନନ୍ଦ ପୂଜାରୀ ପ୍ରଶାସନିକ ଅଧିକାରୀ ଭାବରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ଅବସ୍ଥାପିତ ଥିଲେ ବୋଲି ଶରତବାବୁ ଅନେକ ସ୍ଥାନରେ ପାଠ ପଢ଼ିବାର ଓ ସେଠାକାର ଜନଜୀବନ ସହ ସଂପୃକ୍ତ ହେବାର ଅବସର ପାଇଥିଲେ। ଜନ୍ମ ତାଙ୍କର ନୟାଗଡ଼ରେ, ବାଲ୍ୟକାଳ ଓ କୈଶୋରାବସ୍ଥା କଟିଛି କୋରାପୁଟ, ନବରଂଗପୁର, ପୁରୀ, କଟକ ଆଦି ବିଭିନ୍ନ ସ୍ଥାନରେ। ଶିକ୍ଷା ବି ସେମିତି ବିଭିନ୍ନ ସ୍କୁଲରେ - ନବରଂଗପୁରରୁ ଆରମ୍ଭ କରି ଲରଂଭା ସ୍କୁଲ ଯାଏଁ। ଜି.ଏମ କଲେଜ ସଂବଲପୁରରେ ଆଇ.ଏସ.ସି ଓ ରେଭେନ୍‌ସା କଲେଜ କଟକରୁ ବି.ଏ. ପାଠ ସାରି ସେ ଆଲ୍ହାବାଦ ବିଶ୍ୱବିଦ୍ୟାଳୟରୁ ଉପାଧ୍ୟୁତ୍ତର ଶିକ୍ଷା ଗ୍ରହଣ କରିଥିଲେ। ସେହି ଦୃଷ୍ଟିରୁ ଦେଖିଲେ ସଂବଲପୁରର ମୂଳ ଅଧିବାସୀ ହେଲେ ବି

ସମଗ୍ର ଓଡ଼ିଶାର ଲୋକ ସେ । ଆଞ୍ଚଳିକତାର ଉର୍ଦ୍ଧ୍ୱରେ ତାଙ୍କର ଜୀବନ ଦୃଷ୍ଟି । ଏହା ତାଙ୍କର ପ୍ରତେକ ଲେଖାରେ ପ୍ରତିଫଳିତ । ସେହି ଦୃଷ୍ଟିରୁ ଦେଖିଲେ ସେ ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳରେ ଆଉ ଏକ ଅଞ୍ଚଳର 'ବ୍ରାଣ୍ଡ ଏଂବାସାଡ଼ର' ହେବା ପାଇଁ ଯୋଗ୍ୟ ବ୍ୟକ୍ତି ।

ପାଣ୍ଡୁଲିପି 'ନିଜସ୍ୱ ଚିତ୍ରନାଟ୍ୟ ସ୍ମୃତିପଥ'କୁ ଆମେ ଶରତ ପୂଜାରୀଂକ ଆତ୍ମଜୀବନୀ ବୋଲି କହିପାରିବା ନାହିଁ । ସେ ଏଥିରେ ଅନ୍ୟମାନଙ୍କୁ ଚିହ୍ନେଇବାକୁ ପ୍ରୟାସ କରିଛନ୍ତି ଏବଂ ସେହି ପ୍ରକ୍ରିୟାରେ ପାଠକ ତାଙ୍କୁ ଚିହ୍ନିବେ ବୋଲି ଆମେ ଆଶା କରୁଛୁ । ସେହି 'ଅନ୍ୟମାନଙ୍କ' ମଧ୍ୟରେ ଯେତେ ଅଛନ୍ତି ଅଭିନେତା ଓ କଳାକାର, ତତୋଽଧିକ ସଂଖ୍ୟାରେ ଅଛନ୍ତି ଶିକ୍ଷକ, ଶିକ୍ଷାବିଦ, ଜନନାୟକ, ପରିବାରର ଲୋକ ଓ ସାଧାରଣ ମଣିଷ । ସଂବଲପୁରର ପ୍ରଖ୍ୟାତ ଡାକ୍ତର ଜନାର୍ଦ୍ଦନ ପୂଜାରୀ (ଶରତ ବାବୁଙ୍କ ବଡ଼ବାପା), ବ୍ରଜମୋହନ ପଣ୍ଡା (ଲରଂଭା ଭଳି ଏକ ଗ୍ରାମୀଣ ପରିବେଶରେ 'ଶାନ୍ତିନିକେତନ' ଓ 'ସତ୍ୟବାଦୀ' ସ୍ଥାପନର ପରିକଳ୍ପନା କରିଥିବା ଯୁଗପୁରୁଷ), ଲେଂଗୁ ମିଶ୍ର (ବରଗଡ଼ର ଜଣେ ପରିଚିତ କମ୍ୟୁନିଷ୍ଟ କର୍ମୀ), ଧୀର ବିଶ୍ୱାଳ, ମାଷ୍ଟର ମାଣିଆ, ସାମୁଏଲ ସାହୁଙ୍କ ଭଳି ଅଭିନେତା, ଲରଂଭା ସ୍କୁଲ ହେଡ଼ମାଷ୍ଟ୍ରେ ଖଗେନ୍ଦ୍ରନାଥ ସେନଗୁପ୍ତ, ପ୍ରଫେସର ସୂର୍ଯ୍ୟକାନ୍ତ ଦାସ, ପ୍ରଫେସର ପ୍ରଫୁଲ୍ଲ ପତି, ବିଜୁ ପଟ୍ଟନାୟକଙ୍କ ଭଳି ନେତା, ସମସ୍ତେ ଅଛନ୍ତି ଲେଖକଙ୍କ 'ନିଜସ୍ୱ ଚିତ୍ରନାଟ୍ୟ ସ୍ମୃତିପଥ' ରେ । ଆତ୍ମଜୀବନୀର ସମୟାନୁକ୍ରମ ନଥିବା ସତ୍ତ୍ୱେ ଏହିସବୁ ଲେଖନୀରୁ ଶରତ ପୂଜାରୀଙ୍କ ଜୀବନ ଓ ସର୍ଜନାକୁ ବେଶ୍ ଭଲ ଭାବେ ବୁଝି ହୁଏ, ତାଙ୍କ ଭିତରେ ଥିବା ଦରଦୀ ମଣିଷଟିକୁ ଚିହ୍ନି ହୁଏ । ଯେହେତୁ ଲେଖାଗୁଡ଼ିକ ବିଭିନ୍ନ ସମୟରେ ଏବଂ ଭିନ୍ନ ଭିନ୍ନ ପରିପ୍ରେକ୍ଷୀରେ ଲିଖିତ, ତହିଁରେ କିଛି କିଛି 'ରିପିଟେସନ' ରହିଯାଇଛି । ଶରତ ବାବୁଙ୍କ ହାତରେ ନୂଆ କରି କାଳାନୁକ୍ରମିକତାକୁ ଆଧାର କରି ଏକ ଆତ୍ମଜୀବନୀ ଲେଖାଇବା ଅପେକ୍ଷା ତାଙ୍କର ପ୍ରଥମ ପୁରୁଷରେ ଲିଖିତ ଜୀବନୀ ମୂଳକ ଏହିସବୁ ଲେଖାକୁ ସଂକଳିତ କରିବା ସହଜ ମନେହେଲା । ଜଣେ ସାହିତ୍ୟ ସ୍ରଷ୍ଟା ଭାବରେ ସେ ଯଦି କାଳାନୁକ୍ରମକୁ ଦୃଷ୍ଟିରେ ରଖି ପରେ ଆତ୍ମଜୀବନୀଟିଏ ଲେଖିଥାନ୍ତେ, ତାହା ହୁଏତ ଆହୁରି ଶୋଭନୀୟ ଓ ଉପାଦେୟ ହୋଇଥାନ୍ତା । କିନ୍ତୁ ତାହା ଭବିଷ୍ୟତରେ ଲେଖା ହେବ ବୋଲି କେବଳ ଆଶାବଂାଧି ଏହି 'ସ୍ମୃତିପଥ' କୁ ଅବରୁଦ୍ଧ କରିବା ଯଥାର୍ଥ ହେବନାହିଁ । ଶରତ ପୂଜାରୀଙ୍କ ଭଳି ଜଣେ ବ୍ୟକ୍ତିତ୍ୱ, ଯିଏ ନାଟକର ଅଭିନେତା, ଓଡ଼ିଆ ସିନେମା ଜଗତର ଆଗ ଧାଡ଼ିର ନାୟକ, ଅଧ୍ୟାପକ ଭାବରେ ଅନେକ ଛାତ୍ରଙ୍କର ଆଦର୍ଶ 'ଶରତ ସାର୍' ଓ 'ପୂଜାରୀ ଆଜ୍ଞା', ଯିଏ ସମଗ୍ର ଓଡ଼ିଶାକୁ କୌଣସି ତତ୍ତ୍ୱରେ (theory) ନୁହେଁ, ବରଂ ଅନୁଭବରେ ଦେଖିଛନ୍ତି, ବଞ୍ଚିଛନ୍ତି ଏବଂ ସେହି ଆଧାରରେ ପଶ୍ଚିମାଞ୍ଚଳର ହୋଇ ଉପକୂଳର କଥା କହିଛନ୍ତି ଓ ଉପକୂଳରେ ରହି ପଶ୍ଚିମାଞ୍ଚଳକୁ ଆଦରି ନେବାର ମାନବୀୟ ବାର୍ତ୍ତା ଦେଇଛନ୍ତି, ଯିଏ ସର୍ବଭାରତୀୟତାକୁ ସର୍ବଦା ଆଞ୍ଚଳିକତାର ଅନୁପୂରକ ମନେ କରିଛନ୍ତି, ସେ ସବୁକାଳେ ସମାଜ ପାଇଁ ଏକ ମହାର୍ଘ ସଂପତ୍ତି । ଏଭଳି ବ୍ୟକ୍ତିତ୍ୱ ଯେତେବେଳେ ସେମାନଙ୍କର ବ୍ୟାପକ ଅନୁଭବରାଜିକୁ ଅକ୍ଷରରେ ସଜାନ୍ତି, ତାହା

'କୋଣାର୍କ', 'ତାଜମହଲ' ଭଳି ସାମାଜିକ ଓ ସାଂସ୍କୃତିକ ସଂପତ୍ତି ହେବାର ଯେ ସାମର୍ଥ୍ୟ ରଖେ, ଏହା ଅନସ୍ୱୀକାର୍ଯ୍ୟ ।

କିଛିବର୍ଷ ତଳେ ଯେତେବେଳେ ଶରତ ବାବୁଙ୍କୁ ତାଙ୍କ ଆତ୍ମଜୀବନୀ ମୂଳକ ଲେଖାସବୁର ଏକ ସଂକଳନର ପ୍ରକାଶନ ପାଇଁ ମୁଁ ପ୍ରସ୍ତାବ ଦେଇଥିଲି, ତାଙ୍କ ଉତ୍ତରଥିଲା 'ପ୍ରକାଶକ ମିଳିଲେ ତ' ! ଶିକ୍ଷାସଂଧାନର ସଂପାଦକ ଅନୀଲ ପ୍ରଧାନ ମୋର ବଂଧୁ । ସେ ପ୍ରସ୍ତାବ ଶୁଣି ତାଙ୍କ ସଂସ୍ଥା ତରଫରୁ ପ୍ରକାଶନଭାର ନେବେ ବୋଲି କଥାଦେଲେ । ପ୍ରଫେସର ଯତୀନ୍ଦ୍ର କୁମାର ନାୟକ  ମୋର ଓ ଅନୀଲଙ୍କର ଉଦ୍ୟମ ପଛରେ ପ୍ରେରଣା ସ୍ରୋତ ଭଳି କାମ କଲେ । ଯେତେବେଳେ 'ବିଜୟାନନ୍ଦ' ଶୀର୍ଷକ ଲେଖାଟି କୋଶଲି-ସଂବଲପୁରୀରେ ଲେଖା ହୋଇଥିବାରୁ ପୁସ୍ତକରେ ସ୍ଥାନିତ ହେବା କଥା ବିଚାରକୁ ଆସିଲା, ଯତୀନ ସାର୍ ଦୃଢ଼ ମତ ଦେଇ କହିଲେ, 'ଉଭୟ ଓଡ଼ିଆ ଓ କୋଶଳି-ସଂବଲପୁରୀରେ ଲିଖିତ ଲେଖା ଯଦି ଗୋଟିଏ ପୁସ୍ତକରେ ସ୍ଥାନିତ ହୁଏ, ତାହା ତ ଖୁବ ଭଲ କଥା ହେବ । 'ପୂର୍ବ' ଓ 'ପଶ୍ଚିମ' ମଧ୍ୟରେ ଥିବା ଦୂରତାକୁ ଊଣା କରିବ ।' ବଂଧୁ ବିଜୟ ମହାନ୍ତି ପାଣ୍ଡୁଲିପିର ଡିଟିପି କଲେ । ସମସ୍ତଙ୍କ ମଧ୍ୟରେ ଯୋଗସୂତ୍ରର କାମ କଲେ 'ଶିକ୍ଷାସନ୍ଧାନ'ର ବାବୁଲି ଓ ଆଶିଷ ନନ୍ଦ । ମୁଁ ଏହି ପାଣ୍ଡୁଲିପିର ନା ଲେଖକ, ନା ପ୍ରକାଶକ । କେବଳ ସଂଯୋଜନା କରିଛି; ଶରତ ବାବୁଙ୍କ ଆଗ୍ରହରେ ସଂପାଦକ ସାଜିଛି । ପୁସ୍ତକଟି ଆଦୃତ ହେଲେ, ମତେ ସେମାନଙ୍କ ଭଳି ଖୁସି ଲାଗିବ । ଶରତ ପୂଜାରୀଙ୍କୁ ଜାଣିଥିବା, ଭଲ ପାଉଥିବା ଲୋକଙ୍କର ସଂଖ୍ୟା ଓଡ଼ିଶାରେ ଖୁବ୍ ବେଶି । 'ନିଜସ୍ୱ ଚିତ୍ରପଟ ସ୍ମୃତିପଥ'କୁ ସେମାନେ ପଢ଼ନ୍ତୁ, ଲେଖକଙ୍କୁ ନ ଜାଣିଥିବା ନୂଆଁ ପିଢ଼ିକୁ ପଢ଼ାନ୍ତୁ । ଏତିକି ହୋଇପାରିଲେ ଶିକ୍ଷା, ସଂସ୍କୃତି, କଳା, ଅଭିନୟ, ଧର୍ମ, ବିଚାର, ଚିତ୍ରକାରିତା, ପୂର୍ବ, ପଶ୍ଚିମ, ଓଡ଼ିଆ, ଓ ଅଣଓଡ଼ିଆ ଆଦି ମଧ୍ୟରେ ଯେଉଁ ସ୍ୱାଭାବିକ ପରିପୂରକତା ତାକୁ ବୁଝିହେବ ଓ ଅନୁଭବ କରିହେବ ।

ଶରତ ପୂଜାରୀଙ୍କ ସହ ମୋର ବ୍ୟକ୍ତିଗତ ପରିଚୟ ୨୦୦୫ ରୁ । 'ସ୍ମୃତିରେ ଶିକ୍ଷକ' ଶୀର୍ଷକରେ ଏକ ପୁସ୍ତକର ସଂଯୋଜନା କରିଥିଲି; ତହିଁରେ ଅନ୍ୟମାନଙ୍କ ମଧରେ ଶରତ ପୂଜାରୀ ମଧ ନିଜ ଆଦର୍ଶ ଶିକ୍ଷକ ଓ ସ୍କୁଲ ସମୟକୁ ନେଇ ଏକ ଅନୁଭବ ଆଧାରିତ ସ୍ମୃତିଲେଖ ଲେଖନ୍ତୁ ବୋଲି ତାଙ୍କୁ ଫୋନରେ ଅନୁରୋଧ କରିଥିଲି । ମତେ ଚିହ୍ନି ନ ଥିବା ସତ୍ତ୍ୱେ ସେ ତୁରନ୍ତ ରାଜି ହେଲେ । ତା'ଠାରୁ ଅଧିକ ଆଶ୍ଚର୍ଯ୍ୟ ଲାଗିଲା, ଯେତେବେଳେ ଅଳ୍ପଦିନ ମଧରେ ଲେଖାଟି ଲେଖିସାରି ସେ ମତେ ଭେଟିବାକୁ ଚାହିଁଲେ; ଆମ ଘରକୁ ଆସିବେ ବୋଲି ପ୍ରସ୍ତାବ ଦେଲେ । ତାଙ୍କ ସ୍ତରର ଜଣେ ବରିଷ୍ଠ ଓ ଖ୍ୟାତିପ୍ରାପ୍ତ ବ୍ୟକ୍ତି ମତେ ଭେଟିବାକୁ ଆସିବେ - ଏକଥା ମୁଁ କଳ୍ପନା କରି ପାରୁନଥିଲି । ଶେଷରେ ସେ ମୋର ବସାକୁ ଆସିଲେ ଏବଂ ତାଙ୍କ ଆଦର୍ଶ ଶିକ୍ଷକ ଲରଂଭା ହାଇସ୍କୁଲର ଖଗେନ୍ଦ୍ରନାଥ ସେନଗୁପ୍ତଙ୍କୁ ଓ 'ଖଗେନ ସାର'ଙ୍କ ଶିକ୍ଷକତାକୁ ମନେ ପକାଇବାକୁ ମୁଁ ଅବସର ଯୋଗାଉଛି ବୋଲି ମତେ

ଅନ୍ତରର ସାଧୁବାଦ ଜଣାଇଲେ । ଲେଖା ଲେଖିବା ବେଳେ ଯେଉଁ ବୁଡ଼ି ଯାଇଥିଲେ, ତହିଁରୁ ସେ ଉଭୁରି ନ ଥାନ୍ତି । 'ଖଗେନ ସାର' ଓ ଲରଂଭା ହାଇସ୍କୁଲ ତାଙ୍କ ଜୀବନକୁ ନୂଆଁ ମୋଡ଼ ଦେଇଛନ୍ତି । ସେହି ସ୍ମୃତିକୁ ବିସ୍ତାରରେ କହି ସେ କେତେ ଥର କାନ୍ଦିଲେ ତାକୁ ଗଣିହେବନାହିଁ । ଶୀଘ୍ର ଯିବାର ଅଛି ବୋଲି କହିଥିଲେ, ଭୁଲି ଗଲେ । ଶ୍ରୋତା ଭାବରେ ମୁଁ, ମୋର ପତ୍ନୀ ଓ ଛୁଆମାନେ ଏବଂ ତାଙ୍କ ପୁଅ ସୌମେନ୍ଦ୍ର । ସେହି ପ୍ରଥମ ଦେଖାରୁ ମୋର ମନେ ହେଲା, ଶରତ ପୂଜାରୀ କେବଳ ନମ୍ର, ବିନମ୍ର ନୁହଁନ୍ତି, ସାଙ୍ଗରେ ଜଣେ ମନର ମଣିଷ । ଲେଖିଲା, କହିଲା ଓ ଅଭିନୟ ବେଳେ ସେ ଯେଉଁ ମାତ୍ରାରେ ବୁଡ଼ି ଯିବାର ସ୍ୱାଭାବିକ ସାମର୍ଥ୍ୟ ରଖନ୍ତି, ତାହା ଅନନ୍ୟ । ତାଙ୍କ ମଞ୍ଚ ଓ ଚିତ୍ର ଅଭିନୟ କାହିଁକି ଏତେ ଜୀବନ୍ତ, ଚିତ୍ତାକର୍ଷକ ଓ ଅବିସ୍ମୃତ, ତା'ର ସେଦିନ ମୁଁ ପ୍ରତ୍ୟକ୍ଷ ପ୍ରମାଣ ପାଇଲି । ତା'ପରେ ମୁଁ ଅନେକ ଥର ତାଙ୍କ ବସାକୁ ଯାଇଛି; ତାଙ୍କ ପାଖରେ ଘଣ୍ଟା ଘଣ୍ଟା, କାଳ ବସିଛି । ହେଲେ, ତାଙ୍କ ବ୍ୟକ୍ତିତ୍ୱକୁ ନେଇ ମୋର ସେହି ପ୍ରଥମ ଅବଧାରଣା ଅତୁଟ ରହିଛି ।

୨୦୧୪ ମେ' ମାସରେ ଶରତ ପୂଜାରୀଙ୍କର ଦେହାନ୍ତହେଲା । ତାଙ୍କ ମୃତ୍ୟୁର ଆକସ୍ମିକତା ସମଗ୍ର ଓଡ଼ିଶାକୁ ଚକିତ କରି ଦେଲା । ତାଙ୍କ ଜୀବିତାବସ୍ଥାରେ ଏହି ପୁସ୍ତକଟିର ଲୋକାର୍ପଣ ହେବା କଥା । ଏହା ତାଙ୍କୁ ଅବଶ୍ୟ ଖୁବ ଆନନ୍ଦ ଦେଇଥାନ୍ତା । କେତେକ ଅନିଚ୍ଛାକୃତ କାରଣରୁ ତାହା ହୋଇ ପାରିନାହିଁ । ଏଥିପାଇଁ ଆମେ ସମସ୍ତେ ଦୁଃଖିତ । ଶରତ ବାବୁ ଥିଲେ ଜଣେ Perfectionist; ସେ ଚାହୁଁଥିଲେ, ତାଙ୍କ ଅଭିନୟଭଳି ତାଙ୍କ ପୁସ୍ତକ ନିଖୁଣ ହେଉ, ସର୍ବାଙ୍ଗ ସୁନ୍ଦର ହେଉ । ସେହି ନିଖୁଣତା ଆଣିବାର ପ୍ରଚେଷ୍ଟାରେ ଅନେକ ସମୟ ଗଡିଗଲା । ତା' ସତ୍ତ୍ୱେ ବି ପୁସ୍ତକରେ ଭୁଲ ଭଟକା ନ ଥିବ ବୋଲି କହି ହେବ ନାହି । ପୁସ୍ତକର ସଂଯୋଜନା, ପ୍ରୁଫ ଦେଖା, କପି ଏଡିଟିଂ ଆଦିରେ ସେ ନିଜେ ଅନେକ ସାହାଯ୍ୟ କରିଥିଲେ, ଯାହା ମୋର ପରିଶ୍ରମକୁ ଊଣା କରିଛି । ତାଙ୍କ ଜୀବିତାବସ୍ଥାରେ ଯଦି ପୁସ୍ତକଟିର ପ୍ରକାଶନ ହୋଇଥାନ୍ତା ତାକୁ ମୋର ସଂପାଦନା ବୋଲି ଦାବି କରିବାର ମୋର ଅଧିକାର ରହି ନ ଥାନ୍ତା । ସେତେବେଳେ ବି ସେ ଚାହିଁଥିଲେ, 'ସଂପାଦକ' ସ୍ଥାନରେ ମୁଁ ରହେଁ । ତାଙ୍କ ଅବର୍ତ୍ତମାନରେ ସେହି ଇଚ୍ଛାକୁ ମୁଁ ଅସମ୍ମାନ ବା କରିବି କାହିଁକି ? ଆମର ବିଶ୍ୱାସ, ପରଲୋକରେ ବି ସେ ପୁସ୍ତକଟିକୁ ଦେଖି ଖୁସି ହେବେ । ଆମର ଆହୁରି ବିଶ୍ୱାସ, ପୁସ୍ତକଟି ପାଠକୀୟ ଆଦୃତି ଲାଭ କରିବ । ଫଳରେ ରହିଯାଇଥିବା ଅନିଚ୍ଛାକୃତ ତ୍ରୁଟୀ-ବିଚ୍ୟୁତି ପଦାକୁ ଆସିବ, ଯାହାକୁ ଆଧାର କରି ପରବର୍ତ୍ତୀ ସଂସ୍କରଣ ବାହାରି ପାରିବ ।

ପ୍ରୀତୀଶ ଆଚାର୍ଯ୍ୟ

ଭୁବନେଶ୍ୱର
୧୦ ମଇ ୨୦୧୫

# ସୂଚୀପତ୍ର

# ନିଷିଦ୍ଧାଞ୍ଚଳର କୃତଜ୍ଞତା

ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ଆଗରୁ ଦ୍ୱିତୀୟ ମହାସମର ପାଇଁ ପ୍ରସ୍ତୁତି ଆରମ୍ଭ ହୋଇ ସାରିଥିଲା । ମୋର ଶୈଶବରେ ଏହାର ଝାପ୍‌ସା ପ୍ରଭାବ ପଡ଼ିଥିଲା, ଯାହା ଏବେବି ମୋର ସୃଜନଶୀଳତାରେ ପ୍ରକାଶ ପାଏ । ଛୋଟ ଶିଶୁଟିର ମସ୍ତିଷ୍କ ଓ ହୃଦୟରେ ଯାହା ଘଟିଥାଏ ତାହା ତା'ର ପଞ୍ଚେନ୍ଦ୍ରିୟରେ ପ୍ରକାଶ ପାଇଥାଏ । ତାହାର ଆଖି, କାନ, ନାକ, ଗଳା ଓ ତ୍ୱଚା ଦ୍ୱାରା ସେ ଅନୁଭବ କରେ ଓ ଏହାର ପରିପ୍ରକାଶ କରେ । ପ୍ରଥମରୁ ଆଖି (ଦୃଶ୍ୟ) ଓ କାନ (ଶ୍ରାବ୍ୟ)ର ସମନ୍ୱୟ ଥାଏ କିନ୍ତୁ ଅନ୍ୟ ଇନ୍ଦ୍ରିୟ ମଧ୍ୟରେ ସମନ୍ୱୟ ରଖିବାକୁ କିଛି ସମୟ ଲାଗେ ।

ମୁଁ ଶିଶୁ ଅବସ୍ଥାରେ ସମୁଦ୍ର ଓ ଆକାଶ ଦେଖି ଯାହା କିଛି ଅନୁଭବ କରିଥିଲି ତାହାକୁ ଭାଷାରେ (ଗଳାରେ) ପ୍ରକାଶ କରି ପାରିନଥିଲି । ଅନେକ ଦିନପରେ ଏହା ସମ୍ଭବ ହେଲା । ସେତେବେଳେ ମୋର ମାତୃଭାଷାହିଁ ମୋତେ ସାହାଯ୍ୟ କରିଥିଲା । କିନ୍ତୁ ମୋର ପରିବାର, ପରିବେଶ, ପରିସ୍ଥିତି ଓ ପରଂପରା ଧୀରେ ଧୀରେ ଏହା ସହିତ ଯୋଡି ହେଇଗଲା । ଏହି ପର୍ଯ୍ୟାୟରେହିଁ ମଣିଷ ଶିଶୁଟିର ସଂସ୍କୃତିର ମୂଳଦୁଆ ପଡ଼ିଥାଏ ।

ଏବେ ମନେପଡୁଛି, ଯେତେ ଭାଷା ଓ ସାହିତ୍ୟର ସଂପର୍କରେ ଆସିଥିଲି, ସେଥିରୁ ଦୁଇଟି ଭାରତୀୟ ଭାଷାର ଆକର୍ଷଣ ମୋ ପାଖରେ ଅତିପ୍ରିୟ ହୋଇଯାଇଥିଲା । ସେ ଦୁଇଟି ଭାଷା ହେଉଛି ଉର୍ଦ୍ଦୁ ଓ ବଂଗଳା । ଆଜିପର୍ଯ୍ୟନ୍ତ ଏ ଦୁଇଟି ଭାଷା ମୋତେ ସଂପୂର୍ଣ୍ଣ ଭାବରେ ପ୍ରଭାବିତ କରିଛନ୍ତି । ଏଥିପାଇଁ ମୋର ପରିବାର, ପରିବେଶ, ପରିସ୍ଥିତି ଯେ ଦାୟୀ ତାହା ମୁଁ ମୁକ୍ତ କଣ୍ଠରେ ସ୍ୱୀକାର କରିବି । ମୋ ବାପାଙ୍କର ପିଲାବେଳର ଅତିପ୍ରିୟ ଫୁଟବଲ ଖେଳ ତାକୁ ଏକ ଅନନ୍ୟ ପରିଚୟ ଦେଉଥିଲା ତାଙ୍କର ତିରିଶ ବର୍ଷ ପର୍ଯ୍ୟନ୍ତ । ସେତେବେଳେ ଏ ଖେଳଟି ପୂର୍ବ ଭାରତୀୟ ସମସ୍ତ ଅଞ୍ଚଳରେ ବହୁଳ ଭାବରେ ପ୍ରଚାର ଓ ପ୍ରସାର ଲାଭ କରିଥିଲା; ସେତେବେଳେ ଜାତି ନିର୍ବିଶେଷରେ ଧନୀ, ଦରିଦ୍ର; ପ୍ରତ୍ୟେକ ଧର୍ମର ଲୋକ ଫୁଟବଲ୍ ଖେଳକୁ ଶ୍ରଦ୍ଧା କରୁଥିଲେ । ବିଶେଷ ଭାବରେ ମୁସଲମାନ ଓ ଆଦିବାସୀ ଲୋକେ ହିନ୍ଦୁ ଉଚ୍ଚ ଜାତିର ଲୋକଙ୍କ ସହିତ ଯୋଗାଯୋଗ, ଆନ୍ତରିକତା ଓ ସମ୍ମାନ ଆଦାନପ୍ରଦାନ କରୁଥିଲେ । ଏହାହିଁ ମୋର ବାପାଙ୍କ ଚରିତ୍ର ପ୍ରତି ହୃଦୟର ଭାବାବେଗର କାରଣ । ମୋ' ବାପା ସେତେବେଳର ସାଧାରଣ ଲୋକଙ୍କ ସହିତ ସଂପର୍କ ରଖିବାର ମାଧ୍ୟମ ଭାବରେ ଉର୍ଦ୍ଦୁ ଭାଷା ଓ ବଂଗଳା ଭାଷାକୁ ବହୁଳ ଭାବରେ ବ୍ୟବହାର କରୁଥିଲେ । ନିଜେ ଉର୍ଦ୍ଦୁରେ ମୁସଲମାନମାନଙ୍କ ସହିତ କଥାବାର୍ତ୍ତା କରି ଘନିଷ୍ଠତା ବଢ଼ାଇ ଥିଲେ । ମୋ ମା' ଉର୍ଦ୍ଦୁ

ପଡିନଥିଲେ ମଧ୍ୟ ବୁଝିବାର କ୍ଷମତା ରଖୁଥିଲେ । ତାଙ୍କର ଗ୍ରାମୀଣ ବାପା ନିଜ ଚେଷ୍ଟାରେ ତାଙ୍କର ଏକ ମାତ୍ର ଝିଅକୁ ବିବାହ ପୂର୍ବରୁ ବଙ୍ଗଳା ଶିଖାଇ, ପଡାଇ, କହିବାର ପଟୁତା ଦେଇଥିଲେ ।

ପୁରୀ ସହରର ବାଲିସାହି ସୂର୍ଯ୍ୟନିବାସ ଆମ ଘରକୁ 'ସହକାର', 'ଶଙ୍ଖ', 'ସମାଜ' ସମ୍ବାଦପତ୍ର ସହିତ ମାସିକ 'ବସୁମତୀ', 'ଆନନ୍ଦ ବଜାର', 'ଷ୍ଟେଟ୍‌ସମେନ୍' ଆସୁଥିଲା । ମୁଁ ଏସବୁ ପତ୍ରପତ୍ରିକା ଦ୍ୱାରା ବାଲିସାହି ପ୍ରାଥମିକ ସ୍କୁଲର ଛାତ୍ର ଅବସ୍ଥାରୁ ସଂପୂର୍ଣ୍ଣ ପ୍ରଭାବିତ ହୋଇଥିଲି । ଫଳସ୍ୱରୂପ ମୋର ସମସ୍ତ ବଂଗାଳୀ ବନ୍ଧୁ ଓ ମୁସଲମାନ ବନ୍ଧୁଙ୍କ ସହିତ ସେମାନଙ୍କ ମାତୃଭାଷାରେ କହିବାର ଅଭ୍ୟାସ ରଖିଥିଲି । ତାହା ଆଜି ପର୍ଯ୍ୟନ୍ତ ରହିଛି । ବଂଗଳା ଭାଷା ମୁଁ କେବେ ପଢ଼ିବା ଶିଖିଲି ମୋର ସ୍ମରଣ ନାହିଁ । କିନ୍ତୁ ଉର୍ଦ୍ଦୁର ଗୋଟିଏ ଅକ୍ଷର ମଧ୍ୟ ପଢ଼ିବାର ମୋର ଆଜିଯାଏ ସାହସ ହୋଇନାହିଁ । ବଂଗଳା କବିତା, ଗଳ୍ପ, ଉପନ୍ୟାସ ବୋଧହୁଏ ମୋର ପ୍ରାଥମିକ ଓଡ଼ିଆ ଭାଷା ଶିଖିବାର ସମୟ ସହିତ ଯୋଡ଼ି ହୋଇ ଯାଇଛି । ଉର୍ଦ୍ଦୁ ଭାଷାର ସାଂଗୀତିକତା, ବହୁ ଶବ୍ଦର ବର୍ଣ୍ଣାଢ୍ୟ ପରିବେଷଣ ମୋତେ ଅଲକ୍ଷରେ ପିଲାଟି ଦିନରୁ ଆକର୍ଷିତ କରିଥିଲା । ଗୋଟିଏ ପ୍ରକାର, ଉର୍ଦ୍ଦୁ ସାୟରୀ ସହିତ ପ୍ରେମରେ ପଡି ଯାଇଥିଲି । ଶୁଣିବାକୁ ଯେତେ ଆନନ୍ଦ ଦେଉଥିଲା, ସେମିତି ଶବ୍ଦର ଅର୍ଥ ଓ ତାହାର ବହୁବିଧ ଦାର୍ଶନିକ ଓ ଆଧ୍ୟାତ୍ମିକ ପ୍ରୟୋଗ ମୋତେ ଓଡ଼ିଆ ଭାଷା ଲେଖିବା ବେଳେ ବାରଂବାର ଆନ୍ଦୋଳିତ କରି ଚାଲିଛି । ତେଣୁ ମୋ ଲେଖାରେ ଉର୍ଦ୍ଦୁ ଶାୟରୀର ପ୍ରଭାବ ବେଳେ ବେଳେ ଦେଖାଯାଏ । ଭାଷା ନଜାଣି ତା'ର ପ୍ରୟୋଗ କରିବାର ପଦ୍ଧତିକୁ "ନିଷିଦ୍ଧ ଅଞ୍ଚଳକୁ ପ୍ରବେଶ" ନାମରେ ମୁଁ ନାମକରଣ କରେ । ସମୁଦ୍ର ଓ ଆକାଶର ରଂଗ ବୈଭବକୁ ଯେପରି ତୁଳୀ ଓ କ୍ରେୟନ୍ ଦ୍ୱାରା ରୂପଦେବା ମୁଁ କାହାଠାରୁ ଶିକ୍ଷା କରିନାହିଁ, ଠିକ୍ ସେପରି ମୋର ପଞ୍ଚେନ୍ଦ୍ରିୟ ସାହାଯ୍ୟରେ, ପ୍ରକୃତି ଓ ମୋର ବନ୍ଧୁମାନଙ୍କ ସାହାଯ୍ୟରେ ଶିକ୍ଷା କରି ଚାଲିଛି । ବେଳେବେଳେ ଲାଗେ ସେମାନେହିଁ ମୋର ଅନୌପଚାରିକ ଶିକ୍ଷକ ! ସେମାନେ ମୋର ସମସ୍ତ ସୃଜନଶୀଳତାର ଅବଦାନପାଇଁ କୃତଜ୍ଞତାର ପାତ୍ର ।

ଏମିତି ଜଣେ ମୁସଲମାନ ବନ୍ଧୁ ଜନାବ ଏମ୍.ଏ. ଆହାଦଙ୍କ ସହିତ ମୋର ରେଭେନ୍‌ସା କଲେଜରେ ପରିଚୟ ହେଲା ୧୯୫୨ ମସିହାରେ । ଆହାଦ ସାହାବ କଟକର ବାସିନ୍ଦା । ମୋ'ଠାରୁ ବୟସରେ ଦୁଇତିନି ବର୍ଷ ବଡ଼ । ମୁଁ ବି.ଏ. ଶ୍ରେଣୀରେ ପଢ଼ିବାବେଳେ, ସେ ଇଂରାଜି ସାହିତ୍ୟରେ ଏମ୍.ଏ. ପଢୁଥିଲେ । ଜଣେ ଅତି ପରିଷ୍କାର ପରିଚ୍ଛନ ଉଦାର ମଣିଷ । ଉର୍ଦ୍ଦୁ ଓ ପାର୍ସୀ ଭାଷାରେ ଅଗାଧ ପାଣ୍ଡିତ୍ୟ ଥିଲା ତାଙ୍କର । ଜଣେ ସମାଜସେବୀ । ନିଜ ଚେଷ୍ଟାରେ ସେ ଲୋକଙ୍କ ସାଧାରଣ ପଠନ ଅଭ୍ୟାସକୁ ବ୍ୟାପକ

କରିବା ପାଇଁ ଏକ ଘରୋଇ ଲାଇବ୍ରେରୀ ଚଳାଉଥିଲେ ହାଉଡ଼ା ମଟର୍ସ ଛକ ପାଖରେ। ଆହ୍ଲାଦ ସାହାବ ପାଠ ପଢି ସାରିବା ପରେ ଷ୍ଟେଟ୍ ଟ୍ରାନ୍ସପୋର୍ଟ କରପୋରେସନ୍‌ରେ ଦୀର୍ଘଦିନ ଯାଏ କର୍ମରତ ଥିଲେ। ତାଙ୍କର କାର୍ଯ୍ୟଦକ୍ଷତା, ପରିଷ୍କାର, ପରିଚ୍ଛନ୍ନତା ଓ ଉଦାରତାର ତୁଳନା ଆଜିପର୍ଯ୍ୟନ୍ତ ମୁଁ କୌଣସି ଟ୍ରାନ୍ସପୋର୍ଟ କମିସନରଙ୍କ ପାଖରେ ଦେଖିବାକୁ ପାଇନାହିଁ। ଆହ୍ଲାଦ୍ ସାହାବଙ୍କ ଏ ବନ୍ଧୁତା ଯଦିଓ ୧୯୫୨ ମସିହାରୁ ନିରବିଚ୍ଛନ୍ନ ଭାବରେ ମୋତେ ମିଳିନଥିଲା, କିନ୍ତୁ ଚାକିରୀ କାଳରେ ରାଉରକେଲା, ସମ୍ବଲପୁର ଓ କଟକର ଷ୍ଟେଟ୍ ଟ୍ରାନ୍ସପୋର୍ଟ କରପୋରେସନ୍‌ର କମିସନର ଭାବରେ ମୋର ତାଙ୍କ ସହିତ ଦେଖାହେଉଥିଲା। ମୁଁ ୧୯୯୨ରେ ଭୁବନେଶ୍ୱର ଆସିବାପରେ, ୮ ନମ୍ବର ନୀଳକଣ୍ଠ ନଗରର ତାଙ୍କର ନିଜେ ତିଆରି କରିଥିବା ଘରେ ମୋର ଦେଖା ହେଲା। ମୁଁ ୧୯୯୪ରେ ଅବସର ନେବା ପରେ ମୁଁ ଭଡ଼ାଘର ନେଇ ତାଙ୍କ ଘରପାଖରେ ରହିଲି। ରେଭେନ୍ସା କଲେଜର ଆମର ବନ୍ଧୁତ୍ୱ ପୁଣି ଫେରିଆସିଲା। ପ୍ରତିଦିନ ଦିନବେଳେ ଓ ସନ୍ଧ୍ୟାରେ ଆହ୍ଲାଦ ସାହାବଙ୍କ ସଙ୍ଗେ ବସି ମୁଖ୍ୟତଃ ଉର୍ଦ୍ଦୁ ଓ ପାର୍ସୀ ଭାଷାର ସାୟରୀ ଚର୍ଚ୍ଚା କରିବା ମୋର ଅଭ୍ୟାସରେ ପରିଣତ ହେଲା। ସେ ମୋ ପାଇଁ ତାଙ୍କର ପୁରୁଣା ଡାଇରୀ ଓ ବହିପତ୍ର ଖୋଜି ସାୟରୀ ଲେଖି ରଖୁଥିଲେ ଓ ମୋତେ ତା'ର ଉଚ୍ଚାରଣ ଶିଖାଉଥିଲେ। ମୁଁ ସେସବୁକୁ ଲେଖି ରଖୁଥିଲି, ତାକୁ ଉଚିତ୍ ସ୍ଥାନରେ ମୋ' ଓଡ଼ିଆ ସାମୟିକ ଲେଖାରେ ଯୋଡ଼ି ଦେଉଥିଲି। ଏପରି ଭାବରେ ୧୯୯୫ରୁ ୨୦୦୨ ପର୍ଯ୍ୟନ୍ତ ଆହ୍ଲାଦ ସାହାବ ମୋର ଶିକ୍ଷକ ଥିଲେ। ମୁଁ ସେ ବିଷୟ କୌଣସିଠାରେ ଆଜିଯାଏ ପ୍ରକାଶ କରିନାହିଁ। ଏଭଳି ନିରୁଦ୍ଦିଷ୍ଟ ହେବା ଓ ଏକ ନିଷିଦ୍ଧ ଅଞ୍ଚଳକୁ ପ୍ରବେଶ କରିବା ଅସୌଜନ୍ୟ ମୂଳକ ବୋଲି ମୁଁ ଏବେ ମନେ କରୁଛି। ତେଣୁ ଆହ୍ଲାଦ୍ ସାହେବଙ୍କ ପାଖରେ କ୍ଷମା ପ୍ରାର୍ଥନା କରୁଛି।

ହଠାତ୍ ତାଳଚେର ଠାରେ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ମୁଁ ଭୁବନେଶ୍ୱରକୁ ବୁହାହୋଇ ଆସିଲି ୨୦୦୩ର ଗୁରୁଦିବସ ଦିନ। 'କଳିଙ୍ଗ ହସ୍‌ପିଟାଲ'ରେ ବାଇପାସ ସର୍ଜରୀ ହେବା ପରେ ଚନ୍ଦ୍ରଶେଖରପୁରକୁ ଭଡ଼ାଘର ବଦଳାଇ ଚାଲି ଆସିଲି। ସେଦିନଠାରୁ ଆହ୍ଲାଦ୍ ସାହାବଙ୍କ ସଙ୍ଗେ ଆଉ ସଂପର୍କ ରହିଲା ନାହିଁ। ମୁଁ ଋଣୀ ହୋଇ ରହିଗଲି।

ଜୀବନରେ ଏମିତି ବହୁଘଟଣା ଘଟେ ଯାହା ସ୍ମୃତିରେ ରହେ ନାହିଁ; ନିଜ ବିଷୟରେ ଗୋଟିଏ ତାତ୍ପର୍ଯ୍ୟପୂର୍ଣ୍ଣ ସୂଚନା ଦେବାକୁ ବାଧ୍ୟ ହେଉଛି, ଯାହା ମୋର ଏ ଲେଖାର ଶୀର୍ଷକ ସହିତ ଯୋଡ଼ି ହୋଇରହିଛି। ମୁଁ ଏବେ ଏ ଅବବୋଧକୁ ପ୍ରକାଶ କରିବାକୁ ଯାଉଛି, ଯାହା ଲୋକେ ବିଶ୍ୱାସ କରିବେନାହିଁ। ୧୯୫୮ ମସିହାରୁ ଆଜିଯାଏ ଯେଉଁ ବେସରକାରୀ ଓ ସରକାରୀ ଚାକିରୀରେ ଅଧିଷ୍ଠିତ ହୋଇଛି ସେଠାରେ ବିଧିବଦ୍ଧ ଭାବରେ ମୁଁ ଆବେଦନ ପତ୍ର ଦେଇନାହିଁ। ଲିଖିତ ସମୟ ନିର୍ଘଣ୍ଟ ଅନୁସାରେ ମୋର ସାକ୍ଷାତକାର ହୋଇନାହିଁ। ଏହିପରି

ବର୍ଷ ବର୍ଷ ଗଡ଼ିଯାଇଥିଲେ ମଧ୍ୟ, ମୋର ଉପରିସ୍ଥ କର୍ମକର୍ତ୍ତା ସେଥିପ୍ରତି ଦୃଷ୍ଟି ଦେଇନାହାନ୍ତି । ମୁଁ କିନ୍ତୁ ଠିକ୍ ସମୟରେ ମୋର ଲିଖିତ ଆବେଦନ କରିଛି ଓ ଦାୟିତ୍ୱ ହସ୍ତାନ୍ତର କରି ନିଜକୁ ମୁକ୍ତ କରିବା ଶ୍ରେୟସ୍କର ମନେକରିଛି । ଏ ସତ୍ୟର ଉଦ୍‌ଘାଟନ କରିବାକୁ କୌଣସି ବିଜ୍ଞ ସମୀକ୍ଷକ କେବେ ଚେଷ୍ଟା କରିନହାଁନ୍ତି । ସେହିପରି ଭାବରେ ମୋର ଜୀବନୀ ଓ "ବାଇଓଡ଼ାଟା" କେହି ବିଧିବଦ୍ଧ ଭାବରେ ସଂଗ୍ରହ ନକରି ମୋ ବିଷୟରେ କାଳ୍ପନିକ, ଅବାସ୍ତବ ସତ୍ୟାସତ୍ୟକୁ ଉପସ୍ଥାପନ କରିଥାଆନ୍ତି । ଏହାର ପରିମାଣ ଏତେଯେ, ମୁଁ ସେ ବିଷୟରେ ମୋର ପ୍ରତିକ୍ରିୟା ସୃଷ୍ଟିକରିବା ମୋ' ସମାଜପାଇଁ ଏକ 'ବାଚାଳତା' ହେବ । ମୋର ମୁହଁ ଦେଖି ଯେମିତି ସମସ୍ତେ, ସବୁକିଛି ମୋତେ ଦାନ ଦେଇ ପକେଇଛନ୍ତି ।

୧୯୩୯ ରୁ ୧୯୪୫ ମସିହା ପର୍ଯ୍ୟନ୍ତ ୭ଟି ସ୍କୁଲରେ ପଢ଼ିବାପରେ ମୁଁ କୋରାପୁଟ ବୋର୍ଡ ଏମ୍.ଇ. ସ୍କୁଲରୁ ସପ୍ତମ ଶ୍ରେଣୀ ପାସ କରିବାପରେ ମୋତେ ମୋ ବାପା ଲରମ୍ବା (ସମ୍ବଲପୁର ଜିଲ୍ଲା) ଉଚ୍ଚ ଇଂରାଜି ଆବାସିକ ବିଦ୍ୟାଳୟକୁ ଦ୍ୱିପାନ୍ତର କରିଦେଲେ । ଉଦ୍ଦେଶ୍ୟଥିଲା ବିଳାସପୂର୍ଣ୍ଣ ଜୀବନରେ ପାଠପଢ଼ା ଭଲ ହୁଏନାହିଁ । ଜୀବନରେ କଷ୍ଟ ଦୁଃଖର ଅନୁଭୂତି ହେବା ଉଚିତ । ମୁଁ ମଥାପାତି ଗ୍ରହଣ କରିନେଲି । କିନ୍ତୁ ପରିବାରଠାରୁ ଏତେ ଦୂରରେ ରହିଲେ ମୁଁ ଯେ ମୁକ୍ତପକ୍ଷୀଟିଏ ହୋଇଯିବି ଏକଥା କେହି ଭାବିନଥିଲେ । ପ୍ରକୃତରେ ତାହାହିଁ ହେଲା । ମୋର ବାରବର୍ଷ ବୟସରୁ ଏକା ଏକା ଟ୍ରେନ ଓ ବସ୍‌ରେ ବୁଲିବୁଲି ପ୍ରକୃତିକୁ ଉପଭୋଗ କରିବାର ଆକର୍ଷଣ ଆଜିଯାଏ ରହିଗଲା ।

ଲରମ୍ବା ଗୋଟିଏ ଛୋଟ ଗାଁ । ଲୋକ ସଂଖ୍ୟା ପ୍ରାୟ ଏକହଜାର । ଓଡ଼ିଶାର ହଜାର ହଜାର ଗାଁପରି ଗୋଟିଏ ଗାଁ । ସମସ୍ତେ ପ୍ରାୟ କୃଷିକର୍ମ ସହିତ ଜଡ଼ିତ । ପ୍ରଥମ ମହାସମର ସମୟରୁ ଏକ ବିଶେଷତ୍ୱ ଥିଲା ଏ ଗାଁଟିର । ଏଠିକାର ଜଣେ ଧନୀ ଶିକ୍ଷିତ କୃଷିଜୀବି କଲିକତାର ପ୍ରେସିଡ଼େନ୍‌ସି କଲେଜର ବି.ଏ. ଏଲ.ଏଲ.ବି ପାସ୍ କରିବାପରେ ଉଚ୍ଚ ଆଶାପୋଷଣ କରି ଗ୍ରାମରେ ଏକ କୃଷି କଲେଜ ପ୍ରତିଷ୍ଠା କରିବାକୁ ଚାହିଁଥିଲେ । ଏମ୍.ଭି. ସ୍କୁଲ ପ୍ରତିଷ୍ଠା କରିବାରେ ଧନୀ ବ୍ରଜମୋହନ ପଣ୍ଡାଙ୍କର କିଛି ଅସୁବିଧା ହୋଇନାହିଁ । କିନ୍ତୁ ୧୯୪୦ ମସିହାରେ ଏହାକୁ ଉଚ୍ଚ ଇଂରାଜି ଆବାସିକ ବିଦ୍ୟାଳୟ କରିବାକୁ ସେ ନିଜର ଜ୍ଞାତିକୁଟୁମ୍ବ, ବନ୍ଧୁମାନଙ୍କର ସାହାଯ୍ୟ ନେଇଥିଲେ । ତାଙ୍କର ବନ୍ଧୁ ବନ୍ଧୁ ଓଡ଼ିଶା ସାରା ବିଛେଇ ହୋଇଥିଲେ । ସେମାନଙ୍କ ଉତ୍ସାହରେ ଅନୁପ୍ରାଣିତ ହୋଇ ସେ, ପଶ୍ଚିମ ଓଡ଼ିଶାରେ ସାକ୍ଷୀଗୋପାଳ ବନବିଦ୍ୟାଳୟ ପରି ଏକ ବିଦ୍ୟାଳୟ କରିବାକୁ ମନସ୍ଥ କରିଥିଲେ । ତାହା ୧୯୪୫ ବେଳକୁ ପ୍ରତିଷ୍ଠା ହୋଇ ସାରିଥିଲା । ମୁଁ ୧୨ ବର୍ଷ ବୟସରେ ଏ ବିଦ୍ୟାଳୟର ୨୫୦ ଅନ୍ତେବାସୀ ଛାତ୍ର ଭିତରେ ଜଣେ ଛାତ୍ରଭାବରେ ଯୋଗଦେଲି ।

ମୂଳରୁ ମୋର "ପ୍ରକୃତି" ପ୍ରତି ଆସକ୍ତି; ଏ ଗ୍ରାମର ସମସ୍ତ ପ୍ରାକୃତିକ ସୌନ୍ଦର୍ଯ୍ୟ ପ୍ରତି

ମୋ ଅଜାଣତରେ ମୁଁ ଆକର୍ଷିତ ହୋଇଥିଲି। କଡ଼ା ଶୃଙ୍ଖଳା ଭିତରେ, କେବଳ ଖାଦ୍ୟ ପଦାର୍ଥର ବିବିଧତା ବ୍ୟତୀତ ଆଉ କିଛି ମୋର ଏଠି ଅଭାବ ନଥିଲା। ମୋ ହାତରେ ସମୟଥିଲା ମୁକ୍ତ ଓ ଏହାର ଉପଯୋଗ ଥିଲା ମୋର ଔପଚାରିକ ପାଠପଢ଼ା ସମୟ ଠାରୁ ଭିନ୍ନ। ତେଣୁ ସେଥିପ୍ରତି ଦୃଷ୍ଟିଦେଇ ମୁଁ ସୃଜନଶୀଳ ହେବାକୁ ଚେଷ୍ଟା କରିବାରେ ଲାଗିଗଲି। ପରିବାର ଭିତରେ ଯେଉଁ ବନ୍ଧନ ଥିଲା, ତାହା ଏଠାରେ ନଥିଲା। ମୋ' ଚାରିଆଡ଼େ କେବଳ ପ୍ରକୃତି, ପ୍ରାକୃତିକ ମଣିଷ, ମାଟିର ମଣିଷ। ଏଠି ସହରର ଚାକଚକ୍ୟ ମୋତେ ଆକୃଷ୍ଟ କରିବାକୁ ନଥିଲା। ଯଦିବା ଏ ଆକର୍ଷଣ ମୋ ମନକୁ ଆସୁଥିଲା, ମୁଁ ସେଥିପାଇଁ ମୋର ଛୁଟିଦିନ, ଶନିବାର/ରବିବାର ଦିନର ସମୟକୁ ନିଯୋଗ କରୁଥିଲି ମୋର ହୃଦୟର ଓ ମସ୍ତିଷ୍କର ନିର୍ଦ୍ଦେଶରେ। ସେଥିପାଇଁ ମୋତେ ଦୁଃସାହସିକ କାର୍ଯ୍ୟ କରିବାକୁ ପଡୁଥିଲା। ଯେମିତି ନାକ ସିଧା ବାଟରେ ଲରମ୍ବାରୁ ସମ୍ବଲପୁର ଚାଲି ଯିବାର ମାନସିକ ପ୍ରସ୍ତୁତି। ଏହା ଯେତିକି ଦୁଃସାହସିକ ସେତିକି ଶିକ୍ଷଣୀୟ ଓ ଆନନ୍ଦଦାୟକ ଥିଲା। ମୁଁ ମୋ' ଭିତରର ସୃଜନଶୀଳତାକୁ ଏହିପରି ବହୁ ଭାବରେ ପ୍ରୟୋଗ କଲି, ଯାହା ଜଣେ କଳାକାର ଓ ଅଭିନେତା ଅଭ୍ୟାସ କରିବା କଥା। ଅଜାଣତରେ, ଶୃଙ୍ଖଳା ଭିତରେ ମୋର ଲରମ୍ବାର ଶିକ୍ଷକମାନେ ଓ ସହପାଠୀ ବନ୍ଧୁଗଣ ମୋତେ ଶିକ୍ଷିତ କରାଇଛନ୍ତି ତାହା ମୁଁ ମୋର ଅଶୀତିବର୍ଷ ବେଳକୁ ହୃଦୟଙ୍ଗମ କରିପାରୁଛି। ତେଣୁ ଲରମ୍ବା ପରି ଏକ "ନିଷିଦ୍ଧାଞ୍ଚଳ" ମୋତେ ମୋର ଜନ୍ମଗତ ସୃଜନଶୀଳ ପ୍ରକୃତିକୁ ପ୍ରରୋଚିତ କରିଛି- ଆଜିକାର ମଣିଷଟିଏ କରି ଛିଡ଼ା କରିପାରିଛି। ସେଥିପାଇଁ, ଏଠିକାର ପ୍ରକୃତିକୁ ମୋର ସମସ୍ତ ସୃଜନଶୀଳତାର ଅମାର ମନେକରି ପ୍ରଣାମ କରୁଛି ଓ ମୋର ସର୍ବଶ୍ରେଷ୍ଠ କୃତଜ୍ଞତା ଜଣାଉଛି। ଲରମ୍ବାର ମାଟି, ପାଣି, ପବନ ମୋର ସବୁଦିନର "ପ୍ରିୟତମା" ହୋଇଯାଇଛି।

୧୯୪୯ ମସିହାରେ ମାଟ୍ରିକ ପଢ଼ା ଶେଷ କରି, ସମ୍ବଲପୁର ଗଙ୍ଗାଧର ମେହେର କଲେଜର ଆଇ.ଏସ୍.ସି.ର ଛାତ୍ର ହେଲି। ଏଠି ଏନ୍.ସି.ସି.ର ଆକର୍ଷଣ ମୋର ସୃଜନଶୀଳତାକୁ ପରୀକ୍ଷା ନିରୀକ୍ଷା କରିବାକୁ ଯଥେଷ୍ଟ ସାହାଯ୍ୟ କରିଛି। ଶୃଙ୍ଖଳା, କଠିନ ପରିଶ୍ରମ ଓ ସମୟାନୁବର୍ତ୍ତିତା ଶିଖାଇଛି। ମୋର ବନ୍ଧୁ, ସହପାଠୀ ଓ ଶିକ୍ଷକମାନେ ମୋର କୃତଜ୍ଞତାର ପାତ୍ର। ତା'ପରେ ରେଭେନ୍ସା କଲେଜରେ ୧୯୫୨ ରୁ ୧୯୫୪ ବି.ଏ. ପାଠପଢ଼ା। ଏହିଠାରେ ମୋର ପିଲାଦିନର ପ୍ୟାରୀମୋହନ ସ୍କୁଲର ଛାତ୍ରବନ୍ଧୁ ମୋତେ ପୁଣି ମିଳିଗଲେ। ସେ ସମୟର ରେଭେନ୍ସାର ଶିକ୍ଷକମାନେ ଥିଲେ ଅତି ଉଚ୍ଚକୋଟୀର। ବିଜ୍ଞାନ ଓ କଳା, ଏ ଦୁଇବିଭାଗରେ ପ୍ରାୟ ସବୁ ଶିକ୍ଷକଥିଲେ ଆଦର୍ଶ ସ୍ଥାନୀୟ। ଏ ସମସ୍ତ ଶିକ୍ଷକ ମୋର ଚରିତ୍ରଗଠନ କରିବାରେ ସାହାଯ୍ୟ କରିଛନ୍ତି। ସହପାଠୀମାନେ ଖେଳକୁଦ, ସମାଜସେବା ଓ କଲେଜର ସମ୍ମାନ ରକ୍ଷାପାଇଁ ମୋତେ ବହୁଭାବରେ ମାର୍ଗ ଦର୍ଶନ

କରାଇଛନ୍ତି । ଏ ସମୟରେହିଁ ମୁଁ ଇଂରାଜି, ଫ୍ରାନ୍‌ସ, ଜର୍ମାନୀ, ଋଷିୟ, ଉର୍ଦ୍ଦୁ, ଫାର୍ସୀ ସାହିତ୍ୟ ଓ ବଙ୍ଗଳା ସାହିତ୍ୟ, ସଂସ୍କୃତି ଓ ନାଟକ ପ୍ରତି ବେଶୀ ଆକୃଷ୍ଟ ହୋଇଥିଲି ।

ଏହାପରେ "ସୋନେ ପେ ସୋହାଗା" ପରି ପ୍ରୟାଗ ବିଶ୍ୱବିଦ୍ୟାଳୟରେ ତିନିବର୍ଷର ରହଣୀ, ସେଠାକାର ଉଚ୍ଚକୋଟୀର ଶିକ୍ଷା ପରିବେଶ ସହିତ ଘନିଷ୍ଠ ସଂପର୍କ; ମୋର ମୂଳ ଅର୍ଥନୀତି ଏମ୍.ଏ. ପାଠକୁ ଏହା ସମୃଦ୍ଧ କରିଛି । ଠିକ୍ ସେହିପରି ମୋର ଶୈଶବର, ଜନ୍ମଗତ, ରକ୍ତଗତ କଳାର ଔପଚାରିକ ଶିକ୍ଷା କରିବାର ସୁଯୋଗ ମିଳିଲା । ପ୍ରୟାଗ ବିଶ୍ୱବିଦ୍ୟାଳୟର ସେ ସମୟର ଶିକ୍ଷାର ପରିବେଶ ଥିଲା ପୃଥିବୀର ଯେକୌଣସି ବିଶ୍ୱବିଦ୍ୟାଳୟ ସମକକ୍ଷ । ୧୯୪୦ରୁ ୧୯୬୦ ମସିହା ପର୍ଯ୍ୟନ୍ତ ଓଡ଼ିଶାର ଛାତ୍ରମାନଙ୍କ ପାଇଁ ଏ ବିଶ୍ୱବିଦ୍ୟାଳୟର ସ୍ପର୍ଶ ଥିଲା 'ମିଡ଼ାସ'ର ସ୍ପର୍ଶ । ଏ ସମୟରେ ଓଡ଼ିଆ ଛାତ୍ରମାନେ ଅତ୍ୟଧିକ ସମ୍ମାନର ପାତ୍ର ହେଉଥିଲେ ବିଶ୍ୱବିଦ୍ୟାଳୟର ସବୁ ବିଭାଗରେ । ମୋ ଭାଗ୍ୟରେ ମଧ୍ୟ ଏ ସମ୍ମାନ ପ୍ରାପ୍ତ ହୋଇଥିଲା । କିନ୍ତୁ, ଆଶ୍ଚର୍ଯ୍ୟର କଥା ସେ ମାନପତ୍ର ବିଡ଼ା ଆଜି ପର୍ଯ୍ୟନ୍ତ କେହି ଦେଖିବାର ସ୍ପୃହା ଦେଖାଇ ନାହାଁନ୍ତି । ଦୀର୍ଘ ପଚାଶବର୍ଷର ଏ ଅନୁଭୂତିକୁ ଦେଖି ଆହାଦ ସାହାବଙ୍କ ଗୋଟିଏ ସାୟରୀ କଥା ମନେ ପଡୁଛି, "ଗର୍ଦ୍ଦୋ ମାହୋ, ସାଲୋନେ କୋଇ ନିସାଁ ଛୋଡ଼ା ନେହିଁ/ ଆଇନୋ, ଲେ କାଓ- ୟେ ଚେହେରା ମେରା ନେହିଁ/ ହାତ ଥାମ୍‌କେ, ଜିସନେ ହମେ ୟେ ମଞ୍ଜିଲ ପର ପହୁଁଚ଼ା ଗୟା/ ହମନେ ଆଜତକ୍ ଉନ୍‌କା ନାମ୍ ପୁଛା ନେହିଁ ।"

ଏ ନିଷିଦ୍ଧ ଅଞ୍ଚଳର ପରିସର ମଧ୍ୟରେ ମୁଁ କେବଳ ଜଣେ ନିରୁଦ୍ଦିଷ୍ଟ ବ୍ୟକ୍ତି । ପ୍ରାୟ ସବୁ ସମୟରେ ଲାଗେ, "ମେରେ ଚେହେରେ ମେ (୧) ମୁକମ୍ମିଲ ନେହିଁ ସୁରତ (୨) ମେରି/ ମେରି ତସବିର (୩) ଅଭିତକ ମେରେ ଫନ୍‌କାର ମେ ହେ ।" ସମସ୍ତେ ଜଣେ ଜଣେ ମୁଖାପିନ୍ଧା ଲୋକ । ନିଜକୁ ଜଣେ ଲେଖକ କହିବାର କି ଅଧିକାର ଅଛି ମୋର ? ଆଜି ପର୍ଯ୍ୟନ୍ତ ମୋର ଯେଉଁ ବନ୍ଧୁ, ପରିଜନ, ସ୍ତାବକମାନେ ମୋର ଲେଖକତ୍ୱର ପରିଚୟ ଦେଇଗଲେ ଏପରି ଏକ ପରିସ୍ଥିତିରେ ତାହା ଗ୍ରହଣୀୟ ହେବକି ?

ମୋର ଆତ୍ମଲିପି ଲେଖିବାର ଅୟମାରମ୍ଭ ଦିନଠାରୁ, ଆଜିକୁ ଛ'ବର୍ଷ ହେଲା ମୋ ମନରେ ଏ ଦ୍ୱନ୍ଦ ଓ ସନ୍ଦେହ ବାରଂବାର ଆସିଛି । ପ୍ରଥମରୁ ଭୁବନେଶ୍ୱର ରିଜିଓନାଲ କଲେଜର ପ୍ରଫେସର ଓ ଗବେଷକ ଡକ୍ଟର ପ୍ରୀତୀଶ ଆଚାର୍ଯ୍ୟ ଓ ଶିକ୍ଷା ସନ୍ଧାନ ସଂସ୍ଥାର ଶ୍ରୀ ଅନୀଲ ପ୍ରଧାନ ମୋତେ ଏଥିପାଇଁ ଅନୁରୋଧ କରିଥିଲେ ।

ଏଠି ଆହାଦ ସାହାବଙ୍କର ଗୋଟିଏ ଦୁଇଟି ଶାୟରୀ ମୋର ମନେ ପଡୁଛି । ସେତେବେଳେ ମୁଁ ଆହାଦ ସାହାବଙ୍କୁ ମୋର "ନିଷିଦ୍ଧାଞ୍ଚଳ" ବିଷୟରେ ସବୁ ବିଷୟ କହି ସାରିଥିଲି । ତା'ରି ଉତ୍ତରରେ ସେ କହିଥିଲେ, "କ୍ୟା ଲେଙ୍ଗେ ହାଦଶାତେ ଜହାଁ, ଇନ୍ତହାଁ

ମେରା/ ଖୁଦ୍ ବଢ଼କେ ହାଦଶାସେ, ଟକରା ରହାହୁଁ ମେ-" ଅନ୍ୟ ଶାୟରୀଟି ଆହୁରି ଭୟଙ୍କର, "ହଜାରୌଁ ଓର୍କ ଗିରେ, ଲାଖ ଆନ୍ଧିୟୌଁ ଗରଜେ/ ୱୋ ଫୁଲ ଖିଲକେ ରହେଙ୍ଗେ, ଯୋ ଖିଲନେ ୱାଲେ ହେଁ।"

ଲରମ୍ଭା ଆବାସିକ ବିଦ୍ୟାଳୟ ପରେ ଗଙ୍ଗାଧର ମେହେର ମହାବିଦ୍ୟାଳୟରେ ମୋର ଧ୍ୟାନ ବେଶୀ ଶରୀରଚର୍ଚ୍ଚା, ଖେଳକୁଦ, ଏନ୍.ସି.ସି ପ୍ରତି ନିୟୋଜିତ ହୋଇଛି। ତାପରେ ୧୯୫୨ ରେ ରେଭେନ୍ସା କଲେଜରେ ମୋର ପାଠପଢ଼ା ସହିତ ଅନୌପଚାରିକ ଶିକ୍ଷା ବିଷୟରେ ଓ ସମାଜ ସଚେତନତା ବିଷୟରେ ଆବଦ୍ଧ ହୋଇଛି। ଏ ସମୟରେ ମୁଁ ଜଣେ ଅତି ବ୍ୟସ୍ତ ଛାତ୍ର ଭାବରେ କାର୍ଯ୍ୟରତ ଥିଲି, ତାହା ମୋତେ ପରବର୍ତ୍ତୀ କାଳରେ ଜଣେ ଅଧ୍ୟାପକ ଓ ଅଧ୍ୟକ୍ଷ ଭାବରେ ଅନେକ ସୁଫଳ ଦେଇଛି। ମୋର ଶିକ୍ଷକ ଓ ଛାତ୍ରଛାତ୍ରୀମାନଙ୍କୁ ମୁଁ ତିନୋଟି "D" (ଡି) ବିଷୟରେ କହିଛି। ତାହା ହେଉଛି ଡିସିପ୍ଲିନ୍, ଡେକୋରମ୍ ଓ ଡିସେନ୍ସି। ପ୍ରୟାଗ ବିଶ୍ୱବିଦ୍ୟାଳୟରେ ପଢ଼ିବା ସମୟରେ ମୋର ଔପଚାରିକ ଓ ଅନୌପଚାରିକ ଶିକ୍ଷା ଅନ୍ତିମ ଚରଣରେ ପହଞ୍ଚିଛି। ସେଠାରୁ ଫେରିବା ପରେ ମୋ' ଜୀବନରେ କେବଳ "ନିଷିଦ୍ଧାଞ୍ଚଳରେ" ପ୍ରବେଶ କରିବାହିଁ ଏକମାତ୍ର ଲକ୍ଷ୍ୟ ହୋଇ ରହିଛି। ଏବେ ମଧ୍ୟ ବାପାଙ୍କ ଗୋଟିଏ ବାକ୍ୟ ମୋ ମନକୁ ଆସେ। "Life is a series of struggles." ତା' ଭିତରେ ପ୍ରଜାପତିଟିଏ ମଧ୍ୟ ଦେଖାଯାଏ।

୧୯୬୦ ରୁ ୧୯୮୪ ପର୍ଯ୍ୟନ୍ତ ଜଣେ ବରିଷ୍ଠ ଚଳଚ୍ଚିତ୍ର ଅଭିନେତା ରୂପରେ ଗଣମାଧ୍ୟମରେ ପ୍ରଚାର ପ୍ରସାର ମୋତେ ବର୍ଷବର୍ଷ ଧରି ଏକ ସଫଳ ପେଷା ଓ ସମ୍ମାନନୀୟ ପରିଚୟଠାରୁ ନିରୁଦ୍ଦିଷ୍ଟ ରଖିଛି। ତେଣୁ ଆରମ୍ଭରୁ ମୋର ଏଲେଖାର ଶୀର୍ଷକ ଦେଇଛି "ନିଷିଦ୍ଧାଞ୍ଚଳର କୃତଜ୍ଞତା"।

ସାମୟିକ ଭାବରେ ଦୀର୍ଘ ଚାଳିଶବର୍ଷ ଯାଏ ଓଡ଼ିଶାର ସାମାଜିକ ଇତିହାସ ସହିତ ସଂପୃକ୍ତ ହେବା ସତ୍ତ୍ୱେ ମୋତେ ପ୍ରଫେସର ପ୍ରୀତୀଶ ଆଚାର୍ଯ୍ୟ ଓ "ଶିକ୍ଷା ସନ୍ଧାନ"ର ଶ୍ରୀ ଅନୀଲ ପ୍ରଧାନ ଏକ ନୂତନ ପରିଚୟ ଦେବାରେ ତ୍ରୁଟି କରିନାହାଁନ୍ତି ଏହା ମୁଁ ଉପଲବ୍ଧି କରୁଛି। ମୋର ପେଷା ଓ ନିଶା ଶିକ୍ଷା ସହିତ ଜଡ଼ିତ। "ସଂସ୍କୃତି" ହେଉଛି ଶିକ୍ଷାର ଏକ ଖୁବ୍ କ୍ଷୁଦ୍ର ଅଂଶ ମାତ୍ର। ମୁଁ ସେଲିବ୍ରିଟି ହେବାପାଇଁ ଚଳଚ୍ଚିତ୍ରରେ, ନାଟକରେ ଅଭିନୟ କରି ନାହିଁ। ମୋର ରକ୍ତର "ଜିନ୍" ଆଲୋକ ଚିତ୍ରଶିଳ୍ପୀ ଓ "କଳାକାର" ହେବାର ଔଦ୍ଧତ୍ୱ କରିଛି। କିନ୍ତୁ କେବଳ ଶିକ୍ଷକ ପେଷାରୁ ମୁଁ ପରିବାରର ଭରଣ ପୋଷଣ କରିଛି। ପେନସନ୍ ପାଉଛି। ପରିବାରର ପ୍ରାୟ ଦେଢ଼ଶହ ସଂପର୍କୀୟଙ୍କୁ ଶିକ୍ଷିତ କରି ମୋର ପୈତୃକ ଋଣ ପରିଶୋଧ କରିଛି। ମୋର ପ୍ରାୟ ପାଞ୍ଚହଜାର ଅନ୍ତରଂଗ ଛାତ୍ରଛାତ୍ରୀ ମୋର ଦୃଷ୍ଟିକୋଣ ବିଷୟରେ ଅବଗତ। ମୋର ଲେଖିବାର ପ୍ରକୃତିକୁ ସେମାନେ ସାହସ ଦେଇ ଦୀର୍ଘ ତିରିଶବର୍ଷ ଯାଏ

ବଢ଼ାଇ ଚାଲିଛନ୍ତି । ଦୂରଭାଷରେ ଓ ଚିଠିଲେଖି ମୋତେ ଅଭିନେତା, ଚିତ୍ରକାର ତଥା "ଫିଚ଼ର" ଲେଖକ ଭାବରେ ପରିଚ଼ୟ ଦେଉଛନ୍ତି । ସେମାନଙ୍କୁ ସମସ୍ତଙ୍କୁ ଏ ଅବସରରେ କୃତଜ୍ଞତା ଜଣାଉଛି । ଯେଉଁ ସାମ୍ବାଦିକମାନେ ମୋର ଲେଖା ପ୍ରକାଶ କରିଛନ୍ତି ସେମାନଙ୍କୁ ମୋର ପ୍ରଣାମ ଜଣାଉଛି । ମୋର ସହପାଠୀ ବନ୍ଧୁ, କଲେଜର ପ୍ରଥିତଯଶା ଲେଖକବୃନ୍ଦ, ସମସ୍ତଙ୍କୁ ଏ ଅବସରରେ କୃତଜ୍ଞତା ଜଣାଉଛି । ଏସବୁ ହେବା ସତ୍ତ୍ୱେ, ଆଜି ପର୍ଯ୍ୟନ୍ତ ମୁଁ ଲେଖକ ଭାବରେ ନିଜକୁ ସ୍ଥାନିତ ପାରୁନାହିଁ । ଦ୍ୱିତୀୟରେ ଲେଖକ ହେବାର ସେ ଜ୍ଞାନ ଓ ଗାରିମା ମୋ ପାଖରେ ନାହିଁ । ଓଡ଼ିଶାର ଲକ୍ଷ ଲକ୍ଷ ସାଧାରଣ ମଣିଷ ଭିତରୁ ମୁଁ ଜଣେ । ମୁଁ ମୋ ଜନ୍ମଭୂମି ପାଇଁ, ସମାଜପାଇଁ କିଛି ସେମିତି ଆଦର୍ଶ ସ୍ଥାନୀୟ କାର୍ଯ୍ୟ କରିନାହିଁ, ଯାହା ଭବିଷ୍ୟତରେ ଲୋକେ ସ୍ମରଣ କରି ଗର୍ବିତ ହେବେ । ଏମିତି ଏକ ପରିଚ଼ୟ ପାଇନଥିବା ଲୋକଟିଏ ଆତ୍ମଲିପି ବା କାହିଁକି ଲେଖିବ ?

ମୋର ନିଜ ଉପରେ ଯେତିକି ବିଶ୍ୱାସ ଥିଲା, ତାହା କେତେ ଅପରିଣାମଦର୍ଶୀ 'ଫମ୍ପା ଢୋଲର ଶବ୍ଦ', ତାହାକୁ ମୁଁ କଳନା କରି ନଥିଲି । ପୁରାତନ ଲେଖାକୁ ସଂକଳନ କରି ଉପଯୁକ୍ତ ସମୟ ଓ ଘଟଣା ସହିତ ସଂଯୋଜନା କରିବାର କ୍ରିୟା ଧୀରେ ଧୀରେ ଏକ "ଭୁଲ ଭୁଲାୟା"ରେ ପହଞ୍ଚାଇ ଦେଲା । ମୁଁ ମୋ ନିଜ ଲେଖାକୁ ଭୟ କରିବାକୁ ଲାଗିଲି । ପ୍ରଫେସର ପ୍ରୀତୀଶ ଆଚ଼ାର୍ଯ୍ୟ ମୋତେ ସେମିତି କିଛି ତାଗିଦ୍ ପ୍ରଥମ ଦୁଇବର୍ଷ କରି ନାହାଁନ୍ତି । ମୁଁ ମୋର ଆବୁରୁ ଝାବୁରୁ ଲେଖାସବୁ ଶ୍ରୀ ଅନୀଲ ପ୍ରଧାନଙ୍କୁ ପଠେଇଦେଇ ବସି ରହିଲି । ମୁଁ ଏଲେଖା ସଂପାଦିତ ହେବାରେ ଅସୁବିଧା ହେବ ବୋଲି ଜାଣିପାରୁଥିଲି । କିନ୍ତୁ ମୂଳରୁ ମୁଁ ଯେଉଁ ଶୀର୍ଷକରେ ଲେଖୁଛି ତାହାରି କଥା କହିବି । ମୁଁ ଜଣେ ନିରୁଦ୍ଦିଷ୍ଟ ବ୍ୟକ୍ତି ହୋଇ ସୁଦ୍ଧା ଆତ୍ମଜୀବନୀର ନିଷିଦ୍ଧ ଅଞ୍ଚଳରେ ପ୍ରବେଶ କରି ସାରିଥିଲି । ମୋର "ଉତ୍ତର ପୁରୁଷ" ଲେଖାଗୁଡ଼ିକୁ ମୁଁ ସଂକଳନ କରିବାରେ ଯଥେଷ୍ଟ ସମୟ ନେଲି । ତଥାପି ସେଥିରେ ଆତ୍ମତୃପ୍ତି ପାଇଲି ନାହିଁ । ମୁଁ ଧୀରେ ଧୀରେ ନିଷିଦ୍ଧ ଅଞ୍ଚଳରେ ନିରୁଦ୍ଦିଷ୍ଟ ହୋଇ ରହିବାକୁ ଭଲ ପାଇଲି । ଏପରି ଏକ ମାନସିକ ଅବସ୍ଥା ସବୁ ଲେଖକଙ୍କ ହେଉନଥିବ ବୋଲି ମୋର ମନେହୁଏ । ଗତ ଜାନୁୟାରୀ ୨୦୧୨ ବେଳକୁ ମୁଁ ଗୋଟିଏ ବାହାଘର ଭୋଜିକୁ ଯାଇଥିଲି । ସେଠାରେ ନିକାଞ୍ଚନରେ ବର୍ଣ୍ଣାଢ୍ୟ ବେଦୀ ତଳର କେତୋଟି ଖାଲି ଚଉକିରୁ ଗୋଟାକରେ ବସି ନିମନ୍ତ୍ରିତ ବ୍ୟକ୍ତିମାନଙ୍କୁ ଚିହ୍ନିବାକୁ ଚେଷ୍ଟା କରୁଥିଲି । ଭାବୁଥିଲି ମୋତେ କେହି ଚିହ୍ନିପାରୁନାହାନ୍ତି । ମୁଁ ବସିଥିବା ସ୍ଥାନଟି ମଧ୍ୟ ଖୁବ୍ କମ୍ ଆଲୋକିତ ଥିଲା । ହଠାତ୍ ଚମକି ପଡ଼ିଲି, ଜଣେ କେହି ମୋ' ପଛପଟୁ ଗୋଟିଏ ଚଉକି ଭିଡ଼ି ଆଣି ମୋ ଆଗରେ ବସିପଡ଼ି, ଆରମ୍ଭ କରିଦେଲେ, "ଆଜ୍ଞା, ଆପଣଙ୍କ ବହିଟା ବାହାରିବାକୁ ଅନେକ ଡେରି ହେଇଗଲା । ମୋର ବ୍ୟସ୍ତତା ଭିତରେ ଆପଣଙ୍କ ବ୍ୟସ୍ତତା ଆମକୁ ପରସ୍ପର ସହିତ

ଯୋଗାଯୋଗ କରିବାକୁ ବାଧା ଦେଇଛି । ଆଉ ସେମିତି କରିବା ନାହିଁ । 'ଶିକ୍ଷା ସନ୍ଧାନ'ର ଅନୀଲ ପ୍ରଧାନ ମଧ୍ୟ କହୁଥିଲେ ଆପଣଙ୍କ ସହିତ ଯୋଗାଯୋଗ ହେଉନାହିଁ । ଆପଣ ଟିକିଏ ସଂପାଦନା କାମ ଶୀଘ୍ର ନକଲେ କେମିତି ବହି ପ୍ରକାଶ କରିବା ?'' ବଡ଼ ଲଜ୍ଜା ଲାଗିଲା । କିଛି ଉତ୍ତର ଦେବାର ନଥିଲା । ପ୍ରାୟ ୫ବର୍ଷର ଅକ୍ଳାନ୍ତ ପରିଶ୍ରମ କରି, ମୋର ଶହଶହ ପୃଷ୍ଠାର ନୂଆପୁରୁଣା ହାତଲେଖାକୁ ପଢ଼ି ଥିବା ଶ୍ରୀ ଅନୀଲ ପ୍ରଧାନ ଓ ପ୍ରଫେସର ପ୍ରୀତୀଶ ଆଚାର୍ଯ୍ୟ ବହୁ ବ୍ୟସ୍ତତା ଭିତରେ ମୋର ଜୀବନୀ ପ୍ରକାଶ କରିବାର ଜିଦ୍ ଓ ପରିଶ୍ରମ କରୁଥିଲେ; ମୋତେ କେବଳ ତାଙ୍କ ପାଖରୁ କ୍ଷମା ମାଗିବାକୁ ଇଚ୍ଛା ହେଉଥିଲା । ମୁଁ ସେଦିନ ପୁଣି ଥରେ କଥା ଦେଲି, "ଆଜ୍ଞା, ଚେଷ୍ଟାକରି ଖୁବଶୀଘ୍ର ମୋର ଶେଷ ଲେଖାଟି ଲେଖିଦେବି ।'' ଏଇଠି ମୋର ଆହ୍ଲାଦ ସାହାବଙ୍କ ସାୟରୀଟିଏ ମନେ ପଡ଼ିଗଲା, "ଅପନି ତସବିର୍ ବନାଓଗେ ତୋ, ଏହଶାସ ହୋଗା; କିତନା ଦୁସବାରହେ, ଖୁଦ୍‌କୋ କୋଇ ଚେହେରା ଦେନା ।'' ନିଜର ପ୍ରକୃତ ସ୍ୱରୂପ ସତେ କମ ଆମେ ଦେଖିପାରୁ ? କେତେ ଛଳନା ଓ ଦମ୍ଭୋକ୍ତିର ମୁଖା ଭିତରର ଆମର ଏ ଅହଂ । ତଥାପି ମୋର ଅସହାୟ ପଣ ମୋତେ ନିକ୍ଷିଦ୍ଧାଞ୍ଚଳର ଟନେଲ ଭିତରକୁ ଟାଣ ଦେଉଥିଲା । ମୁଁ ଛାଟିପିଟି ହୋଇ 'କୃତଜ୍ଞତା'ର ଅନ୍ତିମ ଲେଖାଟି ଲେଖି ଯବନିକା ପକାଇ ପାରିଲି ନାହିଁ । ଅଯୋଗ୍ୟ, ଅପଦାର୍ଥଟିଏ 'ମୁଁ' ।

**ଶରତ ପୂଜାରୀ**

# ନିଜସ୍ୱ ଚିତ୍ରନାଟ୍ୟ

## ("ଇନ୍‌ସାନ୍ କି ଖ୍ୱାଇସୌଁ କି କୋଇ ହଦ୍‌ନେହି ଜନାବ ।
## ଦୋ ଗଜ ଜମିନଭି ଚାହିଏ, ଦୋ ଗଜ୍ କଫନ୍‌କେ ବାଦ୍ ।")

ମଣିଷ ଆଉ ଜଣେ ମଣିଷକୁ ଭେଟିଲେ କେବଳ କିଏ, କଣ, କାହିଁକି, କେଉଁଠାରେ, କେମିତି ଭଳି ପ୍ରଶ୍ନ ପଚାରିଥାଏ । ପ୍ରଶ୍ନ ନପଚାରିଲେ ପରିଚୟ ସଂପୂର୍ଣ୍ଣ ହୁଏ ନାହିଁ । ଆଶ୍ଚର୍ଯ୍ୟ କଥା, ମୋ' ଭଳି ପରିଚିତ ଲୋକଟିଏ ମଧ୍ୟ ଏ ପ୍ରଶ୍ନର ଝଡରୁ ଆଜିଯାଏ ରକ୍ଷା ପାଇ ନାହିଁ । ଯେତେ ଯେତେ ବୟସ ବଢୁଛି, ସେତିକି ପ୍ରଶ୍ନର ଜୁଆର ମୋତେ ଆଘାତ ଦେଉଛି । ମୋ'ଠାରୁ ଉତ୍ତର ଆଶା କରୁଛି । ସେ ଯେମିତି ପୁରାତନ ଉତ୍ତରରେ ସନ୍ତୁଷ୍ଟ ନୁହେଁ । ତା' ମନରେ ଅନେକ ସନ୍ଦେହ ! ମୋର ଜଣେ ବଂଧୁ କହନ୍ତି, ଆପଣ ସବୁବେଳେ ନିଜ କଥା କହନ୍ତି । ହଁ ସତକଥା । ମୁଁ କଳ୍ପନା କରି, ଅବାସ୍ତବତାର ଆଶ୍ରୟ ନିଏ ନାହିଁ । ଅଙ୍ଗେ ଲିଭା, ପଞ୍ଚେନ୍ଦ୍ରିୟର ଅନୁଭୂତି କଥାକୁ ଗପ କହିବା ପରି ଲେଖେ ।

ମୋତେ କିନ୍ତୁ ଜଣାପଡେ ମୋ ଉତ୍ତର ବିଷୟରେ ପ୍ରଶ୍ନକର୍ତ୍ତା ସଚେତନ ନୁହେଁ । ସେ ଯେମିତି ମୋ ଉତ୍ତର ଶୁଣିବା ବେଳେ, କେଉଁ ଏକ ଅଦୃଶ୍ୟ ଚିତ୍ରନାଟ୍ୟ ସହିତ ମୋ ବକ୍ତବ୍ୟକୁ ତୁଳନା କରି ଚାଲିଛି । ସେ ଅନ୍ୟ ମନସ୍କ ହୋଇ ପଡୁଛି । ତେଣୁ ସଂପୂର୍ଣ୍ଣ ରୂପକଳ୍ପଟିଏ ବା ପ୍ରତିବିମ୍ବଟିଏ ଆଙ୍କିବାକୁ ଇଚ୍ଛା ହୁଏ । ବଡ଼ ଅସହିଷ୍ଣୁ ଓ ଅସନ୍ତୁଷ୍ଟ ଲାଗେ ନିଜକୁ । ରାଜ୍ୟପାଳ ଭବନରେ ଭାରତର ରାଷ୍ଟ୍ରପତି ଅବଦୁଲ କାଲାମଙ୍କୁ ନିଜର ପରିଚୟ ଦେବାବେଳେ ଥରେ ମୁଁ କହିଥିଲି, ଆଇ ଆମ୍ ଏ ରିଟାଏର୍ଡ ଟିଚ୍‌ର । ସେ ହାତମିଳେଇ ସ୍ୱଭାବ ସୁଲଭ ଢଙ୍ଗରେ କହିଥିଲେ, ଏ ଟିଚ୍‌ର ନେଭର୍ ରିଟାୟର୍ସ । ସତରେ, ନିଜ ବିଷୟରେ କେତେ କଷ୍ଟରେ ସତ୍ୟର ଅବତାରଣା କରାଯାଇପାରେ ! ନିମ୍ନରେ ମୋତେ ପଚରା ଯାଉଥିବା କେତୋଟି ପ୍ରଶ୍ନର ନମୁନା ବା ବକ୍ତବ୍ୟର ଉଦାହରଣ ଦେଲେ କଥାର ମର୍ମ ଜଣା ପଡ଼ିବ । ଏସବୁ ବସ୍ତୁବାଦୀ ଓ ବ୍ୟବସାୟିକ ପୃଥିବୀର ଲକ୍ଷଣ ନୁହେଁ କି ?

୧) "ଆପଣ ତ ସମ୍ବଲପୁରର ଲୋକ । ପୁରୀ ଜିଲ୍ଲାର ନୟାଗଡ଼ରେ ଆପଣ ଜନ୍ମ କେମିତି ହେଲେ ?"

୨) "ଆପଣ ତ ଚଳଚ୍ଚିତ୍ରର ଅଭିନେତା, ପୁଣି କଲେଜର ଅଧ୍ୟକ୍ଷ ହେଲେ କେମିତି ?"

୩) "କେଉଁ ଅଭିନେତ୍ରୀଙ୍କ ସହିତ ଅଭିନୟ କରିବାକୁ ଆପଣଙ୍କୁ ଭଲ ଲାଗେ ?"

୪) ମୋର ପଚାଶ ବର୍ଷ ବୟସ ପର୍ଯ୍ୟନ୍ତ ମୋତେ ପଚରା ଯାଇଛି, "ଆପଣ ଅମୁକ ସମୁକ ଅଭିନେତ୍ରୀଙ୍କୁ ବାହା ହେଉ ନାହାନ୍ତି କାହିଁକି ?"

୫) ମୋର ଜଣେ ଶିକ୍ଷକ ଥଟ୍ଟାରେ ମୋତେ ସବୁବେଳେ ପଚାରୁଥିଲେ "ଟେଲ୍ ମି ଶରତ୍, ହ୍ୱେଦର ୟୁ ଆର ଏନ୍ ଆକ୍ଟର ପ୍ରିନ୍‌ସିପାଲ, ଅର୍ ଏ ପ୍ରିନ୍‌ସିପାଲ ଆକ୍ଟର ?"

୬) ଜଣେ ରାଜନୈତିକ ବ୍ୟକ୍ତି, ଏକ ସେବା ସଂସ୍ଥାର ଅଧ୍ୟକ୍ଷ, ଯେ ମୋ' ଠାରୁ ପନ୍ଦର ବର୍ଷ ସାନ; ଦିନେ ଏକ ସର୍ବସାଧାରଣ ଜାଗାରେ ଦେଖା ହେବାପରେ ହଠାତ କହି ପକାଇଲେ, "ଆପଣ ତ ଅବସର ନେଲେଣି, ରାଜଧାନୀରେ କଣ କରୁଛନ୍ତି ? ସମ୍ବଲପୁର ଯାଉନାହାଁନ୍ତି ?" ବିବ୍ରତ ହୋଇ କହିଥିଲି, "ଅବସର ନେବାପରେ ପେନସନ୍ ମିଳିବାକୁ ଓ ପାଇବାକୁ ୫ ବର୍ଷରୁ ୧୫ ବର୍ଷ ପର୍ଯ୍ୟନ୍ତ ବେଳେବେଳେ ଲାଗିଯାଏ ବୋଲି ଆମର ନେତାମାନେ କଣ ଜାଣି ନାହାଁନ୍ତି ? ତା'ପରେ ମୋର ରାଜଧାନୀରେ ରହିବା ଉପରେ ଆପଣଙ୍କ ପରି ଜଣେ ଅସାଧାରଣ ରାଜନୈତିକ ନେତାଙ୍କର ଆପତ୍ତି କାହିଁକି ? ମୋର ମାନବିକ ଓ ସାଂବିଧାନିକ ଅଧିକାରଟିକୁ ଆପଣ କାଡି ନେବେ କି ?"

୭) ଭୁବନେଶ୍ୱରର ରବୀନ୍ଦ୍ର ମଣ୍ଡପରୁ ରାତି ଦଶଟାପରେ ନାଟକ ଦେଖିସାରି, ଜଣେ ଯୁବନାଟ୍ୟ ବନ୍ଧୁଙ୍କ ମଟର ସାଇକେଲ ପଛରେ ମୋର ଭଡ଼ା ବସାଘରକୁ ଫେରିବାବେଳେ, ସେ ମୋତେ ଅତି ସଙ୍କୋଚର ସହିତ ପଚାରିଲେ, "ସାର୍, ଆପଣଙ୍କର ପରା ତିରିଶ ଲକ୍ଷ ଟଙ୍କାର ଗୋଟାଏ ଘର ଆଇ.ଆର୍.ସି. ଭିଲେଜରେ ଅଛି। ଆପଣ ଏ ଭଡ଼ାଘରେ କାହିଁକି ରହୁଛନ୍ତି ?" ସ୍ତମ୍ଭୀଭୂତ ହୋଇଥିଲି। ଉତ୍ତର ଦେବାର କିଛି ନଥିଲା। କେବଳ କହିଲି, "ଜୀବନରେ ମୋ' ନିଜପାଇଁ ମୁଁ କୌଣସି ସ୍ଥାବର ସମ୍ପତ୍ତି ବା ବ୍ୟାଙ୍କ ବାଲାନ୍ସ କରି ପାରି ନାହିଁ। କେବଳ ପେନ୍ସନ୍ ଉପରେ ନିର୍ଭର କରୁଛି।" କିଛିଦିନ ପରେ, ମୋ ଭଡାଘରକୁ ମୋର ବ୍ୟକ୍ତିଗତ ସମ୍ପତ୍ତି ମନେକରି ଆୟକର ବିଭାଗ ନୋଟିସ ଦେବାର ଉପକ୍ରମ କରିଥିଲେ ବୋଲି ଜାଣିବାକୁ ପାଇଲି।

ଉପରୋକ୍ତ ସମସ୍ତ ପ୍ରଶ୍ନର ଉତ୍ତର ଦିଆଯାଇ ପାରେ ବା ଅନେକ ପ୍ରକାରର ଚିତ୍ରନାଟ୍ୟ ଲେଖାଯାଇ ପାରେ। ତାହା କେତେଦୂର ବ୍ୟବସାୟିକ ବା ଗ୍ରହଣୀୟ ହେବ- ତାହା ଏକ ବିବଦମାନ ସମସ୍ୟା ! ଏହି ସବୁକୁ ବିଚାରକୁ ନେଇ ମୋର ବକ୍ତବ୍ୟ ଅଗ୍ରଭାଗରେ ମୁଁ କିଛି ସୂଚନା ଦେବାକୁ ପ୍ରଚେଷ୍ଟା କରୁଛି। କାରଣ, ମୋ ପିତାଙ୍କର ମୃତ୍ୟୁର ଚାଳିଶ ବର୍ଷପରେ ତାଙ୍କର ଜଣେ ଗୁଣଗ୍ରାହୀ ସହକର୍ମୀ ଶ୍ରୀ ବିଷ୍ଣୁଚରଣ ମହାନ୍ତି ତାଙ୍କର ମାନବିକ ଗୁଣର ସ୍ମୃତି ଚାରଣ କଲେ। ମୋର ପିତାଙ୍କ ମୃତ୍ୟୁର ତିରିଶ ବର୍ଷପରେ ମୋ' ମାତା ଓଡ଼ିଶାର ପ୍ରଥମ ଆଇ.ଏ.ଏସ. ଅଫିସରଙ୍କର ବିଧବା ପତ୍ନୀ ଭାବରେ ପରିବାର ପେନ୍ସନ୍ ପାଇବାକୁ ହକଦାର ହେଲେ।

ମୋର ମୃତ୍ୟୁ ପରେ, ମୋ' ବିଷୟରେ ସତ୍ୟାସତ୍ୟର ଆଲୋଚନା ଯେ ସମ୍ଭବ ହେବ ତାହା ବର୍ତ୍ତମାନ ପାଇଁ ହୃଦ୍‌ବୋଧ ହେଉନାହିଁ। ତେଣୁ, ଆଜି ମୋର ଏ ଅସତ୍ୟ କଥନ ବା ନିଜସ୍ୱ ଚିତ୍ରନାଟ୍ୟ !! ଜଣେ ସ୍ୱାର୍ଥୀର ନିଜକଥା।



# ଚାର୍ଲି ଚାପଲିନ୍

ଆଜିକାଲିକା ପିଲାଟିଏ ଘରର ଟେଲିଭିଜନ ଆଡ଼କୁ କାନ ଡ଼େରିଲେ ଓ ଦେଖି ଶିଖିଲେ ସମ୍ମୋହିତ ହେଇଯାଏ। ତା'ପରେ ତା'ର ମସ୍ତିଷ୍କର ଅନୁଭୂତି ଓ ହୃଦୟର ଆବେଗରେ ସେ କିଛି ପ୍ରକାଶ କରେ। ହାତ, ଗୋଡ଼, ଆଙ୍ଗୁଠି ହଲାଏ। ବଡ଼ବଡ଼ ଆଖିରେ ଟେଲିଭିଜନ ପରଦାକୁ ଦେଖି ପାଟି ଖୋଲି କିଛି କହିବା, ହସିବା ଓ ଉତ୍ସୁକତା ପ୍ରକାଶ ଧୀରେ ଧୀରେ ବଡ଼ି ବଡ଼ି ଦୋହଲିବା, ଝୁଲିବା ଓ ନୃତ୍ୟର ତାଳକୁ ଅନୁକରଣ କରିବା। ତା' ଅଜାଣତରେ ଶିଖିଯାଏ। କହିବାର ଶକ୍ତି ନଥିଲେବି ମୋ ପିଲାବେଳଟା, ମୋ ବାପାଙ୍କ ସଉକି ଯୋଗୁ ସେମିତି କଟିଛି। ସେତେବେଳେ ଆମ ଘରେ ରେଡିଓ ଟେଲିଭିଜନ ନଥିଲେ ମଧ୍ୟ ନାଚ୍/ଗୀତ ଆସର ବସୁଥିଲା। ପୁରୀ ସହରରେ ଲୀଳା, ପାଲା, ଦାସକାଠି, ନାଟକ, ବିଶେଷରେ ଚଳଚ୍ଚିତ୍ର ଦେଖିବା ବାପାଙ୍କର ସଉକି ମୋତେ ସେମିତି ବାପା ମା'ଙ୍କ ସହି ତିନି ଚାରି ବର୍ଷବେଳୁ ୧୨/୧୩ ବର୍ଷ ଯାଏ ଅନେକ ଚଳଚ୍ଚିତ୍ର ଦେଖିବାର ସୁଯୋଗ ଦେଇଛି। ସେ ୧୯୪୫ ମସିହା ପୂର୍ବର କଥା।

ଅତି ସାଧାରଣ ଭାବରେ ଅସାଧାରଣ ମଣିଷଟିଏ କେମିତି ମଣିଷ ସମାଜ ଭିତରୁ ବାହାରି ଆସେ ତା'ର ଏକ ଜ୍ୱଳନ୍ତ ପ୍ରମାଣ ହେଉଛନ୍ତି- ଚାର୍ଲି ଚାପ୍‌ଲିନ୍। ଏଇ ଲୋକର ପ୍ରାୟ ସବୁ ଚଳଚ୍ଚିତ୍ର ମୁଁ ସେଇ ପିଲା ବୟସରେ ଦେଖିଥିଲି, ଭାରି ଭଲ ଲାଗୁଥିଲା। ଏ ଅଭିନେତାଟି ପାରିସ ସହରର ଗଂନ୍‌ଟା ବ୍ଲୁ ସହର ତଳିରେ ଏକ ସଂଗୀତ ଓ ବାଦ୍ୟକାର ପରିବାରର ପ୍ରଥମ ସନ୍ତାନ। ମା' ମ୍ୟୁଜିକ୍ ହଲ୍‌ର ଗାୟିକା। ଅତି ଅଳ୍ପ ବୟସରୁ ବିବାହିତା ଓ ପରିତ୍ୟକ୍ତା। ଦାରିଦ୍ର୍ୟ ଓ ପ୍ରବଞ୍ଚନାର ଶୀକାର ହୋଇଥିବା ମାନସିକ ସ୍ୱଚ୍ଛଳତା ହରାଇଥିବା ଜଣେ ଯୁବତୀ। ଅନ୍ୟପକ୍ଷରେ ସେହି ଯୁବତୀ ସଂଗୀତ କଳାକାରର ପ୍ରେମିକ ଭାବରେ ଜଣେ ଯୁବକ "ସେଲୋ" ବାଦ୍ୟକାର ଓ ଗାୟକ, ଯାହାଙ୍କର ଆଗରୁ ମଧ୍ୟ ପତ୍ନୀ ଓ ପରିବାର ଥିବାର ଜଣାଯାଏ। ଏହିପରି ଦୁଇଟି ପଚିଶ ବର୍ଷ ବୟସର ଯୁବକ ଓ ଯୁବତୀ। ଯାହାଙ୍କର ଜୀବନ ଅନିଶ୍ଚିତତା, ଦାରିଦ୍ର୍ୟ ଭିତରେ ଗଡ଼ିଚାଲିଥାଏ ସବୁବେଳେ- ହଠାତ ପ୍ରେମରେ ପଡ଼ି ବିବାହ କରନ୍ତି ୧୮୮୮ ମସିହାର ଜାନୁୟାରୀ ମାସରେ।

ତା'ପରେ ପ୍ୟାରିସ୍ ସହର କରଜଦାର୍‌ମାନଙ୍କର ଦାଉରୁ ରକ୍ଷାପାଇବା ପାଇଁ ଲଣ୍ଡନ୍ ସହରର ଉପକଣ୍ଠ ଚେଷ୍ଟର ଷ୍ଟ୍ରିଟ୍‌କୁ ପଳାଇଆସନ୍ତି- ଏ ଦମ୍ପତି। ଅର୍ଦ୍ଧପାଗଳି ଯୁବତୀଟିର କୋଳରେ ସେତେବେଳେ ଏ ଅବାଞ୍ଛିତ ବିବାହରୁ ଜାତ ପ୍ରଥମ ପୁତ୍ର ସନ୍ତାନଟି ଆଖି ମିଟିମିଟି କରି ବାପ ମା' ଓ ସଂସାର ବିଷୟରେ ଜାଣିବାର ଧାରଣା କରିନଥାଏ। ୧୮୮୯ ଏପ୍ରିଲ

୧୬ ତାରିଖରେ ଜନ୍ମିଥିବା ଏ ଶିଶୁଟି ମାତ୍ର ଏକବର୍ଷ ବୟସରେ ପ୍ୟାରିସରୁ ଲଣ୍ଡନ ସହରକୁ ଆସିଥିଲା । ପିଲାଟିର ନାଁ ଥିଲା ଚାର୍ଲସ୍ ।

ତା'ପରେ ତା'ର ଯେତେବେଳେ ଜ୍ଞାନହେଲା- ସେ ତା' ବାପକଥା ମନେ ପକାଇ ପାରିନାହିଁ । କେବଳ ଜଣେ ରୋଗାକ୍ରାନ୍ତ ମ୍ୟୁଜିକ ହଲର ଗାୟିକା ମା' ଓ (ଅନ୍ୟ ଏକ ବିବାହରୁ ଜାତ) ତା'ର ଜଣେ ବଡ଼ଭାଇ ସିଡ଼ନି ବ୍ୟତୀତ ସେ ପରିବାରର କାହାଠାରୁ ସ୍ନେହ ଶ୍ରଦ୍ଧା ପାଇନାହିଁ । ରୋଗିଣା ମା' ଗୀତ ଗାଇବା ବ୍ୟତୀତ, ଲୁଗାପଟା ସିଲେଇ କରି ଯେଉଁ ସାମୟିକ ଅର୍ଥ ଯୋଗାଡ଼ କରୁଥିଲା, ତାହା ପରିବାର ପାଇଁ ଯଥେଷ୍ଟ ନୁହେଁ । ତେଣୁ ବଡ଼ ଭାଇ ସିଡିନି ସବୁବେଳେ ବାହାରେ ରହୁଥିଲା, କାରଣ ସେ ଜଣେ ନାବିକ ହେବାର ଇଛା ନେଇ ଟ୍ରେନିଂ ନେଉଥିଲା । ଚାର୍ଲସ୍ ଘରେ ରହି ମା'ର ସବୁ କାମରେ ସାହାଯ୍ୟ କରୁଥିଲା । ବହୁଦିନ ପରେ ଚାର୍ଲି ବାପବୋଲି ଯାହାକୁ ଚିହ୍ନିଛି ସେ ଜଣେ ଅପଦାର୍ଥ ଘୋଡ଼ା ମଦୁଆ ।

ଲଣ୍ଡନ ସହର ଉପକଣ୍ଠରେ ବସ୍ତି ଅଞ୍ଚଳର ଦାରିଦ୍ର୍ୟ, ନିଜ ପରିବାରର ଏକମାତ୍ର ଉପାର୍ଜନକାରିଣୀ ମା'ର ଶାରିରୀକ ଓ ମାନସିକ ଅବସ୍ଥା ଓ ପ୍ରକୃତି ଉପରେ ଚାର୍ଲସ୍‌ର ଭଲ ଜ୍ଞାନ ହୋଇଥିଲା- ଖୁବ୍‌ଛୋଟ ବେଳୁ । ପ୍ରାୟ ୩/୪ ବର୍ଷ ବେଳୁ । କେବଳ ପାଞ୍ଚବର୍ଷ ବେଳେ ରୋଗିଣା ମା' ମ୍ୟୁଜିକ ହଲ୍‌ରେ ଗୀତ ଗାଉଗାଉ ବେହୋସ ହେବାପରେ, ଯେଉଁ ଶିଶୁଟି ମା'ର ସ୍ଥାନ ପୂରଣ କରିବାପାଇଁ ତତ୍‌କ୍ଷଣାତ୍ ମଞ୍ଚ ଉପରକୁ ଉଠି ଆସି-ଅତି ନିଷ୍ଠାପର ଭାବରେ ନିଜ ଗାୟିକା ମା'ର ସମସ୍ତ ଅଙ୍ଗଭଙ୍ଗୀକୁ ଅନୁକରଣ କରି ନିର୍ବିକାର ଭାବରେ ଦର୍ଶକମାନଙ୍କର ଚିତ୍ତବିନୋଦନ କରିବାକୁ ବାହାରି ପଡିଥିଲା- ତା' ବିଷୟରେ କଣ କୁହାଯାଇପାରେ । ଅତି ସାଧାରଣ, ଅଥଚ୍ ଅସାଧାରଣ ନୁହେଁ କି ?

ଚାର୍ଲସ୍‌କୁ ଓ ତା'ର ଅଭିନୟ ଦେଖି ଦର୍ଶକ ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ ସେଦିନ । ତା' ଉପରକୁ ପଇସା ଫୋପାଡ଼ିଥିଲେ । ମଞ୍ଚର ଅନତିଦୂରରେ ମୃତ୍ୟୁ ପଥର ଯାତ୍ରୀ, ଏକମାତ୍ର ସାହାରା ମମତାମୟୀ ମା'ର ଅବସ୍ଥା, ଆଉ ଏକ ଦିଗରେ ଚାର୍ଲସ୍‌ର ନିଜର କ୍ଷୁଧା ଓ ଦାରିଦ୍ର୍ୟର ଅନୁଭୂତି । ସେହିପରି ଏକ ମୁହୂର୍ତ୍ତରେ ପାଞ୍ଚବର୍ଷର ଶିଶୁଟି ପ୍ରତ୍ୟୁତ୍‌ପନ୍ନମତି ଦେଖାଇ ଦର୍ଶକ ସମାଜକୁ ଆନନ୍ଦ ଦେବା ପାଇଁ ନିଜର ସମସ୍ତ କୋହ, ଅଭିମାନ, ଅଭିଯୋଗ, ରାଗ, ବିଦ୍ରୋହ, କ୍ରନ୍ଦନ, ଶୋକ ଓ ଦୁଃଖକୁ ଘୋଡ଼ାଇ ଦେବାପାଇଁ ସକ୍ଷମ ହୋଇପାରିଲା । ତାହାହିଁ ଥିଲା ଚାର୍ଲସ୍‌ର ବୈଶିଷ୍ଟ୍ୟ, ମହନିୟତା, ମହାନ୍ ଆଦର୍ଶ । ବିଗତ ଅଶୀବର୍ଷ ପାଖାପାଖି ଚାର୍ଲସ୍ ପୃଥିବୀର କୋଟୀ କୋଟୀ ପ୍ରାଣୀଙ୍କୁ ଆନନ୍ଦ ଉଲ୍ଲାସ, ହାସ୍ୟ ଯୋଗାଇ ଦେଇ ଆସିଛି । ସାରା ଜୀବନଟା ସେ ଏହି ତଥ୍ୟ ଉପରେ ଗବେଷଣା କରି ଚାଲିଛି- ଶହଶହ ସଂଖ୍ୟାରେ ଛୋଟବଡ଼ ଚଳଚିତ୍ରରେ ପ୍ରଯୋଜନା, ନିର୍ଦ୍ଦେଶନା ଓ ଅଭିନୟ କରିଛି ।

ଲୋକେ ବିଂଶ ଶତାବ୍ଦୀରେ ଗାନ୍ଧୀ, ଆଇନ୍‌ଷ୍ଟାଇନଙ୍କୁ ଯେପରି ଜଣେ ଜଣେ ବିଖ୍ୟାତ ଦାର୍ଶନିକ ଭାବରେ ଗ୍ରହଣ କରନ୍ତି, ଏଇ ଦରପାଠୁଆ, "ଜୋକର", ଅଭିନେତାଟିକୁ ମଧ୍ୟ ସେହିପରି ଜଣେ ଦାର୍ଶନିକ ଭାବରେ ଗ୍ରହଣ କରନ୍ତି ।

"ଚାର୍ଲି ଚାପ୍‌ଲିନ୍" ଯେତେବେଳେ ଅଭିନୟ ଆରମ୍ଭ କଲେ, ମୁଖ୍ୟତଃ ସେ "ମୂକ" ଅଭିନୟ ପ୍ରତି ଆକୃଷ୍ଟ ହୋଇଛନ୍ତି । କାରଣ ମଞ୍ଚ ଅଭିନୟ କରି ଇଂଲଣ୍ଡରେ ଯେତେ ନାଁ କରିଥିଲେ ତା'ଠାରୁ ଆମେରିକାରେ "ମୂକ" ଚଳଚ୍ଚିତ୍ରରେ ଅଭିନୟ କରି, ଯଥେଷ୍ଟ ବେଶୀ ନାଁ କରିଥିଲେ ଚାର୍ଲି । ଅଭିନୟ ସାର୍ବଜନୀନ । ମଣିଷର ଭାବ ଓ ଭାଷା, ତା'ର ଅନ୍ତରର କଥା ମଣିଷ ପ୍ରକାଶକରେ ଅଭିନୟରେ । କିନ୍ତୁ 'ମୂକାଭିନୟ'ର ତାତ୍ତ୍ୱିକ ଓ ସାଧାରଣ ପ୍ରଭାବ ଉପରେ ଚାର୍ଲି ନିଜ ଜୀବନ ଭିତରେ ଯେଉଁ ଗବେଷଣା କରିଯାଇଛନ୍ତି, ତାହା ସାରା ମାନବସମାଜପାଇଁ ଅମୂଲ୍ୟ ସଂପଦ ହୋଇ ରହିବ ।

ମନୁଷ୍ୟ ତା'ର ଜୀବନ କାଳ ମଧ୍ୟରେ ଯାହାକିଛି ଉନ୍ନତି ବା ଅଗ୍ରଗତି କରିଯାଏ, ସାମଗ୍ରିକ ଭାବରେ ବିଶ୍ୱର ପ୍ରାକୃତିକ ପରିବେଶରେ ତା'ର ଅହମିକା, ଅଗ୍ରଗତି, ଉନ୍ନତି ଯେ କେତେ ତୁଚ୍ଛ, ଦୟନୀୟ ଓ ହାସ୍ୟାସ୍ପଦ ତାହାହିଁ ପ୍ରକାଶ କରିବା ଚାର୍ଲିଙ୍କର ବିଶେଷତ୍ୱ । ସେଇ ଲଣ୍ଡନର ସହରତଳି ଅଞ୍ଚଳର ଭୋକିଲା, ନିରିହ, ନିରାଶ୍ରିତ, ସରଳ, ଶାନ୍ତିକାମୀ ପିଲାଟିକୁ ଚାର୍ଲି ବିଶ୍ୱଆଗରେ ତାଙ୍କର "ମଡେଲ" ବା ଆଦର୍ଶ ଭାବରେ ଗଢ଼ି ତୋଳିଛନ୍ତି । ସେ ପିଲାଟି ଦାରୁଣ ଲାଞ୍ଛନା, ପ୍ରବଞ୍ଚନା, ପ୍ରତାରଣା ପରିବର୍ତ୍ତେ ହସ ବାଣ୍ଟି ପାରେ, ଆନନ୍ଦ ଦେଇପାରେ । ହିଟଲର ପରି ମଣିଷ ରାକ୍ଷସଟିକୁ ସେ ପିଲା- ତା'ର ଖେଳର ସାମଗ୍ରୀ କରିଦେଇ ପାରେ ।

ଭଦ୍ର, ମୁକ୍ତ, ଶାନ୍ତ; ସାଧାରଣ ଭାବରେ ଭଲପାଉଥିବା; କିଛିଟା ସ୍ନେହ, ଶ୍ରଦ୍ଧା, ପ୍ରେମ ଓ ଭଲପାଇବା ଖୋଜୁଥିବା ମଣିଷର ପ୍ରତିନିଧି ହେଉଛନ୍ତି- ଚାର୍ଲି । ସେ ସମସ୍ତ ଶକ୍ତିଶାଳୀ ମଣିଷ, ଶକ୍ତି, ପ୍ରକୃତି ଓ ସୃଷ୍ଟିକର୍ତ୍ତା ନିୟମ ବିରୁଦ୍ଧରେ ଏକ ସ୍ପଷ୍ଟ ନିର୍ଭିକ ସ୍ୱର । ଏକ ଆହ୍ୱାନ !

ଚାର୍ଲିଙ୍କ ବେଶଭୂଷା, ଟୋପି, ଢ଼ିଲାପେଣ୍ଟ, ବଡ଼ବଡ଼ ବୁଟ୍, ବେତବାଡ଼ି, ସାଧାରଣ ଭାବରେ ସେଥା ଧଳା ମୁହଁରେ କଳାକଳା ଦୁଇଯୋଡ଼ା ନିରିହ ଆଖି ଓ ନାକଠାରୁ ବଡ଼ ହିଟଲାରି ନିଶ-ଚାର୍ଲିଙ୍କ ଜୀବନଦର୍ଶନର ପ୍ରତ୍ୟେକ ବିଭାଗକୁ ସ୍ପଷ୍ଟତର କରିଦିଏ । ସେ ଏପରି ଏକ ବେଶପୋଷାକ, ମେକ୍‌ଅପ୍ ନେବା ପଛରେ- ଅସଂଗତି ଯୋଗୁ ବାହ୍ୟଦୃଷ୍ଟିରୁ ଯେତେ ହାସ୍ୟସୃଷ୍ଟି ହେଉ ନା କାହିଁକି, ଚାର୍ଲି ଅତି ନିବିଡ଼ଭାବରେ ଏହିସବୁ ବେଶ୍‌ପୋଷାକକୁ ଗବେଷଣା କରି ନିଜର କରିଛନ୍ତି । ଅନ୍ୟ ପକ୍ଷରେ ଏପରି ଏକ "ମୁଖା" ପିନ୍ଧି ସେ ଦର୍ଶକଙ୍କ ଆଗରେ ଜନ୍ମ ନେଇଛନ୍ତି ଯାହା ସବୁଯୁଗରେ ସବୁ ସମାଜ ଓ ଦେଶର ମଣିଷ ଗ୍ରହଣ କରିଆସିଛି । ତାହା ଏକ ସତ୍ୟ । ସେ ହେଉଛି ମୃତ୍ୟୁ । ମୃତ୍ୟୁର ପ୍ରତୀକ

ଭାବରେ ମଣିଷ ମୁଣ୍ଡର ଖପୁରୀକୁ ପ୍ରତ୍ୟେକ ଦେଶରେ ଲୋକେ ଗ୍ରହଣ କରନ୍ତି । ଚାର୍ଲିଙ୍କର ମୁହଁର ମେକ୍‌ଅପ୍‌କୁ ଦେଖିଲେ ସେଇ ଖପୁରୀର ଅସ୍ପଷ୍ଟଛାୟା ଆମ ଆଗରେ ଭାସିଆସେ । କିନ୍ତୁ ସେଇ ମୃତ୍ୟୁ ସଚ୍ଚେତନତା ଭିତରେ ଚାର୍ଲି ମଣିଷ ପାଇଁ ହାସ୍ୟ ଓ ବ୍ୟଙ୍ଗର ଗନ୍ତାଘର ଖୋଲି ଦେଇଛନ୍ତି । ପୃଥିବୀର ଅସଂଖ୍ୟ ଆବାଳବୃଦ୍ଧ ବନିତାଙ୍କୁ ହସେଇ ଚାଲିଛନ୍ତି । ଯେତେ ଯେମିତି ମୃତ୍ୟୁକୁ ସେ ହସି ଉଡ଼େଇ ଦେଇଛନ୍ତି ।

ଚାର୍ଲିଙ୍କ ଅଙ୍ଗଭଙ୍ଗୀ ଓ ମୁଖଭଙ୍ଗୀ ସାଧାରଣ ଭାବରେ ନିରିହ ନିଷ୍କପଟ, ଶିଶୁସୁଲଭ ସାବଲୀଳ । ଆଖିରେ ଆନ୍ତରିକତା, ଆଶ୍ଚର୍ଯ୍ୟ ଓ ଆନନ୍ଦ । ତାଙ୍କର ଭଲପାଇବାରେ ଅଛି ଭଦ୍ରତା ଓ ଉଦାରତା । ଏ ସବୁକୁ ସଂବଳ କରି ବାରବୁଲାଟିଏ ପ୍ୟାରିସରୁ ଇଂଲଣ୍ଡ ଓ ପରେ ୧୯୧୩ ବେଳକୁ ଆମେରିକାରେ ପହଞ୍ଚି ଆରମ୍ଭ କରେ ତା'ର "ବ୍ୟର୍ଥ ପ୍ରେମ" (ପଙ୍ଗଚ୍ଛରଡ଼ ରୋମାନ୍‌ସ) । ତାଙ୍କର ଛୋଟଛୋଟ ଚଳଚିତ୍ରର ରୂପାୟନ, ଚିତ୍ରନାଟ୍ୟ, ଚରିତ୍ରଚିତ୍ରଣ ଓ ଉପସ୍ଥାପନା ଏତେ ପ୍ରଭାବଶାଳୀ ଯେ ତାହା ଚଳଚିତ୍ର ବୈପ୍ଳବିକ ଶିକ୍ଷାର ଗୋଟିଏ ଗୋଟିଏ "କ୍ଲାସିକ" ଦୃଷ୍ଟାନ୍ତ । ତାଙ୍କର "ପଅନ୍ ସପ୍", "ଦି ଭାଗାବଣ୍ଡ୍", "ଓ୍ୱାନ୍ ଏ.ଏମ୍", "ଦି ଏଡ଼ଭେଂଚ୍ରାର୍", "ଇଜିଗ୍ରିଟ୍", "ସୋଲ୍‌ଡର୍ ଆର୍ମସ୍", "ସନ୍ନି ସାଇଡ୍", "ଦି କିଡ୍", "ଦି ଗୋଲ୍‌ଡ ରସ୍", "ଦି ସର୍କସ୍", "ସିଟି ଲାଇଟ୍", "ମଡ଼ର୍ଣ୍ଣ ଟାଇମସ୍", "ଦି ଗ୍ରେଟ୍ ଡିକ୍ଟେଟେଟର୍", "ମସିଏଁ ଭର୍‌ଦୋ" ଇତ୍ୟାଦି ଚଳଚିତ୍ର ଯାହା ୧୯୧୩ରୁ ୧୯୪୭ ମଧ୍ୟରେ ସେ ପ୍ରଯୋଜନା, ନିର୍ଦ୍ଦେଶନା କରିଗଲେ ତାହା ଚଳଚିତ୍ର ଶିଳ୍ପ ଓ ଚଳଚିତ୍ର ବୈଷୟିକ ଶିକ୍ଷାର ଅମୂଲ୍ୟ ସଂପଦ ହୋଇ ରହିଛି । ଚଳଚିତ୍ର ଇତିହାସ ଓ ମାନବ ଇତିହାସରେ ଚାର୍ଲି ଚାପଲିନ୍‌ଙ୍କ ଅବଦାନ ଅନବଦ୍ୟ ।

ସଧାରଣ ଭାବରେ କଥା ନକହୁଥିବା ଜଣେ ମୂକ ଅଭିନେତା ଯେ ମଣିଷ ସମାଜର ସମସ୍ତ ସୁଖ ଦୁଃଖକୁ; ରାଜନୈତିକ, ସାମାଜିକ, ଅର୍ଥନୈତିକ, ବ୍ୟକ୍ତିଗତ ଓ ଦାର୍ଶନିକ ଦୃଷ୍ଟିକୋଣରୁ ବିଶ୍ଳେଷଣ କରି ସହଜ ଓ ସରଳ ଉପାୟରେ ଛୋଟ ପିଲାଙ୍କଠାରୁ ବୁଢ଼ା ପର୍ଯ୍ୟନ୍ତ, ଶିକ୍ଷିତ ଓ ଅଶିକ୍ଷିତ ନିର୍ବିଶେଷରେ ପରିବେଷଣ କରିପାରିଥିଲା ସେ ହେଉଛନ୍ତି ଚାପଲିନ୍ । ଯଶ, ମହାନତା ଓ ଅନନ୍ୟ ପ୍ରତିଭାର ଅଧିକାରୀ ସେଇ ଚାର୍ଲସ୍ ସ୍ପେନ୍‌ସର ଚାପଲିନ୍‌ଙ୍କୁ, ଶତବାର୍ଷିକୀ ଜନ୍ମ ଜୟନ୍ତୀ ଉପଲକ୍ଷେ ଲେଖକ ତା'ର ସଶ୍ରଦ୍ଧ ପ୍ରଣାମ ଜଣାଇବା ସଂଗେ ପୃଥିବୀର ସମସ୍ତ ସୃଜନଶୀଳ କଳାକାର ଚାର୍ଲି ଚାପ୍‌ଲିନ୍‌ଙ୍କ ପାଖରେ ଯୁଗଯୁଗ ପାଇଁ ଋଣୀ ରହିବେ ବୋଲି ଧାରଣା କରେ ।

ବାପାଙ୍କ କୋଳରେ ବସି ମୋ'ର ପ୍ରଥମ ଚଳଚିତ୍ର ଦେଖିବାର ଅନୁଭୂତି ଭିତରେ ଚାର୍ଲିହିଁ ମୋତେ ସଂପୂର୍ଣ୍ଣ ଭାବରେ ପ୍ରଭାବିତ କରିଥିଲେ । ତାହା ମୋ ଜୀବନରେ ଏବେ ମଧ୍ୟ ପ୍ରଭାବ ପକାଉଛି ।



# ବଡ଼ ବଡ଼ିଆ ହୋ-

୨୦୦୦ ମସିହାରେ ଶହେ ବର୍ଷ ପୂରିଲା । "ବଡ଼ବଡ଼ିଆ ହୋ", ବାଇଶି ପାହାଚରେ କୁଆଁରିଆ କାଠି (ଶୋଲ ଗୋଛା) ଦିହୁଡି ଜାଳି ତମକୁ କେବେ ସ୍ମରଣ କରିନାହିଁ । କେଉଁ ଭାଷାରେ କହିଲେ ତମେ ବୁଝିବ ? କେଉଁ ଭାଷା ସାହାଯ୍ୟରେ ତମେ ଦକ୍ଷିଣ ପଶ୍ଚିମ ଦିଗକୁ ଖେଦି ଯାଇଥିଲ ? କେଉଁ ବୋଲିରେ ତମେ 'ସେଣ୍ଟ୍ରାଲ ପ୍ରଭିନ୍ସ'ରେ କଥାକହି ଚଳୁଥିଲ ? ସବୁଠେଇଁ ତମେ ପରସ୍ପରର ଭାବ ବିନିମୟ କରୁଥିଲ କି ? ମୁଁ ଖାଲି ପତିତପାବନଙ୍କ ଠେଇଁ ପଥର ଖୋଲରେ ମାହାର୍ଦ୍ଧ ଟିକିଏ ଦେଇ ଖସି ଆସୁଛି ।

ସେମାନେ ତମ କଥା ଶୁଣୁଥିଲେ କି ? ତାଙ୍କ କଥା ତମେ ବୁଝିନପାର, ବୁଝିବାକୁ ଅକ୍ଳାନ୍ତ ଚେଷ୍ଟା କରୁଥିଲ କି ? କେଉଁଠି ତେଲୁଗୁ, କେଉଁଠି ମରହଟ୍ଟି ହିନ୍ଦି, କେଉଁଠି ବଙ୍ଗଳା, କେଉଁଠି ଭୋଜପୁରୀ ହିନ୍ଦି, କେଉଁଠି ଛତିଶଗଡ଼ି ହିନ୍ଦି, କେଉଁଠି ନିତିଆନି, କେଉଁଠି ହେଟ୍ରାଗୁରା କହିବା ବେଳେ ତମକୁ ଆଲରା, ଅସକଟିଆ ଲାଗୁନଥିଲା କି ? ସେମାନେ କଣ ତମ ଠାକୁର ଓ ଦେବାଦେବୀମାନଙ୍କୁ ପୂଜାକରୁଥିଲେ କି ? ଏତେ ଅଲଗା ଅଲଗା ଭିତରେ କଣ 'ଏକତା' ଥିଲା ଯେ-?

ଶହେବର୍ଷ ତଳେ କାହିଁକି ଭାଷା ଭିତରେ ପ୍ରଦେଶ ଗଠନ କରିବାକୁ ତମ ମନ ଉଚ୍ଛନ୍ନ ହେଲା ? ଏବେତ ଘଡ଼ିକେ ଯୋଡ଼ା ଛୁଟୁଛି । ଶହେ ବରଷକୁ ଆଖିପାଉ ନାହିଁ । ହଜାରେ ବର୍ଷର ଇତିହାସକୁ ଜୀବନ୍ୟାସ ଦେଇ ରଜା ମନ୍ତ୍ରୀ ହେବାକୁ ହମହମ ହେଉଛୁ ।

ସଂସ୍କୃତ ଜାଣିଥିବା, ସମ୍ବଲପୁରର କଥିତ ଭାଷା କହୁଥିବା, ସ୍କୁଲରେ ମରହଟ୍ଟୀ ହିନ୍ଦି ଓ ଇଂରାଜି ପଢ଼ିଥିବା 'କମଳଲୋଚନ', ତମେତ ପାଞ୍ଚଶହ ବର୍ଷ ପୁରୁଣା "ବ୍ରହ୍ମପୁରା ଗୁଡି"ର ଜଗନ୍ନାଥ ଠାକୁରଙ୍କ ସେବାକାରୀ ପୂଜକ ବ୍ରାହ୍ମଣ, ତମେ କାହିଁକି କଳାହାଣ୍ଡୀ, ବଲାଙ୍ଗୀର ପାଟଣା ଓ ସୋନପୁର ଦେଶୀୟ ରାଜ୍ୟ ମାନଙ୍କରେ ଦଶବର୍ଷ ପାଖାପାଖି ଘୁରି ବୁଲିଥିଲ ? ତମେତ ଏ ଅଞ୍ଚଳର ଓଡ଼ିଆ ଭାଷା ଶିଖିବାର ସୁବିଧା ସ୍କୁଲରେ ପାଇନଥିଲ !

ସମ୍ବଲପୁରର ପୈତୃକ ଘରେ ବଡ଼ପୁଅ 'ତ୍ରିବିକ୍ରମ'ଙ୍କୁ ରଖିଦେଇ, ଏକମାତ୍ର କନ୍ୟା ଦେବହୂତିଙ୍କ ସ୍ୱାମୀ, 'ହରିଶଙ୍କର'ଙ୍କୁ ମନ୍ଦିର ପୂଜାର ଓ ପରିଚାଳନାର ସମସ୍ତ ଭାର ଅର୍ପଣ କରି, ତୁମେ କାହିଁକି ସମ୍ବଲପୁର ଝାଡୁଆପଡ଼ାର ଘର ଛାଡ଼ିଥିଲ ଊନବିଂଶ ଶତାବ୍ଦୀର ଶେଷ ଭାଗରେ ।

ସାଙ୍ଗରେ ସ୍ତ୍ରୀ ଜାହ୍ନବୀ, ତୃତୀୟ ପୁତ୍ର 'ମୀନକେତନ' ଓ ଚତୁର୍ଥ ପୁତ୍ର 'ଅଚ୍ୟୁତାନନ୍ଦ'ଙ୍କୁ ଧରି ମହାନଦୀ କୂଳରୁ ତେଲନଦୀ ଡେଇଁ ଭବାନୀପାଟଣାରେ ବନ୍ଦୋବସ୍ତ

ସୁପରିନ୍‌ଟେନ୍‌ଡେଣ୍ଟ ଭାବରେ ଅବସ୍ଥାପିତ ଥିଲ। କଳାହାଣ୍ଡି ମହାରାଜାଙ୍କ ଅନୁରୋଧରେ ସମ୍ବଲପୁରର ଗୋରା କମିସନର ତୁମକୁ କଳାହାଣ୍ଡି ରାଜ୍ୟର ଜମି ବନ୍ଦୋବସ୍ତ କାର୍ଯ୍ୟ ସୁଚାରୁ ରୂପରେ କରିବାକୁ ପଠେଇଥିଲେ ପରା ? ସେଇଠି ତୁମର ପଞ୍ଚମ ଓ ସର୍ବକନିଷ୍ଠ ପୁତ୍ର ଅଗଷ୍ଟ ମାସର ୧ ତାରିଖରେ ୧୯୦୧ ମସିହାରେ ଜନ୍ମଗ୍ରହଣ କରିଥିଲେ। ତୁମେ ତାଙ୍କ ନାଁ ଦେଇଥିଲ 'ସଚ୍ଚିଦାନନ୍ଦ'। ପାଞ୍ଚ ପୁଅଙ୍କ ନାଁ ଯଥାକ୍ରମେ 'ତ୍ରିବିକ୍ରମ', 'ସନାତନ', 'ମୀନକେତନ', 'ଅଚ୍ୟୁତାନନ୍ଦ' ଓ 'ସଚ୍ଚିଦାନନ୍ଦ'। ସବୁ ବିଷ୍ଣୁଙ୍କ ନାମ। ଜଗନ୍ନାଥଙ୍କ ପୂଜକ ଭାବରେ ତୁମେ ବିଷ୍ଣୁଭକ୍ତଟିଏ ଥିଲକି ? ସେଇଠି ତିନିବର୍ଷର କାମସାରି ଘରକୁ ଫେରିବାବେଳେ ପୁଣି ବଲାଙ୍ଗିର ମହାରାଜାଙ୍କ ଅନୁରୋଧରେ ବଲାଙ୍ଗିର ପାଟଣାର ବନ୍ଦୋବସ୍ତ କାମପାଇଁ କିଛିଦିନ ସେଠି ରହିଲ। ତା'ପରେ ସୋନପୁର ରାଜାଙ୍କ ଅନୁରୋଧରେ ସେଠି ମଧ୍ୟ ବନ୍ଦୋବସ୍ତ କାର୍ଯ୍ୟରେ ସାହାଯ୍ୟ କଲ। ଏତେ ନାଳ, ନଦୀ, ପାହାଡ଼, ପର୍ବତ, ଜଙ୍ଗଲ ଘାଟି ଡେଇଁ ତମେ କେମିତି ସେଠି ବୁଲୁଥିଲ ? ଟାଙ୍ଗାଗାଡ଼ି, ଶଗଡ଼, ଘୋଡ଼ା, ସାଇକଲ ଛଡ଼ା ଆଉ କଣ ବାହାନ ଥିଲାକି ? କେତେ ସମ୍ପତ୍ତି, ଜାଗିରି, ଗୌନ୍ତି ଥିଲା ତମର ? ତୁମ ପୁଅମାନଙ୍କୁ ଅପନ୍ତରା ଜଙ୍ଗଲିଆ ଜାଗାରୁ ଦୂରେଇ ଦେଇ ନାଗପୁର, କଲିକତା, ପାଟଣା, କଟକ, ଡେରାଡୁନରେ ପାଠ ପଢ଼ି ତାଲିମପାଇବା ପାଇଁ ପଠେଇଥିଲ କାହିଁକି ? ସେମାନେ ଘରେ କେଉଁ ଭାଷା କହୁଥିଲେ ? ଖାଲି ଇଂରାଜି, ହିନ୍ଦି, ବଙ୍ଗଳା, ଛତିଶଗଡ଼ି, ଉର୍ଦ୍ଦୁ, ମରହଟ୍ଟି, ଭୋଜପୁରୀ ଭାଷାରେ କଥାବାର୍ତ୍ତା ହେଉଥିଲେ, ନାଁ ଓଡ଼ିଆ ଭାଷାଲେଖି ପଢ଼ି ଜାଣିଥିଲେ ? ତମେତ ସ୍କୁଲରେ ଓଡ଼ିଆ ପଢ଼ି ନଥିଲ। ସେମାନଙ୍କୁ କାହିଁକି ଓଡ଼ିଆ ପଢ଼େଇଲ ?

ଶହେବର୍ଷ ଆଗରୁ ପଞ୍ଚମ ଶ୍ରେଣୀ ଯାଏ ପଢ଼ିଥିବା ଭୁଲିଆ ପିଲା ବରପାଲି ଗାଁରେ ଆଉ ରେଢ଼ାଖୋଲ ରାଜ୍ୟର ଅପାଠୁଆ ଗାଈଚରୁଆ କନ୍ଧପିଲାଟିଏ କେମିତି ଓଡିଆ କାବ୍ୟ, କବିତା, ଭଜନ, ଜଣାଣ ଗୁଡ଼ିଏ ବୋଲି ସମସ୍ତଙ୍କୁ ପାଗଳ କରିଦେଲେ। ଶହେବର୍ଷ ପୁରୁଣାଗାଁରେ, ଏ ହୀରାଖଣ୍ଡ ଅଞ୍ଚଳରେ ଯେତେ ଜଗନ୍ନାଥ ମନ୍ଦିର, ଠାକୁରଙ୍କ ଗାଦି ସୁନ୍ଦରଗଡ଼ରୁ କଳାହାଣ୍ଡି ରାଜ୍ୟର ସୀମାଯାଏ ଲମ୍ବିଯାଇଛି; ସେଠି ଠାକୁରଙ୍କ ପାଖରେ ଗୋଟାଏ ଖଟୁଲିରେ ଯେତେ ସବୁ ବିଡ଼ାବିଡ଼ା ତାଳପତ୍ରର କାଳିଆ କାଳିଆ ପୋଥି ପଡ଼ି ରହିଚି, ତାକୁ ତମେ ବେଳେବେଳେ ଖୋଲି ପଢୁଥିଲ କି ? ଉପରେ ତ ଧଳାଧଳା ବହଳେ ଚନ୍ଦନର ଛିଟା। ସେସବୁ ସଂସ୍କୃତ ଭାଷା ନା ଓଡ଼ିଆ ଭାଷାରେ ଲେଖା ହୋଇଛି ? ସେଗୁଡାକ ଜଗନ୍ନାଥ ମନ୍ଦିର ସହିତ ପାଞ୍ଚଶହ ବର୍ଷ ହେଲା ଯୋଡ଼ି ହୋଇ ନାହିଁ କି ? ସେଠି ସାରଳା ମହାଭାରତ, ଜଗନ୍ନାଥ ଦାସଙ୍କ ଭାଗବତ, କେତେଖଣ୍ଡ ଓଡିଆ ପୁରାଣ ଆଜିଯାଏ ଚନ୍ଦନ ଛିଟାରେ ପୋତିଦେଇ ଯାଉନାହାଁନ୍ତି କି ? କମଳ ଲୋଚନ ! ଇଂରେଜ କମିସନର

ସାହେବଙ୍କ ଅଫିସର ଅଧସ୍ତନ ବନ୍ଦୋବସ୍ତ ସୁପରିନ୍‌ଟେନ୍‌ଡେଣ୍ଟ୍, ତୁମେତ ଗୋଲାମଗିରି କରୁଥିଲ ? ତୁମର କେମିତି ଭାଷାପ୍ରୀତି ଆସିଲା ?

ବିହାର-ବଙ୍ଗଳା-ଓଡ଼ିଶା ପ୍ରଦେଶରେ ତମ ବଡ଼ପୁଅ 'ତ୍ରିବିକ୍ରମ' ଏସ୍.ଡି.ଓ., ବଡ଼ମଝିଆ ପୁଅ 'ସନାତନ' ପାଟଣା ମେଡିକାଲର ଶରୀରତତ୍ତ୍ୱ ପ୍ରଫେସର; ମଝିଆ ପୁଅ 'ମୀନକେତନ' ବଲାଙ୍ଗୀର ପାଟଣା ରାଜ୍ୟର ପୋଲିସ ଇନ୍‌ସପେକ୍ଟର; ଚତୁର୍ଥ ପୁତ୍ର ଇଂଜିନିୟର 'ଅଚ୍ୟୁତାନନ୍ଦ' କଟକରେ ଜୁନିୟର ଇଂଜିନିୟର ଓ କନିଷ୍ଠ ପୁତ୍ର 'ସଚ୍ଚିଦାନନ୍ଦ' ଚାଇଁବସାର ତହସିଲଦାର ଭାବରେ ଅବସ୍ଥାପିତ ହେବାବେଳେ ନିଜକୁ ଓଡ଼ିଆ ଛଡ଼ା ଅନ୍ୟ କୌଣସି ଅଞ୍ଚଳ ବା ଜାତିର ଲୋକ ବୋଲି ପରିଚୟ ଦେଉଥିଲେ କି ? ସବୁଠି ନିଜ ମାତୃଭାଷାରେ କହୁଥିବା ମା' ସମଲାଇଙ୍କ 'ବସ୍ତ୍ରା' ଭାବରେ, 'ହାଇଲେଣ୍ଡର'ର ପରିଚୟ ଦେଇ, ଚାକିରୀର ସମସ୍ତ ନିୟମକାନୁନ ମାନି କଟକର ରେଭେନ୍‌ସା କଲେଜ, କଲିକତାର ପ୍ରେସିଡ଼େନ୍‌ସି ଓ ପାଟଣା ମେଡିକାଲ କଲେଜରେ ନାଁ କରିନଥିଲେ କି ? ଓଡିଶା ପ୍ରଦେଶ ଅଲଗା ହେବାପରେ, ଏମାନେ ନୂତନ ପ୍ରଦେଶର କୌଣସି ଅଞ୍ଚଳକୁ ବଦଳିରେ ଯିବାକୁ ଅମଙ୍ଗ ହେଉଥିଲେ କି ? ଭୟ କରିଥିଲେ କି ? ଘୃଣା କରୁଥିଲେ କି ? ଓଡ଼ିଶାର କୌଣସି ଅଞ୍ଚଳରେ ନିଜସ୍ୱ ଭାଷା ଓ ଚଳଣୀକୁ ଯୋରକରି ଅନ୍ୟଲୋକଙ୍କ ଉପରେ ଚାପିଦେବାକୁ ଚେଷ୍ଟା କରୁଥିଲେ କି ?

କମଲଲୋଚନ ! ତୁମେ ତୁମ ପୁଅଙ୍କୁ କେମିତି ଶିକ୍ଷା ଦେଇଥିଲ ? ତୁମ ଷଡୁ ଦେବାନ ବାହାଦୁର ଦାଶରଥିଙ୍କ ଜ୍ୟେଷ୍ଠପୁତ୍ର 'ବୈକୁଣ୍ଠନାଥ' ଓ ତାଙ୍କର ଭାଇମାନଙ୍କୁ ନିଜର ଆଦର୍ଶ ଭାବରେ ଗ୍ରହଣକରିବାକୁ ସେମାନଙ୍କୁ ଶିଖେଇଥିଲେ କି ? ସେମାନେ ରାଜନୀତି କଲେ ନାହିଁ କାହିଁକି ? ସେମାନେ ମଧ୍ୟ ଆଉ ଏକ ଜଗନ୍ନାଥଙ୍କ ପୂଜକ ଥିଲେ ପରା !

ଉନବିଂଶ ଶତାବ୍ଦୀରେ ଜନ୍ମଗ୍ରହଣ କରିଥିବା 'ବୈକୁଣ୍ଠନାଥ' ! ସେଣ୍ଟ୍ରାଲ ପ୍ରଭିନ୍‌ସ/ ବିହାର ଓଡ଼ିଶା ପ୍ରଦେଶର ହାତଗଣତି ଉଚ୍ଚଶିକ୍ଷିତ ଭିତରେ ତୁମେ ପରା ଜଣେ। ବଡ଼ଲୋକର ପୁଅ। ତମେତ ମରହଟ୍ଟୀ ହିନ୍ଦି ଓ ଇଂରାଜିରେ ସ୍କୁଲକଲେଜରେ ପାଠ ପଢ଼ିଥିଲ। ଗୋରା ସାହେବଙ୍କ ସଂଗେ ବଚନିକା କରୁଥିଲ। ଚିତ୍ର ଆଙ୍କୁଥିଲ, ନାଟକ କରୁଥିଲ ! ତମକୁ ଘରୁ ଡକେଇ ଗୋରା ସାହେବ 'ଆସିଷ୍ଟେଣ୍ଟ କମିସନର' ଚାକିରୀ ଦେଇଥିଲେ-ସେଣ୍ଟ୍ରାଲ ପ୍ରଭିନ୍‌ସରେ।

ନିଜର ଏକମାତ୍ର ବଡ଼ଭଉଣୀ ଓ ଭିଣୋଇଙ୍କୁ ନେଇ ତୁମେ କାହିଁକି ସ୍ନାତକୋତ୍ତର ପାଠ ପଢ଼ିବାକୁ କଲିକତା ଯାଇଥିଲ ? ତମେ ଏମ୍.ଏ. (ରସାୟନ ଶାସ୍ତ୍ର) ପଢ଼ିବା ବେଳେ ସେ ପଢ଼ିଲେ ବି.ଏଡ୍ ଓ ବି.ଏଲ୍.। ଗୋରା ସାହେବ ତୁମକୁ ସରକାରୀ ଚାକିରିଆ

କରିଦେବା ବେଳେ ତମ ଭିଣେଇ 'ଚନ୍ଦ୍ରଶେଖର' ହେଲେ ଶିକ୍ଷକ ଓ ଓକିଲ। ସମ୍ବଲପୁର ଭାଷା ଆନ୍ଦୋଳନର ପଞ୍ଚସଖାରୁ ଜଣେ। ଏଇ ପଞ୍ଚସଖା କାହିଁକି ଭାଷା ଆନ୍ଦୋଳନର ପୁରୋଧା ହେଲେ ?

ତୁମେ ବୈକୁଣ୍ଠନାଥ ! ଏମାନଙ୍କ ସହିତ ସହଯୋଗ କଲ କାହିଁକି ? ସରକାରୀ ଚାକିରୀରେ ଥାଇ ସରକାରୀ ନିୟମ ବିରୁଦ୍ଧରେ ଯିବାକଣ ତୁମକୁ ଭଲ ଲାଗୁଥିଲା ? ଗୋଟାଏ ପଟେ ଭିଣୋଇଙ୍କୁ ରାଜନୀତିରେ ଭାଗ ନେବାପାଇଁ ପ୍ରଶ୍ରୟ ଦେଇ, ତୁମେ କାହିଁକି ରାତି ଅଧରେ ଘୋଡ଼ାରେ ଚଢ଼ି ସମ୍ବଲପୁରରୁ ପଦ୍ମପୁର ଓ ସରେଇପାଲିରର ଗାଁ ଗଣ୍ଡାରେ, ଗୌନ୍ତିଆ ମୁଖିଆଙ୍କୁ ଓଡ଼ିଶା ପ୍ରଦେଶ କଥା କହୁଥିଲ ? ଯୁବକ ବୟସରେ ଗୋଟିଏ କଅଁଳିଆ ଝିଅର ବାପହେଇ ଏମିତି ଦୁଃସାହସିକ କାମକରିବାକୁ ତୁମକୁ କଣ ଉପକୂଳିଆ ନେତାମାନେ ଶିଖେଇ ଥିଲେ କି ? ସେଇ ପରିଶ୍ରମ ଓ ଅନିଦ୍ରାରେ ବୁଲିବୁଲି ତୁମେ ଦୁରାରୋଗ୍ୟ ଯକ୍ଷ୍ମାରେ ଆକ୍ରାନ୍ତ ହେଲ। ୧୯୦୩ ମସିହାରେ ମୋଟେ ୨୯ ବର୍ଷ ବୟସରେ ତୁମେ ଦେହତ୍ୟାଗ କଲ। ଭାଷା ଆନ୍ଦୋଳନରେ ତୁମ ନାଁତ କେହିନେଲେ ନାହିଁ ? ଓଃ, ତୁମେତ ରାଜନୀତି କରୁନଥିଲ ! ଚାକିରୀରେ ଥାଇ କେତେଜଣ ଏମିତି 'କମିସନର', ଭାଷାପାଇଁ ଜୀବନକୁ ମୂର୍ଚ୍ଛିଦେବେ ? ଏ ପାଗଳାମୀ କିଏ କେବେ କରେ ?

ବୈକୁଣ୍ଠନାଥ ! ତୁମପରେ ତୁମ ଭାଇ ଦୁଇଟି 'ନୀଳକଣ୍ଠ' ଓ 'ଶ୍ରୀକାନ୍ତ' ସେମିତି ଅଳ୍ପ ବୟସରେ ଚାଲିଗଲେ। ଶୁଣାଯାଏ, ଆଜିକାଲିକା ପଥପ୍ରାନ୍ତ ନାଟକପରି ତୁମେ ଓଡ଼ିଆ ଭାଷାର ନାଟକଲେଖି ଭାଇ ନୀଳକଣ୍ଠ ସହିତ ପଦ୍ମପୁରଠାରୁ ସରେଇପାଲିଯାଏ ଅଭିନୟ କରି ଦେଖାଉଥିଲ। ସାଧାରଣ ଗାଁର ଲୋକଙ୍କୁ ଭାଷା ଆନ୍ଦୋଳନ ବିଷୟରେ ସଚେତନ କରାଉଥିଲ। ରାତିରେ ନାଟକ ଓ ଦିନରେ ସାଇକେଲ ଚଲେଇ ଗାଁ ଗାଁ ବୁଲିବା ବାଟରେ ଦିନ ପହରଟାରେ ନରସିଂହନାଥ ଝରଣା ଥଣ୍ଡା ପାଣିରେ ଗାଧୋଇ ବାଇଶବର୍ଷର ନୀଳକଣ୍ଠ ନିମୋନିଆଁ ରୋଗରେ ଆକ୍ରାନ୍ତହୋଇ ଶେଷ ନିଃଶ୍ୱାସ ତ୍ୟାଗ କରଥିଲେ। ସେମାନଙ୍କ ପାଖକୁ ଲେଖିଥିବା ଚିଠିରୁ ତୁମ ଆଦର୍ଶର କଥା ଜଣା ପଡ଼େ। ଶ୍ରୀକାନ୍ତପରେ ତମର ଚତୁର୍ଥ ଓ ପଞ୍ଚମ ଭାଇ 'ପ୍ରସନ୍ନ' ଓ 'ବନମାଳୀ' ତୁମର ପଦାଙ୍କ ଅନୁସରଣକରି ସରକାରୀ ବନ୍ଦୋବସ୍ତ ଚାକିରୀ କରିଥିଲେ। ତୁମର ପଞ୍ଚମ ଭ୍ରାତ୍ରା ଡାକ୍ତର 'ଜନାର୍ଦ୍ଦନ' ଆଉ ଜଣେ ଯୁଗଜନ୍ମା। ଜଣେ ସ୍ୱାଭିମାନୀ ସମ୍ବଲପୁରବାସୀ ଓଡ଼ିଆ ଭାବରେ, ପଶ୍ଚିମ ଓଡ଼ିଶାର ପ୍ରଥମ ନାରୀ ସ୍ୱାଧୀନତା ଓ ନାରୀ ଶିକ୍ଷା ପ୍ରଚାରର ପ୍ରବର୍ତ୍ତକ, ଜଣେ ସାହସୀ ଲୋକନେତା ଯେ ହୀରାକୁଦ ବନ୍ଧ ବିରୋଧି ସଂଗ୍ରାମୀର ଅଗ୍ରଭାଗରେ ଥିଲେ, ଜଣେ ଜନସେବକ ଡାକ୍ତର, ଜଣେ ନାଟକ ରଚ଼କ ଓ ଅଭିନେତା/ ନିର୍ଦ୍ଦେଶକ ଭାବରେ ଓ ଭଗବତ୍ ଗୀତାର

ପ୍ରବଚନକାରୀ ଧର୍ମାତ୍ମା ଭାବରେ ମୋର ଆଗତ ବଂଶଧରଙ୍କୁ ପ୍ରଭାବିତ କରୁଥିବେ। ତୁମର ସର୍ବକନିଷ୍ଠ ଭ୍ରାତା 'ଗୋକୁଳାନନ୍ଦ' ମଧ୍ୟ ଉଚ୍ଚ ଶିକ୍ଷିତ ହୋଇ ଚାକିରୀ ନକରି ଗ୍ରାମ୍ୟଜୀବନକୁ ଆଦରିନେଲେ। ହେ ବୈକୁଣ୍ଠନାଥ ! ତୁମେ ଓ ତୁମର ସମସ୍ତ ଭ୍ରାତାଗଣ ଓ ତୁମ ମାଉସୀଙ୍କ ପାଞ୍ଚପୁଅଙ୍କୁ (ଭାଇମାନଙ୍କୁ) ପ୍ରଭାବିତ କରିଥିଲ କି ? ଆମେ ତାଙ୍କରି ସନ୍ତାନ ସନ୍ତତିମାନେ କାହିଁକି ଓଡ଼ିଆ ଭାଷା/ ସାହିତ୍ୟ ପଢ଼ି ସ୍ନାତକ ହେଲୁ ?

ବିଗତ ଶହେବର୍ଷରେ ଓଡ଼ିଆ ଭାଷାର ସଙ୍କଟ ଘନେଇ ଆସିଛି। ହେଲେ ମୋ' ପରିବାରର ଏ ପିତୃପୁରୁଷଗଣ ମୋତେ କାହିଁକି ଓଡ଼ିଆ ଭାଷା ଆଦରି ନେବାକୁ କହିଥିଲେ ? କାହିଁକି ମୁଁ ଷାଠିଏ ବର୍ଷଯାଏ ଏଇ ଭାଷାରେ ଭାବବ୍ୟକ୍ତ କରି ଚାଲିଛି ? ତଥାପି, ମୁଁ ମୋର ମାତୃଭାଷାକୁ ଭୁଲିପାରି ନାହିଁ। ମୋ' ରକ୍ତକଣିକାରେ କାହିଁକି ଏ ଭାଷାପ୍ରତି ମମତା ? ହେ ପୂର୍ବସୂରୀଗଣ ! ତମେ କଣ ସତେ ମୋତେ ଦିଶାହରା କରିଦେଇଛ ? ତୁମକୁ ସମସ୍ତଙ୍କୁ ପ୍ରଣାମ କଣାଉଛି। କାରଣ ଏଇ ଭାଷାରେ ମୁଁ ନାଟକ ଓ ସିନେମା କରୁଛି। ପାଠ ପଢ଼ି ପିଲାଙ୍କୁ ପଢାଉଛି। ଏ ଲେଖା ଲେଖୁଛି। ବଡ଼ବଡ଼ିଆ ହୋ-ତମକୁ ମୁଣ୍ଡିଆ ମାରୁଛି-ଆଲୁଅରେ ଥାଅ- !



## ବଂଶବୃକ୍ଷ

ବିଷ୍ଣୁ ହୋତା
↓
ଦାମୋଦର ପୂଜାରୀ (୧ମ ପିଢ଼ି)

ବଳଭଦ୍ର | ଜଗନ୍ନାଥ | ରାମଚନ୍ଦ୍ର | ରଘୁନାଥ | ନାରାୟଣ (୨ୟ ପିଢ଼ି)

(୩ୟ ପିଢ଼ି) କୃଷ୍ଣ (ତାମ୍ର ପୂଜାରୀ) ମଧୁ

(୩ୟ) କେଶବ | ମାଧବ | ଗୋବିନ୍ଦ | ଗୋପାଳ (୩ୟ)

(୪ର୍ଥ) ଗଣେଷ — ଶ୍ୟାମସୁନ୍ଦର (୪ର୍ଥ)

(୫ମ) ଜପାମାଳୀ — ରମାକାନ୍ତ (୫ମ)

ଭରତଚନ୍ଦ୍ର | ରାମଚନ୍ଦ୍ର | କୃଷ୍ଣଚନ୍ଦ୍ର (୬ଷ୍ଠ)

ଦାଶରଥୀ (୩ୟ ପିଢ଼ି)

(୪ର୍ଥ ପିଢ଼ି) କମଳଲୋଚନ (ଗାର୍ଗସ୍ୟ) | ପଦ୍ମଲୋଚନ | ପ୍ରଦ୍ୟୁମ୍ନ | ସୁରାନନ୍ଦ

ବୈକୁଣ୍ଠନାଥ/ନୀଳକଣ୍ଠ/ଶ୍ରୀକାନ୍ତ (୪ର୍ଥ ପିଢ଼ି)

ରୁକ୍ମିଣୀ

ଗୋପାଳବଲ୍ଲଭ | ଗୌରଚନ୍ଦ୍ର

ପ୍ରସନ୍ନକୁମାର/ ବନମାଳୀ

- ପ୍ରସନ୍ନକୁମାର: ମୁରଲୀଧର, ସାରଙ୍ଗଧର, ?(କନ୍ୟା), ?(କନ୍ୟା), ?(କନ୍ୟା)
- ବନମାଳୀ: ବଂଶୀଧର, ଚକ୍ରଧର, ବିମ୍ବାଧର, ବେଣୁଧର, ?

(୫ମ ପିଢ଼ି) ତ୍ରିବିକ୍ରମ | ସନାତନ | ମୀନକେତନ | ଅଚ୍ୟୁତାନନ୍ଦ | ସଚ୍ଚିଦାନନ୍ଦ | ଦେବହୂତି

- ତ୍ରିବିକ୍ରମ: ସୂର୍ଯ୍ୟକୁମାର, ଚନ୍ଦ୍ରକୁମାର, ଅଶ୍ୱିନୀକୁମାର, ଶୈଳରାଣୀ, କ୍ଷେତ୍ରମଣୀ
- ସନାତନ: ସରୋଜିନୀ, ବିନୋଦିନୀ, ପ୍ରମୋଦିନୀ, ନଳିନୀ, ସୁହାସିନୀ, ଶୈବଳିନୀ, ବୀଣାପାଣି, ଆଶାରାଣୀ, ଉଷାରାଣୀ, ଈଶ୍ୱରଚନ୍ଦ୍ର
- ମୀନକେତନ: ବିଶ୍ୱମ୍ଭର, ଅଜାମ୍ବର, ପ୍ରଭାମୟୀ, ଶୋଭାମୟୀ, ସୁକାନ୍ତି
- ଅଚ୍ୟୁତାନନ୍ଦ: ଚିଚିତ୍ରାନନ୍ଦ, ବିଷ୍ଣୁପ୍ରିୟା, କୁସୁମମଞ୍ଜରୀ, ରମାସୁନ୍ଦରୀ, ରାସେଶ୍ୱରୀ, ମୈଥିଳୀ, ନିର୍ମଳଚନ୍ଦ୍ର
- ସଚ୍ଚିଦାନନ୍ଦ: ସୁରେଶଚନ୍ଦ୍ର, ସତ୍ୟବତୀ, ଶରତଚନ୍ଦ୍ର, ସୁବୋଧଚନ୍ଦ୍ର, ସୁନୀଲଚନ୍ଦ୍ର, ଶିଶିରଚନ୍ଦ୍ର, ସୁବାଷଚନ୍ଦ୍ର, ସଞ୍ଜିବନୀ, ସୁଧୀରଚନ୍ଦ୍ର, ଯତୀଶଚନ୍ଦ୍ର, ଶିରୀଷଚନ୍ଦ୍ର
- ଦେବହୂତି: ମୁରଲୀଧର

ଜନାର୍ଦ୍ଦନ/ ଗୋକୁଳାନନ୍ଦ (୫ମ ପିଢ଼ି)

- ଜନାର୍ଦ୍ଦନ: ରାଜାରାମ, ଜିତେନ୍ଦ୍ର, ଶୈବଳିନୀ, ?(କନ୍ୟା), ସ୍ନେହମୟୀ
- ଗୋକୁଳାନନ୍ଦ: ମନୋରମା, ରବିନ୍ଦ୍ର

(୬ଷ୍ଠ ପିଢ଼ି)

[ ୫+ ୧୦+ ୫+ ୬+ ୧୧+ ୬ = ୪୪ ]

- ବଂଶୀଧର: ୧ ହେମନ୍ତ, ୨ ପଦ୍ମିନୀ, ୩ ନଳିନୀ, ୪ ନାରାୟଣୀ, ୫ ମାଧୁରୀ, ୬ ପ୍ରଶାନ୍ତ, ୭ ରତ୍ନମଣି, ୮ ଶ୍ରୀକାନ୍ତ
- ଚକ୍ରଧର: ୧ ଇନ୍ଦିରା, ୨ ଶାନ୍ତନୁ, ୩ ଭଦ୍ରା
- ବିମ୍ବାଧର: ୧ ଶୈବଳିନୀ, ୨ ପ୍ରତିଭା, ୩ ମହେଶ, ୪ ଯୋଗେଶ, ୫ ସୁପ୍ରଭା, ୬ ରମେଶ, ୭ ଉମେଶ
- ବେଣୁଧର: ୧ ସୁଧାଂଶୁ, ୨ ସୁନନ୍ଦା, ୩ ସୁନୀଳ, ୪ ସ୍ୱର୍ଣ୍ଣ, ୫ ସୁବୋଧ, ୬ ସୁବୀର, ୭ ସୁଜିତ

*(ଇଟାଲିକ୍ସ ନାମାଙ୍କିତ ବ୍ୟକ୍ତି ବିଶେଷଣଗଣ କଳା, ସାହିତ୍ୟ, ସୂକ୍ଷ୍ମକଳା, ଶରୀରଚର୍ଯ୍ୟା ବା ଆଧ୍ୟାତ୍ମିକ ଭାବରେ ରୁଚି ରଖନ୍ତି ।)*

(୧) କମଳଲୋଚନ ଓ ଦାଶରଥିଙ୍କ ବିଷୟରେ ଯାହା ତଥ୍ୟ ସଂଗ୍ରହ କରାଯାଇଛି ତାହା ସତ୍ୟନିଷ୍ଠ । ଏ ଦୁଇଜଣ ଯାକ ନିଜ ଗୁଣରେ ଗୁଣୀ ଓ ବ୍ରିଟିଶ ଅମଳର ଭଲପ୍ରଶାସକ ଭାବରେ ଜଣାଯାଉଥିଲେ । ଦୁହେଁ ଉଚ୍ଚଶିକ୍ଷିତ, ସମ୍ଭ୍ରାନ୍ତ, କଳାପ୍ରିୟ, ଉଦାରଚେତା ଭାବରେ ସମ୍ମାନିତ ଥିଲେ ।

(୨) ଏ ଦୁଇଜଣ ପୂଜାରୀଙ୍କ ପୁତ୍ର ଓ ପୌତ୍ରମାନେ ମଧ୍ୟ ଉଚ୍ଚଶିକ୍ଷିତ, କଳାପ୍ରିୟ ଓ ସଂସ୍କୃତି ସମ୍ପନ୍ନ ଭାବରେ ପ୍ରାୟ ଏକଶହ ବର୍ଷ ହେବ ପଶ୍ଚିମ ଓଡ଼ିଶାରେ ଜଣାଯାଆନ୍ତି ।

(୩) କେବଳ କମଳଲୋଚନ ପୂଜାରୀଙ୍କ ପୌତ୍ର ଓ ପୌତ୍ରୀମାନଙ୍କର ନାମ ସଂଗ୍ରହକରି ଏଠାରେ ଉଲ୍ଲେଖ କରାଯାଇଛି । ଏମାନଙ୍କର ସର୍ବମୋଟ ସଂଖ୍ୟା-୪୪ ।

(୪) ଦାଶରଥି ପୂଜାରୀଙ୍କ ପୁତ୍ର ଓ ପୌତ୍ର ମାନଙ୍କ ନାମ ଏଠାରେ ଉଲ୍ଲେଖ କରାଗଲା, କାରଣ ଷଷ୍ଠ ଓ ସପ୍ତମ ପିଡି ବେଳକୁ ଏ ପୂଜାରୀ ବଂଶଧାରୀମାନେ ସମ୍ବଲପୁର ସହରଠାରୁ (ଝାଡୁଆ ପଡାରୁ) ଦୂରକୁ ଚାଲିଯାଇଥିଲେ ଓ ସେମାନଙ୍କ ସଂଖ୍ୟା ଶତାଧିକ ହୋଇଯାଇଛି । କେତେକ ଓଡ଼ିଶା ଓ ଭାରତ ବାହାରେ ମଧ୍ୟ ରହୁଛନ୍ତି ।

(୫) କେବଳ କମଳଲୋଚନ ପୂଜାରୀଙ୍କ କନିଷ୍ଠ ପୁତ୍ର ସଚ୍ଚିଦାନନ୍ଦଙ୍କ ଏଗାରଟି ସନ୍ତାନ ସନ୍ତତି ମାନଙ୍କର ପୁତ୍ର ପୁତ୍ରୀ (ପୌତ୍ର ପୌତ୍ରୀ) ମାନଙ୍କର ନାମ ପରିଚୟ ଏଠାରେ କ୍ରମାନ୍ୱୟରେ ଦିଆଗଲା । ଏମାନଙ୍କର ସନ୍ତାନ ସନ୍ତତିଙ୍କ ସଂଖ୍ୟା ଯଥାକ୍ରମେ ୧୪ ଓ ୧୯ । ଏ ସପ୍ତମ ପିଢ଼ିର କେତେକଜଣ ପ୍ରଦେଶ ଓ ଦେଶ ବାହାରେ ଅବସ୍ଥାନ କରୁଛନ୍ତି ।

(ପୁତ୍ର)- ପିଃ ସୁରେଶଃ- ସୁଶାନ୍ତ, ସୌମିତ୍ର । ପିଃ ଶରତଃ-ସିଦ୍ଧାର୍ଥ ଓ ସୌମେନ୍ଦ୍ର । ପିଃ ସୁବୋଧଃ- ଶାଶ୍ୱତ । ପିଃ ସୁନୀଲଃ- ଶୁଭେନ୍ଦୁ ଓ ସୁଧାଂଶୁ । ପିଃ ଶିଶିରଃ- ସଂଗ୍ରାମଜିତ୍, ସତ୍ୟଜିତ୍ । ପିଃ ସୁବାଷଃ- ସାଗର । (ମା): ସଞ୍ଜିବନୀଃ- ସଞ୍ଜୟ । ପିଃ ସୁଧୀରଃ- ଶଶାଙ୍କ । ପିଃ ସତୀଶଃ- ସ୍ୱସ୍ତିକ । ପିଃ ଶିରୀଶଃ- ସତ୍ୟମ । (୧୪)

(କନ୍ୟା)- ପିଃ ସୁରେଶଃ- ସୁମିତ୍ରା, ଶର୍ମିଷ୍ଠା, ସଂଗୀତା, (ମା): ସତ୍ୟବତୀଃ- ସ୍ମିତା, ସଂଗୀତା । ପିଃ ଶରତଃ- ଶିଖା, ସାଗରିକା । ପିଃ ସୁବୋଧଃ- ସୁଜାତା, ସୁନନ୍ଦା । ପିଃ ସୁନୀଲଃ- ଶୁଭଲକ୍ଷ୍ମୀ । ପିଃ ଶିଶିରଃ- ସଂଘମିତ୍ରା । ପିଃ ସୁବାଷଃ- ଶୁଭ୍ରା, ସ୍ମୃତି । (ମା): ସଞ୍ଜିବନୀଃ- ସୁନୀତା, ସୁମିତା । ପିଃ ସୁଧୀରଃ- ସାରଦା, ସ୍ୱପ୍ନା । ପିଃ ସତୀଶଃ- ସ୍ୱସ୍ତୀ । ପିଃ ଶିରୀଷଃ- ଶ୍ରୀୟା । (୧୯)

# ଉତ୍ତରଦାନ

*(ସୌଜନ୍ୟ : ଅବସରପ୍ରାପ୍ତ ଜଏଣ୍ଟ ସେକ୍ରେଟେରୀ ବିଷ୍ଣୁଚରଣ ମହାନ୍ତିଙ୍କ "ସେ ପାରି ଓ ତା'ପରେ" ପୁସ୍ତକର "ଝାଡୁଆପଡ଼ାର ପଞ୍ଚପାଣ୍ଡବ" ଲେଖାର ଅନୁସରଣରେ)*

ଅନେକଦିନରୁ ସମ୍ବଲପୁର ସହରର ଝାଡୁଆପଡ଼ାରେ ପୂଜାରୀ ବଂଶ ଘରକରି ଅଛନ୍ତି। ପ୍ରାୟ ସବୁ ପୂଜାରୀ ଜଗନ୍ନାଥ ମନ୍ଦିରର ପୂଜକ। ପ୍ରଥମରୁ ଏମାନେ ପୂଜାରୀ ନଥିଲେ। ଆଞ୍ଚଳିକ ରାଜା ମହାରାଜା ମାନଙ୍କଠାରୁ ସନନ୍ଦ ଓ ସାଙ୍କା ମୋର ସାତ/ଆଠ ପୁରୁଷ ପୂର୍ବରୁ ଜନୈକ ଦାମୋଦର ହୋତାଙ୍କ ପୁତ୍ରମାନେ ପାଇଥିଲେ। ଏହି ବଂଶରେ କମଳଲୋଚନ ପୂଜାରୀ ସମ୍ବଲପୁରର ସର୍ବପୁରାତନ ଜଗନ୍ନାଥ ମନ୍ଦିର "ବ୍ରହ୍ମପୁରା ଗୁଡ଼ି"ର ପୂଜକ ଥିଲେ। ଧନ, ସମ୍ପତ୍ତି, ଜମିଦାରୀ, ଗୌନ୍ତି ପାଇଁ ଏ ପୂଜାରୀ ବଂଶ ସମ୍ବଲପୁର ଜିଲ୍ଲାରେ ଶହେବର୍ଷ ହେଲା ବେଶ୍ ପରିଚିତ। ସୁରେନ୍ଦ୍ର ସାଏଙ୍କ ପରେ ଇଂରେଜ ଅମଳରେ କମଳଲୋଚନ ଇଂରାଜି, ସଂସ୍କୃତି, ମରହଟ୍ଟି, ହିନ୍ଦି ଓ ସମ୍ବଲପୁରୀ ଭାଷା ଜାଣିଥିବା ଯୋଗୁ ସମ୍ବଲପୁର କମିସନର ଅଫିସରେ ବନ୍ଦୋବସ୍ତ ଅଫିସର ସୁପରିଟେନ୍‌ଡେଣ୍ଟ ପଦବୀରେ ଚାକିରି କରୁଥିଲେ। ସେ ସ୍କୁଲରେ ଓଡ଼ିଆ ଭାଷା ଶିଖି ନଥିଲେ। ଊନବିଂଶ ଶତାବ୍ଦୀର ଶେଷରେ କଳାହାଣ୍ଡି, ବଲାଙ୍ଗୀର ପାଟଣା ଓ ସୋନପୁର ମହାରାଜା ମାନଙ୍କର ଅନୁରୋଧରେ କମଳଲୋଚନ ଏ ରାଜ୍ୟମାନଙ୍କୁ ଇଂରେଜ ସରକାରଙ୍କ ଦ୍ୱାରା ପ୍ରେରିତ ହୋଇଥିଲେ। କେବଳ ବନ୍ଦୋବସ୍ତ କାର୍ଯ୍ୟ ତଦାରଖ କରି ରାଜ୍ୟ ଜମିଜମା ରେକର୍ଡ ଠିକ୍ କରିନେବା ପାଇଁ। ପ୍ରାୟ ଦଶବର୍ଷ ପର୍ଯ୍ୟନ୍ତ ସେ ଏ କାର୍ଯ୍ୟ ପରିବାର ସହ ଭବାନୀପାଟଣା, ବଲାଙ୍ଗୀର ପାଟଣାଗଡ଼ ଓ ସୋନପୁରରେ ରହି କରିଥିଲେ।

## ଓଡ଼ିଆ ଜାତିର ଶହେବର୍ଷ ତଳର କଥା

୧୯୦୧ ମସିହା ଆଗରୁ ବ୍ରିଟିଶ ସରକାରଙ୍କ ଅନୁମୋଦନରେ ସମ୍ବଲପୁରର କମିସନର ଅଫିସର ସୁପରିନ୍‌ଟେଣ୍ଡେଣ୍ଟ ଝାଡୁଆପଡା ନିବାସୀ କମଳଲୋଚନ ପୂଜାରୀ ନଦୀ ନାଳ ପାରିକରି ବଲାଙ୍ଗୀର ରାଜ୍ୟ ତେଇଁ କଳାହାଣ୍ଡି ରାଜ୍ୟରେ ରାଜାଙ୍କ ଅନୁରୋଧରେ ଏ ବିଶାଳ ରାଜ୍ୟର ଜମି ବନ୍ଦୋବସ୍ତ କାର୍ଯ୍ୟ ନିଜେ ତଦାରଖ କରି କରାଇଥିଲେ। ସେଥିପାଇଁ ସସ୍ତ୍ରୀକ ସେ ଭବାନୀପାଟଣାରେ ଅବସ୍ଥାନ କରିଥିଲେ। ସେଇ ସହରରେ ତାଙ୍କର ସବାସାନ ପୁଅ ସଚ୍ଚିଦାନନ୍ଦ ଅଗଷ୍ଟ ୧ ତାରିଖରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ଉପରେ ଚତୁର୍ଥ ପୁତ୍ର ଅଚ୍ୟୁତାନନ୍ଦ ୪ ବର୍ଷର ହୋଇଥିବାରୁ ସେ ବାପ ମା'ଙ୍କ ସଙ୍ଗରେ ଆସି ରହୁଥିଲେ। ତାଙ୍କ ଉପରର ଏକମାତ୍ର ଝିଅ ଦେବହୁତୀ ଓ ଜ୍ୱାଇଁ

ହରିଶଙ୍କର ପୂଜାରୀଙ୍କ ହାତରେ ବ୍ରହ୍ମପୁରା ମନ୍ଦିରର ସମସ୍ତ ଭୋଗରାଗ, କର୍ମ କର୍ମାଣୀ ଓ ଜମିଜମାର ଭାର ଅର୍ପଣ କରି ଯାଇଥିଲେ। ତୃତୀୟ ପୁତ୍ର ମୀନକେତନ ଜଣେ ଦୁର୍ଦ୍ଧଷ ପହିଲ୍‌ମାନ, ସନ୍ତରଣପଟୁ ଓ ଅଶ୍ୱଚାଳକ ଭାବରେ ରାଜାରାଜୁଡାଙ୍କ ନଜରକୁ ଆସିଥିଲେ। ସେ ମାଟ୍ରିକ୍ୟୁଲେସନ ପାସ୍ କରିବାପରେ ବଲାଙ୍ଗୀର ମହାରାଜା କମଳଲୋଚନଙ୍କୁ ଅନୁରୋଧ କରି ମୀନକେତନଙ୍କୁ ରାଜ୍ୟର ଷ୍ଟାଇପେଣ୍ଡ ଦେଇ ଡେରାଡୁନ ପୋଲିସ ଟ୍ରେନିଂ କଲେଜରେ ପଢାଇବାକୁ ପଠାଇ ଦେଇଥିଲେ। ତେଣୁ, ମୁଁ ହଜାରେ ବର୍ଷର ଇତିହାସ ନକହି, ଏକଶହବର୍ଷର ଓଡ଼ିଆ ସମାଜ କଥା କହିବି।

ଭାଗ୍ୟକୁ ଭବାନୀପାଟଣାର କାର୍ଯ୍ୟ ଶେଷ ହେବାବେଳକୁ ବଲାଙ୍ଗୀର (ପାଟଣା)ର ରାଜାସାହେବ ଓ ସୋନପୁରର ରାଜାସାହେବ କମିସନର ଓ ପଲିଟିକାଲ ଏଜେଣ୍ଟଙ୍କୁ ଅନୁରୋଧ କରି କମଳଲୋଚନ ପୂଜାରୀଙ୍କୁ ତାଙ୍କ ରାଜ୍ୟରେ ରହି ବନ୍ଦୋବସ୍ତ କାର୍ଯ୍ୟ ଶେଷ କରିବାକୁ ଅନୁରୋଧ କରିଥିଲେ। ଶେଷରେ ୬/୭ ବର୍ଷଯାଏ କମଳଲୋଚନ କେବଳ ଚତୁର୍ଥ ପୁତ୍ର ଅଚ୍ୟୁତାନନ୍ଦ ଓ ପଞ୍ଚମପୁତ୍ର ସଚ୍ଚିଦାନନ୍ଦଙ୍କୁ ଧରି ସମ୍ବଲପୁର ଝାଡୁଆପଡାଠାରୁ ଦୂରରେ ରହିଯାଇଥିଲେ। ବୟସର ତାରତମ୍ୟ ବେଶୀ ନଥିବାରୁ ଏ ଦୁଇଜଣ ଭାଇ ବନ୍ଧୁ ଭାବରେ ବଢ଼ିଥିଲେ। ଖେଳକୁଦ, ସନ୍ତରଣ, ଘୋଡ଼ାଚଢ଼ା, ଫୁଟବଲ ଖେଳ ଓ ପାଠପଢ଼ା ଏକ ସଂଗରେ କରିଥିଲେ। ଏ ବନ୍ଧୁତ୍ୱ ଯୋଗୁ କଟକର ରେଭେନ୍‌ସା କଲେଜ ଛାତ୍ର ହେବା ଯାଏ ଉଭୟେ ସମ୍ବଲପୁରର ବିଖ୍ୟାତ ସମ୍ବଲେଶ୍ୱରୀ ଫୁଟବଲ ଟିମର ଖେଳାଳୀ ଭାବରେ ରାୟପୁରରୁ ଓ୍ୱାଲଟିୟର, ଖଡ଼ଗପୁର, ଜଟଣୀ, କଟକ, ପୁରୀରେ ଜଣାଶୁଣା ଥିଲେ। ଏପରି ଏକ ସାମାଜିକ ଇତିହାସ ପଛରେ ମହାନଦୀ କୂଳର ପାଣି ଓ ବାଲି, ମନ୍ଦିରର ଚଉତରା ବିଶେଷ ଭାବରେ ସାହାଯ୍ୟ କରିଥିଲା। ଏବେ ସମ୍ବଲପୁର ଓ ପଶ୍ଚିମାଞ୍ଚଳର ବହୁକମ୍ ଲୋକ ଏ ବିଷୟରେ ଆଲୋଚନା କରନ୍ତି। ଆଶ୍ଚର୍ଯ୍ୟର କଥା କମଳଲୋଚନ ପୂଜାରୀଙ୍କ ପ୍ରଥମ ପୁତ୍ର ସେତେବେଳକୁ କମିସନର ପାହ୍ୟାକୁ ପହଞ୍ଚି ବରଗଡ଼ ସବଡିଭିଜନ୍‌ର ଏସ୍.ଡି.ଓ ହୋଇ ସାରିଥିଲେ ଓ ଦ୍ୱିତୀୟ ପୁତ୍ର ଜଣେ ଅସାମାନ୍ୟ ଆନାଟମୀ ବିଦ୍ୟାର ଶିକ୍ଷକ ଭାବରେ ପାଟନା ମେଡିକାଲ କଲେଜରେ ଅବସ୍ଥାପିତ ଥିଲେ। ବୟସରେ ଛୋଟ ଦୁଇପୁଅଙ୍କ ଠାରୁ ଯଥେଷ୍ଟ ବଡ଼ ଥିବାରୁ ଏମାନେ ପିତୃତୁଲ୍ୟ ସମ୍ମାନ ପାଉଥିଲେ। ସାନପୁଅ ସଚ୍ଚିଦାନନ୍ଦଙ୍କୁ ତ୍ରିବିକ୍ରମ (ବଡ଼ପୁଅ) ଓ ସନାତନ (ଦ୍ୱିତୀୟ ପୁତ୍ର)ଙ୍କର ପୁଅଝିଅ ମାନେ "କକା" ସମ୍ବୋଧନ ନକରି "ଦାଦା" ବା ବଡ଼ଭାଇ ସମ୍ବୋଧନ କରୁଥିଲେ। ଶେଷରେ ୧୯୦୭ ମସିହାରେ କମଳଲୋଚନ ଓ ଜାହ୍ନବୀ ପାରିବାରିକ ଦାୟିତ୍ୱରୁ ମୁକ୍ତି ପାଇବା ପାଇଁ ତୀର୍ଥାଟନରେ ଯିବାକୁ ମନସ୍ଥ କଲେ। ସାଙ୍ଗରେ ମୀନକେତନଙ୍କୁ କେବଳ ନେବାକୁ ଚାହିଁବାରୁ ଅଚ୍ୟୁତାନନ୍ଦ ଓ ସଚ୍ଚିଦାନନ୍ଦ ବହୁ ଓଜର ଆପତ୍ତି କଲେ। କମଳଲୋଚନ ଦୁଇଜଣଙ୍କୁ ପ୍ରବୋଧନା ଦେଇ ଦୁଇଟି ବାଇଶି ଇଞ୍ଚିଆ ଛୋଟ ଚକାର ସାଇକେଲ ଯାହା ସେତେବେଳେ ସମ୍ବଲପୁରରେ ମିଳୁ

ନଥିଲା, ତା'ର ଲୋଭ ଦେଖାଇ ସାନ୍ତ୍ୱନା ଦେଇଥିଲେ। ବଳବାନ ଓ ପାରଙ୍ଗମ ପୁତ୍ର ଭାବରେ ଏକା ମୀନକେତନ ହିଁ ତୀର୍ଥଯାତ୍ରାରେ ସାଥୀ ହୋଇ ମା' ବାପାଙ୍କ ସାଥୀରେ ଗଲେ। ସୁବିଧା ଓ ସୁରୁଖୁରୁରେ କମଳଲୋଚନ ଓ ଜାହ୍ନବୀ ଦେବୀ ମଝିଆ ପୁଅ ମୀନକେତନ ସହିତ ତୀର୍ଥ ଭ୍ରମଣରେ ବାହାରିଗଲେ। ସେ ସମୟରେ (୧୯୦୬ ମସିହାରେ) ତୀର୍ଥ ଯିବା ଏକ ବିପଦଶଙ୍କୁଳ ବ୍ୟାପାର ଥିଲା। ବାଟରେ ଘାଟରେ ଚୋରୀ, ଡକାୟତି, ରୋଗ ବୈରାଗ୍ୟ ସବୁବେଳେ ତୀର୍ଥଯାତ୍ରୀଙ୍କର ଜୀବନ ବିପନ୍ନ କରି ଦେଉଥିଲା। ଘରକୁ ଚିଠିପତ୍ର ଓ ତାର ଯୋଗେ ଖବର ପଠାଇବା ସେତେ ସହଜ ନଥିଲା. ମୀନକେତନ ସବୁଦିଗରୁ ମାତାପିତାଙ୍କୁ ସୁରକ୍ଷା ଦେଇ ଅନେକ ତୀର୍ଥ କ୍ଷେତ୍ର ବୁଲାଇ ଦେଖାଇଲେ। ଥରେ ବାରଣାସୀରେ କାଶୀ ବିଶ୍ୱନାଥଙ୍କୁ ଦର୍ଶନ କରିବା ଆଶାରେ ଗଙ୍ଗାନଦୀ କୂଳରେ ଅବସ୍ଥିତ ଏକ ଧର୍ମଶାଳାରେ ରହି ନଦୀ ଓ ଘାଟର ସୌନ୍ଦର୍ଯ୍ୟ ଦେଖି ଆନନ୍ଦ ପାଇବାର ଆଶା ପୋଷଣ କଲେ। ସେତେବେଳେ ତୀର୍ଥକ୍ଷେତ୍ର ମାନଙ୍କରେ ସ୍ୱାସ୍ଥ୍ୟରକ୍ଷାର ବ୍ୟବସ୍ଥା ସେତେ ଉଚ୍ଚସ୍ତରର ନଥିଲା। ମଣିକର୍ଣ୍ଣିକା ଘାଟଠାରୁ ଦଶାଶ୍ୱ ଘାଟଯାଏ ଶ୍ମଶାନ ଓ ମୃତଦେହମାନଙ୍କ ଗହଣରେ ଜୀବନ୍ତ ମଣିଷର ବସବାସ ସେତେ ସୁସ୍ଥ ନଥିଲା। ଡାକ୍ତର, କବିରାଜ, ବୈଦ୍ୟ ଔଷଧ ଓ ଚିକିତ୍ସା ପ୍ରାବଧାନ ଉପରେ କାହାର ସେତେ ଦୃଷ୍ଟି ନଥିଲା। ଅତ୍ୟଧିକ ଜନସମାଗମ ଯୋଗୁ ହଠାତ ଘାଟ ପାଖରେ ହଇଜା ରୋଗ ବ୍ୟାପିଗଲା।

କମଳଲୋଚନ ଓ ଜାହ୍ନବୀ ଦେବୀ ସେଠାରୁ ଅନ୍ୟସ୍ଥାନକୁ ପଳାଇବାର ବାଟ ପାଇଲେ ନାହିଁ। ମୀନକେତନ ନିଜ ଚେଷ୍ଟାରେ ମା' ବାପାଙ୍କ ଯତ୍ନ ନେବାରେ ଯେତେ ତତ୍‌ପର ହେଲେ ମଧ୍ୟ ଜାହ୍ନବୀ ଦେବୀଙ୍କୁ ପ୍ରଥମେ କଲେରା ଆକ୍ରାନ୍ତ କଲା। ବୃଦ୍ଧ କମଳଲୋଚନ ତାଙ୍କୁ ଜଗିରହିବା ବେଳେ ମୀନକେତନ ମା'ଙ୍କ ପଥ୍ୟ, ଔଷଧ ଓ କବିରାଜର ବ୍ୟବସ୍ଥାରେ ସାରା ଅଞ୍ଚଳଟା ଦଉଡ଼ ଧାପଡ଼ କଲେ। ତା'ସତ୍ତ୍ୱେ ଦୁଇ ଦିନ ମଧ୍ୟରେ ଜାହ୍ନବୀ ଦେବୀ ସ୍ୱର୍ଗବାସୀ ହେଲେ। ଏକମାତ୍ର ପୁତ୍ର ମୀନକେତନ ତାଙ୍କ ମା'ଙ୍କ ମଲା ଶବକୁ କାନ୍ଧରେ ବୋହି ଦଶାଶ୍ୱମେଧ ଘାଟରେ ନିଜେ ଏକା ରୀତି ଅନୁଯାୟୀ ଅନ୍ତିମ ସଂସ୍କାର କଲେ। କମଳଲୋଚନଙ୍କୁ ମୂକସାକ୍ଷୀ ଭାବରେ ରଖି ସବୁ ନିଜହାତରେ କରି ମା'ଙ୍କର ଅସ୍ଥି ଓ ବୃଦ୍ଧ ପିତାଙ୍କୁ ସଙ୍ଗରେ ନେଇ ସମ୍ବଲପୁର ଫେରିଲେ। ସମ୍ବଲପୁରରେ ଏ ସମ୍ବାଦ ପହଞ୍ଚିବା ପରେ କନ୍ଦାକଟା ହେବାରୁ ଅଚ୍ୟୁତାନନ୍ଦ ଓ ସଚ୍ଚିଦାନନ୍ଦ ସବୁ କଥା ବୁଝିବାକୁ ଡେରି ଲାଗିଲା ନାହିଁ। ଦୁଇଜଣଙ୍କ ପାଇଁ ଘର ନିଛାଟିଆ ହୋଇଗଲା। ସାଇକେଲ ଚଳେଇବାର ମୋହ ଚାଲିଗଲା। ସବୁବେଳେ ଦୁଇଭାଇ ବାହାରେ ରହି ମାତାଙ୍କୁ ହରାଇବାର ଶୋକରେ ଜର୍ଜରିତ ହୋଇ ରହିଲେ। ପରସ୍ପରକୁ ଆଶ୍ୱାସନା ଦେଇ ଦିନ କାଟିଲେ।

ସେତେବେଳେ ସାରା ଭାରତରେ ଫୁଟବଲ ଖେଳର ନିଶା, ଆଜିର କ୍ରିକେଟ ଠାରୁ ବେଶୀ ପ୍ରଭାବିତ କରୁଥିଲା । ଧନୀ, ଦରିଦ୍ର, ଜାତି ଧର୍ମ ନିର୍ବିଶେଷରେ ପିଲାରୁ ଦରବୁଢ଼ା ଯାଏ ଫୁଟବଲ ଖେଳୁଥିଲେ ଓ ଖେଳ ଦେଖିବାକୁ ପାଗଳପରି ଦଉଡୁ ଥିଲେ। ମରହଟ୍ଟା ଅମଳରୁ ସମ୍ବଲପୁର ସହର ଓ ମହାନଦୀର ବାଲିବନ୍ତ ଓ ମନ୍ଦିର ଚଉତରାରେ ପୁରୁଷ ଘାଟ ପାଖରେ ଖେଳକୁଦ, ପହିଲମାନି, କୁସ୍ତିକସରତ ଓ ମାଲଖମ୍ବ ଖେଳର ଏକ ପରଂପରା ପ୍ରତ୍ୟେକ କିଶୋର ଓ ଯୁବକମାନଙ୍କୁ ଆକ୍ରାନ୍ତ କରିଥିଲା। ସାହିସାହିରେ ଏହାର ପ୍ରତିଯୋଗିତା ପ୍ରତିଦିନ ଖରା ଓ ଶୀତ ଦିନରେ ଚାଲୁ ରହିଥିଲା। ମୀନକେତନ, ଅଚ୍ୟୁତାନନ୍ଦ ଓ ସଚ୍ଚିଦାନନ୍ଦ ବ୍ରହ୍ମପୁରା ମନ୍ଦିର ଘାଟ ପାଖର ହନୁମାନ ମନ୍ଦିରରେ ଅଭ୍ୟାସ କରୁଥିଲେ। ଏ ସଂସ୍କୃତିଟି ହୀରାକୁଦ ବନ୍ଧଯୋଜନା ସଂପୂର୍ଣ୍ଣ ହେବାପରେ, ସମୂଳେ ଧ୍ୱଂସ ପାଇଗଲା ।

ସାନ ତିନିଭାଇଙ୍କ ପାଇଁ କମଳଲୋଚନଙ୍କ ଝାଡୁଆପଡା ଖଂଜାରେ ତିନୋଟି ଘୋଡ଼ା ସହିସ ସହିତ ଜାଗତିଆର ଥିଲେ। ନଦୀର ପାଣିରେ, ଗଣ୍ଡରେ ପହଁରିବା, ଟାୱାରରୁ ଡେଇଁବା ମଧ୍ୟ ସେଇ ମହାନଦୀ, ଘାଟ, ବାଲି୍ ଓ ନଦୀ ଓ ପାଣି ଶିଖେଇ ଦେଇଥିଲା । ଏବିଷୟରେ ସମ୍ବଲପୁରିଆ ଲୋକଟିଏ ଚିନ୍ତାକରିବା ଆଜିକୁ ଯୁଗଯୁଗ ହେଲା ଦେଖା ଯାଉନାହିଁ।

## ସମ୍ବଲପୁରର କମଳଲୋଚନ ପୂଜାରୀଙ୍କ ଖଂଜାର ଭିତର ବାହାର

ପ୍ରଥମ ମହାସମର ବେଳେ ଓଡିଶାର ଅବସ୍ଥିତି ଓଡିଆ କହୁଥିବା ଜାତିଟା ଭିତରେ କେବଳ ବଞ୍ଚି ରହିଥିଲା । ସେମାନେ ବିକ୍ଷିପ୍ତ ଭାବରେ ସେଣ୍ଟ୍ରାଲ ପ୍ରଭିନ୍ସ, ବିହାର, ବଙ୍ଗଳା ପରି ଅଞ୍ଚଳରେ ରହି ନିଜର ପରିଚୟ ଦେଉଥିଲେ। ଉପକୂଳ ଓଡିଶାର ପୁରୀ, କଟକ ପରି ଐତିହାସିକ ସହରକୁ ନିଜ ମାନସିକ ସ୍ତରରେ ଗୋଟିଏ ଅଞ୍ଚଳରେ ସୀମାରେଖା ଟାଣି ଦେଇ ବଞ୍ଚି ରହିଥିଲେ।

ମହାନଦୀଟା ଯଦିଓ ଆଜିର ରାଜନୈତିକ ଓଡିଶା ପରି ଠିକ୍ ମଧ୍ୟ ଭାଗରେ ପ୍ରବାହିତ ହେଉଥିଲା, ଏହାର ଜଳପଥର ଉପଯୋଗୀତା କୂଳବାସିନ୍ଦା ଦୂରଦୂରାନ୍ତଯାଏ ଉପଲବ୍ଧ କରୁନଥିଲେ। କେବଳ ପରଂପରାକୁ ନେଇ କାର୍ତ୍ତିକ ମାସରେ 'ଆକାମାବୈ'ର ଡଙ୍ଗା ଭସାଇ ଆତ୍ମତୃପ୍ତି ପାଉଥିଲେ। ମୋଗଲ, ମରହଟ୍ଟା, ବର୍ଗୀ ଆକ୍ରମଣ ଓଡିଶାର ଲୋକଙ୍କୁ ଭାଗ ଭାଗ କରିସାରିଥିଲା । ହଜାରେ ବର୍ଷର ଏ ରାଜନୈତିକ, ଐତିହାସିକ, ଭୌଗଳିକ ଅସାମାଜିକ ଅବସ୍ଥା ୧୮୦୩ର ବ୍ରିଟିଶ ଅମଳରେ ବଡ ସ୍ପଷ୍ଟ ଭାବରେ ଜଣାପଡେ। କେବଳ ହିନ୍ଦୁ ସଚେତନ ଲୋକେ, ଜଗନ୍ନାଥଙ୍କ ଉପାସନା ଆରାଧାନା କରି ନିଜକୁ ପରିଚୟ ଦେଉଥିଲେ ମଧ୍ୟ ରାଜସ୍ୱ ଦେବା ବେଳେ "ଖାସମାହାଲ" ଓ "ଗଡ଼ଜାତ"

ମଧ୍ୟରେ ବିଭାଜିତ ଥିଲେ । ପୁରୀ, କଟକ ପରି ଉପକୂଳ ଅଞ୍ଚଳର ସାମାଜିକ ଐକ୍ୟ ଢେଙ୍କାନାଳ, ଆଠଗଡ଼ କେନ୍ଦୁଝର ପରି ଦେଶୀୟ ରାଜ୍ୟ (ରାଜା ଶାସିତ) ଅଞ୍ଚଳରେ ଭିନ୍ନ ଭିନ୍ନ ଥିଲା । କେନ୍ଦୁଝର, ମୟୁରଭଞ୍ଜ , ନୀଳଗିରି ରାଜ୍ୟର ଅଧିବାସୀ ଓ ଆଦିବାସୀ ବଙ୍ଗ ପ୍ରଦେଶଦ୍ୱାରା ସଂପୂର୍ଣ୍ଣ ପ୍ରଭାବିତ ଥିଲେ । ସୁନ୍ଦରଗଡ଼ ଦେଶୀୟ ରାଜ୍ୟ ବିହାର ରାଜ୍ୟ ଝାଡ଼ଖଣ୍ଡ ଅଞ୍ଚଳଦ୍ୱାରା ପ୍ରଭାବିତ ଥିଲା । ସମ୍ବଲପୁର ପଶ୍ଚିମାଞ୍ଚଳର ଏକମାତ୍ର ଖାସମାହାଲ ଭାବରେ, ମହାନଦୀକୁ ଆଶ୍ରୟ କରି ନିଜର ସାଂସ୍କୃତିକ ବୈଶିଷ୍ଟ୍ୟ ପ୍ରତିପାଦନ କରୁଥିଲା । ବଲାଙ୍ଗୀର, ପାଟଣାଗଡ଼, କଳାହାଣ୍ଡି କିନ୍ତୁ ନିଜ ବାଗରେ ୱାଲଟିଅର ରାୟପୁର କଣ୍ଟାବାଂଜି ଓ ଟିଟିଲାଗଡ ରେଳରାସ୍ତା ଯୋଗୁ ବସ୍ତର ଓ ଛତିଶଗଡ଼ ଲୋକଙ୍କ ସହିତ ବେଶୀ ସଂପର୍କ ରଖୁଥିଲେ (ଉଦାହରଣ- "ପାନିମାରିଚାଲା ଝାଇଁରେ ଦଦା") । ଏ ହେଲା ୧୯୩୦ ମସିହା ପୂର୍ବର କଥା । ଛତିଶଗଡ଼, ଝାଡ଼ଖଣ୍ଡ ଓ ପଶ୍ଚିମ ଓଡ଼ିଶାର ପରିଚୟ ନିଜନିକର ବ୍ୟକ୍ତିଗତ ସୁବିଧା ସୁଯୋଗକୁ ନେଇ ପ୍ରତିଷ୍ଠିତ ହୋଇଥିଲା । ରାଜା ପ୍ରଜା, ବ୍ରାହ୍ମଣ, ଆଦିବାସୀ, ପଣ୍ଡିତ ସମସ୍ତେ ନିଜନିଜର ସାମାଜିକ ପରିଚୟ ଦେଉଥିଲେ ବୈବାହିକ ସଂପର୍କରେ, ସମାଜିକ ଚାଲିଚଳଣୀରେ ମନମୁଖୀ କଥିତ ଭାଷାକୁ ନିଜ ମତରେ ସାମାନ୍ୟ ପରିବର୍ତ୍ତନ କରି । ପରବର୍ତ୍ତୀ କାଳରେ ଓଡ଼ିଶାରେ ଅନେକ ରାଜନୈତିକ ଖେଳ ଚାଲିଲା । ସମସ୍ତେ ଭୁଲିଗଲେ ହଜାର ହଜାର ବର୍ଷ ପୁରାତନ ମହାନଦୀ, ତା'ର ଶାଖା ପ୍ରଶାଖା ଓ ତା'ର ବହୁମୂଲ୍ୟ ସମ୍ପଦକୁ ଯାହା ସମ୍ବଲପୁର ସହର ଅନନ୍ୟ  ଭାବରେ ସାଇତି ରଖିଛି ଏବଂ ପ୍ରଚାର ମାଧ୍ୟମ ଓ ଟେଲିଭିଜନ ଏହାର ହନୁକରଣ କରି ପ୍ରଦର୍ଶିତ କରି ଚାଲିଛି ପ୍ରତିବର୍ଷ ଭିନ୍ନଭିନ୍ନ ନାମରେ । ରାଜାରାଜୁଡାଙ୍କ ଦୟାରୁ ବେପାରୀମାନେ ତାଙ୍କ ସଂସ୍କୃତିକୁ ଆଣି ପ୍ରଚାର କରି ଚାଲିଛନ୍ତି ତିରିଶିଟି ଜିଲ୍ଲାର ବୈଶିଷ୍ଟ୍ୟ ଭାବରେ ଓ ୧୪୭ଟି ଭିନ୍ନ ଭିନ୍ନ ବିଧାନସଭାର ଆସନ ଭାବରେ ।

କେତୋଟି ନଈକୂଳିଆଙ୍କ ପାରିବାରିକ ଦୂରଦୃଷ୍ଟି ଯୋଗୁ ଖାସମାହାଲ ସମ୍ବଲପୁରୀଆ ଶଢଟି ଏକ ହଜାରବର୍ଷରୁ ଊର୍ଦ୍ଧ୍ୱ ପରଂପରାକୁ ବଜାୟ ରଖିବାକୁ ସକ୍ଷମ ହୋଇଛି । ତାଙ୍କରି ବଂଶଧରମାନେ ରାଜନୀତି କଣ ଜାଣନ୍ତି ନାହିଁ । ନିଜର ମାଟି, ପାଣି, ପବନକୁ ମା' ସମଲେଇ ନାମଦେଇ, ଉପାସନା କରି ଚାଲିଛନ୍ତି ଜଗନ୍ନାଥକୁ । ଯେଉଁ ସଂସ୍କାର ସେମାନେ ବଞ୍ଚାଇ ରଖିଲେ ତାଙ୍କରି ଦାୟାଦ ହେଉଛନ୍ତି କମଳଲୋଚନ ଓ ଦାଶରଥୀ ପୂଜାରୀ । ସେଥିଯୋଗୁ ବ୍ରିଟିଶ ମ୍ୟୁଜିୟମରେ "ସମ୍ବଲପୁର ଡିଭିଜନ" ଅଞ୍ଚଳକୁ ଲୋକେ ଚିହ୍ନିଲେ- ଆଜକୁ ଦୁଇଶ ବର୍ଷ ହେଲା ।



# ବାପାଙ୍କ ପିଲାବେଳ

## କୈଶୋର ଓ ଯୌବନ :

୧୯୦୧ ମସିହା ଅଗଷ୍ଟ ମାସ ୧ ତାରିଖରେ ମୋର ବାପା ଭବାନୀପାଟଣା ସହରରେ ଜନ୍ମଗ୍ରହଣ କରିଥିଲେ। ବିଷ୍ଣୁଭକ୍ତ କମଳଲୋଚନ ପୁତ୍ରର ନାମ ରଖିଥିଲେ "ସଚ୍ଚିଦାନନ୍ଦ"। ସଚ୍ଚିଦାନନ୍ଦ ବାଲ୍ୟକାଳରୁ ଶାରୀରିକ ଓ ମାନସିକ ସ୍ତରରେ ଜଣେ ସୁସ୍ଥ ଓ ସୁଦୃଶ୍ୟ ବାଳକ ଥିଲେ। ଭାଗ୍ୟର ବିଡମ୍ବନା ଏହା ଯେ ମାତ୍ର ୭ ବର୍ଷ ବୟସରେ ସେ ତାଙ୍କର ମାତା ଓ ଆଦ୍ୟ ଚାକିରି ଜୀବନରେ ପିତାଙ୍କୁ ହରାଇଥିଲେ।

ଝାଡୁଆପଡ଼ା ବଡ଼ସଡ଼କ ଓ ସାନସଡ଼କକୁ ଲାଗିଥିବା ଗୋପାଳଜୀ ମଠ ଅଞ୍ଚଳରେ କମଳଲୋଚନ ପୂଜାରୀ ତାଙ୍କର ପାଞ୍ଚ ପୁଅଙ୍କ ପାଇଁ ଆବାସସ୍ଥାନ ଗଢ଼ିବା ପାଇଁ ସ୍ଥାନ ଯୋଗାଇ ଦେଇଥିଲେ। ବଡ଼ପୁଅ ତ୍ରିବିକ୍ରମ ପୂଜାରୀ ପୁରୀର କଲେକ୍ଟର ଥିବା ବେଳକୁ ଏ ଖଂଜା ଭିତରେ ନିଜର ରହିବା ପାଇଁ ଆଧୁନିକ ଘର ତିଆରି କରି ସାରିଥିଲେ। ତାଙ୍କ ବଡ଼ଭାଇ ଡାକ୍ତର ସନାତନ ପୂଜାରୀ ପାଟଣା ମେଡିକାଲ କଲେଜର ଆନାଟମୀ ପ୍ରଫେସର ପଦବୀ ପାଇସାରିଥିଲେ। ଏମାନେ ବୟସରେ ବଡ଼ଥିବାରୁ ନିଜର ପରିବାର ପାଇଁ ଅଲଗା ଘର ଓ ଖଂଜା କରିସାରିଥିଲେ। ତୃତୀୟ ଭାଇ ମୀନକେତନ ପୂଜାରୀଙ୍କୁ ବଲାଙ୍ଗୀର ମହାରାଜା ନିଜେ ପସନ୍ଦ କରି କମଳଲୋଚନଙ୍କ ଅନୁମତି ନେଇ ଡେରାଡୁନର ଇଂରେଜ ପରିଚାଳିତ ପୋଲିସ ଟ୍ରେନିଂ କଲେଜରେ ପାଠପଢ଼ାଇ ବଲାଙ୍ଗୀର ରାଜ୍ୟର ପୋଲିସ ଅଫିସର ଭାବରେ ନିଯୁକ୍ତି ଦେଇଥିଲେ। ମୀନକେତନ ନିଜର ଦକ୍ଷତା ଓ ପ୍ରତିପତ୍ତି ବଳରେ ବଲାଙ୍ଗୀର ସହରର ଅନତିଦୂରରେ ଜଣେ ବିତ୍ତଶାଳୀ ଗୌନ୍ତିଆଙ୍କ ଜଣେ ଗୁଣବତୀ ଓ ରୂପବତୀ କନ୍ୟାଙ୍କୁ ବିବାହକରି ଶେଷ ଜୀବନଯାଏ କଣ୍ଟାବାଂଝି ପାଖର 'ଇଚ୍ଛାପଡ଼ା' ଆଦିବାସୀ ଗ୍ରାମର ଗୌନ୍ତିଆ ଭାବରେ ବଲାଙ୍ଗୀର ରାଜ୍ୟରେହିଁ ରହି ଯାଇଥିଲେ।

ସାନ ଦୁଇପୁଅ ଅଚ୍ୟୁତାନନ୍ଦ ଓ ସଚ୍ଚିଦାନନ୍ଦ ବୟସରେ ସାନ ଥିବାରୁ ପିଲାବେଳ, କୈଶୋର ଓ ଯୌବନରେ ଦୁଇବନ୍ଧୁ ଭାବରେ ଖେଳାଖେଳି ପାଠ ପଢ଼ାପଢ଼ି କରିଥିଲେ। ଏହା ଭବାନୀପାଟଣା, ପାଟଣାଗଡ଼, ସୋନପୁର, ବଲାଙ୍ଗୀର ଦେଇ କଟକର ରେଭେନ୍ସା କଲେଜିଏଟ ପର୍ଯ୍ୟନ୍ତ ବହୁ ଅନୁଭୂତି ବହୁଳ ଅନ୍ତରଂଗ ପଣରେ ଏକ ସାମାଜିକ ବିପ୍ଳବ ସୃଷ୍ଟି କରିଥିଲା। ବଡ଼ଭାଇ ଅଚ୍ୟୁତାନନ୍ଦ ବିଜ୍ଞାନ ଶ୍ରେଣୀରେ ନାମ ଲେଖାଇ ଜଣେ ଦକ୍ଷ ଇଂଜିନିୟର ହେବାବେଳେ ସବା ସାନପୁଅ ସଚ୍ଚିଦାନନ୍ଦ ରେଭେନ୍ସାର ଇତିହାସରେ ବି.ଏ. ପଢ଼ି କଲିକତାର ପ୍ରେସିଡେନ୍ସି କଲେଜରେ ଏମ୍.ଏ ଶ୍ରେଣୀରେ ଛାତ୍ରାବାସରେ ରହି

ପଢୁଥିଲେ। ଦୁହେଁ ସମ୍ବଲପୁରର ବିଖ୍ୟାତ "ସମ୍ବଲେଶ୍ୱରୀ ଫୁଟବଲ" ଟିମ୍‌ର ଷ୍ଟାର ଖେଳୁଓ୍ୱାଡ। ଅଚ୍ୟୁତାନନ୍ଦ ଫୁଲବେକ୍ ଓ ସଚ୍ଚିଦାନନ୍ଦ ସେଣ୍ଟର ଫରଓ୍ୱାର୍ଡ।

ସଚ୍ଚିଦାନନ୍ଦଙ୍କର ଉପରେ ଚାରିଟି ଭାଇ ଓ ଜଣେ ବଡ଼ ଭଉଣୀ ଥିଲେ। ଯୁବାବସ୍ଥାରେ ବାପାଙ୍କର ବିୟୋଗ ହେତୁ ଓ ପ୍ରଥମ ତିନି ବଡ଼ଭାଇ ତ୍ରିବିକ୍ରିମ, ସନାତନ ଓ ମୀନକେତନ ଓ ତାଙ୍କର ଭାଉଜ ମାନେ ବୟସରେ ଯଥେଷ୍ଟ ବଡ଼ଥିବାରୁ, ସେମାନଙ୍କୁ ପିତାମାତା ସଦୃଶ ସମ୍ମାନ ଦେଉଥିଲେ ସଚ୍ଚିଦାନନ୍ଦ। ବିବାହିତା ବଡ଼ଭଉଣୀ ଦେବହୂତି ଓ ଭିଣୋଇ ହରିଶଙ୍କର ପୂଜାରୀ ଅତ୍ୟନ୍ତ ସ୍ନେହ କରୁଥିଲେ ତାଙ୍କୁ। ଚତୁର୍ଥ ବଡ଼ ଭାଇ ଅଚ୍ୟୁତାନନ୍ଦ ତାଙ୍କଠାରୁ ଦୁଇ ତିନିବର୍ଷ ବଡ଼ଥିବାରୁ ତାଙ୍କ ସହିତ ସେ ବନ୍ଧୁଭାବରେ ସାରା ଜୀବନ କଟାଇଥିଲେ। ନିଜେ ରାଜସ୍ୱ ବିଭାଗର ଇନ୍‌ସପେକ୍ଟର ଭାବରେ କାର୍ଯ୍ୟ କରୁଥିଲେ ମଧ୍ୟ ବିହାର ଓଡ଼ିଶା ପ୍ରଦେଶରେ ଅଚ୍ୟୁତାନନ୍ଦ ପାଟଣା, ଦରଭଙ୍ଗା ଓ କଟକରେ ଜୁନିୟର ଇଂଜିନିୟର ଭାବରେ ଅବସ୍ଥାପିତ ହୋଇଥିଲେ। କଟକର କ୍ୟାଣ୍ଟନମେଣ୍ଟ ରୋଡ଼ର ଉଣେଇଶ ନମ୍ବର କୋଠୀରେ ଏକଜିକ୍ୟୁଟିଭ ଓ ସୁପରିନ୍‌ଟେଣ୍ଡିଂ ଇଂଜିନିୟର ଭାବରେ ସେ ପ୍ରାୟ କୋଡ଼ିଏ ବର୍ଷ ରହିଥିଲେ। ତାଙ୍କ ତତ୍ତ୍ୱାବଧାନରେ କଟକରେ ବହୁ କୋଠାବାଡ଼ି, ଘାଟ, ବାଟ ଓ ପୋଲ ଅତି ଦକ୍ଷତାର ସହିତ ତିଆରି ହୋଇଥିଲା। ଶେଷଜୀବନରେ ଅଚ୍ୟୁତାନନ୍ଦ "ରାୟସାହେବ" ଉପାଧିରେ ଭୂଷିତ ହୋଇଥିଲେ। ୧୯୬୩ ମସିହାରେ ହୃଦରୋଗରେ ତାଙ୍କର ମୃତ୍ୟୁ ହେଲା। ତୃତୀୟ ଭାଇ ପିଲାଟିବେଳୁ ଜଣେ ବଳବାନ ସାହସୀ ଯୁବକ ଭାବରେ ବଲାଙ୍ଗୀର ପାଟଣାର ମହାରାଜାଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ। ମୀନକେତନ କୁସ୍ତିକସରତ ଓ ଘୋଡ଼ା-ଦୌଡ଼ରେ ଖୁବ୍ ଦକ୍ଷ ଥିଲେ। କମଳଲୋଚନ ପୂଜାରୀ ବଲାଙ୍ଗୀର ପାଟଣାର ବନ୍ଦୋବସ୍ତ ସୁପରିନ୍‌ଟେଣ୍ଡେଣ୍ଟ ଥିବା ସମୟରେ ମହାରାଜ ତାଙ୍କୁ ଅନୁରୋଧ କରିଥିଲେ ମୀନକେତନଙ୍କୁ ରାଜ୍ୟର ପୋଲିସ ବିଭାଗରେ ଚାକିରୀ କରିବାକୁ ଅନୁମତି ଦେବାପାଇଁ। ମୀନକେତନ ବାପାଙ୍କର ଅନୁମତି ପାଇ ମାଟ୍ରିକ ପାସ କରିବା ପରେ ଡ଼େରାଡୁନ ପୋଲିସ ଟ୍ରେନିଂ ସ୍କୁଲରେ ବଲାଙ୍ଗୀର ରାଜାଙ୍କ ବୃତ୍ତିପାଇ ଦକ୍ଷତାର ସହ ଉତ୍ତୀର୍ଣ୍ଣ ହୋଇ ସାରାଜୀବନ ବଲାଙ୍ଗୀର ରାଜ୍ୟରେ ରହିଗଲେ। ଅବସର ପାଇବା ଆଗରୁ (୧୯୪୮) ସେ କଣ୍ଟାବାଞ୍ଜି ପାଖର ଇଚ୍ଛାପଡ଼ା ଆଦିବାସୀ ଗ୍ରାମର ବାସିନ୍ଦା ହୋଇ ସାରିଥିଲେ। ବଲାଙ୍ଗୀର ରାଜ୍ୟର ଜଣେ ପ୍ରତିଭାଶାଳୀ ମହିଳାଙ୍କ ପାଣିଗ୍ରହଣ କରି ସେ ପୂଜାରୀ ବଂଶର ଜଣେ ଅତି ସମ୍ମାନିତ ବ୍ୟକ୍ତି ଭାବରେ ମୃତ୍ୟୁ ପରେ ମଧ୍ୟ ଆଜିଯାଏ ସମ୍ମାନ ପାଇ ଆସୁଛନ୍ତି।

ଦ୍ୱିତୀୟ ବଡ଼ଭାଇ ଡାକ୍ତର ସନାତନ ପୂଜାରୀ ଥିଲେ ନାଟ୍ୟପ୍ରେମୀ ଓ ଚିତ୍ରକଳା ପ୍ରେମୀ। କଲିକତା ମେଡ଼ିକାଲ ସ୍କୁଲରୁ ଏଲ.ଏମ୍.ଏଫ୍ ପାସ କରିବା ପରେ ଅସାଧାରଣ ବାଗ୍ମିତା ଯୋଗୁ ଶିକ୍ଷକ ବୃତ୍ତି ବାଛିନେଲେ। ବିହାର ଓଡ଼ିଶାର ପାଟନାରେ ଅବସ୍ଥିତ ମେଡ଼ିକାଲ ସ୍କୁଲ (କଲେଜର) ଶରୀର ବିଜ୍ଞାନ (ଆନାଟମି) ବିଭାଗର ପ୍ରଫେସର

ଭାବରେ ଆଜିପର୍ଯ୍ୟନ୍ତ ଲୋକେ ତାଙ୍କୁ ସ୍ମରଣ କରନ୍ତି । ତାଙ୍କର ସୁଚିନ୍ତିତ ଗବେଷଣା ମୂଳକ ପ୍ରବନ୍ଧ ଓ ଦୁଇହାତରେ ଚ଼କଖଡ଼ି ଧରି ପାଠପଢ଼େଇବା ଢଙ୍ଗ ତାଙ୍କର ଅସଂଖ୍ୟ ଛାତ୍ର ମାନଙ୍କ ପାଇଁ ଅବିସ୍ମରଣୀୟ୍ ହୋଇ ରହିଛି । ଅଧ୍ୟାପନା ଜୀବନରେ ସେ ବହୁ ସମ୍ମାନର ଅଧିକାରୀ ହୋଇଥିଲେ । ଶେଷ ଜୀବନରେ ସେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ କଲେଜ, କଟକର ପ୍ରଥମ ଅଧ୍ୟକ୍ଷ ଭାବରେ ଅବସ୍ଥିତ ହୋଇଥିଲେ ଓ "ରାୟ୍ ବାହାଦୁର" ଉପାଧିରେ ଭୂଷିତ ହୋଇଥିଲେ । ୧୯୪୭ ମସିହାରେ ଆକସ୍ମିକ ଭାବରେ ହୃଦରୋଗରେ କଟକରେ ତାଙ୍କର ମୃତ୍ୟୁ ହୁଏ ।

ଯେଉଁମାନଂକ ଦ୍ଵାରା ଯଥେଷ୍ଟ ପ୍ରଭାବିତ ହୋଇଥିଲେ ସେମାନେ ହେଉଛନ୍ତି ଶ୍ରୀ ଦାଶରଥି ପୂଜାରୀଙ୍କର ସାତଟି ପୁତ୍ର ସନ୍ତାନ । ଦେଓ୍ଵାନ ଦାଶରଥି ପୂଜାରୀ କମଳ ଲୋଚ଼ନଙ୍କ ପରି ଉଚ୍ଚଶିକ୍ଷିତ ଥିଲେ । ପଶ୍ଚିମ ଓଡ଼ିଶାର କେତୋଟି ରାଜ୍ୟର ଦେଓ୍ଵାନ ଥିଲେ । ଦୁହେଁ, ଦୁଇଟି ଭଉଣୀଙ୍କୁ ବିବାହ କରିଥିବା ହେତୁ ପରିବାରର ପିଲାମାନଙ୍କ ମଧ୍ୟରେ ଯଥେଷ୍ଟ ସୌହାର୍ଦ୍ଦ୍ୟ ଓ ଶ୍ରଦ୍ଧା ସଚ୍ଚିଦାନନ୍ଦଙ୍କ ଶେଷଜୀବନ ଯାକେ ଲାଗିରହିଥିଲା । ଏ ସାତଜଣ ଭାଇ ହେଲେ; ବେକୁଣ୍ଠନାଥ, ନୀଳକଣ୍ଠ, ଶ୍ରୀକାନ୍ତ, ପ୍ରସନ୍ନ କୁମାର, ବନମାଳୀ, ଜନାର୍ଦ୍ଦନ ଓ ଗୋକୁଳା ନନ୍ଦ । ଏମାନେ ସମସ୍ତେ ସଚ୍ଚିଦାନନ୍ଦଙ୍କ ଠାରୁ ବୟସରେ ବଡ଼ଥିଲେ । ବୈକୁଣ୍ଠନାଥ ପୂଜାରୀ ପଶ୍ଚିମ ଓଡ଼ିଶାର ପ୍ରଥମ ଏମ୍.ଏ. । ତାଙ୍କ ବିଷୟରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହୋଇଥିବାରୁ ଇଂରେଜସରକାର ତାଙ୍କୁ ଡ଼େପୁଟି କଲେକ୍ଟର ଭାବରେ ନିଯୁକ୍ତି ଦେଇ ନାଗପୁର ଠାରେ ଅବସ୍ଥାପିତ କରିଥିଲେ । ବୈକୁଣ୍ଠନାଥଙ୍କର ଉପର ଭଉଣୀଙ୍କୁ ପଶ୍ଚିମାଞ୍ଚଳର ପ୍ରଖ୍ୟାତ ନେତା ଚନ୍ଦ୍ରଶେଖର ବେହେରା ବିବାହ କରିଥିଲେ । ଚନ୍ଦ୍ରଶେଖର ବେହେରା ବୟସରେ ସାନ ବୈକୁଣ୍ଠନାଥଙ୍କୁ ଯଥେଷ୍ଟ ସମ୍ମାନ ଦେଖାଉଥିଲେ । ବୈକୁଣ୍ଠନାଥ ନିଜେ ବି.ଏ ପଢ଼ିବାକୁ ନାଗପୁର ଯିବା ସମୟରେ ଭଉଣୀ ଓ ଭିଣୋଇଙ୍କୁ ସାଂଗରେ ନେଇ ନାଗପୁର ଯାଇଥିଲେ । ଭଡ଼ାଘରେ ରହି ସେ ଭିଣୋଇଙ୍କ ଉଚ୍ଚଶିକ୍ଷାର ବ୍ୟବସ୍ଥା କରିଦେଇଥିଲେ । ବୈକୁଣ୍ଠନାଥ ପାଠ ପଢ଼ା ସରିବାପରେ ଚାକିରୀ କଲେ କିନ୍ତୁ ଭିଣୋଇଙ୍କୁ ରାଜନୀତି କରିବାକୁ ପ୍ରୋତ୍ସାହିତ କରିଥିଲେ । ବୈକୁଣ୍ଠନାଥ ୧୯୦୩ ମସିହାବେଳକୁ ସମ୍ବଲପୁର ଅଞ୍ଚଳରେ ଘୋଡ଼ାପିଠିରେ ଚଢ଼ି ଗାଁ ଗାଁ ବୁଲି ଲୋକଙ୍କୁ ନିଜକୁ ଓଡ଼ିଆ ବୋଲି ପରିଚ଼ୟ୍ ଦେବାପାଇଁ ଉତ୍ସାହିତ କରିଥିଲେ । ଇଂରେଜ ସରକାର ସମ୍ବଲପୁର ଅଞ୍ଚଳରେ ହିନ୍ଦିକୁ ମାତୃଭାଷା ଭାବରେ ବ୍ୟବହାର କରିବାକୁ ଓ ସରକାରୀ କାର୍ଯ୍ୟକ୍ରମରେ ହିନ୍ଦିର ପ୍ରଚ଼ଳନ କରିବାର ନିଷ୍ପତ୍ତି ନେଇ ଜନଗଣନା ଆରମ୍ଭ କରିଥିଲେ । ଜଣେ ସରକାରୀ ଅଫିସର ଭାବରେ ନିଜ ଅଞ୍ଚଳର ଲୋକଙ୍କୁ ସଚ଼େତନ ଓ ସତର୍କ କରିବାରେ ରାତାରାତି ଘୋଡ଼ାପିଠିରେ ଗାଁଗାଁ ବୁଲି ଶେଷରେ ଯକ୍ଷ୍ମାରୋଗରେ ପୀଡିତ ହେଲେ ଓ ୩୯ ବର୍ଷ ବୟସରେ ଦେହତ୍ୟାଗ କରିଥିଲେ । ତାଙ୍କ ତଳ ଭାଇ ନୀଳକଣ୍ଠ ମଧ୍ୟ

ବୈକୁଣ୍ଠନାଥଙ୍କ ଦ୍ୱାରା ସଂପୂର୍ଣ୍ଣ ପ୍ରଭାବିତ ହୋଇଥିଲେ । କିନ୍ତୁ ସେ ମଧ୍ୟ ମାତ୍ର ପଚିଶ ବର୍ଷ ବୟସରେ ଦୁରାରୋଗରେ ପଡ଼ି ଅକାଳ ମୃତ୍ୟୁ ବରଣ କରିଥିଲେ । ତୃତୀୟ ଭାଇ ଶ୍ରୀକାନ୍ତଙ୍କ କିଶୋର ଅବସ୍ଥାରେ ମୃତ୍ୟୁ ହୋଇଥିଲା । ଚତୁର୍ଥ ଭ୍ରାତା ପ୍ରସନ୍ନ କୁମାର ଓ ପଞ୍ଚମଭ୍ରାତା ବନମାଳୀ ଦୁହେଁ କମିଜମା ବନ୍ଦୋବସ୍ତ ଓ ରାଜସ୍ୱ ବିଭାଗରେ ଚାକିରୀ କରି ଶେଷ ସମୟଯାଏ ପେନସନ୍ ଭୋଗୀ ସରକାରୀ କର୍ମଚାରୀ ଥିଲେ ।

ଦେଓ୍ୱାନ ଦାଶରଥି ପୂଜାରୀଙ୍କର ଷଷ୍ଠ ପୁତ୍ର ଡାକ୍ତର ଜନାର୍ଦ୍ଦନ ପୂଜାରୀ ଥିଲେ ଅସାଧାରଣ କଳାତ୍ମକ ଜଣେ ବ୍ୟକ୍ତିତ୍ୱ ଯେ ଅର୍ଦ୍ଧଶତାବ୍ଦୀ ଯାଏ ସମ୍ବଲପୁର ଜିଲ୍ଲାର ସାମାଜିକ, କଳାତ୍ମକ, ଶିକ୍ଷା, ସ୍ୱାସ୍ଥ୍ୟ ଓ ଆଧ୍ୟାତ୍ମିକ ବାତାବରଣକୁ ପ୍ରଭାବିତ କରିଥିଲେ । ଜଣେ ଅସାଧାରଣ ଉଚ୍ଚାଭିଳାଷୀ ମାନବବାଦୀ ଜନସେବକ ଭାବରେ ସମ୍ବଲପୁରବାସୀଙ୍କର ସେ ବହୁବର୍ଷଯାଏ ସ୍ମରଣରେ ରହିବେ । ମାତ୍ର ଅଠର ବର୍ଷ ବୟସରେ, ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକରେ ସେ ନିଜଚେଷ୍ଟାରେ କଲିକତାଠାରୁ ଏକ ଆମେରିକୀୟ ଜାହାଜରେ ଖଲାସି ଭାବରେ ଆମେରିକା ଯିବା ସମୟରେ ଜାହାଜର କପ୍ତାନଙ୍କ ଦୃଷ୍ଟିରେ ପଡ଼ିଥିଲେ । ଉଦ୍ଦେଶ୍ୟଥିଲା ଆମେରିକାରେ ଡ଼ାକ୍ତରୀ ବିଦ୍ୟା ଶିକ୍ଷା । ନିଜ ଉପାର୍ଜନରେ ନିଜ ଗୋଡ଼ରେ ଛିଡ଼ାହେବାର ଏ ପ୍ରଚେଷ୍ଟା ଦେଖି ଜାହାଜର କପ୍ତାନ ଜନାର୍ଦ୍ଦନଙ୍କ ସାହସିକତା ଓ ସ୍ୱାଭିମାନରେ ମୁଗ୍ଧ ହୋଇଥିଲେ । ଜନାର୍ଦ୍ଦନଙ୍କ ପରିବାର ବିଷୟରେ ସମସ୍ତ ବିଷୟ ଅବଗତ ହେବାପରେ ସେ ତାଙ୍କୁ ବୁଝାଇ ସୁଝାଇ କଲିକତା ମେଡିକାଲ ସ୍କୁଲର ଅଧ୍ୟକ୍ଷ, ଯେକି ତାଙ୍କର ବନ୍ଧୁଥିଲେ ତାଙ୍କ ପାଖକୁ ଟୋକିଓଠାରୁ ଫେରାଇ ଦେଇଥିଲେ । ମେଡ଼ିକାଲ ସ୍କୁଲର ଅଧ୍ୟକ୍ଷ ସମ୍ମାନର ସହିତ ଜନାର୍ଦ୍ଦନଙ୍କୁ ପଢ଼ିବାର ସୁଯୋଗ ଦେଇଥିଲେ । ଜନାର୍ଦ୍ଦନଙ୍କର ଶରୀର ଗଠନ, ମେଧା ଓ ବ୍ୟକ୍ତିତ୍ୱ ଦ୍ୱାରା ମେଡ଼ିକାଲ ସ୍କୁଲର ଛାତ୍ର ଓ ଶିକ୍ଷକମାନେ ବହୁଭାବରେ ପ୍ରଭାବିତ ହୋଇଥିଲେ । କଲିକତା ଓଡ଼ିଆ ସମାଜ ତାଙ୍କୁ ଜଣେ ନାଟ୍ୟପ୍ରିୟ, ସମାଜସେବୀ ଭାବରେ ସମ୍ମାନ ଦେଇଥିଲେ । କୃତିତ୍ୱର ସହିତ ଡାକ୍ତରି ପଢ଼ା ସରିବାପରେ ସେ ସମ୍ବଲପୁର ଫେରିଆସି ଘରୋଇ ଚିକିତ୍ସା ଆରମ୍ଭ କରିଥିଲେ । ଏହି ସମୟରେ ଓଡ଼ିଆ ସାହିତ୍ୟର ଜଣେ ଲେଖକ ଭାବରେ ସେ ଗଳ୍ପ, ଉପନ୍ୟାସ ଓ କବିତା ଲେଖିବା ସହିତ ପ୍ରଖ୍ୟାତ ବଙ୍ଗଳା ନାଟକ ଗୁଡ଼ିକର ଅନୁବାଦ କରି ସମ୍ବଲପୁରର ଫ୍ରେଜର କ୍ଲବ ମଞ୍ଚରେ ନିଜ ନିର୍ଦ୍ଦେଶନାରେ ମଞ୍ଚସ୍ଥ କରାଉଥିଲେ । ସମ୍ବଲପୁରରେ ସେତେବେଳେ ସବୁ ସାହିରେ ଉଚ୍ଚକୋଟୀର କଳାକାରମାନେ ତିଆରି ହୋଇଥିଲେ । ନିଜ ପରିବାର ମଧ୍ୟରେ ଡାକ୍ତର ଜନାର୍ଦ୍ଦନ ବହୁ କଳାକାରଙ୍କୁ ପ୍ରୋତ୍ସାହିତ କରିଥିଲେ । ସେମାନଙ୍କ ମଧ୍ୟରେ ନିଜର ଭ୍ରାତା ଗୋକୁଳାନନ୍ଦ, ଅଚ୍ୟୁତାନନ୍ଦ, ସଚ୍ଚିଦାନନ୍ଦ ଅନ୍ୟତମ । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ ସମସ୍ତଙ୍କ ସହିତ ତାଙ୍କର ଗଭୀର କଳାତ୍ମକ ଓ ସାମାଜିକ ସଂପର୍କ ଥିଲା । ଏହି ସମୟରେ ସେ ବିବାହିତ ଥିବା ସତ୍ତ୍ୱେ, ଆଧ୍ୟାତ୍ମିକ

ଭାବଧାରାରେ ପ୍ରଭାବିତ ହୋଇ କୈଳାସ (ହିମାଳୟ) ଯାଏ ଯାଇ, ଗୁରୁଙ୍କ ଆଶୀର୍ବାଦ ଲାଭକରି ଫେରି ଆସିଥିଲେ। ଏହାପରେ ନିଜକୁ ସେ ସଂପୂର୍ଣ୍ଣ ଭାବରେ ସମ୍ବଲପୁରବାସୀଙ୍କର ସ୍ଥୁଳ ଓ ସୂକ୍ଷ୍ମ ଶରୀରର ଉନ୍ନତି ପାଇଁ ନିଯୋଗ କରିଥିଲେ । ଦୀର୍ଘ ଚାଳିଶବର୍ଷ ଯାଏ ବିନା ପାରିଶ୍ରମିକରେ ଘରଘର ଓ ସାହିସାହି ବୁଲି ସେ ଲୋକସେବା କରୁଥିଲେ । ସନ୍ଧ୍ୟାବେଳେ "ଗୀତାଗୁଡ଼ି"ରେ (ଗୀତା ମନ୍ଦିର) ଭଗବତ୍ ଗୀତାର ବ୍ୟାଖ୍ୟା କରି ପ୍ରବଚନ ଦେଉଥିଲେ। ତାଙ୍କର ନାଟକୀୟ ଭଙ୍ଗିର ପ୍ରବଚନ ଯେ ଶୁଣିଛି ସେ କେବେହେଲେ ତାଙ୍କର ପ୍ରତିଭାକୁ ଭୁଲିପାରିବ ନାହିଁ । ତାଙ୍କର କଅଁଳ ହାତର ସ୍ପର୍ଶରେ ବହୁ ଦୁରାରୋଗ୍ୟ ବ୍ୟାଧି ଭଲ ହୋଇଯାଉଥିଲା । ଏହିପରି ଜଣେ ମହାତ୍ମାଙ୍କ କନିଷ୍ଠ ଭ୍ରାତା ଭାବରେ ସଚ୍ଚିଦାନନ୍ଦ ଯଥେଷ୍ଟ ପ୍ରଭାବିତ ହୋଇ ଥିଲେ । ଶେଷ ଜୀବନରେ ହୀରାକୁଦ ବନ୍ଧ ବିରୋଧୀ ଆନ୍ଦୋଳନରେ ସେ ନେତୃତ୍ୱ ନେଇ କିଛିଦିନ ଜେଲ ଭୋଗିଥିଲେ । ଦାଶରଥୀଙ୍କ ସପ୍ତମପୁତ୍ର ଗୋକୁଳାନନ୍ଦ ଓକିଲାତି ପାଶ୍ କରିବା ସତ୍ତ୍ୱେ ଚାକିରୀ କରିବାକୁ ମନ ବଳାଇ ନଥିଲେ ଓ ଗ୍ରାମ୍ୟ ଆରଣ୍ୟକ ଜୀବନଯାପନ କରିବାକୁ ମନସ୍ଥ କରିଥିଲେ। ସଚ୍ଚିଦାନନ୍ଦ ଗୋକୁଳାନନ୍ଦଙ୍କର ମଧ୍ୟ ଅତି ପ୍ରିୟ ଥିଲେ । ଜଙ୍ଗଲ ପାଖରେ ରହୁଥିବାରୁ ଗୋକୁଳାନନ୍ଦ ସମ୍ବଲପୁର ଅଞ୍ଚଳର ଜଣେ ଦକ୍ଷ ଶିକାରୀ ଭାବରେ ଇଂରେଜ ସରକାରଙ୍କ ଦ୍ୱାରା ସ୍ୱୀକୃତି ପାଇଥିଲେ ।

ଜ୍ୟେଷ୍ଠ ଭ୍ରାତାମାନଙ୍କ ସାହଚର୍ଯ୍ୟରେ ଯୌବନ ଓ ବିବାହର କେତେ ବର୍ଷ ଭିତରେ ସଚ୍ଚିଦାନନ୍ଦ ଜଣେ ସ୍ୱାସ୍ଥ୍ୟବାନ, ଉତ୍କୃଷ୍ଟ ଫୁଟବଲ ଖେଳାଳୀ, ନାଟକ ପ୍ରିୟ, ସଂଗୀତପ୍ରିୟ ବଂଶୀ ବାଦକ, ମିଷ୍ଟଭାଷୀ, ଖାଦ୍ୟପ୍ରିୟ, ପୋଷାକପ୍ରିୟ ବନ୍ଧୁବତ୍ସଳ ଯୁବକ ଭାବରେ ସମସ୍ତଙ୍କର ପରିଚିତ ଥିଲେ ।

ମାତ୍ର ପଚିଶିବର୍ଷ ବୟସରେ ସଚ୍ଚିଦାନନ୍ଦଙ୍କ ଜୀବନରେ ଯେଉଁସବୁ ଦୁର୍ଘଟଣାମାନ ଘଟିଗଲା ତାକୁ ଭୁଲିବାପାଇଁ ସେ ଗୃହତ୍ୟାଗୀ ହେଲେ । ସମ୍ବଲପୁର ସହରର ବନ୍ଧୁବାନ୍ଧବ, ପ୍ରିୟଜନଙ୍କଠାରୁ ଦୂରରେ ରହି ନିଜର କାର୍ଯ୍ୟକ୍ଷେତ୍ରରେ ପ୍ରକୃତି କୋଳରେ ସବୁ ଦୁଃଖ, କଷ୍ଟ, ଦୁର୍ବିପାକକୁ ଭୁଲେଇ ଦେବାକୁ ଚେଷ୍ଟା କରିଥିଲେ। ତାଙ୍କର ପ୍ରିୟ ଫୁଟବଲ ଖେଳ, ବନ୍ଧୁବାନ୍ଧବ ଗହଣରେ ହସଖୁସି, ନାଟକ, ପୋଷାକ ସଉକି, ଭୋଜି ଭାତ ସବୁ ଭୁଲିଯାଇ କେବଳ ସନ୍ଧ୍ୟାବେଳେ ମାଦଳର ତାଳେ ତାଳେ ଆଦିବାସୀ ନୃତ୍ୟଗୀତର ସୁରଲହରିରେ ବଇଁଶୀ ବଜେଇବାହିଁ ଏକମାତ୍ର ସଉକି ଭାବରେ ଗ୍ରହଣ କରିନେଲେ। ଦିନଯାକର ବନ୍ଦୋବସ୍ତ କେମ୍ପର ଖଟଣିପରେ ଅଧରାତିଯାଏ ଆଦିବାସୀମାନଙ୍କ ଗହଣରେ କ୍ଳାନ୍ତ ହୋଇପଡ଼ିବା ଯାଏ ସମୟ ବିତାଉଥିଲେ । ଏମିତି ଭାବରେ ବର୍ଷବର୍ଷ ବିତିଗଲା । ସେ ଆଉ ଘରକୁ ଫେରିଲେ ନାହିଁ ।

ତିନିଜଣ ଯାକ ବଡ଼ ଭାଇ ଓ ଭାଉଜ ଯେତେ ଅନୁରୋଧ କଲେ ମଧ୍ୟ, ଯେତେ ପ୍ରସ୍ତାବ ପଠାଇଲେ ମଧ୍ୟ ସେ ସମ୍ବଲପୁରକୁ ଆଉ ଫେରିଲେ ନାହିଁ। ବଡ଼ଭାଇ ବରଗଡ଼ ସବଡିଭିଜନର ଏସ.ଡି.ଓ. ଭାବରେ ଅବସ୍ଥାପିତ ହେଲାପରେ, ତାଙ୍କରି ଚେଷ୍ଟାରେ ଗୋରା କମିସନରଙ୍କୁ ଅନୁରୋଧ କରି ସେ ସଚ୍ଚିଦାନନ୍ଦଙ୍କୁ ବରଗଡ଼ର ତହସିଲଦାର ଭାବରେ ବଦଳି କରି ଆଣିଲେ। ବରଗଡ଼ ସବଡିଭିଜନ ସେତେବେଳେ ଏକ ବିରାଟବଡ଼ ସବଡିଭିଜନ ଥିଲା। ଅନେକ ଧନୀ ଜମିଦାର, ଗୌନ୍ତିଆ ଓ ଛୋଟ ବଡ଼ଚାଷୀଙ୍କ ଚାଷବାସକୁ ନେଇ ଏ ସବଡିଭିଜନ, ବ୍ରିଟିଶ ଶାସନରେ "ମାଲଗୁଜାରି" ଦେବାରେ ପ୍ରଖ୍ୟାତ ଥିଲା। ସଚ୍ଚିଦାନନ୍ଦ ଏ ଅଞ୍ଚଳର ଲୋକଙ୍କ ସହିତ ସଂପର୍କରେ ଆସିନଥିଲେ ମଧ୍ୟ ନିଜର ଦୂରସଂପର୍କୀୟ ବୋଲି ଜାଣିଥିଲେ। କିନ୍ତୁ ଏ ପରିଚୟ ବିଷୟରେ ସେ କାହାକୁ କହୁନଥିଲେ। ବରଂ ସରକାରୀ ଅଫିସର ଭାବରେ, ଜଣେ ଦକ୍ଷ କଡ଼ା କର୍ମଚାରୀ ଭାବରେ ସେ ସମସ୍ତଙ୍କୁ ନିଜର ପରିଚୟ ଦେଉଥିଲେ।

ଯୌବନର ଆଦ୍ୟଭାଗରେ ସମ୍ବଲପୁର ସହରର ଜଣେ ଅସାଧାରଣ ସୁନ୍ଦରୀ କନ୍ୟା, ଯେ କି ତାଙ୍କର ବନ୍ଧୁଙ୍କର ଭଉଣୀ, ତାଙ୍କୁ ବିବାହ କରିଥିଲେ। ବିବାହର ଦୁଇବର୍ଷ ବୟସରେ ପ୍ରଥମ ଜନ୍ମିତ ପୁତ୍ର ସନ୍ତାନଟି ଅନିନ୍ଦ୍ୟସୁନ୍ଦର ହୋଇଥିଲେ ମଧ୍ୟ ବର୍ଷପୂର୍ଣ୍ଣ ହେବା ଆଗରୁ ସେ ଗୋଟିଏ ମୂକବଧିର ସନ୍ତାନ ବୋଲି ଜଣାଗଲେ। ସଦ୍ୟ ରାଜସ୍ୱ ବିଭାଗ ଚାକିରୀରେ ସୁଦୂର ବିହାର ପ୍ରଦେଶର ଚାଇଁବସାରେ ଅବସ୍ଥିତ ଥିଲେ ସଚ୍ଚିଦାନନ୍ଦ। ମାସମାସ ବନ୍ଦୋବସ୍ତ କାର୍ଯ୍ୟରେ ବ୍ୟସ୍ତଥିବାରୁ ପରିବାର ସଂଗରେ ନେଇଯିବା ସମ୍ଭବ ନଥିଲା। ତେଣୁ, ସ୍ତ୍ରୀ ଓ ପୁତ୍ରକୁ ଶ୍ୱଶୁରାଳୟରେ ଛାଡ଼ି ନିଜେ ପୈତୃକ ଘରଠାରୁ ଦୂରକୁ ଚାଲିଗଲେ ସଚ୍ଚିଦାନନ୍ଦ। ଘରେ ତିନୋଟି ବଡ଼ ଭାଇ ଓ ଭାଉଜଙ୍କର ସେ ଥିଲେ ଅତିପ୍ରିୟ। ଏ ଭିତରେ ପୁତ୍ରର ସ୍ୱାସ୍ଥ୍ୟକୁ ନେଇ ସ୍ୱାମୀ ସ୍ତ୍ରୀଙ୍କ ମନରେ ମତାନ୍ତର ସୃଷ୍ଟିହେଲା। ବେଳେବେଳେ ମାସମାସ ପାଇଁ କଥାବାର୍ତ୍ତା ମଧ୍ୟ ବନ୍ଦ ହୋଇଯାଉଥିଲା। ଏପରି ଏକ ସମୟରେ ଚାଇଁବସାକୁ ସମ୍ବଲପୁରରୁ ଏକ ଟେଲିଗ୍ରାମ ଗଲା "ସ୍ତ୍ରୀଙ୍କ ଅବସ୍ଥା ଶୋଚନୀୟ। ଶୀଘ୍ର ଆସ"।

ସଚ୍ଚିଦାନନ୍ଦ ଘରକୁ ଆସି ଦ୍ୱିତୀୟ ବଡ଼ଭାଇ ଡାକ୍ତର ସନାତନ ପୂଜାରୀଙ୍କ ତତ୍ତ୍ୱାବଧାନରେ ଚିକିତ୍ସିତ ହେଉଥିବା ଗର୍ଭବତୀ ସ୍ତ୍ରୀଙ୍କୁ ମୁମୂର୍ଷୁ ଅବସ୍ଥାରେ ପଡ଼ିଥିବାର ଦେଖିଲେ। ଦୁଃଖର ପାହାଡ଼ ଅକାଡ଼ି ହୋଇପଡ଼ିଲା। କଥା ପଦେ ନକହି ସ୍ତ୍ରୀଙ୍କ ହାତଧରି ବସିରହିଲେ ଦିନରାତି। ଡାକ୍ତର ବଡ଼ଭାଇ ଓ ଅନ୍ୟାନ୍ୟ ଡାକ୍ତରମାନଙ୍କର ସବୁଚେଷ୍ଟା ସତ୍ତ୍ୱେ କିଛିଦିନ ପରେ ଗୋଟିଏ ସୁନ୍ଦରୀ କନ୍ୟା ଜନ୍ମଦେଇ ସଚ୍ଚିଦାନନ୍ଦଙ୍କ ପ୍ରଥମ ସ୍ତ୍ରୀ ସବୁଦିନ ପାଇଁ ଆଖି ବୁଜିଦେଲେ। ତୃତୀୟ ବଡ଼ଭାଇ ମୀନକେତନ ପୂଜାରୀଙ୍କ ସ୍ତ୍ରୀ (ଭାଉଜ ଶ୍ରୀମତୀ କମଳା ପୂଜାରୀଙ୍କ) କୋଳରେ ଝିଅଟିକୁ ଶୁଆଇ ଦେଇ ସେ ସମ୍ବଲପୁର ପରିତ୍ୟାଗ କଲେ।

ପ୍ରାୟ ଚାରିବର୍ଷ ପର୍ଯ୍ୟନ୍ତ ଘରକୁ ଫେରିଲେ ନାହିଁ । ସେତେବେଳର ପାଟଣା ଦରଭଙ୍ଗା, ଯଶପୁର ଅଞ୍ଚଳରେ ରେଭିନ୍ୟୁ ଇନ୍‌ସପେକ୍ଟର ଭାବରେ ବନ୍ଦୋବସ୍ତ ଶିବିର ମାନଙ୍କରେ କାର୍ଯ୍ୟରତ ରହିଲେ । ମଧ୍ୟପ୍ରଦେଶର (କେନ୍ଦ୍ରୀୟ ପ୍ରଦେଶର) ଯଶପୁର ଅଞ୍ଚଳରେ ଗୋଟିଏ ଜଙ୍ଗଲ ଅଞ୍ଚଳରେ କାର୍ଯ୍ୟ କରୁଥିବା ବେଳେ ସେ ଜାଣିଲେ ଅଳ୍ପଦୂରରେ ତାଙ୍କର ମଝିଆ ଭାଇ ଭାଉଜ ରହୁଛନ୍ତି । ଚାରିବର୍ଷ ତଳେ ଜନ୍ମିତ ଛୋଟ ଶିଶୁକନ୍ୟାଟିକୁ ଦେଖିବାକୁ ପ୍ରବଳ ଇଚ୍ଛାହେଲା - ସଚ୍ଚିଦାନନ୍ଦଙ୍କର । ସେ ରାତାରାତି ଟାଙ୍ଗାଗାଡ଼ି କରି ସେ ଅଞ୍ଚଳର କେତେକ ଚାଷୀଙ୍କ ସହିତ ପାଟଣାଗଡ଼ ସହରରେ ଭୋର ସମୟରେ ପହଞ୍ଚିଲେ । ସକାଳର ସୂର୍ଯ୍ୟ ଉଦୟ ନହୋଇଥିଲେ ମଧ୍ୟ ଏକ ଅଦ୍ଭୁତ ନିସ୍ତବ୍ଧତା ସେ ଅନୁଭବ କଲେ । ଗାଡ଼ି ପୋଲିସ ଥାନା ପରିସରରେ ପ୍ରବେଶ କରିବା ସଂଗେ ସଂଗେ ସେ ଜାଣିବାକୁ ପାଇଲେ ସହରରେ କିଛିଦିନ ହେବ ଅକାଳ ମଡ଼କ ପଡ଼ିଛି । କେବଳ ଛୋଟ ଶିଶୁମାନେହିଁ ଏଥିରେ ଦୁଇତିନି ଦିନର ଜ୍ୱରପରେ ମୃତ୍ୟୁମୁଖରେ ପଡୁଛନ୍ତି । କୌଣସି ଔଷଧ କାଟୁ କରୁ ନାହିଁ । ବଡ଼ ଭାଇ ଓ ଭାଉଜଙ୍କ ଶିଶୁ ସନ୍ତାନ ସହିତ ନିଜର ଅଦେଖା କନ୍ୟାଟି ମଧ୍ୟ ଏ ରୋଗରେ ଆକ୍ରାନ୍ତ ହୋଇ ପଡ଼ିଛି ।

ଭାଇ ଭାଉଜଙ୍କର ଏ ଦୁଃସମୟରେ ପହଞ୍ଚିଥିବା ଯୋଗୁ ସଚ୍ଚିଦାନନ୍ଦ ଅନୁତପ୍ତ ହେଲେ । ଭାଇଭାଉଜଙ୍କ କୋଳରେ ମୁମୂର୍ଷୁ ତାଙ୍କର ଚାରିବର୍ଷର ଝିଅଟିକୁ ଦେଖି ପାରୁଥିବାରୁ ଯଥେଷ୍ଟ ସନ୍ତୋଷ ଲାଭ କଲେ । ସକାଳର ପ୍ରଥମ ସୂର୍ଯ୍ୟକିରଣ ଅଗଣାରେ ପଡ଼ିବାପରେ ସଚ୍ଚିଦାନନ୍ଦଙ୍କର ଅଲିଅଳ କନ୍ୟା ଓ ଭାଉଜଙ୍କର ଆଉ ଦୁଇଟି ସନ୍ତାନ ଆଖି ବୁଜିଦେଲେ । ତିନୋଟି ଶିଶୁର ଚିତାଜଳାଇ ସଚ୍ଚିଦାନନ୍ଦ ଫେରି ଆସିଥିଲେ କର୍ମ କ୍ଷେତ୍ରକୁ । ସେହି ବିଷାଦପୂର୍ଣ୍ଣ ବିଷନ୍ନ ଏକାନ୍ତ ଜୀବନ ଅଖ୍ୟାତ, ଅଜଣା ପଲ୍ଲୀମାନଙ୍କରେ କଟେଇଦେବାକୁ ପସନ୍ଦକଲେ ସଚ୍ଚିଦାନନ୍ଦ । ସଭ୍ୟ ଜଗତକୁ ଫେରିବାକୁ ତାଙ୍କର ଆଉ ପ୍ରବୃତ୍ତି ନଥିଲା । ନିଷ୍ପାପ ଅଗମ୍ୟ ପ୍ରକୃତି ଭିତରେ ସେ ପାଉଥିଲେ ଏକ ନିର୍ବିକଳ୍ପ ନିର୍ବିକାର ପ୍ରଶାନ୍ତି । ହାତରେ ବଂଶୀଟିଏ ଧରି ଆଦିବାସୀ ଗୀତର ସୁରରେ ବଂଇଶୀ ଫୁଙ୍କି ନିଜର ସମସ୍ତ ଦୁଃଖ ଭୁଲିବାକୁ ଚେଷ୍ଟା କରିଥିଲେ ସେ ।

ବରଗଡ଼ର ତହସିଲଦାର ଭାବରେ ସଚ୍ଚିଦାନନ୍ଦଙ୍କୁ ନେଇ ଅନେକ ମଜାକଥା ଅଛି । ସେ ଖୁବ ଗୋରା ଥିଲେ । ସବୁବେଳେ ଅଫିସକାମରେ କାର୍ଯ୍ୟରତ ଥିବା ସମୟରେ ସାହେବି ପୋଷାକ ପିନ୍ଧୁଥିଲେ । ସେତେବେଳର ବରଗଡ଼ ସବ୍‌ଡିଭିଜନରେ ରାସ୍ତାଘାଟର ବ୍ୟାପକ ସୁବିଧା ନଥିବାରୁ ସେ ଘୋଡ଼ା ପିଠିରେ ଦଉଡ଼ା ଯାଉଥିଲେ । ଘୋଡ଼ାରେ ଯାଇ ଗୋଟିଏ ଗାଁ ମୁଣ୍ଡ ବର ବା ଓସ୍ତ ଗଛ ତଳେ ଘୋଡ଼ାରୁ ଓହ୍ଲେଇ ଚଉକିଦାର ହାତରେ ଗୌନ୍ତିଆ ଓ ଲାଗୁଆ ଚାଷୀମାନଙ୍କୁ ଖବର ଦେବାକୁ କହୁଥିଲେ । ଗୋରା ଦେହର ସଂପୂର୍ଣ୍ଣ ବ୍ରିଚ୍‌ପିନ୍ଧା, ଶିକାରୀ ବେଶରେ ଶୋଲ ଟୋପି ପିନ୍ଧା ଚେହେରା ଦେଖି ଲୋକେ ଡ଼ରି ଯାଉଥିଲେ । ଚଉକିଦାର

ଗାଁରେ ଖବରଦେବା ସମୟ ମଧ୍ୟରେ ସେ ଗାଇଚରୁଆ ପୁଅଝିଅଙ୍କ ପାଖରୁ ଓ ଗରିବ ହରିଜନ ଓ ଆଦିବାସୀ ମହିଳା ଯେଉଁମାନେ ଗାଁବାହାରେ ଖଟି ପତର ଓ କୋଳି ସଂଗ୍ରହ କରନ୍ତି ତାଙ୍କଠାରୁ ସମ୍ବଲପୁରି ଭାଷାକହି ଗାଁ ଲୋକଙ୍କ ବିଷୟରେ ଅନେକ ତଥ୍ୟ ସଂଗ୍ରହ କରିନେଉଥିଲେ । ଏତେଦୂର ଖବର ନେଉଥିଲେ ଯେ କାହା ବାଡ଼ିରେ କିଏ କି ପରିବା ଓ ଫଳ ଫଳାଏ; କିଏ କେତେ ଧାନଖରି ଖଳାରେ ପ୍ରତିବର୍ଷ ମଡ଼ାଏ ଇତ୍ୟାଦି । ଗୌନ୍ତିଆ ବା ଆସାମୀ ହାଜର ହେବା ବେଳକୁ ତହସିଲଦାରଙ୍କ ପାଖରେ ଅନେକ ତଥ୍ୟ ସଂଗ୍ରହ ହୋଇସାରିଥାଏ । ଗୌନ୍ତିଆ ବା ଚାଷୀ ଭୟ ଓ ସଙ୍କୋଚ଼ରେ ସାମନାକୁ ଆସିବାବେଳେ ସେ ଖାଣ୍ଟି ସମ୍ବଲପୁରି ଭାଷାରେ ତାଙ୍କ ହାଣ୍ଡିଶାଳର ପଖାଳ ଓ ଶାଗଖରଡ଼ା ବିଷୟରେ ଆଲୋଚ଼ନା କରି ସେମାନଙ୍କ ସଂଗରେ କୌତୁକ କରୁଥିଲେ। ବାତାବରଣଟା ଅତି ଭୟାତୁର, ଆଶଙ୍କା ଜନିତ ଅବସ୍ଥାରୁ ସାଧାରଣ ମେଳାପି ଓ ହସଖୁସି ପର୍ଯ୍ୟାୟକୁ ଫେରି ଆସୁଥିଲା । ସରକାରଙ୍କର ମାଲଗୁଜାରି ଅସୁଲରେ ଅସୁବିଧା ହେଉନଥିଲା । ତେଣେ ଜଣେ ଖରାତରାରେ ବୁଲୁଥିବା ବ୍ରାହ୍ମଣର ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା ଗାଁର ଗୌନ୍ତିଆଙ୍କ ଘରର ପଖାଳ, ବଡି, ଶାଗଖରଡ଼ା, କରଡି, ଆମ୍ବିଳ ଦ୍ୱାରା ସମାହିତ ହେଉଥିଲା । ଶାସକ ଓ ଶାସିତ ଦୁହେଁ ମାନବିକ ସ୍ତରରେ ପରସ୍ପରକୁ ଜାଣିବାରେ ଚିହ୍ନିବାରେ କିଛି ଅସୁବିଧା ହେଉନଥିଲା । ଏହାହିଁ ଥିଲା ସଚ୍ଚିଦାନନ୍ଦଙ୍କ ପ୍ରକୃତ ଚରିତ୍ର । ବର୍ଷକ ମଧ୍ୟରେ ସେ ଲୋକଙ୍କ ପାଖରେ ଖୁବ ସ୍ନେହି ଅଫିସର ଭାବରେ ପରିଗଣିତ ହୋଇଥିଲେ। ଧନୀ ଦରିଦ୍ର ସବୁ ଜାତିର ଲୋକ ତାଙ୍କୁ ପାଖରେ ନିଜନିଜର ଓଜର ଆପତ୍ତି ଜଣାଉଥିଲେ। ସେ ସବଡିଭିଜନର ସବୁ ମୁଖ୍ୟ ଗାଁକୁ ଦଉଡ଼ାରେ ଯାଉଥିଲେ ଓ ଲୋକଙ୍କ ସହିତ ମିଶୁଥିଲେ ।

ସେତେବେଳେ ବରଗଡ଼ ସବଡ଼ିଭିଜନରେ ଅତାବିରା ଓ ଭେଡ଼େନ ଥାନାରେ ଅନେକ ବ୍ରାହ୍ମଣ ବସତି ଗ୍ରାମଥିଲା । ଏ ବ୍ରାହ୍ମଣମାନେ ଆରଣ୍ୟକ ଓ ଉତ୍କଳୀୟ ଥିଲେ । ଆରଣ୍ୟକ ବା ଝାଡୁଆ ବ୍ରାହ୍ମଣଙ୍କ ସଂଖ୍ୟା ଅଧିକ ଥିଲା । ଏମାନେ ବ୍ୟାପକ ଭାବରେ ଏ ଦୁଇ ଥାନାର ଗ୍ରାମମାନଙ୍କରେ ଧନୀ ଓ ଶିକ୍ଷିତ ଚାଷୀ ଭାବରେ ପରିଗଣିତ ହେଉଥିଲେ। ଏମାନଙ୍କ ମଧ୍ୟରେ ଅନେକ ଗୌନ୍ତିଆ ମଧ୍ୟ ଥିଲେ । ଭେଡ଼େନ ଥାନା ଅନ୍ତର୍ଗତ ଇଛାପୁର-ମାନପୁର (ଦେଶଭଟଲି-ମାନପୁର) ଗ୍ରାମର ଗୌନ୍ତିଆ ଜନାର୍ଦ୍ଦନ ପାଣିଗ୍ରାହୀ ସେତେବେଳର ଏଣ୍ଟ୍ରାନ୍‌ସ ପାସ କରିଥିଲେ ଓ ସମ୍ବଲପୁର ସହରରେ ଶିକ୍ଷକତା କରୁଥିଲେ। ତାଙ୍କର ଏକମାତ୍ର ଦୁହିତା ଭଗବତୀ ପାଣିଗ୍ରାହୀ ଲେଡି ଲୁଇସ୍ ବାଳିକା ବିଦ୍ୟାଳୟର ଷଷ୍ଠ ଶ୍ରେଣୀର ଛାତ୍ରୀ ଥିଲେ। ଜନାର୍ଦ୍ଦନ ପାଣିଗ୍ରାହୀଙ୍କ ପିତା ଜୀବିତ ଥିବାରୁ ସେ ସସ୍ତ୍ରୀକ ଝିଅକୁ ପାଠପଢ଼ାଇବା ପାଇଁ ସମ୍ବଲପୁର ଝାଡୁଆପଡ଼ାରେ ଘର ଭଡ଼ାନେଇ ରହୁଥିଲେ । ଭଗବତୀ ପାଣିଗ୍ରାହୀ ଶାନ୍ତ, ଶିଷ୍ଟ ଓ ମେଧାବୀ ଥିଲେ। ଘରେ ହିନ୍ଦି ଓ ବଙ୍ଗଳା ଶିଖି ପଢ଼ାପଢ଼ି କରିପାରୁଥିଲେ। ମୋହନ ସୁନ୍ଦର ଗୋସେଇଁଙ୍କ ରାସଲୀଳାକୁ ଅନୁକରଣ କରି ନିଜ

ସାଙ୍ଗମାନଙ୍କ ସହିତ ଲୀଳାର ନାଚ଼ଗୀତ ନିଜଚେ଼ଷ୍ଟାରେ ଅଭ୍ୟାସ କରି, ନାରୀଗହଣରେ ବିଭିନ୍ନ ଧନୀ ପରିବାରର ଭିତରି ଖଞ୍ଜାମାନଙ୍କରେ ଅଭିନୟ କରୁଥିଲେ ।

ସଚ୍ଚିଦାନନ୍ଦ ବରଗଡ଼ର ତହସିଲଦାର ଭାବରେ ଅବସ୍ଥାପିତ ହେବାପରେ ବଡ଼ଭାଇ ତ୍ରିବିକ୍ରମ ପୂଜାରୀ ଓ ବଡ଼ ଭାଉଜ ଓ ଡ଼ାକ୍ତର ଭାଇଙ୍କ ସ୍ତ୍ରୀଙ୍କ ପ୍ରରୋଚ଼ନାରେ ଭଗବତୀ ପାଣିଗ୍ରାହୀଙ୍କୁ ତାଙ୍କର ଦ୍ୱିତୀୟ ସ୍ତ୍ରୀ ଭାବରେ ମନୋନୟନ କରାଗଲା । ନାରୀ ମହଲର ଏ ପ୍ରସ୍ତାବ ଜ୍ୟେଷ୍ଠ ଭ୍ରାତାମାନେ ଅନୁମୋଦନ କଲେ । ସେତେବେଳେ ବ୍ରାହ୍ମଣ କୂଳରେ ଏପରି ଶିକ୍ଷିତା ଗ୍ରାମୀଣ ବିବାହ ଉପଯୋଗ୍ୟା କନ୍ୟା ପ୍ରାୟ ମିଳୁନଥିଲେ । ବାପା ମା' ବାଲ୍ୟାବସ୍ଥାରୁ ଝିଅକୁ ବିବାହ କରିଦେଉଥିଲେ ଓ ଅଧିକାଂଶ କନ୍ୟା ଚାଟଶାଳୀ ପାଠମଧ୍ୟ ସମାପ୍ତ କରିପାରୁ ନଥିଲେ । ସାରଦା ଆଇନ କାଟୁ କରୁନଥିଲା । ବହୁକଷ୍ଟରେ ସଚ୍ଚିଦାନନ୍ଦ କନ୍ୟାଟି କେବଳ ଶିକ୍ଷିତା ବୋଲି ନିଜର ସମ୍ମତି ଦେଲେ । ବୟସରେ ପ୍ରାୟ ୧୩ ବର୍ଷ ସାନ ଗୋଟିଏ ଝିଅକୁ ସ୍ତ୍ରୀ ଭାବରେ ଗ୍ରହଣ କରିବାକୁ ସେ ସଙ୍କୋଚ଼ କରିଥିଲେ । କିନ୍ତୁ ତାଙ୍କ ପାଖରେ ଆଉ ଏକ ସମସ୍ୟା ବିରାଟ ଆକାରରେ ଦେଖାଯାଇଥିଲା । ତାହା ହେଉଛି ତାଙ୍କର ୭/୮ ବର୍ଷର ମୂକବଧିର ପ୍ରଥମ ସନ୍ତାନ । ମାମୁଁଘରେ ପ୍ରତିପାଳିତ ସୁରେଶଚନ୍ଦ୍ରଙ୍କ ଭବିଷ୍ୟତ ବିଷୟରେ ଚିନ୍ତାକରିବାକୁ ସେ ବାଧ୍ୟ ହୋଇଥିଲେ ।

ଶେଷରେ ୨୯ ବର୍ଷ ବୟସରେ ୧୬ ବର୍ଷ ବୟସର ଭଗବତୀ ପାଣିଗ୍ରାହୀଙ୍କୁ ସେ ଦ୍ୱିତୀୟ ପତ୍ନୀ ଭାବରେ ଗ୍ରହଣ କଲେ । ବିବାହ ଯାକଯମକରେ ପାଳନ କରାଗଲା । କାରଣ ବରଗଡ଼ ତହସିଲଦାର ଭାବରେ ସଚ୍ଚିଦାନନ୍ଦ ବ୍ୟାପକ ଭାବରେ ଲୋକପ୍ରିୟ ଥିଲେ ଓ ଭେଡ଼େନ ଓ ଅତାବିରା ଥାନାର ଅଧିକାଂଶ ଗ୍ରାମରେ ଜନାର୍ଦ୍ଦନ ପାଣିଗ୍ରାହୀ ଓ ତାଙ୍କର ସୁଯୋଗ୍ୟା ଧର୍ମପତ୍ନୀ ବାଳମତୀ ପାଣିଗ୍ରାହୀଂକର ବହୁ ବନ୍ଧୁବାନ୍ଧବ ଓ ପ୍ରଶଂସକ ଥିଲେ । ଶ୍ରୀମତୀ ବାଳମତୀ ପାଣିଗ୍ରାହୀ ପାଠ ପଢ଼ିନଥିଲେ ମଧ୍ୟ ପିତାଙ୍କ ଦୟାରୁ ଜ୍ୟୋତିଷୀ, କବିରାଜୀ, ନ୍ୟାୟଶାସ୍ତ୍ର, ପରିବାର ଓ ସମାଜଗଠନ ପଦ୍ଧତି ଉପରେ ହୋତା ବଂଶର ଜଣେ ସୁଯୋଗ୍ୟା ଦାୟଦ ଥିଲେ । ନାରୀଟିଏ ହୋଇ ମଧ୍ୟ ସେ ନିର୍ଭୀକା ଥିଲେ । ବହୁ ଟୁଟୁକା ଔଷଧ ଓ କବିରାଜୀ ଚିକିତ୍ସା ଜାଣିଥିଲେ । ରୋଗ, ଦୁଃଖ, ଶୋକରେ ସମସ୍ତଙ୍କୁ ସାହାଯ୍ୟ କରୁଥିଲେ । କିନ୍ତୁ ନ୍ୟାୟରେ ସେ କାହାକୁ ଖାତିରି କରୁନଥିଲେ । ଶ୍ରୀମତୀ ବାଳମତୀ ପାଣିଗ୍ରାହୀ ଜ୍ୟେଷ୍ଠା କନ୍ୟାର ବିବାହପରେ ଗୋଟିଏ ପୁତ୍ରସନ୍ତାନ (ପ୍ରସନ୍ନ କୁମାର) ଓ ଆଉ ଗୋଟିଏ କନ୍ୟା (ସରସ୍ୱତୀ)ର ଜନନୀ ହେବାର ସୌଭାଗ୍ୟ ଲାଭ କରିଥିଲେ । ଗୌନ୍ତିଆ ଜନାର୍ଦ୍ଦନ ପାଣିଗ୍ରାହୀଙ୍କ ମାନପୁର ଗ୍ରାମ ବ୍ୟତୀତ ମହଲାକଣ୍ଟ, ସୁଖପାଲି ଓ ଫଟାଟିକରା ନାମକ ଆଉ ତିନୋଟି ଜନବସତିରେ ଗୌନ୍ତି ଥିଲା । ଜନାର୍ଦ୍ଦନଙ୍କ ତଳେ ପ୍ରାୟ ପନ୍ଦରବର୍ଷ ସାନ ଜଣେ ଛୋଟ ଭାଇ (ଶ୍ରୀ ମୃତ୍ୟୁଞ୍ଜୟ ପାଣିଗ୍ରାହୀ) ଅଛନ୍ତି । ସେ ମହଲାକଣ୍ଟ ଗ୍ରାମର

(ଭୁଲିଆ ମେହେର ବୁଣାକାର ଗ୍ରାମର) ଗୌନ୍ତିଆ ଭାବରେ ପରବର୍ତ୍ତି ସମୟରେ ନିଜ ପରିବାରକୁ ନେଇ ବସତି ସ୍ଥାପନ କରିଥିଲେ ।

କନ୍ୟାର ବିବାହପରେ ବାଳମତୀ ଦେବୀ ଜ୍ୱାଇଁ ଓ ଝିଅର ପରିବାର ଉପରେ ଯଥେଷ୍ଟ ପ୍ରଭାବ ପକାଇ ଥିଲେ । ସଚ୍ଚିଦାନନ୍ଦ ସରଳ ଗ୍ରାମ୍ୟ ଜୀବନକୁ ଭଲପାଉଥିଲେ । ଅବସର ନେବାପରେ ଗାଁରେ ରହିବାର ପରିକଳ୍ପନା ସେ ମୂଳରୁ କରିଥିଲେ । ବିବାହର ଅଳ୍ପଦିନପରେ ବରଗଡ଼ରୁ ସଚ୍ଚିଦାନନ୍ଦଙ୍କୁ ଖୋର୍ଦ୍ଧା ସବଡିଭିଜନକୁ ବଦଳି ହେଲା । ସପରିବାର ସେ ଖୋର୍ଦ୍ଧା ଯିବାର ପ୍ରସ୍ତୁତି କଲେ । ବିବାହପରେ, ଏକମାତ୍ର ମୂକବଧିର ପୁତ୍ର, ଯେ ମାତୁଳାଳୟରେ ସମ୍ବଲପୁର ଝାଡୁଆପଡ଼ାଠାରେ ପ୍ରତିପାଳିତ ହେଉଥିଲେ ତାଙ୍କୁ ନିକପାଖକୁ ନେଇ ଆସିଲେ । ନୂଆ ମା'ଙ୍କୁ ଚିହ୍ନେଇ ଦେଲେ । ହେଲେ ଆଠବର୍ଷର ଧୀସମ୍ପନ୍ନ ସୁରେଶଚନ୍ଦ୍ର ସାରାଜୀବନଯାକ ନୂଆ ମା'ଙ୍କୁ ନିକର ମା' ବୋଲି ଗ୍ରହଣ କରିନଥିଲେ । ବରଂ ସଚ୍ଚିଦାନନ୍ଦଙ୍କ ଏ ପରିବାର ସଂଗଠନକୁ ଘୃଣା କରୁଥିଲେ । ଶାରିରୀକ ଜନ୍ମଗତ ଦୁର୍ବଳତାପାଇଁ ସେ ଜିଦ୍‌ଖୋର ହୋଇଯାଇଥିଲେ । ତା'ପରେ, ଜନ୍ମକଲା ମା'ଙ୍କ ମୃତ୍ୟୁ ଓ ବାପଙ୍କଠାରୁ ଦୂରରେ ରହିବା, ମାମୁଁ ଘରେ ପ୍ରତିପାଳିତ ହେବା କାରଣରୁ ସୁରେଶଚନ୍ଦ୍ରଙ୍କୁ ବିଦ୍ରୋହୀ ପ୍ରକୃତିର ପିଲାଟିଏ କରିଦେଇଥିଲା । ତାହା ତାଙ୍କ ଜୀବନର ଶେଷ ପର୍ଯ୍ୟନ୍ତ ଦେଖା ଯାଇଥିଲା ।

ସବୁ ଅସହଯୋଗ ଓ ବିଦ୍ୱେଷ ସତ୍ତ୍ୱେ ବାପ ସଚ୍ଚିଦାନନ୍ଦ ଓ ମା' ଭଗବତୀ ସୁରେଶଚନ୍ଦ୍ରଙ୍କୁ ଆପଣେଇ ନେଇଥିଲେ । ପୁତ୍ରର ସମସ୍ତ ଅଭାବ ଦୂରକରିବାକୁ ଆଗଭର ହୋଇଥିଲେ । କାନ ଓ ଗଳାର ବିଶେଷଜ୍ଞ ଡ଼ାକ୍ତରମାନଙ୍କୁ ପରାମର୍ଶ କରି ପୁଅକୁ ପାଠପଢ଼ାଇ ସୁସ୍ଥ ମଣିଷଟିଏ କରି ଗଢ଼ି ତୋଳିବାକୁ ଆପ୍ରାଣ ଚେଷ୍ଟା ଚଳାଇଲେ କଟକରେ ଓ କଲିକତାରେ ।

ବିବାହ ପରେ ସଚ୍ଚିଦାନନ୍ଦ, ପତ୍ନୀଙ୍କ ନାମ ପରିବର୍ତ୍ତନ କରିଥିଲେ ଏକ ବିଶେଷ କାରଣ ଯୋଗୁ । ତାଙ୍କର ପ୍ରଥମ ପତ୍ନୀଙ୍କ ନାମ ମଧ୍ୟ ଭଗବତୀ ଥିଲା । ତେଣୁ ସେ ଦ୍ୱିତୀୟ ପତ୍ନୀଙ୍କ ନାମ ରଖିଲେ "ସୁଶୀଳା"। ଏହି ନାମରେ ଆଜିଯାଏ ତାଙ୍କର ପରିଚୟ ତାଙ୍କ ପରିବାର ଲୋକେ ଦେଇଥାଆନ୍ତି ।

ବାଳମତୀ ଦେବୀ ଜଣେ ଅସାଧାରଣ ସେବିକା ଥିଲେ । ବିଶେଷକରି ଗର୍ଭବତୀ ନାରୀମାନଙ୍କର ଚିକିତ୍ସା ଓ ସନ୍ତାନ ପ୍ରସବ ସମୟରେ ଜଣେ ଧାଇ ଭାବରେ ସେ ଆଖପାଖ ଅଞ୍ଚଳରେ ବେଶ ଜଣାଶୁଣା ଥିଲେ । ବହୁ ଦୂରଦୁରାନ୍ତରୁ ଲୋକେ ତାଙ୍କୁ ଗାଡିରେ ଆସି ନେଇ ଯାଉଥିଲେ । ଏହାକୁ ସମ୍ଭ୍ରାନ୍ତ ହୋତା ଓ ପାଣିଗ୍ରାହୀ ବଂଶର ଲୋକେ ଜନସେବା ଭାବରେ ଗ୍ରହଣ କରିଥିଲେ । ପରିବାରର ଲୋକେ ଉଦାର ଭାବରେ ବାଳମତୀଙ୍କୁ ଅଳ୍ପବୟସରୁ ଏ

କାର୍ଯ୍ୟ କରିବାକୁ ପ୍ରୋତ୍ସାହିତ କରିଥିଲେ। ତାଙ୍କର ଅନ୍ତିମ ସମୟ ପର୍ଯ୍ୟନ୍ତ କର୍କଟ ରୋଗରେ ଆକ୍ରାନ୍ତ ଥାଇ ମଧ୍ୟ ସେ ଏ ଜନସେବା କରି ଚାଲିଥିଲେ।

ସଚ୍ଚିଦାନନ୍ଦ ବରଗଡ଼ରୁ ଖୋର୍ଦ୍ଧା ବଦଳି ହେବା ପରେ ତାଙ୍କ ଜୀବନରେ ଅନେକ ପରିବର୍ତ୍ତନ ଆସିଥିଲା । ସେ ବିବାହପରେ ସବଡେପୁଟି ପାହ୍ୟାକୁ ଉତ୍ତୀର୍ଣ୍ଣ ହୋଇଥିଲେ ଓ ଗୋଟିଏ ରୟାଲ ଏନଫିଲ୍‌ଡ ଗାଡି କିଣି ଦଉଡା ଯାଉଥିଲେ। ଯେତେଦୂର ହେଲେ ମଧ୍ୟ ରାତିରେ ଘରକୁ ଫେରୁଥିଲେ। ବିବାହ ପୂର୍ବରୁ ଜଙ୍ଗଲିଜୀବନ ତଥାପି ତାଙ୍କୁ ଆକର୍ଷିତ କରୁଥିଲା। ତାଙ୍କ ପାଖରେ ଗୋଟିଏ ଡ଼ବଲ ବ୍ୟାରେଲ ବନ୍ଧୁକ ଥିଲା। ସମୟ ପାଇଲେ ସମବୟସ୍କ ବନ୍ଧୁ ଓ ସରକାରୀ ଅଫିସରମାନଙ୍କ ସହିତ ସେ ଶିକାରରେ ଯିବାକୁ ପସନ୍ଦ କରୁଥିଲେ। ବଣଭୋଜି ଓ ନୂତନ ଅଗମ୍ୟ ଦର୍ଶନୀୟ ସ୍ଥାନକୁ ଯିବା ତାଙ୍କର ସହଜାତ ପ୍ରବୃତ୍ତି ଥିଲା । ନିଜେ ପୋଷାକ ଡିଜାଇନ କରିବା ଓ ଦରଜୀ ଦ୍ୱାରା ସିଲାଇ କରି ପିନ୍ଧିବା, ନିଜ ହାତରେ ବଢ଼େଇ ଓ ଛୋଟମୋଟ ମେସିନ୍ ମରାମତି କାମ କରିବାକୁ ସେ ଭଲ ପାଉଥିଲେ। ସେଥିପାଇଁ ତାଙ୍କ ପାଖରେ ଦୁଇଟି କାଠ ବାକ୍ସରେ ହାତତିଆରି ଓ ସାଜସାରଂଜାମ ସବୁବେଳେ ରହୁଥିଲା। ପ୍ରତିଦିନ ନୂଆ ପ୍ରକାରର ଖାଦ୍ୟ ରନ୍ଧନ କରି ଖାଇବା ଓ ଦେଶୀବିଦେଶୀ ଅତର ସଂଗ୍ରହକରି ବ୍ୟବହାର କରିବା ତାଙ୍କର ଆଉ ଗୋଟିଏ ଗୋଟିଏ ସଉକି ଥିଲା। ପିଲାବେଳୁ ସୁନ୍ଦର 'ଇଟାଲିକ୍ସ' ଅକ୍ଷରରେ ଲେଖିବା ଓ ଚିତ୍ରକରିବାର ସଉକିଥିବାରୁ ତାଙ୍କୁ ତାଙ୍କର ସହକର୍ମୀ ଓ ଉଚ୍ଚପଦସ୍ଥ ଅଫିସରମାନେ ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନ ଦେଉଥିଲେ।

ଖୋର୍ଦ୍ଧାରେ ସଚ୍ଚିଦାନନ୍ଦଙ୍କୁ କାର୍ଯ୍ୟକରିବାରେ ଅନେକ ସହଯୋଗ ମିଳିଲା । କାରଣ ଅଳ୍ପଦିନ ଆଗରୁ ପୁରୀର କଲେକ୍ଟର ଭାବରେ ତାଙ୍କର ବଡ଼ଭାଇ ତ୍ରିବିକ୍ରମ ପୂଜାରୀ କାର୍ଯ୍ୟରତ ଥିଲେ। ସେ ପୁରୀରେ ସାରଦା ଦେବୀ ରୋଡରେ ବାଲିସାହି ଏମ.ଇ. ସ୍କୁଲ ପାଖରେ ନିଜର ଘର କରିଥିଲେ। ମୋ ବାପା ସେଇଠି ରହିଲେ। ପୁତ୍ର ସୁରେଶଚନ୍ଦ୍ରଙ୍କ ଚିକିତ୍ସାପାଇଁ ସେ କଲିକତାର ଡାକ୍ତର ବିଶେଷଜ୍ଞ ମାନଙ୍କୁ ପରାମର୍ଶ କଲେ। କଲିକତା ମୂକବଧିର ସ୍କୁଲର ଶିକ୍ଷକମାନଙ୍କ ସହଯୋଗରେ ଶିକ୍ଷା ଉପକରଣ ଯୋଗାଇ ଦେଲେ। ଶିକ୍ଷକ ନିଯୁକ୍ତ କରାଇଲେ। ସୁରେଶଚ଼ନ୍ଦ୍ର ବୁଦ୍ଧିମାନ ଥିବାରୁ ଓଡ଼ିଆ ବଙ୍ଗଳା କହିବାକୁ ଚେଷ୍ଟା କଲେ। ଇଂରାଜି ଅକ୍ଷର ଶିଖିଲେ। ଚିତ୍ରକରିବା ଶିଖିଲେ। ସେଥିସହିତ ଫୁଟବଲ ଖେଳିବା ଓ ସାଇକେଲ ଚଳେଇବାର ଅସାଧାରଣ ଦକ୍ଷତା ଦେଖାଇଲେ। ସଚ୍ଚିଦାନନ୍ଦ ପୁତ୍ରଙ୍କୁ ଏ ସବୁଥିପାଇଁ ଯଥେଷ୍ଟ ଉତ୍ସାହ ଦେଲେ। ସୁରେଶଚ଼ନ୍ଦ୍ରଙ୍କୁ ଯେତେବେଳେ ଆଠ/ନଅ ବର୍ଷ। ସେ ବୟସରୁ ଷୋହଳବର୍ଷ ପର୍ଯ୍ୟନ୍ତ ସଚ୍ଚିଦାନନ୍ଦ ପାରୁପର୍ଯ୍ୟନ୍ତ ଜିନିଷ କିଣି, ଶିକ୍ଷକ ଯୋଗାଡ଼ କରି ତାଙ୍କୁ ସାଧାରଣ ମଣିଷଟିଏ ପରି ଗଢ଼ିବାକୁ ଚେଷ୍ଟା କରିଥିଲେ। କଥା

କହିବାରେ ଓ ଶୁଣିବାରେ ଅନେକ ଉନ୍ନତି ଦେଖାଗଲା । କିନ୍ତୁ ତାଙ୍କର ଜିଦ୍‌ଖୋର ମନୋଭାବ ଓ ଯାବତ ମା'ଙ୍କ ପ୍ରତି ସନ୍ଦେହ ଓ ବିତୃଷ୍ଣା ଦୂର ହୋଇପାରିଲା ନାହିଁ ।

## ମୋର ବଡ଼ଭାଇ ଓ ସଚ୍ଚିଦାନନ୍ଦଙ୍କ ପ୍ରଥମ ପୁତ୍ର

ପୁଅ ଓ ସ୍ତ୍ରୀଙ୍କୁ ନେଇ ସଚ୍ଚିଦାନନ୍ଦ ଖୋର୍ଦ୍ଧା ପହଞ୍ଚିଲେ । ସ୍ୱାମୀ ସ୍ତ୍ରୀ ପାରୁପର୍ଯ୍ୟନ୍ତ ଚେଷ୍ଟା ଚଳାଇଲେ ପିଲାଟିର ମାନସିକ ପରିବର୍ତ୍ତନ ଆଣିବାକୁ । ଡାକ୍ତର ଚିକିତ୍ସା, ମୂକବଧିର ପିଲାଙ୍କୁ ଶିକ୍ଷାଦେବା ବିଶେଷଜ୍ଞମାନଙ୍କୁ ପରାମର୍ଶ କରିବାପାଇଁ କଲିକତା ଗଲେ । ସେମାନଙ୍କ ପରାମର୍ଶରେ ସବୁବେଳେ ପିଲାଟିକୁ ଖୁସିରେ ରଖିବାପାଇଁ ସେ ଯାହା ଚାହିଁଲା ତାହା କଲେ । ଅନେକ ସୌଖୀନ ଖେଳନା ଓ ଜିନିଷ ଆଣି ଯୋଗାଇ ଦେଲେ । ତଥାପି ବେଳେବେଳେ ପିଲାଟିର ଜିଦ୍‌ଖୋର ଗୁଣ କମୁନଥିଲା । ରାଗରେ ସବୁ ଜିନିଷ ଫୋପାଡ଼ିଦେବା ଓ ଭାଙ୍ଗିଦେବା ଏକ ଅଭ୍ୟାସରେ ପରିଣତ ହେଲା । ସୁଶୀଳାଦେବୀ କିନ୍ତୁ ଧୈର୍ଯ୍ୟ ହରାଉ ନଥିଲେ । ସଚ୍ଚିଦାନନ୍ଦ ବେଳେବେଳେ ଧୈର୍ଯ୍ୟ ହରାଉଥିଲେ । ଅକ୍ଷର ଶିକ୍ଷା, ଚିତ୍ରାଙ୍କନ ଶିକ୍ଷା ପାଇଁ ଘରୋଇ ଶିକ୍ଷକ ନିଯୁକ୍ତ କଲେ । ଖୋର୍ଦ୍ଧାର ଜଣେ ଷାଠିଏ ବର୍ଷର ଅବିବାହିତା ଶିକ୍ଷୟିତ୍ରୀ ଇଚ୍ଛାବତୀ ପାତ୍ରୀଙ୍କୁ ଆଣି ସୁରେଶଚନ୍ଦ୍ରଙ୍କ ଦାୟିତ୍ୱ ଦେଲେ ।

ବାଳମତୀ ଦେବୀ ଏ ସମୟରେ ଗୋଟିଏ ପୁତ୍ର ସନ୍ତାନ ଜନ୍ମଦେଲେ- ଅଠରବର୍ଷ ପରେ । ଦୁଇବର୍ଷ ପରେ ଆଉ ଗୋଟିଏ କନ୍ୟାର ମାତା ହେଲେ । ଗାଁରେ ଦାୟିତ୍ୱ ବଢିଲା । ଏକମାତ୍ର ଦିଅରଙ୍କୁ ବିବାହ କରାଇଲେ । ନୂଆ ବୋହୂଟିଏ ଯାନ ଜାଆହୋଇ ଆସିବା ପରେ, ତା' ଉପରେ ଘରର/ ଖଞ୍ଜାର ସବୁ କାମ ଦେଇ ନିଜେ କେବଳ ଘର ବାହାର କାମ ବୁଝିଲେ । ତିନୋଟି ସନ୍ତାନର ଜନନୀ ହେବାପରେ ମଧ୍ୟ ସେ ସବୁବେଳେ ଜ୍ୟେଷ୍ଠାକନ୍ୟା ପାଇଁ ସମୟ ଦେଉଥିଲେ ।

ସଚ୍ଚିଦାନନ୍ଦ ବିବାହ କରିବା ପରେ ତାଙ୍କର ଅନେକ ଅଭ୍ୟାସ ବଦଳିଗଲା । ବେଶୀ ସମୟ ପରିବାର ସଂଗରେ ରହିବା, ପାରୁପର୍ଯ୍ୟନ୍ତ ପରିବାରକୁ ନେଇ ଦର୍ଶନୀୟ ସ୍ଥାନକୁ ଯିବା ପ୍ରତି ମାସର କାର୍ଯ୍ୟସୂଚୀରେ ରଖିଲେ । ୧୯୩୦ ମସିହାରେ ସୁଶୀଳାଦେବୀ ତାଙ୍କର ପ୍ରଥମ ସନ୍ତାନର ମା' ହେଲେ । ବାଳମତୀ ଦେବୀ ମାନପୁରରୁ ମାସକ ଆଗରୁ ଆସି ଗର୍ଭବତୀ ଝିଅର ଯତ୍ନ ନେଲେ । ନିଜର ବିଦ୍ୟାବୁଦ୍ଧି ଖଟାଇ ଧାଇଭାବରେ ନିଜ ଝିଅର ପ୍ରଥମ କନ୍ୟାଟିକୁ ଭୂମିଷ୍ଠ କରାଇଲେ । ସଚ୍ଚିଦାନନ୍ଦଙ୍କ ଆନନ୍ଦର ସୀମା ରହିଲା ନାହିଁ । ପିଲାବେଳରୁ ମାତୃବିୟୋଗ, ଯୌବନରେ ସ୍ତ୍ରୀ ଓ ପ୍ରଥମ କନ୍ୟାର ଅକାଳ ବିୟୋଗର ସମସ୍ତ ଦୁଃଖର ଅବସାନ ଘଟାଇଲେ କନ୍ୟା ସତ୍ୟବତୀ । ସୁସ୍ଥ, ସବଳ, ଚଞ୍ଚଳ ଓ ଅନର୍ଗଳ କଥାକହୁଥିବା ଶିଶୁକନ୍ୟାକୁ ପାଇ ସଚ୍ଚିଦାନନ୍ଦ ତାକୁ ଡ଼ାକ ନାଁ ଦେଲେ ମା' ଗୋ' । ତା'ର ତିନିବର୍ଷ ପରେ ସାମୟିକ ଭାବରେ ନୟାଗଡ଼ ରାଜ୍ୟର ପଲିଟିକାଲ ସୁପରିନ୍‌ଟେଣ୍ଡେଣ୍ଟ

ଭାବରେ ଥିବା ସମୟରେ ସୁଶୀଳା ଦେବୀଙ୍କର ପ୍ରଥମ ପୁତ୍ର ସନ୍ତାନ 'ଶରତଚନ୍ଦ୍ର' ଜନ୍ମଗ୍ରହଣ କଲେ। ଦେଢ଼ବର୍ଷପରେ ୧୯୩୫ ମସିହାରେ ସମ୍ବଲପୁରରେ ଦ୍ୱିତୀୟ ପୁତ୍ର ଜନ୍ମଗ୍ରହଣ କଲେ। ନାମକରଣ ହେଲା 'ସୁବୋଧଚନ୍ଦ୍ର'। ପୁରୀ ସହରରେ ଟ୍ରେଜେରୀ ଅଫିସର ଭାବରେ ଅବସ୍ଥାପିତ ଥିବା ସମୟରେ ୧୯୩୮ ଓ ୧୯୪୦ ମସିହାରେ ଆଉ ଦୁଇଟି ପୁତ୍ର "ସୁନୀଲଚନ୍ଦ୍ର" ଓ "ଶିଶିରଚନ୍ଦ୍ର" ଜନ୍ମଗ୍ରହଣ କଲେ। ଏ ଭିତରେ ସଚ୍ଚିଦାନନ୍ଦ ଗୋଟିଏ କଳାରଂଗର ବୁଇକ୍ ଗାଡ଼ି କିଣି ସାରିଥିଲେ। ଗାଡ଼ିର ଯତ୍ନ, ଯନ୍ତ୍ରପାତି ମରାମତି ଓ ନିଜେ ଗାଡ଼ି ଚଲେଇବା ଥିଲା ତାଙ୍କର ସବୁଠାରୁ ବଡ଼ ସଉକି। ପ୍ରତ୍ୟେକ ସନ୍ତାନର ଜନ୍ମର ମାସେ, ଦୁଇମାସ ଆଗରୁ ବାଳମତୀ ଦେବୀଙ୍କୁ ମାନପୁରରୁ ଆଣି ସ୍ତ୍ରୀଙ୍କ ପାଖରେ ଛାଡ଼ି ଦେଉଥିଲେ। ବାଳମତୀ ଦେବୀ ଗ୍ରାମରୁ ଆସିବା ପୂର୍ବରୁ ଜଣେ ବିଧବା ପ୍ରାପ୍ତବୟସ୍କା ଗଉଡୁଣୀ ସ୍ତ୍ରୀଲୋକକୁ ଆଣି ଝିଅପାଖରେ ରଖୁଥିଲେ। ସନ୍ତାନ ଜନ୍ମପରେ ସେଇ ଗଉଡୁଣୀ ସ୍ତ୍ରୀଲୋକଟି ଛୋଟ ଛୋଟ ପିଲାଙ୍କର ସମସ୍ତ ଯତ୍ନ ନେଉଥିଲେ। ୧୯୫୩ ଯାଏ ଦୁଇ ତିନୋଟି ପୁଅ ପ୍ରାୟ ଚାରି ପାଞ୍ଚବର୍ଷ ପର୍ଯ୍ୟନ୍ତ ଏ ଗଉଡୁଣୀ ସ୍ତ୍ରୀଙ୍କ ପାଖରୁ ମା'ର ସମସ୍ତ ସ୍ନେହ ଆଦର ଯତ୍ନ ପାଉଥିଲେ।

ସତ୍ୟବତୀଙ୍କ ପରେ ପ୍ରତି ଦୁଇବର୍ଷରେ ସୁଶୀଳା ଦେବୀ ଜନ୍ମଦେଲେ ଆହୁରି ନଅଟି ସନ୍ତାନଙ୍କୁ। ସଚ୍ଚିଦାନନ୍ଦଙ୍କ ପାଇଁ ସତ୍ୟବତୀ ଥିଲେ ସବୁଠାରୁ ଅପାସୋରା ଓ ଅଲିଅଳ। ପ୍ରତ୍ୟେକ ସମୟରେ ସେ ସତ୍ୟବତୀଙ୍କ କଥାରଖୁଥିଲେ। ଖୋର୍ଦ୍ଧାରହଣୀ ସମୟରେ ଝିଅର ଲାଳନପାଳନ ସେ ଅଞ୍ଚଳର ମହିଳାମାନଙ୍କ ଦ୍ୱାରା ହୋଇଥିବାରୁ, ସତ୍ୟବତୀ ଖୁବ ଅଳ୍ପବୟସରୁ ଖୁବ୍ ଶୁଦ୍ଧ ଖୋର୍ଦ୍ଧାର ଆଞ୍ଚଳିକ ଭାଷା ଉଚ୍ଚାରଣ ଓ ସାହିତ୍ୟରେ ଯଥେଷ୍ଟ ପାରଦର୍ଶିତା ଦେଖାଇଥିଲେ। ଗୀତଗାଇବା ମଧ୍ୟ ତାଙ୍କର ଭାରିପ୍ରିୟ ଥିଲା। ସେ ମା'ଙ୍କଠାରୁ ବଙ୍ଗଳା ଶିଖି ସ୍କୁଲଜୀବନରୁ ବଙ୍ଗଳା ଉପନ୍ୟାସ ଓ ଗଳ୍ପ ପଢ଼ିବାକୁ ଭଲ ପାଉଥିଲେ। ପିଲାବେଳୁ ଜଣେ ପ୍ରିୟ ଭାଷିଣୀ ଓ ମିଷ୍ଟଭାଷିଣୀ ଭାବରେ ତାଙ୍କୁ ସମସ୍ତେ ଜାଣନ୍ତି। ଯେଉଁ ପରିବେଶରେ ରହିଲେ ମଧ୍ୟ ସେ ତାଙ୍କର ମଧୁର ବ୍ୟବହାରରେ ସମସ୍ତଙ୍କୁ ଆପଣାର କରି ପକାନ୍ତି। ବାପାଙ୍କ ବଦଳି ଯୋଗୁ ନବମ ଶ୍ରେଣୀରେ ତାଙ୍କର ପାଠପଢ଼ାରେ ଡ଼ୋରି ପଡିଲା। ସେ ସତରବର୍ଷ ବୟସରେ ବିବାହ କରିଥିଲେ ସମ୍ବଲପୁର କିଲ୍ଲାର ଗଡ଼ମୁଣ୍ଡା ନିବାସୀ ଗଣିତଶାସ୍ତ୍ରୀ ଶ୍ରୀମାନ ଧନଞ୍ଜୟ ହୋତାଙ୍କୁ। ଶ୍ରୀ ହୋତା ପରବର୍ତ୍ତୀ କାଳରେ ଓଡ଼ିଶା ସରକାରଙ୍କ ପରିସଂଖ୍ୟାନ ବିଭାଗର ଯୁଗ୍ମ ନିର୍ଦ୍ଦେଶକ ଭାବରେ ଅବସ୍ଥାପିତ ହୋଇଥିଲେ। ଶ୍ରୀ ଓ ଶ୍ରୀମତୀ ହୋତାଙ୍କର ଦୁଇଟି ଝିଅ। ଦୁହେଁ ଇଂରାଜି ଭାଷାସାହିତ୍ୟର ଅଧ୍ୟାପିକା। ଶ୍ରୀମତୀ ସ୍ମିତା ହୋତା କଟକରେ ଓ ଶ୍ରୀ ସଂଗୀତା ହୋତା ରାଉରକେଲାରେ ଅବସ୍ଥାପିତା।

ସଚ୍ଚିଦାନନ୍ଦଙ୍କ ଖୋର୍ଦ୍ଧାରେ ଦୁଇବର୍ଷର ରହଣି ମଧ୍ୟରେ ସେ ଉପରିସ୍ଥ (ଶ୍ରୀ ଦୁର୍ଗାଦାସ ପରି) ଅଫିସରମାନଙ୍କର ଖୁବ୍ ପ୍ରିୟଭାଜନ ହୋଇପାରିଥିଲେ। ଜଣେ ଦକ୍ଷ ଓ ସଚ୍ଚୋଟ

ଅଫିସର ଭାବରେ ତାଙ୍କର ଖୁବ ନାଁ ହୋଇଥିଲା । ଫଳରେ ୧୯୩୩ ମସିହାବେଳକୁ ଏକ ବିଶେଷ ପରିସ୍ଥିତିରେ ତାଙ୍କୁ ନୟାଗଡ଼ ଦେଶୀୟ ରାଜ୍ୟର ପଲିଟିକାଲ ସୁପରିନଟେଣ୍ଡେଣ୍ଟ ଭାବରେ କିଛିଦିନ ପାଇଁ ଅବସ୍ଥାପିତ କରାଗଲା ।

ଇଂରେଜ ସରକାରଙ୍କ ଅଧୀନରେ ସେତେବେଳେ କେତେଗୁଡ଼ିଏ ରାଜା, ମହାରାଜା ଓ ଜମିଦାର ମାନଙ୍କର "ଷ୍ଟେଟ" ବା ରାଜ୍ୟ ପରିଚ଼ାଳିତ ହେଉଥିଲା । ସିଧାସଳଖ ସରକାରଙ୍କ ଅଧୀନରେ ଶାସିତ ଅଞ୍ଚଳକୁ ଜିଲ୍ଲା ବା "ଖାସମାହାଲ" କୁହାଯାଉଥିଲା । ସେଠାରେ ଜିଲ୍ଲା କଲେକ୍ଟରଙ୍କ ଅଧୀନରେ ସବଡେପ୍ୟୁଟି, ଡେପ୍ୟୁଟି କଲେକ୍ଟର ଓ ମାଜିଷ୍ଟ୍ରେଟମାନେ ଶାସନ ଚ଼ଳାଉଥିଲେ । ରାଜା ଓ ମହାରାଜାମାନେ କିନ୍ତୁ ତାଙ୍କର ଶାସନ ଚଳାଉଥିଲେ ନିଜ ରାଜ୍ୟଭିତରେ । ଏ ରାଜ୍ୟମାନଙ୍କୁ ଦେଶୀୟରାଜ୍ୟ ବା "ପ୍ରିନ୍‌ସିଲି ଷ୍ଟେଟ" ବୋଲି କୁହାଯାଉଥିଲା । ଜଣେ "ପଲିଟିକାଲ ଏଜେଣ୍ଟ" ମାନଙ୍କ ଅଧୀନରେ ଏ ରାଜା ଓ ମହାରାଜାମାନଙ୍କୁ ବ୍ୟକ୍ତିଗତ ଭାବରେ ଅନୁମୋଦନ କରାଯାଉଥିଲା । ଏଇ ରାଜାମାନେ ବାର୍ଷିକ ଖଜଣା (ଅର୍ଥ ଆକାରରେ) ଇଂରେଜ ସରକାରଙ୍କ ନିର୍ଦ୍ଧାରିତ ଟ୍ରେଜେରୀରେ ପଇଠ କରୁଥିଲେ । ଥରେ ଜଣେ ରାଜାଙ୍କ ଦେହାନ୍ତ ହେବାପରେ ସେ ରାଜ୍ୟଟି "କୋର୍ଟ ଅଫ ୱାର୍ଡ୍‌ସ"କୁ ଚାଲିଯାଉଥିଲା । ଅର୍ଥାତ୍ ଇଂରେଜ ସରକାର ନିଜେ ନିଜହାତକୁ ରାଜ୍ୟର ସମସ୍ତ ଶାସନଭାର ନେଇ ଆସୁଥିଲେ । ସେଠାରେ ଇଂରେଜ ସରକାର ନିଜ ତରଫରୁ ଜଣେ "ପଲିଟିକାଲ ସୁପରିନ୍‌ଟେଣ୍ଡେ଼ଣ୍ଟ" ନିଯୁକ୍ତି ଦେଉଥିଲେ । ସେ ରାଜା ଓ ଦେଓ୍ୟାନଙ୍କ ସମସ୍ତ ଅଧିକାର ପ୍ରାପ୍ତ ହେଉଥିଲେ ।

ନିଧାର୍ଯ୍ୟ ଭାବରେ ଇଂରେଜ ସରକାର ରାଜ୍ୟର ପରବର୍ତ୍ତୀ ରାଜା ବା ରାଣୀଙ୍କର ନାମ ଘୋଷଣା ନକରିବାଯାଏ ଦେଶୀୟ ରାଜ୍ୟଟି "କୋର୍ଟ ଅଫ ୱାର୍ଡ୍‌ସ"ରେ ରହୁଥିଲା । ପରବର୍ତ୍ତୀ ଉତ୍ତରାଧିକାରୀ ବିଷୟରେ ପଲିଟିକାଲ ସୁପରିନ୍‌ଟେଣ୍ଡେଣ୍ଟ୍‌ମାନେ ଗୁପ୍ତଭାବରେ ଇଂରେଜ ସରକାରଙ୍କୁ ଜଣାଉଥିଲେ । ଏହିପରି ଏକ ପରିସ୍ଥିତିରେ ନୟାଗଡ଼ ରାଜାଙ୍କ ମୃତ୍ୟୁପରେ ସଚ୍ଚିଦାନନ୍ଦଙ୍କୁ ସେଠାର ସୁପରିନଟେଣ୍ଡେଣ୍ଟ ଭାବରେ ନିଯୁକ୍ତି ଦିଆଗଲା, କାରଣ ପୁରୀ ଜିଲ୍ଲା ଅଧୀନରେ ନୟାଗଡ଼ ଦେଶୀୟ ରାଜ୍ୟଟି ସେତେବେଳେ ଇଂରେଜ ଶାସକଙ୍କ ତହବିଲରେ ଥିଲା ।

ସଚ୍ଚିଦାନନ୍ଦ ସପରିବାର ଖୋର୍ଦ୍ଧାରୁ ଯାଇ ନୟାଗଡ଼ରେ ଯୋଗଦେଲେ । ସୁଶୀଳାଦେବୀ ସେତେବେଳେ ତାଙ୍କର ଦ୍ୱିତୀୟ ସନ୍ତାନ ସମ୍ଭବାଥିଲେ । ରାଜାଙ୍କ ଅନୁପସ୍ଥିତିରେ ଇଂରେଜ ସରକାରଙ୍କ ଅନୁମୋଦିତ ଅଫିସରମାନଙ୍କୁ ପରୋକ୍ଷ ଭାବରେ ଦେଓ୍ୱାନ ଓ ରାଜାଙ୍କ ସମ୍ମାନ ମିଳୁଥିଲା । ସଚ୍ଚିଦାନନ୍ଦଙ୍କ ଭାଗ୍ୟରେ ତାହାହିଁ ହେଲା । ପରଂପରା ଅନୁଯାୟୀ ଦେଶ, ରାଜ୍ୟ ଓ ଗଡ଼ର ଲୋକେ ସଚ୍ଚିଦାନନ୍ଦଙ୍କୁ ରାଜକୀୟ ସମ୍ମାନ

ଦେବାର ପଦ୍ଧତି ଅନୁସରଣ କଲେ। ବେଳେବେଳେ ସରକାରୀ ଅଫିସରଟିକୁ ଏହା ଅନେକ ପ୍ରକାର ଅବାଞ୍ଛିତ ପରିସ୍ଥିତିରେ ପକାଉ ଥିଲା। କିନ୍ତୁ ଏହା ନିର୍ବିକାର ଭାବରେ ସଂପାଦନ କରୁଥିଲେ ରାଜ୍ୟବାସୀ ଓ ସାଧାରଣ ଜନତା।

ଖୋର୍ଦ୍ଧାରେ ପ୍ରଥମ ଝିଅ ଜନ୍ମବେଳେ ଡାକ୍ତରାଣୀ ଓ ନର୍ସଙ୍କ ବ୍ୟତୀତ ମାତା ବାଳମତୀ ଦେବୀ, ସୁଶୀଳାଦେବୀଙ୍କ ଧାଇ ଭାବରେ ଏକମାସ ଯାଏ କାର୍ଯ୍ୟରତା ଥିଲେ। ନୟାଗଡ଼ରେ ପୁନର୍ବାର ସନ୍ତାନସମ୍ଭବା ହେବାରୁ ବାଳମତୀ ଦେବୀ ମାନପୁର ଗ୍ରାମରୁ ଏକମାସ ଆଗରୁ ଆସି ଝିଅର ସେବାଯତ୍ନରେ ଲାଗି ଯାଇଥିଲେ। ନୟାଗଡ଼ରେ କୌଣସି ଜିନିଷର ଅଭାବ ନଥିଲା। ସିଧାସଳଖ କଟଣୀରୁ କଲିକତାଯାଏଁ ପଦାର୍ଥ ଓ ମଣିଷ ଯିବାଆସିବା ପାଇଁ ସମସ୍ତ ବ୍ୟବସ୍ଥା ରାଜାଙ୍କ ଅମଳରୁ ଥିଲା। ସଚ୍ଚିଦାନନ୍ଦ ଏ ବ୍ୟବସ୍ଥାର ପରିବର୍ତ୍ତନ କରିନଥିଲେ। ସୁପରିନ୍‌ଟେଣ୍ଡେଣ୍ଟଙ୍କ କୋଠା ଚାରିପାଖରେ ଗାଡି ଘୋଡ଼ା ରହିବା ଜାଗାଠାରୁ ଗଉଡ଼, ଧୋବା, ଭଣ୍ଡାରୀ, ଗୁଡ଼ିଆ, ରୋଷେୟା, ବୋଲକରା, ଚାକର ଚାକରାଣୀଠାରୁ ପାଚିରୀ ଚାରିପଟେ ଓ ମୁଖ୍ୟ ଫାଟକ ଆଗରେ ଦୁଇଦୁଇଟା ବନ୍ଧୁକଧାରୀ ସନ୍ତ୍ରୀଙ୍କର ଚବିଶଘଣ୍ଟିଆ ଡ୍ୟୁଟି ସଦାସର୍ବଦା ରହିଥିଲା ପରଂପରା ଅନୁଯାୟୀ। ଏହି ଅୟସକୁ ସୁରେଶଚନ୍ଦ୍ର ଓ ସତ୍ୟବତୀ ବେଶ୍ ଉପଭୋଗ କରୁଥିଲେ। ସଚ୍ଚିଦାନନ୍ଦଙ୍କର ବନ୍ଧୁ ଓ ଆତ୍ମୀୟମାନେ ମଧ୍ୟ ଏହା ନିଜ ଆଖିରେ ଦେଖିବାପାଇଁ ଦିନେ ଦୁଇଦିନ ପାଇଁ ନୟାଗଡ଼ ପରିଦର୍ଶନ କରୁଥିଲେ।

୧୯୩୩ ମସିହା, ଅଗଷ୍ଟ ମାସ ୭ ତାରିଖର ଏକ ବର୍ଷଣ ସଂଧ୍ୟାରେ ସୁଶୀଳାଦେବୀ ଗର୍ଭବେଦନାର ସୂଚନା ଦେଲେ। ଡାକ୍ତରାଣୀ, ନର୍ସ ଓ ବାଳମତୀ ଦେବୀଙ୍କ ତତ୍ତ୍ୱାବଧାନରେ ସମସ୍ତ କାର୍ଯ୍ୟ ଉଚିତ ଭାବରେ ସଂପାଦନା ହେଲା। ସୁପରିନ୍‌ଟେଣ୍ଡେଣ୍ଟଙ୍କ ଉଆସରୁ ଖବରଟା ଧୀରେ ଧୀରେ ନୟାଗଡ଼ ସହର ଗଳିକନ୍ଦିରେ ପହଞ୍ଚିଗଲା। ଝିପିଝିପି ବର୍ଷାଯୋଗୁ ଲୋକେ ବାହାରକୁ ବାହାରୁ ନଥିଲେ। ଉଆସ ପାଖ ସନ୍ତ୍ରୀ ରାତି ବାରଟା ଯାଏ ଘଣ୍ଟା ପିଟି ନିର୍ଘଣ୍ଟ ଜଣାଇଲେ। ରାତ୍ର ଏକଘଣ୍ଟା ଅନ୍ତେ ପ୍ରାୟ କୋଡ଼ିଏ ମିନିଟ ବେଳକୁ ଉଆସ ଭିତରୁ "କୁଆଁକୁଆଁ" ରବ ଶୁଭିଲା। ଘରର ଅନେକ ଲୋକ ଉଜାଗର ଥିଲେ। ପିଲାମାନେ ଖାଲି ଶୋଇ ଯାଇଥିଲେ। କବାଟ ଖୋଲି ବାଳମତୀ ଦେବୀ ଏନ୍ତୁଡ଼ିଶାଳରୁ ବାହାରି ଆସି ପାଟିକଲେ "ମିଠେଇ ବାଣ୍ଟରେ। ପୁଅ ହେଇଛି।" ଘରଟାଯାକ ଉଠି ଛିଡ଼ା ହେଇଗଲେ। ଗୁଡ଼ିଆ ମିଠେଇ ଥାଳିଧରି ସାହେବଙ୍କ କୋଠରୀ ଆଡ଼କୁ ଦଉଡିଲା। ଭଣ୍ଡାରି ଦଉଡିଯାଇ ମୁଖ୍ୟଫାଟକ ପାଖର ସନ୍ତ୍ରୀଙ୍କୁ ଜଣାଇଲା ଏ ଶୁଭ ଖବରଟା। ଦୁଇପଟର ଦୁଇଜଣ ସନ୍ତ୍ରୀ ଏକସଙ୍ଗରେ ଏକନଳିଆ ଦୁଇଟିଯାକ ବନ୍ଧୁକ କାନ୍ଧ ଉପରକୁ ଉପରମୁହାଁ ଟେକି ଦେଇ ଢ଼ୋ-ଢ଼ୋ ଫୁଟେଇ ଦେଲେ-ଖୁସିରେ। ସାରା ସହର ଜାଣିଲା ସାହେବଙ୍କ ପୁଅ ହେଲା। ସକାଳ ପହରକୁ ସହରଟାଯାକ ଚର୍ଚ୍ଚା ଏ ବିଷୟରେ। ଅଧସ୍ତନ କର୍ମଚାରୀ, ପାତ୍ରମନ୍ତ୍ରୀ, ଭଲଲୋକ,

ଅମଲା, ସନ୍ତ୍ରୀ ସମସ୍ତେ ଆସିଲେ ସାହେବଙ୍କୁ ବଧେଇ ଜଣାଇବାକୁ ହାତରେ କିଛି କିଛି ଭେଟି ଧରି। ଏ ଥିଲା ସେତେବେଳର ଚଳଣି।

ଏକୋଇଶଦିନ ପରେ ଖୁବ ଯାକଜମକରେ ନୟାଗଡ଼ରେ ପାଳନ କରାଗଲା ସତ୍ୟନାରାୟଣ ପୂଜା। ବାଳମତୀ ଦେବୀ ଓ ସୁଶୀଳା ଦେବୀଙ୍କ ଜଗନ୍ନାଥଙ୍କ ପାଖରେ ଜଣାଣ ଥିଲା ପୁଅଟିଏ ହେଲେ ପ୍ରତି ମାସରେ ସତ୍ୟନାରାୟଣ ପୂଜା କରିବେ। ଖଣ୍ଡପଡ଼ା ଗଡ଼ରେ ସେତେବେଳେ ସୁପରିନଟେଣ୍ଡେଣ୍ଟ ଥାଆନ୍ତି ଜନାର୍ଦ୍ଦନ ପୂଜାରୀଙ୍କ ବଡ଼ଭାଇ ପ୍ରସନ୍ନ କୁମାର ପୂଜାରୀ। ସେ ଅତି ନିଷ୍ଠାପର ସରଳ ଲୋକଟିଏ। ବଡ଼ ବଚନ ରକ୍ଷାକାରୀ। ସଚ୍ଚିଦାନନ୍ଦ ଖବର ପଠାଇଲେ ବଡ଼ଭାଇଙ୍କ ପାଖକୁ "ଦାଦା, ତୁମେ ଯେମିତି ହେଲେ ଆସିବ। ପୁଅର ନାଁ ଦେବ।" ପ୍ରସନ୍ନ କୁମାର ଆଗଦିନ ସନ୍ଧ୍ୟାରେ ଖଣ୍ଡପଡ଼ାରୁ ନୟାଗଡ଼ ବାହାରିଲେ ଗାଡ଼ିରେ। ତୋଫା ଜନ୍ମରାତିଟାରେ, ନୟାଗଡ଼ରେ ପହଞ୍ଚି ଶିଶୁସନ୍ତାନଟିକୁ କୋଳରେ ଧରି ସତ୍ୟନାରାୟଣ ପୂଜା ପରେ ତିନିଥର କାନରେ ଫୁଙ୍କି କହିଦେଲେ- "ଶରତଚନ୍ଦ୍ର", "ଶରତଚନ୍ଦ୍ର", "ଶରତଚନ୍ଦ୍ର"।

ପରବର୍ତ୍ତୀ ଦଶମାସ ପାଇଁ ସଚ୍ଚିଦାନନ୍ଦ ନୟାଗଡ଼ର ପ୍ରଶାସକ ଭାବରେ ନିର୍ବିବାଦରେ, ସ୍ୱଚ୍ଛନ୍ଦରେ ଜୀବନ ବିତାଇଥିଲେ। ସରକାର ନୂତନ ରାଜାଙ୍କ ନାମ ଘୋଷଣା କରିବାରେ ବେଶୀ ସମୟ ନେଇନଥିଲେ। ଉଚିତ ବ୍ୟକ୍ତିକୁ ରାଜଗାଦିରେ ବସେଇ ସଚ୍ଚିଦାନନ୍ଦ ପ୍ରାୟ ଦେଢ଼ବର୍ଷ ପରେ ଖୋର୍ଦ୍ଧାକୁ ପ୍ରତ୍ୟାବର୍ତ୍ତନ କଲେ। ସବଡେପୁଟି ଓ ଟ୍ରେଜେରୀ ଅଫିସର ଭାବରେ ଖୋର୍ଦ୍ଧାରେ ରହିଲେ। ଇଂଲିଶ୍ ବୁଇକ୍ କଳାରଂଗର ଗାଡିଟିଏ କିଣିଲେ। ମଟର ସାଇକେଲ ପରିବର୍ତ୍ତେ କଳାରଂଗର ଏ 'ବୁଇକ' ଗାଡ଼ିଟି ପ୍ରାୟ ତିନିଚାରି ବର୍ଷଯାଏ ସେ ବ୍ୟବହାର କରିଥିଲେ। ଏହାପରେ ପୁନର୍ବାର ପୁରୀ ସଦରକୁ ବଦଳି ହେଲେ। ବଡ଼ଭାଇ ପୂର୍ବତନ କିଲ୍ଲାପାଳ ତ୍ରିବିକ୍ରମ ପୂଜାରୀଙ୍କ "ସୂର୍ଯ୍ୟ ନିବାସ" ସାରଦାଦେବୀ ରୋଡ଼ ବାସସ୍ଥାନରେ ୧୯୪୨ ପର୍ଯ୍ୟନ୍ତ ସେ ଅବସ୍ଥାନ କରିଥିଲେ।

## ସେତେବେଳର ଓଡ଼ିଶାର ଚିତ୍ର - ଖୋର୍ଦ୍ଧା

ସଚ୍ଚିଦାନନ୍ଦଙ୍କ ପରିବାର ୧୯୩୪ ମସିହାରୁ ୧୯୩୮ ମସିହା ପର୍ଯ୍ୟନ୍ତ ସୁରେଶଚନ୍ଦ୍ର, ସତ୍ୟବତୀ, ଶରତଚନ୍ଦ୍ରଙ୍କ ବ୍ୟତୀତ ଆଉ ଦୁଇଟି ପୁତ୍ର ସନ୍ତାନଙ୍କ ଦ୍ୱାରା ପରିବର୍ଦ୍ଧିତ ହୋଇଥିଲା। ନୟାଗଡ଼ରୁ ଖୋର୍ଦ୍ଧା ପ୍ରତ୍ୟାବର୍ତ୍ତନ ପରେ ୧୯୩୬ ମସିହାରେ ସଚ୍ଚିଦାନନ୍ଦ ନିଜଭାଗର ପୈତୃକ ସମ୍ପତ୍ତି ଉପରେ କୋଠା ତିଆରି କରିଥିଲେ। ଏ ତ୍ରିତଳ କୋଠାର ନାମକରଣ ସେ "କମଳନିବାସ" ରଖିଥିଲେ। ଖରାଛୁଟିରେ ସମ୍ବଲପୁର ସହରର ଝାଡୁଆପଡ଼ାରେ ସେ ପରିବାର ସହିତ ରହିଥିବା ବେଳେ ସୁଶୀଳା ଦେବୀ ଦ୍ୱିତୀୟ ପୁତ୍ରସନ୍ତାନ ଜନ୍ମ କରିଥିଲେ। ତାଙ୍କର ନାମକରଣ ହୋଇଥିଲା "ସୁବୋଧଚନ୍ଦ୍ର"। ଜନ୍ମରୁ

ତାଙ୍କର ଦୁର୍ବଳତା ଥିଲା । ଥରେ ରାଗିବା ବା କାନ୍ଦିବା ଆରମ୍ଭ କଲେ ସେ ତାହା ଫେରାଇ ପାରୁନଥିଲେ । ସମ୍ବଲପୁର ସହରର ଗ୍ରୀଷ୍ମକୁ ଶିଶୁପୁତ୍ର ସହ୍ୟ କରିପାରୁ ନଥିଲେ । ତେଣୁ ବାଳମତୀ ଦେବୀ ଓ ସୁଶୀଳା ଦେବୀ ନୂତନ ଜନ୍ମିତ ସନ୍ତାନର ପରିଚର୍ଯ୍ୟାରେ ବେଶୀ ମନୋନିବେଶ କରିଥିଲେ । ମାନପୁର ଗ୍ରାମରୁ ଜଣେ ଗଉଡୁଣୀ ବୟସ୍କା ସ୍ତ୍ରୀଲୋକ ଏ ଶିଶୁପୁତ୍ରଟିକୁ ସଦାସର୍ବଦା ପାଖରେ ରଖି ଦେଢ଼ବର୍ଷ ପର୍ଯ୍ୟନ୍ତ ଯତ୍ନ ନେଉଥିଲେ । ବାଳମତୀ ଦେବୀ ଝିଅ ଓ ଜୋଇଁଙ୍କ ପରିବାରର ମଙ୍ଗଳପାଇଁ ଏ ବ୍ୟବସ୍ଥାଟି କରିଦେଇଥିଲେ । ବର୍ଷେ ସମୟ ମଧ୍ୟରେ "କମଳ ନିବାସ"ର କାର୍ଯ୍ୟ ଶେଷ ହେଲା ଓ ସେଥିପାଇଁ ସଚ୍ଚିଦାନନ୍ଦ ମୋଟ ସାତହଜାର ଟଙ୍କା ଖର୍ଚ୍ଚ କରିଥିଲେ । ଘରର ନକ୍ସା ଓ ସମସ୍ତ ଆସବାବପତ୍ର ନିଜ ବିଦ୍ୟାବୁଦ୍ଧିରେ ଯୋଗାଡ କରି ସେ ଏ ଘରଟିକୁ ତିଆରି କରିଥିଲେ ।

୧୯୩୭ ମସିହାବେଳକୁ ସଚ୍ଚିଦାନନ୍ଦ ଖୋର୍ଦ୍ଧା ଓ ପୁରୀଠାରେ କାର୍ଯ୍ୟରତ ଥିଲେ । ତେଣୁ ତାଙ୍କ ପରିବାରର ଲୋକେ, ବିଶେଷରେ ସ୍ତ୍ରୀ ସୁଶୀଳାଦେବୀ ଜଗନ୍ନାଥଙ୍କ ଉପରେ ଅଗାଧ ଭକ୍ତି ଓ ଆସ୍ଥା ରଖୁଥିଲେ । ଏହାର ପ୍ରଭାବ ସତ୍ୟବତୀ ଓ ଶରତଚନ୍ଦ୍ରଙ୍କ ଉପରେ ପଡ଼ିଥିଲା । ସଚ୍ଚିଦାନନ୍ଦ ଅବଶ୍ୟ ଭଗବାନ ବିଶ୍ୱାସୀ ଥିଲେ, କିନ୍ତୁ ସ୍ତ୍ରୀଙ୍କ ପରି ଧର୍ମପ୍ରାଣା ନଥିଲେ । ପୁରୀ ସହରର ସମସ୍ତ ଯାନିଯାତ୍ରା ଓ ମନ୍ଦିରର ସମସ୍ତ ନିଯୋଗ ବିଷୟରେ ସୁଶୀଳାଦେବୀଙ୍କର ଅଗାଧ ବିଶ୍ୱାସ ଥିଲା । ସେ, ସ୍ୱାମୀଙ୍କ ଗହଣରେ ଏସବୁ କାର୍ଯ୍ୟକ୍ରମରେ ଯୋଗ ନଦେଲେ ମଧ୍ୟ ପୁତ୍ରକନ୍ୟାଙ୍କ ସାଥୀରେ ଦେବାଦେବୀ ଦର୍ଶନ, ପୂଜା ଆରାଧନା କରିବାକୁ ଯାଉଥିଲେ । ସଚ୍ଚିଦାନନ୍ଦ ଏଥିରେ ବାଧା ଦେଉନଥିଲେ । ଘରେ ଜଣେ ଚପରାସୀ ଓ ମାଳୀର ପରିବାର ବୋଲହାକ କରିବାକୁ ଥିଲେ । ମାନପୁର ଗ୍ରାମର ବୃଦ୍ଧାମହିଳାଟି ମଧ୍ୟ ସୁଶୀଳାଦେବୀଙ୍କ ଅନେକ କାମରେ ସହଯୋଗ କରୁଥିଲା । ୧୯୩୮ ମସିହାରେ ସୁଶୀଳା ଦେବୀ ଅଁଳା ନବମୀ ତିଥିରେ ତୃତୀୟ ପୁତ୍ର ସନ୍ତାନଟିକୁ ପୁରୀର ବାସଗୃହରେ ଜନ୍ମଦେଲେ । ମାତା ବାଳମତୀ ଦେବୀ ଏଥର ମଧ୍ୟ ଧାଇର ସମସ୍ତକାର୍ଯ୍ୟ ପୁରୀରେ ରହି ଡାକ୍ତରାଣୀଙ୍କ ତତ୍ତ୍ୱାବଧାନରେ ସମାପନ କରିଥିଲେ । ତୃତୀୟ ପୁତ୍ରଙ୍କ ନାମ ଦିଆଗଲା "ସୁନୀଳଚନ୍ଦ୍ର" । ସେ ପିଲାଟିଦିନରୁ ସୁସ୍ଥସବଳ ଥିଲେ ।

ସଚ୍ଚିଦାନନ୍ଦ ଏ ସମୟରେ ତାଙ୍କର ପୁରୁଣା "ବୁଇକ୍" ଗାଡିଟିକୁ ବଦଳାଇ ୧୯୨୭ ମସିହାର ଗୋଟିଏ ହୁଡ୍‌ଲଗା ଚେଭରଲେଟ ଗାଡି କିଣିଲେ । ଏହାର ପଛରେ ଗୋଟିଏ ଟ୍ରେଲର ଲଗେଇବାର ବନ୍ଦୋବସ୍ତ ମଧ୍ୟ କରିଥିଲେ । ଏ ଗାଡ଼ିରେ ସପରିବାର ସେ କଟକ, ପୁରୀ, ସମ୍ବଲପୁର ଜିଲ୍ଲାର ସବୁ ଅଞ୍ଚଳକୁ ଦଉଡ଼ାରେ ଓ ପାରିବାରିକ ତୀର୍ଥ ଭ୍ରମଣରେ ଯାଉଥିଲେ । ଘରେ କାର୍ଯ୍ୟ କରୁଥିବା ଚପରାସୀଟିକୁ ଗାଡି ବିଷୟରେ ସମସ୍ତଜ୍ଞାନ ଦେବା ଓ ଗାଡି ଚଳାଇବା ଶିଖାଇ ଦେଉଥିଲେ । କିନ୍ତୁ ଷ୍ଟିଅରିଂ ପାଖରେ ବସି ନିଜେ ଗାଡି ନଚଳାଇଲେ ସେ କେବେ କେଉଁଆଡ଼େ ହେଲେ ଯାଉନଥିଲେ ।

୧୯୩୭ ଓ ୧୯୩୮ ମସିହାରେ ସଚ୍ଚିଦାନନ୍ଦ ପୁରୀ ଓ ଖୋର୍ଦ୍ଧା ମଧ୍ୟରେ ଦୁଇତିନିଥର ବିଶେଷ କାମପାଇଁ ବଦଳି ହୋଇଥିଲେ । ପରିବାରକୁ ଛାଡ଼ି ସେ ଅଳ୍ପଦିନ ପାଇଁ ମଧ୍ୟ ଏକା ରହିବାକୁ ପସନ୍ଦ କରୁନଥିଲେ । ତେଣୁ ନିଜ ଗାଡ଼ିରେ ପରିବାରକୁ ନେବାଆଣିବା ତାଙ୍କ ଅଭ୍ୟାସରେ ପରିଣତ ହୋଇଥିଲା । ସବା ବଡ଼ପୁଅ ସୁରେଶଚନ୍ଦ୍ର ମଧ୍ୟ ବାପାଙ୍କ ତତ୍ତ୍ୱାବଧାନ ନରହିଲେ ମା'ଙ୍କୁ ମାନୁନଥିଲେ । କିଶୋର ବୟସରେ ଖାଇବା, ଖେଳିବା, ବୁଲିବାପାଇଁ ତାଙ୍କ ମନ ସବୁବେଳେ ଚଞ୍ଚଳ ହେଉଥିଲା । ଅତ୍ୟଧିକ ବୁଦ୍ଧିମାନଥିବା ହେତୁ ସେ ବହୁଲୋକଙ୍କୁ ପ୍ରଭାବିତ କରିପାରୁଥିଲେ । ନିକର ଆଂଶିକ ମୂକବଧିରପଣର ସୁବିଧା ନେଇ ସେ ସାଧାରଣ ଲୋକଙ୍କ ଦୟାର ପାତ୍ର ହେଉଥିଲେ । କିନ୍ତୁ ଟିକିଏ ସୁବିଧା ପାଇଲେ ଏମିତି କ୍ଷତିଟିଏ କରୁଥିଲେ, ଯେଉଁଥିରେ ପିତା ସଚ୍ଚିଦାନନ୍ଦ ଓ ମାତା ସୁଶୀଳାଙ୍କୁ ଅକଥନୀୟ ଲଜ୍ଜା ସହ୍ୟ କରିବାକୁ ପଡୁଥିଲା । ବେଳେବେଳେ ହଜାରଟଙ୍କାର ଅର୍ଥଦଣ୍ଡ ମଧ୍ୟ ଭୋଗିବାକୁ ପଡୁଥିଲା । ପିତା ସଚ୍ଚିଦାନନ୍ଦ ଦିନେଦିନେ ରାତିରେ ନିଜ କୋଠରୀରେ ଉଜାଗର ରହି ସୁରେଶଚନ୍ଦ୍ରଙ୍କୁ ବୁଝାଉଥିଲେ । ସୁଶୀଳାଦେବୀ ପାଖରେ ଥିଲେ ମଧ୍ୟ ସଚ୍ଚିଦାନନ୍ଦ ଏତେ ଉତ୍‌କ୍ଷିପ୍ତ ହେଇଯାଉଥିଲେ ଯେ ବେତ ବା ହାତରେ ପିଟି ପକାଉଥିଲେ । ଏଥିପାଇଁ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ଯେଉଁ ମନାନ୍ତର ହେଉଥିଲା ତାହାର ନୀରବ ଦର୍ଶକ ଥିଲେ ଦୁଇଟି ଶିଶୁ ସନ୍ତାନ । ସତ୍ୟବତୀ ଓ ଶରତ ଚନ୍ଦ୍ର । ତେଣୁ ଅତି ଛୋଟବେଳୁ ମାତାପିତାଙ୍କ ସମସ୍ୟା ବିଷୟରେ ସଚେତନ ଥିଲେ ଏ ଦୁଇଜଣ । ପାଠପଢ଼ାର ବୟସ ହୋଇଯାଇଥିବାରୁ ପୁରୀରେ ସଚ୍ଚିଦାନନ୍ଦ ଜଣେ ଅଧସ୍ତନ କର୍ମଚାରୀଙ୍କୁ ନିଜଘର ପାଖରେ ସପରିବାର ରଖି ସତ୍ୟବତୀ ଓ ଶରତ ଚନ୍ଦ୍ରଙ୍କ ପାଠପଢ଼ାର ବନ୍ଦୋବସ୍ତ କରିଦେଇଥିଲେ । ବେଳେବେଳେ ସୁରେଶଚନ୍ଦ୍ର ମଧ୍ୟ ଭାଇଭଉଣୀଙ୍କ ସହିତ ପଢ଼ିବା ପାଇଁ ବସୁଥିଲେ । ସେ ଘରୋଇ ଶିକ୍ଷକଙ୍କ ନାଁ ଥିଲା ଶ୍ରୀ ଅଗାଧୁ ମିଶ୍ର ।

## ମୋର ପ୍ରାଥମିକ ପାଠପଢ଼ା

ପୁରୀପରି ଖୋର୍ଦ୍ଧାରେ ଜଣେ ଘରୋଇ ଶିକ୍ଷୟିତ୍ରୀ, ସଚ୍ଚିଦାନନ୍ଦଙ୍କ ପରିବାରର ପିଲାଙ୍କୁ ପଢ଼ାଇବାପାଇଁ ନିଯୁକ୍ତା ହୋଇଥିଲେ । ସେ ଜଣେ ପ୍ରତିଭାଶାଳିନୀ ଓ ଅବସର ନେଇଥିବା ଖ୍ରୀଷ୍ଟିୟାନ ଶିକ୍ଷୟିତ୍ରୀ ଥିଲେ । ସେ ଅବିବାହିତା ଥିଲେ । ତାଙ୍କର ନାଁ ଥିଲା ଶ୍ରୀମତୀ ଇଚ୍ଛାବତୀ ପାତ୍ରୀ । ସେ ତାଙ୍କର ଛୋଟ ଭାଇଙ୍କ ପରିବାର ସହିତ ଖୋର୍ଦ୍ଧାର ଚର୍ଚ୍ଚପାଖରେ ନିଜଘରେ ରହୁଥିଲେ । ସଚ୍ଚିଦାନନ୍ଦଙ୍କ ପରିବାରର ଚାରୋଟି ବଡ଼ସନ୍ତାନ ସନ୍ତତିଙ୍କ ପାଠପଢ଼ା ଓ ବ୍ୟବହାର ପାଇଁ ତାଙ୍କର ଅବଦାନ କଳ୍ପନାତୀତ ଥିଲା । ଖୋର୍ଦ୍ଧାରେ ତାଙ୍କ କାର୍ଯ୍ୟ ସମାପନ ପରେ ସଚ୍ଚିଦାନନ୍ଦ ତାଙ୍କୁ ନିଜ ପରିବାରର ସଦସ୍ୟାଭାବରେ ପୁରୀକୁ ନେଇ ଆସିଥିଲେ । ୧୯୩୮ ରୁ ୧୯୪୨ ପର୍ଯ୍ୟନ୍ତ ଏ ଷଷ୍ଠୀପୂର୍ତ୍ତି ମହିଳାଟି

ସୁରେଶଚନ୍ଦ୍ର, ସତ୍ୟବତୀ ଓ ଶରତଚନ୍ଦ୍ର ଓ ଶିଶୁ ସୁବୋଧଚନ୍ଦ୍ରଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇଥିଲେ।

ସ୍କୁଲରେ ନାମ ଲେଖାଇବା ପାଇଁ ସୁରେଶଚନ୍ଦ୍ର ଉପଯୁକ୍ତ ନଥିଲେ। କିନ୍ତୁ ସତ୍ୟବତୀ ଓ ଶରତଚନ୍ଦ୍ର ଖୋର୍ଦ୍ଧା ହାଇସ୍କୁଲକୁ ଲାଗି ପ୍ରାଥମିକ ସ୍କୁଲର ଦ୍ୱିତୀୟ ଶ୍ରେଣୀରେ ବସି ପାଠପଢ଼ିବାକୁ ଉପଯୁକ୍ତ ବିବେଚିତ ହୋଇଥିଲେ। ସତ୍ୟବତୀ ପୁରୀର ଏକମାତ୍ର ରାମଚଣ୍ଡୀ ମାଇନର ଗାର୍ଲସ୍ ସ୍କୁଲର ଛାତ୍ରୀଥିଲେ। ଶରତଚନ୍ଦ୍ର ଖୋର୍ଦ୍ଧା ମାଇନର ସ୍କୁଲରୁ ଆସି ବାଲିସାହି ଏମ୍.ଇ. ସ୍କୁଲର ତୃତୀୟ ଶ୍ରେଣୀରେ ୧୯୪୦ ମସିହାରେ ନାଁ ଲେଖିଥିଲେ। କୌଣସି କାରଣବଶତଃ ସେହିଠାରେ ତାଙ୍କର ଜନ୍ମଦିନଟି "ଆଠ ଅଗଷ୍ଟ ଉଣେଇଶହ ଚଉତିରିଶ" ବୋଲି ଦରଜ ହୋଇଗଲା, ଯାହା ମାଟ୍ରିକୁଲେସନ ସାର୍ଟିଫିକେଟ୍‌ରେ ମଧ୍ୟ ରହିଗଲା। ଅସଲ ଜନ୍ମଦିନର ଏକବର୍ଷ ବଢ଼େଇ ସ୍କୁଲ ରେଜିଷ୍ଟରରେ ଲେଖିବା ପ୍ରଥା ସେତେବେଳେ ବ୍ୟାପକ ଥିଲା।

୧୯୪୦ ବେଳକୁ ପୁରୀରେ ସଚ୍ଚିଦାନନ୍ଦଙ୍କର ଚତୁର୍ଥ ପୁତ୍ର ଜନ୍ମ ହୋଇଥିଲେ। ତାଙ୍କର ନାମ ଦିଆଯାଇଥିଲା "ଶିଶିରଚନ୍ଦ୍ର"। ଶିଶିରଚନ୍ଦ୍ରଙ୍କ ଜନ୍ମ ବେଳକୁ ସତ୍ୟବତୀ ଓ ଶରତଚନ୍ଦ୍ର ସାଂସାରିକ ଜଞ୍ଜାଳ, ପରିବାରର ସମସ୍ୟା ଓ ନିଜର ଦାୟିତ୍ୱ/କର୍ତ୍ତବ୍ୟ ବିଷୟରେ ବୋଧହୁଏ ବୟସ ତୁଳନାରେ ଅନେକ ଅଭିଜ୍ଞତା ପାଇ ସାରିଥିଲେ। ନିଜ ବୟସ ତୁଳନାରେ ଏ ଦୁଇଜଣ ପରିବାରର ଲୋକଙ୍କ ଚରିତ୍ର ଓ ସମସ୍ୟା ବିଷୟରେ ଜଣେଜଣେ ପ୍ରାପ୍ତବୟସ୍କ ପରି ଧାରଣା ରଖୁଥିଲେ।

ପୁରୀ, ଖୋର୍ଦ୍ଧାର ପ୍ରାକୃତିକ ଅବସ୍ଥିତି ସେତେବେଳେ ଯାହାଥିଲା ପଚାଶବର୍ଷ ମଧ୍ୟରେ ତାହା ସଂପୂର୍ଣ୍ଣ ପରିବର୍ତ୍ତନ ହୋଇସାରିଛି। ତାହାର ବର୍ଣ୍ଣନା କଲେ ବର୍ତ୍ତମାନର ଲୋକେ ସ୍ୱପ୍ନରାଜ୍ୟର ବର୍ଣ୍ଣନା ଭାବରେ ଗ୍ରହଣ କରିବେ। ପୁରୀର ମାଟିରେ, ସବୁଠାରେ ବାଲିର ଅଂଶ ଏତେ ଦେଖାଯାଉ ଥିଲା ଯେ, ତାହା ପ୍ରାୟ ଏକ ରୂପେଲି ସହର ପରି ମନେହେଉଥିଲା। ବଡ଼ଦାଣ୍ଡ ଏତେ ପ୍ରଶସ୍ତ ଓ ବିସ୍ତାରିତ ଥିଲା ଯେ ସେଠାରେ ଚାଲିବା ବେଳେ ନିଜକୁ ଗର୍ବ ଲାଗୁଥିଲା। ସମୁଦ୍ର କୂଳର ବେଳାଭୂମୀ ବର୍ତ୍ତମାନଠାରୁ ଯଥେଷ୍ଟ ଚଉଡ଼ା, ସ୍ୱଚ୍ଛ ଓ ସମୁଦ୍ରଜାତ ଦ୍ରବ୍ୟ ଓ ଜୀବମାନଙ୍କର ଦ୍ୱାରା ପରିପୂର୍ଣ୍ଣ ଥିଲା। ଯେଉଁ ଗମନାଗମନ ରାସ୍ତା ଗୁଡ଼ିକ ପୁରୀ ଓ ଖୋର୍ଦ୍ଧାକୁ ସଂଯୋଗ କରୁଥିଲା ତାହା ସବୁବେଳେ ଗେରୁଆ ମୋରମ ଓ ନାଲିରଂଗରେ ଆଚ୍ଛାଦିତ ଥିଲା। ଦୁଇପାଖର ଘାସବୁଦା ଓ ଚାଷଜମି ସବୁଠାରେ ସବୁଜର ପ୍ରଲେପ। ଏହିସବୁ ଫିକା ଶୁଆପକ୍ଷୀଆ ରଂଗଠାରୁ ଘନନୀଳ ବଟବୃକ୍ଷର ପତ୍ର ପରି ବହୁବର୍ଣ୍ଣ ରଂଗରେ ରଂଗାୟିତ ହୋଇ ରହୁଥିଲା ଏଠାର ପ୍ରକୃତି-ବର୍ଷସାରା ବହୁ କିସମର ଗଛ ଯାହା ଏବେ ଜଙ୍ଗଲରେ ମଧ୍ୟ ଦେଖିବାକୁ ମିଳୁନାହିଁ ତାହା ଖୋର୍ଦ୍ଧା ଅଞ୍ଚଳକୁ ଓ ବରୁଣେଇ ପାହାଡ଼କୁ ଢାଙ୍କି ରଖିଥିଲା। ସରକାରୀ ବନବିଭାଗ ଓ ସରକାରୀ ବାସଗୃହର

ପାଚେରୀ ମଧ୍ୟରେ ଅନେକ ପ୍ରକାର ବୃକ୍ଷରୋପଣ କରା ହେଉଥିଲା । ସେଥିପାଇଁ ବଟବୃକ୍ଷ, ଓସ୍ତଗଛ, ଲିମ୍ବଗଛ, ଆମ୍ବଗଛ, କାମୁଗଛ, ଶାଳ ଓ ପିଆଶାଳ ଗଛ, ଝାଉଁଗଛର ପ୍ରାଚୂର୍ଯ୍ୟ ଥିଲା । ଏ ଦୁଇଟି ସହରର ଚାରିପାଖରେ ଇଂରେଜ ସରକାରଙ୍କ ଅମଳରୁ ଭାରତୀୟ ବର ଓ ଓସ୍ତଗଛର ଯେଉଁ ପ୍ରଭାବ ଭାରତ ସବୁ ଅଞ୍ଚଳରେ ଆଜିପର୍ଯ୍ୟନ୍ତ ଦେଖାଯାଏ, ତାହାର ଉଦାହରଣ ହେଉଛି ଓଡ଼ିଶାର ପ୍ରତ୍ୟେକଟି କୋର୍ଟ କଚେରୀ ପରିସର । କୌଣସି ଏକ ପୁରାତନ କୋର୍ଟ କଚେରୀର ପରିସର ମଧ୍ୟରେ ଏ ଦୁଇଟି ସଂପୂର୍ଣ୍ଣ ଭାରତୀୟ ଧାର୍ମିକ ବୃକ୍ଷର ଲାଳନପାଳନ ଓ ରୋପଣ ସ୍ୱାଧୀନତା ପାଇବା ପର୍ଯ୍ୟନ୍ତ ଏକ ସାଧାରଣ କଥା ଥିଲା । ବେଳେବେଳେ ଏପରି ଗଛତଳେ ଖରାଦିନେ ଉଠା କୋର୍ଟ କଚେରୀ ବସୁଥିବାର ଦେଖାଯାଉଥିଲା । ଖୋର୍ଦ୍ଧା ସହର ଓ ତାହାରି ପରିବେଶ ଥିଲା ସଂପୂର୍ଣ୍ଣ ସବୁଜମୟ । ମାଙ୍କଡାପଥରର ଘର ଓ ପାଚେରୀ, ଚାଳଛପର ଘର ଭିତରେ ଗେରୁଆ ନାଲୀ ରଂଗ ମଧ୍ୟରେ ଚୂନଧଉଳା ଘରଗୁଡ଼ିକ ଅତି ଆକର୍ଷଣୀୟ ଦେଖାଯାଉଥିଲେ । ନଡ଼ିଆ, ଗୁଆ, କାମୁକୋଳି, ପିଜୁଳି, ଲଙ୍କା ଆମ୍ବଗଛର ପ୍ରାଚୂର୍ଯ୍ୟଥିଲା ଗାଁ ଓ ସହରର ଚାରିପାଖରେ । ଗଉଡୁଣୀମାନେ ଖାଣ୍ଟି ଗୁଆଘିଅ, ଖିରିସା, ଛେନା ଓ ଖୁଆ ବିକ୍ରିକରିବାକୁ ଘରଘର ବୁଲୁଥିଲେ । ଖସାଲଡୁ, ସୋରିଷ, ରାଶି, କଡ଼ାତେଲ ଓ ଗୁଡ଼ ଋତୁ ସମୟରେ ଚାଷୀଟିଏ ସହରର ଘରେ ଘରେ ବିକ୍ରି କରିଯାଉଥିଲା । ଜଙ୍ଗଲ ସାହେବ କୁଟଲା ସାହାବଙ୍କ କୋଠିଟି ଥିଲା ବିରାଟ ବଡ଼ । ସେଥିରେ ଅନେକଗୁଡ଼ିଏ ବଡ଼ ବରଗଛ ଥିଲା ଓ ତା'ର ଓହଳ ଏତେ ଲମ୍ବଥିଲା ଯେ ତାହାକୁ ଦୋଳି କରି ଝୁଲିବା ଓ ଖେଳିବା ଆମର ନିତିଦିନିଆ କାର୍ଯ୍ୟକ୍ରମ ହେଉଥିଲା । ବାଲ୍ୟକାଳର ରହସ୍ୟ ଓ ରୋମାଞ୍ଚ ମଧ୍ୟରେ ଡାକ୍ତର ଜଲାଲଙ୍କ ପୁତ୍ରକନ୍ୟା ସଗୁଫା, ହଫିସା, ନିଜାମ ଓ ଇକବାଲ ତଥା ସତ୍ୟବତୀ ଓ ଶରତଚନ୍ଦ୍ର ଯେଉଁ ଅଳ୍ପ କେତେଦିନ ବିତେଇଥିଲେ ତାହାର ଏକ ମଧୁର ପବିତ୍ର ସ୍ମୃତି ଏବେବି ଏ ଦୁଇଜଣଙ୍କୁ ଆନନ୍ଦ ଦିଏ । ସଦାବିହାରୀ, ମଲ୍ଲୀ, ଚମ୍ପା, କାଠଚମ୍ପା, ରଂଗିଣୀ, ଟଗର, କନିଅର, ଜୁଇ, ଯାଇ, କିଆ, କେତକି, ମାଳତୀ, କେନା, ଗଙ୍ଗଶିଉଳୀ, ଅରଖ, ଦୁଦୁରା, ଗୁଞ୍ଜ, ଗୁଗୁଛିଆ, ସାରୁଗଛ ଭିତରେ ବୁଲିବୁଲି କଙ୍କି ଓ ପ୍ରଜାପତି ଧରିବାର ଆହ୍ୱାନ ଓ ଉନ୍ମାଦନା ଏବେବି ସତ୍ୟବତୀ ଓ ଶରତଚନ୍ଦ୍ରଙ୍କ ସ୍ମୃତିକୁ, ଏ ଦୁଇଟି ସହରର ଅବଦାନ ଆଚ୍ଛାଦିତ କରି ରଖିଛି । ଏବେବି ନାମସ୍ମରଣ ମାତ୍ରେ ଏସବୁ ଫୁଲ ଓ ପରିବେଶର ବାସ୍ନା ଏମାନଙ୍କ ଶରୀରକୁ ପ୍ଲାବିତ କରିପକାଏ ।

## ପୁରୀ ସହର

ଷୋହଳ ବର୍ଷ ବୟସରେ ସୁରେଶଚନ୍ଦ୍ର ଜଣେ ସୁଦୃଶ୍ୟ ସ୍ୱାସ୍ଥ୍ୟବାନ ଯୁବକ ଭାବରେ ଓ ଫୁଟବଲ ଖେଳାଳୀ ଭାବରେ ଜଣାଶୁଣା ଥିଲେ । ସ୍ପଷ୍ଟ ଭାବରେ କଥାବାର୍ତ୍ତା କରିପାରୁ

ନଥିଲେ ମଧ୍ୟ ଠାର ନାର ଓ ଅଭିନୟ କରି କହିବାରେ ସେ ଖୁବ୍ ଦକ୍ଷ ଥିଲେ । ସବୁଠାରୁ ଆଶ୍ଚର୍ଯ୍ୟ, ଯେଉଁ ଅଭିନୟ ଓ ନୃତ୍ୟ ସେ ଥରେ ଦେଖୁଥିଲେ ତାହାକୁ ଅତି ସୂଚାରୁ ରୂପରେ ଅନୁକରଣ କରି ପରିବେଷଣ କରୁଥିଲେ । ତବଲା ବା ତାଳବାଦ୍ୟକୁ ଶରୀରର ଅଙ୍ଗଭଙ୍ଗୀ ସହିତ ମିଳେଇ ସେ ଏଇ ବୟସରେ ମଞ୍ଚ ଉପରେ ନୃତ୍ୟ କରିବାର ଦକ୍ଷତା ଦେଖାଇ ଲୋକଙ୍କୁ ଚମତ୍କୃତ କରିଦେଉଥିଲେ । ଲୋକେ ତାଙ୍କର ଏ ବିରଳ ପ୍ରତିଭା ପାଇଁ ତାଙ୍କୁ ସ୍ନେହ ଶ୍ରଦ୍ଧାରେ ବିଭିନ୍ନ ଅନୁଷ୍ଠାନ ମାନଙ୍କୁ ନିମନ୍ତ୍ରଣ କରିନେଉଥିଲେ । ପୁତ୍ରର ସମସ୍ତଙ୍କ ସହ ଏପରି ମିଶିବାଟାକୁ ସଚ୍ଚିଦାନନ୍ଦ ପସନ୍ଦ କରୁନଥିଲେ । ବାଲ୍ୟକାଳରୁ ମାତାଙ୍କ ସ୍ନେହରୁ ବଞ୍ଚିତ ଓ କିଶୋର ଅବସ୍ଥାରେ ସାବତ ମା'ଙ୍କୁ ସଂପୂର୍ଣ୍ଣ ଭାବରେ ଗ୍ରହଣ କରି ପାରୁନଥିବା ଜଣେ ଯୁବକର ମାନସିକ ବ୍ୟତିକ୍ରମ ବିଷୟରେ ସଚ୍ଚିଦାନନ୍ଦ ସଜାଗ ଥିଲେ । ତାହାହିଁ ଘଟିଲା ପୁରୀ ରହଣି ମଧ୍ୟରେ । ସୁରେଶଚନ୍ଦ୍ର ବାପାଙ୍କ ଆକଟକୁ ମାନିଲେ ନାହିଁ । ଜୋର ଜବରଦସ୍ତି ପଇସା ମାଗି ତାଙ୍କ ସାଙ୍ଗମାନଙ୍କ ସଙ୍ଗରେ ବିଭିନ୍ନ ଅନୁଷ୍ଠାନରେ ଯୋଗ ଦେଲେ । ପିତା ତାଙ୍କୁ ସେଥିରୁ ନିବୃତ୍ତ କରିବାପାଇଁ ଏ.ଆର୍.ପି ର ଜଣେ ସ୍ୱେଚ୍ଛାସେବୀ ଭାବରେ ନିଜର ତତ୍ତ୍ୱାବଧାନରେ ଥିବା ଗୋଟିଏ ବାହିନୀରେ ଯୋଗଦେବାର ସୁଯୋଗ ଦେଲେ । ପୋଲିସ ପୋଷାକପରି ପୋଷାକ ପିନ୍ଧି ଲୋକଙ୍କୁ ଯୁଦ୍ଧର ଭୟାବହ ଧ୍ୱଂସର ଘେର ମଧ୍ୟରୁ ଉଦ୍ଧାର କରିବାର ରେଡ଼କ୍ରସ ପରି ଟ୍ରେନିଂ ସେ ପାଇଲେ । କିଛିଦିନ ପ୍ରଖ୍ୟାତ ଶିଳ୍ପୀ ପୂର୍ଣ୍ଣଚନ୍ଦ୍ର ସିଂଙ୍କ ପାଖରୁ ଚିତ୍ର ଆଙ୍କିବା ବିଦ୍ୟା ମଧ୍ୟ ଶିଖିବାର ସମସ୍ତ ବ୍ୟବସ୍ଥା ସଚ୍ଚିଦାନନ୍ଦ ପୁଅ ପାଇଁ କରିଦେଲେ । ତଥାପି ବୟସ ବଢ଼ିବା ସଙ୍ଗେ ସୁରେଶଚନ୍ଦ୍ର ଅବ୍ୟବସ୍ଥିତ ଚିତ୍ତ ହେବାକୁ ଲାଗିଲେ । କୌଣସି କାର୍ଯ୍ୟରେ ସମ୍ପୂର୍ଣ୍ଣ ମନନିବେଶ କରି ରହିବାକୁ ଚାହିଁଲେ ନାହିଁ । ବାପ ମା'ଙ୍କ ପାଖରେ ରହିବାର ସ୍ପୃହା ଦେଖାଇଲେ ନାହିଁ । ସୁରେଶଚନ୍ଦ୍ରଙ୍କର ଏ ମନୋଭାବ ସଚ୍ଚିଦାନନ୍ଦଙ୍କ ସାମାଜିକ ପ୍ରତିଷ୍ଠା ଉପରେ ଯଥେଷ୍ଟ ଆଞ୍ଚ ଆଣିଲା । ମାନସିକ ସ୍ତରରେ ଓ ଆର୍ଥିକ ଦୃଷ୍ଟିରୁ ସଚ୍ଚିଦାନନ୍ଦଙ୍କୁ ଏପରିସବୁ ଆକସ୍ମିକ ଦୁର୍ଘଟଣାରେ ସୁରେଶଚ଼ନ୍ଦ୍ର ପକାଉଥିଲେ ଯେ ପରିବାରର ମୂକ ସଦସ୍ୟ ଭାବରେ ସତ୍ୟବତୀ ଓ ଶରତଚ଼ନ୍ଦ୍ରହିଁ ଏହା ଦେଖୁଥିଲେ । ସମସ୍ତ ଦୁର୍ଘଟଣାର ବର୍ଣ୍ଣନା କାହାକୁ କହିବା ତାଙ୍କ ପକ୍ଷରେ ସମ୍ଭବ ହେଉନଥିଲା । ଅତି ଦୁଃଖ ଓ ଅନୁଶୋଚନାରେ ସଚ୍ଚିଦାନନ୍ଦ ବେଳେବେଳେ ଦ୍ୱିତୀୟ ପତ୍ନୀଙ୍କର ଜ୍ୟେଷ୍ଠ ସନ୍ତାନ ଶରତଚ଼ନ୍ଦ୍ରଙ୍କୁ ଚାରିପାଞ୍ଚ ବର୍ଷ ବେଳୁ, ବଡ଼ଭାଇଙ୍କୁ ଅନୁସରଣ ନକରିବା ପାଇଁ ବୁଝାଉଥିଲେ । ୧୯୪୦ ମସିହା ପର୍ଯ୍ୟନ୍ତ ସଚ୍ଚିଦାନନ୍ଦ ପୁରୀ, ସମ୍ବଲପୁର, ଲାହୋର ଟ୍ରେନିଂ, ଖୋର୍ଦ୍ଧାର ସବଡେପୁଟି କାମରେ ବ୍ୟସ୍ତ ରହି ନିଜ ଚେଭରଲେଟ ଗାଡ଼ିରେ ଦଉଡ଼ା କରୁଥିଲେ । ସେ ସପରିବାର ନିଜେ ଗାଡି ଚଳେଇ ଯାଉଥିଲେ । ଏ ସମୟ ମଧ୍ୟରେ ସତ୍ୟବତୀ ଓ ଶରତଚ଼ନ୍ଦ୍ରଙ୍କ ପାଠପଢ଼ାରେ ବ୍ୟାଘାତ ଜନ୍ମିଲା । ତେଣୁ ଦ୍ୱିତୀୟ ଶ୍ରେଣୀରେ ହିଁ ଅନୁଷ୍ଠାନିକ ଭାବରେ ଏ ଦୁଇଜଣଙ୍କର ନାମ ଲେଖା ହୋଇଥିଲା ।

ଗୃହ ଶିକ୍ଷକ ଓ ଶିକ୍ଷୟିତ୍ରୀଙ୍କ ପରିଚ଼ର୍ଯ୍ୟାରେ ଯେଉଁ ପାଠପଢ଼ା ହୋଇଥିଲା ତାହା ଏ ଦୁଇଜଣଙ୍କର ପରବର୍ତ୍ତୀ ଜୀବନରେ ଯଥେଷ୍ଟ ଫଳପ୍ରଦ ହୋଇଥିଲା । ଅସ୍ପଷ୍ଟ ଭାବରେ ଯାହା ସ୍ମରଣରେ ଆସେ ସତ୍ୟବତୀ ଓ ଶରତଚ଼ନ୍ଦ୍ର ଖେଳସାଥି ଭାବରେ ସଦାସର୍ବଦା ସାଥିହୋଇ ରହୁଥିଲେ । ଖୋର୍ଦ୍ଧାରେ ଘର ପାଖରେ ରହୁଥିବା ଡକ୍ଟର ଜଲାଲଙ୍କ ପରିବାର ସହିତ ଏ ଦୁଇଜଣଙ୍କର ଅନେକ ମଧୁର ସ୍ମୃତି ଅଛି । ଡକ୍ଟର ଜଲାଲଙ୍କ ବାସଗୃହ କଟକର ପି.ଏମ୍.ଏକାଡ଼େମୀ ସ୍କୁଲ ଆଗରେ ଥିଲା । ଶ୍ରୀମତୀ ଜଲାଲ ପୂର୍ବବଙ୍ଗର ଏକ ସମ୍ଭ୍ରାନ୍ତ ମୁସଲମାନ ପରିବାରର ଝିଅ ଥିଲେ । ମୋ ମା ବଙ୍ଗଳା ପଢ଼ିବା ଓ କହିବା ଭଲ ଜାଣିଥିବାରୁ ଶ୍ରୀମତୀ ଜଲାଲାଙ୍କ ସହିତ ଘନିଷ୍ଠତା ଥିଲା । ତାଙ୍କର ତିନୋଟି ଝିଅ ଓ ଦୁଇଟି ପୁଅ । ସେମାନେ ହେଲେ ଜମ୍‌ରାତା, ଶଗୁଫା ଓ ହଫିଫା ଓ ନିଜାମ ଓ ଇକ୍‌ବାଲ । ଡକ୍ଟର ଜଲାଲ ଓ ତାଙ୍କ ସ୍ତ୍ରୀ ସଚ୍ଚିଦାନନ୍ଦ ଓ ତାଙ୍କ ସ୍ତ୍ରୀ ସହିତ ଭଲ ସମ୍ପର୍କ ରଖିଥିବା ହେତୁ ଓ ତାଙ୍କ ପିଲାମାନେ ସମବୟସ୍କ ହେତୁ ସତ୍ୟବତୀ ଓ ଶରତଚ଼ନ୍ଦ୍ରଙ୍କୁ ଖେଳିବାକୁ, ବୁଲିବାକୁ ଯଥେଷ୍ଟ ସୁଯୋଗ ମିଳିଥିଲା । ଖୋର୍ଦ୍ଧାରେ ସେତେବେଳେ ଜଣେ କଚ୍ଛି (ଗୁଜରାଟୀ) ଫରେଷ୍ଟ ଅଫିସର ରହୁଥିଲେ । ତାଙ୍କ ନାଁ ଜୁଟଲା ସାହେବ । ସେ ନିଷ୍ଠାପର ସାକାହାରୀ ଥିଲେ । ତାଙ୍କର ଦୁଇଟି ବଡ଼ ଝିଅ ଥିଲେ । ସେମାନେ ବୟସରେ ଯଥେଷ୍ଟ ବଡ଼ ଥିବାରୁ ତାଙ୍କ ସହିତ ଖେଳିବାର ସୁଯୋଗ ସେତେ ମିଳୁ ନଥିଲା ।

## କଟକ ନଗର ଧବଳ ଟଗର

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ପଶ୍ଚିମ ଓଡ଼ିଶା ଓ ଉପକୂଳ ଅଞ୍ଚଳର ସାମାଜିକ ସଂପର୍କ, ବୈବାହିକ ସଂପର୍କ ପ୍ରାୟ ନଥିଲା କହିଲେ ଚଳେ । ୧୯୪୦ ମସିହାରେ ସର୍ବପ୍ରଥମେ ଝାଡୁଆପଡାର ଡେପୁଟି ମାଜିଷ୍ଟ୍ରେଟ ଭରତ ଚନ୍ଦ୍ର ନାୟକ ଏହା ବିରୁଦ୍ଧରେ ଗଲେ । ସମ୍ବଲପୁରରେ ସେତେବେଳେ ମୁଖ୍ୟତଃ ଆରଣ୍ୟକ (ଝାଡୁଆ) ଓ ଉତ୍କଳୀୟ ବ୍ରାହ୍ମଣ ମାନେ ବଡସଡ଼କରେ ପ୍ରତିଷ୍ଠିତ ଥିଲେ । କଥିତ ଭାଷାରେ ସାମାନ୍ୟ ପାର୍ଥକ୍ୟ ଓ ବିବାହ ଇତ୍ୟାଦି ପ୍ରଥାରେ ବିଭେଦ ଥିଲା । ଏହା କେବଳ ବ୍ରାହ୍ମଣ ମାନଙ୍କ ମଧ୍ୟରେ ଦେଖା ଯାଉଥିଲା, ଅନ୍ୟ ଜାତିର କରଣ, କ୍ଷତ୍ରିୟ ଓ ପେଷାଗତ ଜାତିମାନଙ୍କ ମଧ୍ୟରେ ସେମିତି ଭାଷାଗତ ପାର୍ଥକ୍ୟ ନଥିଲା । ଏ ସମୟରେ ଯେଉଁସବୁ କଥିତ ଭାଷା ସମ୍ବଲପୁର ଛଡ଼ା ଅନ୍ୟ ଦେଶୀୟ ରାଜାମାନଙ୍କ ଅଞ୍ଚଳରେ ବ୍ୟବହୃତ ହେଉଥିଲା, ସେଗୁଡ଼ିକ 'ଲରିଆ', 'ଛତିଶଗଡି', 'ଭୁଲିଆ' (ମେହେର), ବାଉଁଶର ବୁଣାକାର, 'କଂସାରୀ', 'ଅଘରିଆ' ଇତ୍ୟାଦି । ଏଗୁଡ଼ିକ ସାମାନ୍ୟ ପୃଥକ ଥିଲା, କିନ୍ତୁ ସମସ୍ତଙ୍କୁ ସମ୍ବଲପୁରିଆ କୁହାଯାଉଥିଲା । ଏ ପାର୍ଥକ୍ୟକୁ ନେଇ ଆଞ୍ଚଳିକ ଶାସକ (ରାଜା, ଜମିଦାର, ଗୌନ୍ତିଆ) ମାନେ ନିଜନିଜ ରାଜସ୍ୱ ଅସୁଲି ସହିତ ପୂଜାର୍ଚ୍ଚନା (ନୂଆଁଖାଇ ଇତ୍ୟାଦି ପୂଜାପାର୍ବଣ) ଆଦିମ ଜାତିର ସଂସ୍କୃତିକୁ ମିଶାଇ ମିଳିତ

ଭାବରେ ସମସ୍ତେ ଏପରିକି ଆଦିବାସୀ ଖ୍ରୀଷ୍ଟିଆନ ମାନେ ପାଳନ କରୁଥିଲେ। ଏସବୁକୁ ନେଇ ଅଧିକାଂଶ ଅଶିକ୍ଷିତ ଥିବାରୁ ଛୋଟ ଛୋଟ ଅଞ୍ଚଳରେ, ବାଜା, ନାଚ, ସଂଗୀତ, କୃଷିକର୍ମଣୀ ବେଳେବେଳେ ଅଶ୍ଳୀଳ, ଆଦିବାସୀ ସଂସ୍କୃତି ଭାବରେ ଉଚ୍ଚଜାତିର ଲୋକେହିଁ ପ୍ରଚାର କରୁଥିଲେ। ଉପକୂଳ ଅଞ୍ଚଳର ଲୋକେ ଏହାର ସୁଯୋଗ ନେଇ କଟକର ଲିଖିତ ଭାଷା, କରଣୀ ଓ ମାଦଳା ପାଞ୍ଜିକୁ ଶୁଦ୍ଧ ଓଡ଼ିଆ ଭାବରେ ପ୍ରଚାର କରୁଥିଲେ। ଜଳପଥର ଗମନାଗମନ ଛଡ଼ା ସ୍ଥଳପଥରେ ଏହା ସେତେ ସହଜଗମ୍ୟ ହେଉନଥିବାରୁ ପଶ୍ଚିମାଞ୍ଚଳର ଏକ ବିଶାଳ ଭୂଖଣ୍ଡ ମୁଖ୍ୟ ଲିଖିତ ଭାଷାଠାରୁ ଅଲଗା ଭାବରେ ଦେଖାଇବାର ଏକ ରାଜନୈତିକ ଧାରା ପ୍ରାୟ ଦୁଇଶହ ବର୍ଷ ପର୍ଯ୍ୟନ୍ତ ଓଡ଼ିଆ ଜାତିଟିକୁ ଭାଗ ଭାଗ କରୁଥିଲା- ବିଶେଷରେ ମାନସିକ ସ୍ତରରେ। ଫକୀରମୋହନ, ଗଙ୍ଗାଧର ଓ ଭୀମଭୋଇ ଏହାର ବ୍ୟତିକ୍ରମ ଥିଲେ। ଆଶ୍ଚର୍ଯ୍ୟର କଥା ସେତେବେଳେ କିନ୍ତୁ ସାମାନ୍ୟ ଶିକ୍ଷିତ ବର୍ଗମଧ୍ୟରେ ଶାରଳା ମହାଭାରତ ଓ ଜଗନ୍ନାଥ ଦାସଙ୍କ ଭାଗବତ ପାଠ ଗାଁ ଚଉପାଡିରେ ଏ ଅଞ୍ଚଳରେ, ଉପକୂଳ ଅଞ୍ଚଳପରି ପୂଜ୍ୟ ଓ ନମସ୍ୟ ଥିଲା। ସାଧାରଣ ଅଶିକ୍ଷିତ ଓ ଆଦିବାସୀ ଲୋକେ ମଧ୍ୟ ଜଗନ୍ନାଥକୁ ନିଜ ଇଷ୍ଟଦେବ ଓ ଜଗତର ନାଥ ଭାବରେ ଗ୍ରହଣ କରିଥିଲେ। ଶ୍ରୀକ୍ଷେତ୍ର ଦର୍ଶନ, ଜଗନ୍ନାଥଙ୍କ ପ୍ରସାଦ, ପଶ୍ଚିମାଞ୍ଚଳର ଘରେ ଘରେ ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ଉପାସ୍ୟ ଥିଲା। ଛାନ୍ଦ, ଚଉପଦି, ପ୍ରାର୍ଥନା, ଜଣାଣ ରଥଯାତ୍ରାର ଓ ଠାକୁରଙ୍କର ବାରମାସରେ ତେରଜାତ ପାଳନ କରାଯାଉଥିଲା। ଅବଧାନମାନଙ୍କ ଦ୍ୱାରା "କଟକ ସହର ଧବଳ ଟଗର" ପାଠ ପଢା ହେଉଥିଲା।

କିନ୍ତୁ ସେଇ ମହାନଦୀ କୂଳଦେଇ ଯେଉଁ ପାଦଚଲା ଜଗନ୍ନାଥ ସଡ଼କ ରାସ୍ତାଟି ପଶ୍ଚିମ ଓଡିଶାର ଅମର କଣ୍ଟକ, ହୀରାଖଣ୍ଡରୁ କଟକ ସହର ପାଖ ଦେଇ ନୀଳାଚଳ ଯାଏ ଲମ୍ବିଥିଲା- ପ୍ରାୟ ହଜାରେ ବର୍ଷ ଯାଏ ତାକୁ ଆମର ଐତିହାସିକ ମାନେ ଡୋଲ ବଜାଇ ଯୋଡିବାକୁ ଚେଷ୍ଟା ନକରି ପଚାଶବର୍ଷ ମଧ୍ୟରେ ତିରିଶଟି ଜିଲ୍ଲାରେ ବିଭକ୍ତ କରି ସାରିଲେଣି। ମୋ ମତରେ, ବହୁବର୍ଷପରେ ଏବେ ନିକଟରେ ଏକାତିଟା ସାମାଜିକ ସ୍ତରରେ ଏକତ୍ର ହେଉଛି। ୨୦୦୦ ମସିହାର ଇଣ୍ଟରସିଟି ନାମକରଣରେ ଯେଉଁ ପ୍ରଥମ ରେଳଗାଡିଟି ସମ୍ବଲପୁର ଓ କଟକକୁ ଯୋଗ କଲା ତାହା ଏବେ ପାଞ୍ଚ/ଛଅଟି ଇଣ୍ଟରସିଟି ହୋଇ ସମ୍ବଲପୁର-କଟକ, ସମ୍ବଲପୁର-ପୁରୀ, ସମ୍ବଲପୁର-ରାଉରକେଲା, ସମ୍ବଲପୁର-ଜୟପୁର, ପୁରୀ-ରାୟପୁର ନାମକରଣରେ କଟକ-ବାରିପଦା ନାମକରଣ ହୋଇ ଯାତ୍ରୀଙ୍କୁ (ସମ୍ବଲପୁର ଓ ଭୁବନେଶ୍ୱର ଦୁଇଟି ସିଟି (?)ର ଲୋକଙ୍କୁ) ସକାଳେ ସନ୍ଧ୍ୟାରେ ବାଉଳା କରିବାରେ ଲାଗିଛି। ଏ ଗାଡି ଭିତରେ ମୁଁ ରେଢାଖୋଲ, ଜରପଡ଼ା, ବଇଣ୍ଡା, ଆଠମଲ୍ଲିକ, ଅନୁଗୋଳ, ତାଳଚେରର କଥିତ ଭାଷାଟିକୁ ଓଡିଆ ଭାଷାରେ ଗଣି ନେଇଚି। ମୁଁ ତଥାପି ସମ୍ବଲପୁରର ଓଡ଼ିଶାର ରାଜଧାନୀ କଟକ ଓ ପରେ ଭୁବନେଶ୍ୱର ମେଗାସିଟି କଥା କହୁଛି।

ମୋ ଜୀବନକାଳ (୧୯୩୪ ରୁ ୧୯୭୭) ଭିତରେ ଜଣେ ଓଡ଼ିଆ ଲୋକର ସ୍ଥଳପଥରେ ଗମନ ଏବେବି ସ୍ୱଚ୍ଛନ୍ଦ ହୋଇନାହିଁ । ଏ ସିଟି ଷ୍ଟେସନରେ, ପ୍ଲାଟଫର୍ମରେ, ଡବା ଭିତରେ ଏ ଅସ୍ୱାସ୍ଥ୍ୟକର ଗମନାଗମନ ସେମିତି ବଢି ଚାଲିଛି । ଧନ୍ୟରେ ଉତ୍କଳ ଜନନୀ । ଧନ୍ୟ ସରକାରୀ ବ୍ୟବସ୍ଥା । ହଁ ମୁଁ ଯାହା କହୁଥିଲି, ମୁଁ ପୁରୀ ଦେଖିବା ପୂର୍ବରୁ କଟକ ନଗର ଧବଳ ଟଗର ଶୋଭା ନିଜ ଆଖିରେ କେମିତି ଦେଖିଲି ? ତା'ର ମହାନଦୀ ଓ କାଠଯୋଡୀ ଦେଖି ଉଲ୍ଲସିତ ହୋଇ ରହିଯାଇଥିଲି ।

## ପୁନଶ୍ଚ କଟକ ଓ ଓଡିଆତ୍ୱର ପରିଚୟ

ଝାଡୁଆପଡ଼ାର ବଡ଼ସଡକ ଓ ସାନ ସଡକ ମଧ୍ୟ ଭାଗରେ ଚିଟ୍‌ନବିସ ଘାଟଠାରୁ କୁଞ୍ଜେଲ ପଡା ଛକଦେଇ ବ୍ରହ୍ମପୁରା ମନ୍ଦିରର 'ଆରଣ୍ୟକ ମଂଚ' ପର୍ଯ୍ୟନ୍ତ (ବଡ଼ ଦୁଆର) ବିଶାଳ ଅଞ୍ଚଳରେ ସାତ ପୁରୁଷର ପୂଜାରୀ ବଂଶର ବୃକ୍ଷଟି ସାତଶହ ବର୍ଷ ଭିତରେ ବହୁ ବିଭାଜିତ ହୋଇଛି । ଏ ଅଞ୍ଚଳର ଗଳିକନ୍ଦିରେ ଆରଣ୍ୟକ ଗୋଷ୍ଠୀର ଏ ବ୍ରାହ୍ମଣ ପୂଜକମାନେ ଏବେ ସବୁଠାରୁ ଶିକ୍ଷିତ ପରିବାର ଭାବରେ ପରିଚୟ ପାଆନ୍ତି । ଏମାନଙ୍କର 'ପଞ୍ଚମ ପିଢି' ପରେ, ଏମାନେ ସାରା ପୃଥିବୀରେ ବିଭିନ୍ନ ଅଞ୍ଚଳରେ ବିକ୍ଷିପ୍ତ ହୋଇ ରହୁଛନ୍ତି । କେତେକ ଧର୍ମ ତ୍ୟାଗ କଲେଣି, ବିଦେଶିନୀ ଓ ଅନ୍ୟ ଜାତିରେ ବିବାହ କରି ସବୁ ପ୍ରକାର ବିଶେଷ କାର୍ଯ୍ୟ ଦକ୍ଷତାର ସହିତ ବଞ୍ଚି ରହିଛନ୍ତି । ଜଗତୀକରଣ ଯୋଗୁ ବଂଶ ପରଂପରା ବିଷୟରେ ସଚେତନତା ନଦେଖାଇଲେ ମଧ୍ୟ ବ୍ୟବସାୟିକ ସଫଳତା ପାଇବାରେ ଉଚ୍ଚ ସ୍ତରରେ ପହଞ୍ଚି ପାରିଛନ୍ତି । ତଥାପି ବେଳେବେଳେ ସଂସ୍କାର ବଶତଃ ଓଡିଶାର ସ୍ମୃତି ତାଙ୍କୁ ବିହ୍ୱଳିତ କରେ । ଜଗନ୍ନାଥଙ୍କ ରଥଯାତ୍ରା ତାଙ୍କୁ ବିମୋହିତ କରେ । ଚୁପିଚୁପି ଆଖି କଣରେ ପାଣି ଜକେଇ ଆସେ ସେମାନଙ୍କର । ଏ ମଧ୍ୟରେ ବୟସାଧିକ୍ୟ ଯୋଗୁ କମଳଲୋଚନ ପୂଜାରୀଙ୍କ ଦେହାନ୍ତ ହେଲା ହୃଦରୋଗରେ ଗାଡିରେ ସମ୍ବଲପୁରରୁ କଟକ ଯିବା ରାସ୍ତାରେ । ସେତେବେଳେ ଅଚ୍ୟୁତାନନ୍ଦ ଓ ସଚ୍ଚିଦାନନ୍ଦ ରେଭେନ୍‌ସା କଲେଜିଏଟର ଛାତ୍ର । ବାପାଙ୍କ ଦାହ ସଂସ୍କାର ପରିବାରର ସମସ୍ତେ ମିଳିମିଶି କଟକର ସତୀଚଉରା ଶ୍ମଶାନଠାରେ ସମାପନ କଲେ । ସଚ୍ଚିଦାନନ୍ଦଙ୍କର ସେହି ସମୟରୁ କେବଳ ଫୁଟବଲ ଖେଳର ନିଶା, ସମ୍ବଲେଶ୍ୱରୀ ଦଳ ସହିତ ଜଡିତ ରହିଥିଲା ।

ଅଚ୍ୟୁତାନନ୍ଦ ପୂଜାରୀ ଆଗେ ଇଂଜିନିୟରିଂ ପାଠ ଶେଷକରି କଟକ ସହରରେ ଅବସ୍ଥାପିତ ହେଲେ ଜୁନିୟର ଇଂଜିନିୟର ଭାବରେ । ଅସାଧାରଣ ଦକ୍ଷତାଥିବା ଯୋଗୁ ତାଙ୍କ ଉପରିସ୍ଥ ଗୋରା ସାହେବମାନେ ତାଙ୍କୁ କ୍ୟାଣ୍ଟନ୍‌ମେଣ୍ଟ ରୋଡ଼ର ୧୯ ନମ୍ବର କୋଠୀରେ ତାଙ୍କ ଅଫିସ ଘର, ରହିବା ଖଂଜା ଯୋଗାଇ ଦେଲେ । ସେ ଏତେବଡ଼ ନିଷ୍ଠାପର, କାର୍ଯ୍ୟଦକ୍ଷ ଇଂଜିନିୟର ଥିଲେ ଯେ ସାଧାରଣ ଲୋକେ ତାଙ୍କ ସାମନାକୁ ଯିବାପାଇଁ ଭୟ

କରୁଥିଲେ । ସେହିଠାରେ ରହି ଜୁନିୟରରୁ ଇଂଜିନିୟର ଏବଂ ଏକମାତ୍ର ସୁପରିଟେଣ୍ଡେଣ୍ଟ ଇଂଜିନିୟର୍ ଭାବରେ ପ୍ରମୋଶନ ପାଇଲେ ।

ସଚ୍ଚିଦାନନ୍ଦ ପୂଜାରୀ କିନ୍ତୁ ଥିଲେ ଅନ୍ୟ ପ୍ରକାରର ମଣିଷ । ରେଭେନ୍‌ସାରୁ କଲେଜିଏଟରୁ ଇତିହାସ ବିଷୟରେ ବି.ଏ ପାସ କରିବାପରେ ସେ କଲିକତାର ପ୍ରେସିଡେନ୍‌ସି କଲେଜରେ ଏମ୍.ଏ. ପଢିବାକୁ ଗଲେ । ଅତ୍ୟନ୍ତ ମେଳାପୀ, ହସଖୁସି, ସ୍ପଷ୍ଟବାଦୀ, ନାଟ୍ୟପ୍ରେମୀ, ସଂଗୀତପ୍ରିୟ, ନିଜ ଡିଜାଇନ୍ ଓ ମଡ଼େଲର ପୋଷାକ, ପିନ୍ଧିବା, ବଂଶୀବାଦନ କରିବା, ସୁନ୍ଦର ହସ୍ତାକ୍ଷର ଲେଖିବା ଓ ଚିତ୍ରକରିବା, ବିଦେଶୀ ଅତର ବ୍ୟବହାର କରିବା ଓ ସମସ୍ତ ପ୍ରକାରର ଖାଦ୍ୟ ରାନ୍ଧିବା ଓ ଖାଇବାରେ ରୁଚି ରଖୁଥିବା ଜଣେ ସାଧାରଣ ସୁଦୃଶ୍ୟ ମଣିଷଟିଏ । ଖେଳାଳୀ ଭାବରେ ରାସ୍ତାର ଲୋକମାନଙ୍କର ପ୍ରିୟ- ଜଣେ ମଣିଷ । (ବିଷ୍ଣୁଚରଣ ମହାନ୍ତିଙ୍କ 'ଝାଡୁଆପଡ଼ାର ପଞ୍ଚ ପାଣ୍ଡବ' ଦ୍ରଷ୍ଟବ୍ୟ ।)

## ବାପା ସଚ୍ଚିଦାନନ୍ଦ ପୂଜାରୀ

ସେଇ ସମୟରେ ଯୁଦ୍ଧର ବିଭୀଷିକା ମଧ୍ୟରେ ଯେତେ ରାଜନୈତିକ ଇତିହାସ ଲେଖା ହୋଇଛି । ଗୋଟିଏ ସାମାଜିକ ବିପ୍ଲବ ବିଷୟରେ ଓଡ଼ିଶାର ଜନସାଧାରଣ ଓ ସାମାଜିକ ଚିତ୍ର ଆଙ୍କୁଥିବା ଲେଖକମାନେ କେବେ ଏ ବିଷୟରେ ଉଲ୍ଲେଖ କରିନାହାଁନ୍ତି । ସେ ସାମାଜିକ ବିପ୍ଲବଟି ହେଉଛି ଫୁଟବଲ ଖେଳ ଓ ଟୁର୍ଣ୍ଣାମେଣ୍ଟ । ଆଶ୍ଚର୍ଯ୍ୟର କଥା ଓଡିଶାର ବହୁ ସହରରେ ୧୮୨୦ ମସିହାରୁ ଏ ଖେଳପ୍ରତି ଜନସାଧାରଣଙ୍କର ଏତେ ବେଶୀ ଆଗ୍ରହ ଓ ଆକର୍ଷଣ ଥିଲା ଯେ ଆଜିର କ୍ରିକେଟ୍ ଯୁଗ ମଧ୍ୟ ହାର ମାନିଯିବ । ନଦୀ ପୋଖରୀରେ ସନ୍ତରଣ କରିବାର ନିଶା, ନଇ ବାଲିଥିବା କାଗରେ ପହିଲିମାନି, ଗୁଡୁଖେଳ, ମୁଦଗର ବୁଲାଇବା, ଦଣ୍ଡବୈଠକି ଶରୀରଚର୍ଚ୍ଚା ଓ ପଶ୍ଚିମାଞ୍ଚଳ ନଇ କୂଳରେ "ମାଲଖମ୍ବ" ପ୍ରତି କିଶୋର ଓ ଯୁବକମାନଙ୍କର ଆଗ୍ରହ । ବିଶେଷ କରି ସମ୍ବଲପୁର ମହାନଦୀ କୂଳର ଏ ପରଂପରା ଓ ସଂସ୍କୃତି ମରହଟ୍ଟା ଅମଳରୁ ଅତିମାତ୍ରାରେ ବଳବତ୍ତର ଥିଲା । ମହାନଦୀ ପୂର୍ଣ୍ଣଗର୍ଭା ହେଲେ ତା କୂଳରେ ଥିବା ବୁରୁଜ (ଗମ୍ବୁଜ) ବା ଟାୱାର ଉପରୁ ପଚାଶ ଷାଠିଏ ଉଚ୍ଚରୁ ନଦୀପାଣିକୁ 'ଡାଇଭ୍' ମାରିବା ବା ଡେଇଁବାର ପରଂପରା ଓଡ଼ିଶା ଅଞ୍ଚଳରେ ଆଉ କେଉଁଠି ଦେଖା ଯାଉନଥିଲା । ଏ ଶରୀରଚର୍ଚ୍ଚା ସମ୍ବଲପୁରୀଆଙ୍କ ଏକ ନିଜସ୍ୱ କଳା ଭାବରେ ୧୯୬୦ ମସିହା ପର୍ଯ୍ୟନ୍ତ ପ୍ରତିବର୍ଷ ଏକ ଚିତ୍ତାକର୍ଷକ ପ୍ରଦର୍ଶନୀରେ ପରିଣତ ହେଉଥିଲା । ହୀରାକୁଦ ବନ୍ଧ ତିଆରି ହେବାପରେ ତାହା ସଂପୂର୍ଣ୍ଣ ନିଶ୍ଚିହ୍ନ ହୋଇଗଲା । ଏ ବିଷୟରେ ଗତ ଷାଠିଏବର୍ଷର ସମ୍ବଲପୁରୀଆମାନେ ଫଟୋଟିଏ ମଧ୍ୟ ସଂଗ୍ରହ କରି ଦେଖାଇ ପାରିବେ ନାହିଁ । ଏକ ସତ୍ୟର ଅବତାରଣା କଲେ ସମ୍ବଲପୁରର ନିଜ ପରିବାରର ନିଜ ଲୋକଟିଏ ମଧ୍ୟ କହିପାରିବେ ନାହିଁ ତାଙ୍କ ଖଂଜାରେ ଆର୍ଥରାଇଟିସ, ହୃଦରୋଗୀ

ଅଖଞ୍ଜି ଅଶୀ/ ନବେ ବର୍ଷର ବୃଦ୍ଧମାନେ ନିଜର ଚାରିବର୍ଷ ବୟସରୁ ଏ ଖେଳ ଖେଳୁଥିଲେ ନିଜକୁ ଚାଳିଶ ପଚାଶବର୍ଷ ହେବା ପର୍ଯ୍ୟନ୍ତ ।

ମୋର ପିତା ସଚ୍ଚିଦାନନ୍ଦ, ପିତୃବ୍ୟ ଅଚ୍ୟୁତାନନ୍ଦ, ମୀନକେତନ, ଡକ୍ଟର ଜନାର୍ଦ୍ଦନ ପୂଜାରୀ, ପିତୃବ୍ୟ ଗୋକୁଳାନନ୍ଦ, କମ୍ପାଉଣ୍ଡର ନିମେଇ ମିଶ୍ର, ନୀଳାମ୍ବର ପୂଜାରୀ ଗୋଟିଏ ଗୋଟିଏ 'ଷ୍ଟାର' ସନ୍ତରଣକାରୀ ଭାବରେ ସମ୍ବଲପୁର ସହର ମୁଖ ଉଜ୍ଜ୍ୱଳ କରି ଯାଇଛନ୍ତି । ଏଇ ସନ୍ତରଣର ସଉକି ହିଁ ସେମାନଙ୍କୁ ଭଲ ଫୁଟବଲ ଖେଳିବାକୁ ପ୍ରୋତ୍ସାହିତ କରୁଥିଲା ।

ରେଭେନ୍‌ସା କଲେଜର ଛାତ୍ରଥିବା ବେଳେ ମୋ ବାପାଙ୍କ ସହିତ ତାଳଦଣ୍ଡା କେନାଲର ସନ୍ତରଣ ପ୍ରତିଯୋଗିତାରୁ ସେତେବେଳର କଟକ ସହର ବିଖ୍ୟାତ ପରିବାରର ଛାତ୍ର ଶ୍ରୀଯୁକ୍ତ ନିତ୍ୟାନନ୍ଦ କାନୁନଗୋଙ୍କ ବନ୍ଧୁତ୍ୱ ସୃଷ୍ଟି ହୋଇଥିଲା । ନିତ୍ୟାନନ୍ଦ ବାବୁ ରାଜନୀତିରେ ଯୋଗଦେବା ପରେ ବାପା ନିଜେ ପୁରୀରୁ କଟକ ଯାଇ ରାତାରାତି ତାଙ୍କୁ ଅନେକ ଗୁପ୍ତତଥ୍ୟ ଜଣାଇ ସତର୍କ କରାଇ ଦେଉଥିଲେ ।

ବାପା ରେଭେନ୍‌ସାରୁ ବି.ଏ ପାସ୍ କରି କଲିକତା ପ୍ରେସିଡେନ୍‌ସି କଲେଜରେ ପାଠ ପଢ଼ିବାବେଳେ, ସମ୍ବଲପୁରର କମିସନର ତାଙ୍କୁ ନିଜେ ଡକାଇ ବିହାର ଓଡ଼ିଶା ପ୍ରଦେଶର 'ଚାଇଁବସା'ଠାରେ ରେଭିନ୍ୟୁ ଅଫିସର ଚାକିରୀରେ ଅବସ୍ଥାପିତ କଲେ । ଅବଶ୍ୟ ଏହାପଛରେ ପିତୃତୁଲ୍ୟ ବଡ଼ଭାଇ ତିବିକ୍ରମ ପୂଜାରୀ (ଜିଲ୍ଲାପାଳ)ଙ୍କ ଅନୁମୋଦନ ଥିଲା । ବାପାଙ୍କ ଫୁଟବଲ ଖେଳ ନିଶା ଅନେକଟା କମିଗଲା । ଘରଠାରୁ ଚାଇଁବସା ଅନେକଦୂର । ଅଭିମାନ କରିବା ଡଙ୍ଗରେ ସେଇଠି ପଡିରହିଲେ । ତଥାପି ନିଜ ଜନ୍ମଜାତ ଗୁଣ ମଟରସାଇକେଲ ଚଳେଇବା, ନିଜ ପୋଷାକ ନିଜେ ତିଆରି କରିବା, କାଠ କାମ ଓ ମେକାନିକ କାମ ନିଜେ କରିବା, ସବୁପ୍ରକାର ଖାଦ୍ୟରେ ରୁଚି ରଖିବା ଓ ବନ୍ଧୁ ଗହଣରେ ରହି ଖୁସି ଗପ କରିବା ତାଙ୍କର ବନ୍ଦ ହୋଇନଥାଏ ।

## ଶରୀରଚର୍ଚ୍ଚାରେ ସମ୍ବଲପୁରିଆ ସଂସ୍କୃତି

ସାରା ସମ୍ବଲପୁର ସହର ଓ ଜିଲ୍ଲାର ମହାନଦୀ କୂଳିଆ ଗାଁ ମାନଙ୍କର ଟେନିସ ବଲ ଓ ସ୍ୱଞ୍ଜ ବଲରେ ଫୁଟବଲ ଖେଳର ଖୁବ ପ୍ରଭାବ ଥିଲା । ୧୯୨୦ ମସିହା ସମୟରୁ ସମ୍ବଲପୁର ସହରରେ ସବୁ ଜାତିର ଲୋକଙ୍କୁ ନେଇ ଏକ ଫୁଟବଲ ଟିମ୍ ପ୍ରତିଷ୍ଠିତ ହୋଇଥିଲା । ତା'ର ନାଁ ଥିଲା 'ସମ୍ବଲେଶ୍ୱରୀ ଟିମ୍' ଏ ଦଳ ସମଗ୍ର ପଶ୍ଚିମ ଓଡ଼ିଶା, ବିହାର, ଛତିଶଗଡ଼, ବଙ୍ଗ ଓ ଓଡିଶା ଉପକୂଳ ଅଞ୍ଚଳରେ ଯଥେଷ୍ଟ ସମ୍ମାନନୀୟ ଥିଲା । ମୋର ବାପାଙ୍କ ଉପର ଭାଇ ଅଚ୍ୟୁତାନନ୍ଦ ପୂଜାରୀ ଫୁଲବ୍ୟାକ୍ ଭାବରେ, ମୋର ବାପା ସଚ୍ଚିଦାନନ୍ଦ ପୂଜାରୀ ସେଣ୍ଟର ଫରୱାର୍ଡ ଭାବରେ ଅତି ଉଚ୍ଚକୋଟୀର ଖେଳ ପ୍ରଦର୍ଶନ କରି ଦଳଟିକୁ

ସମଗ୍ର ସେଣ୍ଟ୍ରାଲ ପ୍ରଭିନ୍‌ସର ଏକ ଖାଲିପାଦର ଦଳ ଭାବରେ ବହୁ ପ୍ରଶଂସାର ଅଧିକାରୀ କରିଥିଲେ । ଏ ଦଳ ରାୟପୁର, ଜାମସେଦ୍‌ପୁର, ଜଟଣୀ, କଟକର ନାମଜାଦା ଦଳ ଓ ପୁରୀର ବି.ଏନ୍.ଆର ଦଳ ପରି ଗୋରା ସାହେବଙ୍କ ଫୁଟବଲ ଜୋତା ପିନ୍ଧା ଦଳକୁ ପରାସ୍ତ କରି ପାରୁଥିଲେ ।

ଚାକିରୀ କରିବା ପୂର୍ବରୁ ସଚ୍ଚିଦାନନ୍ଦ ପୂଜାରୀ ଛାତ୍ରଥିବା ଅବସ୍ଥାରେ ଏ ସହର ବୁଲି ଦେଖିବା, ଏ ଖେଳୁଆଡ ମାନଙ୍କ ସହିତ ବନ୍ଧୁତା ସ୍ଥାପନ କରିବା ଏକ ଅନ୍ତର୍ନିହିତ ଗୁଣ ଭାବରେ ଶେଷ ଜୀବନଯାଏ ରହିଯାଇଥିଲା । ୧୯୩୦ ମସିହା ପୂର୍ବରୁ ପଶ୍ଚିମ ଓଡ଼ିଶାର ପୂଜାରୀ ପରିବାରକୁ ଉଚ୍ଚସ୍ତରରେ ଆଣି ରଖିବାରେ ଏହା ସାହାଯ୍ୟ କରିଥିଲା । ସେତେବେଳର ମୋ ବାପାଙ୍କ ପଢ଼ା ସାଙ୍ଗ ଓ ଖେଳ ସାଙ୍ଗଙ୍କ ସହିତ ମୋ ପରବର୍ତ୍ତୀ ଜୀବନରେ ସଂପର୍କରେ ଆସିଲି ମୁଁ ଏ ସବୁର ଇତିହାସ ଜାଣି ଆଶ୍ଚର୍ଯ୍ୟ ହେଲି । ଖୋଦ କଟକର ବୁନିଆଦି ପରିବାରର ପଚିବାବୁ (ବରିଷ୍ଠ ଓକିଲ), ସୁନୀଲ ପାଲିତ (ଅବସରପ୍ରାପ୍ତ ଆଇ.ଏ.ଏସ୍), ସଚ୍ଚିଦାନନ୍ଦ ମିଶ୍ର (ଅବସରପ୍ରାପ୍ତ ଆଇ.ଏ.ଏସ୍), ଡାକ୍ତର ବନବିହାରୀ ପଟ୍ଟନାୟକ, ମନ୍ତ୍ରୀ ନିତ୍ୟାନନ୍ଦ କାନୁନଗୋଙ୍କ ପରି କଟକିଆ ମାନଙ୍କ ସହିତ ମୋ ପରିବାର ଜଡିତ ରହି ଆତ୍ମୀୟତା ରଖିପାରିଛି । ମୋ ନିଜ ପରିବାରରେ ମୋ ବଡ଼ଭାଇ ସୁରେଶ ଚନ୍ଦ୍ର ପୂଜାରୀ, ସୁନୀଲ ଚନ୍ଦ୍ର ପୂଜାରୀ, ସୁଭାଷ ଚନ୍ଦ୍ର ପୂଜାରୀ, ମୁଁ ନିଜେ ଓ ମୋର କନିଷ୍ଠ ପୁତ୍ର ସୌମେନ୍ ସମସ୍ତେ ସ୍କୁଲ କଲେଜରେ ପଡିବା ବେଳରେ ଫୁଟବଲ ଖେଳପ୍ରତି ଆଗ୍ରହ ଦେଖାଇଥିଲୁ ।

ତେଣୁ, ପଡାବହିର 'କଟକ ନଗର ଧବଳ ଟଗର' ପଡିବା ପୂର୍ବରୁ କଟକ ସହରର ବହୁ ବୈଶିଷ୍ଟ୍ୟ, ସୌନ୍ଦର୍ଯ୍ୟ, ସ୍ଥାନର ମାହାତ୍ମ୍ୟ ବିଷୟରେ ଦେଖି, ଅଙ୍ଗେ ଲିଭେଇ ଜାଣି ସାରିଥିଲି । ମୋତେ ଅବଧାନଙ୍କ ପାଖରୁ କିଛି ଜାଣିବାର ପ୍ରୟୋଜନ ପଡିନାହିଁ ।

ସେ ଯାହାହେଉ, ଏତ ଗଲା ମୋ' ବାପାଙ୍କର ଯୌବନ ଅବସ୍ଥାରେ ଉପକୂଳ ଓଡିଶା ସହିତ ସଂପର୍କ । ୧୯୩୩ ମସିହାରେ ମୋର ଜନ୍ମ ନୟାଗଡ ସହରରେ (ଦେଶୀୟ ରାଜ୍ୟ) । ନୟାଗଡ, ଖୋର୍ଦ୍ଧା, ଜଟଣୀ, ପୁରୀ, କଟକର, ଗେରୁଆ ଧଳା ବାଲି, ମାଟିଆ ରଂଗର ନାଲି ଧୂଳିର ସ୍ପର୍ଶ ମୋ ଟିକିଟିକି ପାଦକୁ ବହୁଭାଗରେ କ୍ଷତାକ୍ତ କରିଛି । ମୁରୁମ୍ ରାସ୍ତାରେ ଦଉଡ଼ି ଆଣ୍ଠୁଗଣ୍ଠି ଛିଣ୍ଡି ସାରିଥିଲା ମୁଁ ସ୍କୁଲରେ ପାଠପଢିବା ବହୁଦିନ ଆଗରୁ ।

ପୁରୀର ସମୁଦ୍ର, ବାଇଶୀ ପାହାଚ, ବଡ଼ ଦାଣ୍ଡ, ରଥଯାତ୍ରା, ଝୁଲଣ, ନାଗାନୃତ୍ୟ ନିଜ ଆଖିରେ ଦେଖି ତାର ମଉଜ ପାଇଥିଲି ବାଲିସାହିର ଏମ୍.ଇ ସ୍କୁଲର ତୃତୀୟ/ଚତୁର୍ଥ ଶ୍ରେଣୀର ଛାତ୍ର ଭାବରେ । ବାଲିସାହିର ସାରଦାଦେବୀ ରୋଡରେ ମୋର ସବା ବଡ଼ବାପା ପୁରୀର ଜିଲ୍ଲାପାଳ ଶ୍ରୀତିବିକ୍ରମ ପୂଜାରୀଙ୍କ ନିଜ ତିଆରି ବାସସ୍ଥାନ 'ସୂର୍ଯ୍ୟନିବାସ' ଆଗର

ଲଙ୍କା ଆମ୍ବ ବଣରେ, ଧଳା ଓ ବାଇଗିଣି ସଦାବିହାରି ଫୁଲ; ବାଲିବନ୍ଧ ଉପରେ ଡାଳମାଙ୍କୁଡି ଖେଳ ଖେଳି, ପ୍ରଜାପତି ଧରି ମୋର ହେତୁ ହେବା ଦିନର ନଅବର୍ଷ ବତିଛି, ସେଇ ଖଂଜାରେ । ମୁଁ ସମୁଦ୍ର ଓ ମହାନଦୀର କୁଆର ଭଙ୍ଗା ଦେଖି ସାରିଥିଲି । ସବୁକୁ ଆକଳନ କରିବା ଶିଖିଥିଲି । ମୋର ଏକମାତ୍ର ପିଉସୀ ଓ ପିଉସା ଦେବହୁତୀ ଓ ଶଙ୍କର ପୂଜାରୀ ବ୍ରହ୍ମପୁରା ମନ୍ଦିର ବଂଶ ପରଂପରାକୁ ବଞ୍ଚାଇ ରଖିଥିଲେ । ତା'ପରେ ଏହା ଦେବୋତ୍ତର ବିଭାଗକୁ ଚାଲିଗଲା । ପୂଜାରୀ ପରିବାର ସମ୍ବଲପୁର ସହରରେ କେବଳ 'ସାହେବ ଘର' ବୋଲି ପରିଚୟ ପାଇଲା ।

## ଜିଲ୍ଲାପାଳ ତ୍ରିବିକ୍ରମ ପୂଜାରୀଙ୍କ ପୁରୀର ଘର

ଅବସର ନେବାପୂର୍ବରୁ ବଡପୁଅ ତ୍ରିବିକ୍ରମଙ୍କ ପୁରୀର ନିଜ ତିଆରି ଖଂଜା ଦୁଇ ଭାଗରେ ବିଭକ୍ତ ହୋଇଥିଲା । ଗୋଟିଏ ସାମାନ୍ୟ ଭଡାଘର ଲୋକ ରହିବା ପାଇଁ ଓ ତାକୁ ସଂଲଗ୍ନ ଦୁଇ ମହଲା ଘର । ଏ ଘରର ଚାରିପାଖରେ ୬ ଫୁଟ ଉଚ୍ଚର ପାଚେରୀ ଘେରା ଥିଲା । ଭଡ଼ାଘର ଭିତରେ ବଗିଚାରେ ହସ୍ତଚାଳିତ ପାଇପ୍ ଲଗା ପମ୍ପଟିଏ ମାଳୀର ବ୍ୟବହାର ପାଇଁ ଥିଲା । ଏ ଘରର ଓ ବଗିଚାର ରକ୍ଷଣାବେକ୍ଷଣ ତତ୍ତ୍ୱାବଧାରକ ଘାସି ନାମଧେୟ ଜଣେ ପଶ୍ଚିମାଞ୍ଚଳର ଅର୍ଦ୍ଧବୟସ୍କ ଲୋକ ହାତରେ ପୁରୀର ଜିଲ୍ଲା କଲେକ୍ଟର ତ୍ରିବିକ୍ରମ ପୂଜାରୀ ଅର୍ପଣ କରିଥିଲେ । ଘାସି ଅବିବାହିତ ଥିବାରୁ ଖୋର୍ଦ୍ଧା ଅଞ୍ଚଳର ଜଣେ ଅଳ୍ପବୟସ୍କା ମହିଳାକୁ ତାକୁ ବାହା କରାଇ ଦେଇଥିଲେ । ଆମ ଘରର ମୁଖ୍ୟ ଫାଟକ ଆଗରେ ମଟରଗାଡି ରଖିବା ଗେରେଜ ଓ ତାକୁ ଲାଗି ଘାସିର ପରିବାର ସହିତ ରହିବା ଘର । ଘାସିର ସ୍ତ୍ରୀ ମୁଖରା ଝିଅଟିଏ । ସବୁବେଳେ ଗକର ଗକର ହେଉଥାଏ । କିନ୍ତୁ ଘାସି ନିର୍ବିକାର ଚିତ୍ତରେ ସବୁ ସହ୍ୟକରି ଦିନରାତି ନିଜ କାର୍ଯ୍ୟରେ ବ୍ୟସ୍ତ ରହେ । ଆମ ଘର ଆଗରେ ବିରାଟ ପଡିଆ ଓ ଲଙ୍କା ଆମ୍ବର ତୋଟା । ତା' ଚାରିପାଖରେ ଧଳା ଓ ଗୋଲାପି ସଦାବିହାରି ଫୁଲର ବଣ । ଏଇ ଘରେ ମୋର ଛୋଟବେଳରୁ ନଅବର୍ଷ ବିତିଛି ।

ସାରଦା ଦେବୀ ରୋଡ ହରିଜନ ସାହି ପାଖରେ ବାଙ୍କ ମୋଡି ମନ୍ଦିର ଆଡକୁ ଯିବାର ସରୁ ରାସ୍ତାଟିଏ ଥାଏ । ସେହିଠାରେ ବାଲି ସାହି ଏମ୍.ଇ. ସ୍କୁଲ ଚାରିପାଞ୍ଚଟି ଚାଳଘର । ତଳ କିନ୍ତୁ ସିମେଣ୍ଟର ପଲସ୍ତରା ହୋଇଥାଏ । ସବୁ ଶିକ୍ଷକ ନିଷ୍ଠାପର ଓ କର୍ମଠ । ଗାନ୍ଧିଜୀଙ୍କ ମୌଳିକ ଶିକ୍ଷା ଦ୍ୱାରା ପ୍ରଭାବିତ । ସେମାନଙ୍କ ମଧ୍ୟରୁ କେତେଜଣ ଟ୍ରେନିଂ ପ୍ରାପ୍ତ ଥିଲେ । କେତେବେଳେ ମୁଁ ଏ ସ୍କୁଲରେ ଶିକ୍ଷକଙ୍କ ଅଭାବ ଦେଖିବାକୁ ପାଇନାହିଁ । ସାଧାରଣ ବିଷୟରେ ଯେଉଁମାନେ ପାଠ ପଢେଇବାକୁ ଥିଲେ ତା' ବାହାରେ 'ହସ୍ତକର୍ମ' ବୋଲି ଏକ ବିଷୟରେ ପାଠ ପଢାଇବା ଆମ ସରଣୀରେ ବଡ଼ ନିଷ୍ଠାପର ଭାବରେ ଶିକ୍ଷକମାନେ ପ୍ରୟୋଗ କରୁଥିଲେ । ସେ ବିଷୟ ଗୁଡ଼ିକ ହେଲା, ବଗିଚା କାମ, ତାକୁଡିରେ ସୂତାକଟା, ମାଟିରେ

ଫଳ ଓ ମୂର୍ତ୍ତି ଗଢିବା ଓ ପଟା ଉପରେ ଓଡିଶା ଓ ଭାରତର ରିଲିଫ୍ ମ୍ୟାପ ତିଆରି କରିବା । ଏସବୁ ବାହ୍ୟାରେ, ସ୍କୁଲର ପରିବେଶକୁ ପରିଛନ୍ନ ରଖିବା । କାନ୍ଥରେ ଚିତ୍ର କରିବା ଓ ସରସ୍ୱତୀ ଗଣେଶ ପୂଜା ସମୟରେ ଛାତ୍ରଛାତ୍ରୀ ସମସ୍ତେ ସବୁ ବିଷୟରେ ସକ୍ରିୟ ସହଯୋଗ ଓ ସାହାଯ୍ୟ କରିବା ।

କଣେ ପଶ୍ଚିମାଞ୍ଚଳର ଛାତ୍ର ଭାବରେ ଚୂଡ଼ାଘଷା ଓ ଡାଲ୍ମାର ଅନୁଭୂତି ମୋତେ ପୁରୀ ସହରରେ ହିଁ ପ୍ରଥମେ ମିଳିଥିଲା । କିନ୍ତୁ କେବଳ ଏହାର ସ୍ୱାଦ ବ୍ୟତୀତ ପାକ ଓ ପାଚନ ପ୍ରଣାଳୀରେ ଭିତରି ରହସ୍ୟ ମୋର ଗୁରୁମାନେ ମୁଁ ବ୍ରାହ୍ମଣ ପିଲା ବୋଲି ମୋତେ ଜୋର ଦେଇ ଶିଖାଇ ଥିଲେ । ଆଜି ପର୍ଯ୍ୟନ୍ତ ମୋ ସ୍ମୃତିରୁ ଏହା ଯାଇନାହିଁ । ଚୂଡ଼ାକୁ କିପରି ଖାଣ୍ଟି ଘିଅ, ନବାତ, କର୍ପୂର, ଅଳେଇଚ ଦେଇ ହାତ ପାପୁଲିରେ ଘଷିଘଷି ନରମା କରାଯାଏ ଓ ତାହାକୁ ଟେଳା ମରାଯାଏ । ଏହା ସହିତ ଡାଲମା ରନ୍ଧନର ପ୍ରଣାଳୀ କେବଳ ଛାତ୍ରୀମାନେ ମନଯୋଗ ଦେଇ ଶିକ୍ଷା କରୁଥିଲେ । ଏ ଦୁଇଟି ଅମୂଲ୍ୟ ଖାଦ୍ୟ ମୋ ଗୁରୁମାନେ ମୋତେ, ସେ ବିଷୟରେ ଶିକ୍ଷା ଦେଇଥିବାରୁ ମୋର ପରିବାରର ନାତି ଅଣନାତୀଗଣ ଗର୍ବ କରନ୍ତି । ମୁଁ ଏପରି ଗୁରୁମାନଙ୍କର ଶିଷ୍ୟ ହେବାର ସୁଯୋଗ ପାଇଥିବାରୁ ନିଜକୁ ଧନ୍ୟ ମନେ କରେ ।

ମୋ ପାଇଁ କାଠପଟାରେ ଭାରତ, ଓଡିଶା ଓ ପୁରୀ ଜିଲ୍ଲାର ରିଲିଫ୍ ମ୍ୟାପ ତିଆରି ଆଉ ଏକ ବିଶେଷ ଉଦ୍‌ଘାଟନ । ଚିତ୍ର ପ୍ରତି ପିଲାଦିନରୁ ବଂଶର ସ୍ପୃହା ଥିବାରୁ ବଡ ନିଷ୍ଠାପର ଭାବରେ ଏହା ଶିକ୍ଷା କରିଥିଲି, ଯାହା ପରବର୍ତ୍ତୀ ମୋ ଚାକିରୀ ଜୀବନରେ ଅନେକ ସାହାଯ୍ୟକାରୀ ହେଲା । ମୁଁ ଏ ପ୍ରାଥମିକ ଶିକ୍ଷକମାନଙ୍କର ଋଣ ସାରା ଜୀବନ ସୁଝି ପାରିବି ନାହିଁ ।

'ସୂର୍ଯ୍ୟ ନିବାସ' ଘର ଛାଡ଼ିବା ପରେ, ସେ ଘର ପଛରେ ପୁରୀର 'ନାରୀ ସେବା ସଦନ' ତିଆରି ହେଲା । ଆମ ଘର ଚାରିପଟେ କେବଳ ବଙ୍ଗାଳୀମାନଙ୍କ ଘର । କେବଳ କଣେ ଓଡିଆ ଜଗନ୍ନାଥ ବାବୁ ଓଡିଆ ଥିଲେ । ଜଗନ୍ନାଥ ବାବୁ ବାପାଙ୍କ ଠାରୁ ବଡ଼ ଥିଲେ । ତେଣୁ ମୋ ନାନୀ, ଭାଇମାନେ ତାଙ୍କୁ ବଡ଼ବାପା ବୋଲି ଡାକୁଥିଲୁ । ତାଙ୍କର ଝିଅ ବାହାଘର କଥା ମୋର ମନେ ଅଛି । ଦିଲ୍ଲୀର କଣେ ଡାକ୍ତର ତାଙ୍କୁ ବିବାହ କରିଥିଲେ । ବହୁଦିନ ପରେ ଗୋଟିଏ ସଡକ ଦୁର୍ଘଟଣାରେ ନାନୀଙ୍କ ମୃତ୍ୟୁ ହେବାର ଖବର ମିଳିଲା । ୧୯୬୭ ମସିହାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେବାପରେ ଡକ୍ଟର କିଶୋର ଚନ୍ଦ୍ର ପଟ୍ଟନାୟକ ନାମରେ ସେ ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ଯୋଗ ଦେଇଥିଲେ । ସେଠି ମୋ ସହିତ ଜଗନ୍ନାଥବାବୁଙ୍କ ଜ୍ୱାଇଁ ଡକ୍ଟର କେ.ସି. ପଟ୍ଟନାୟକଙ୍କ ପରିଚୟ ହେଲା ।

ପୁରୀର ତ୍ରିବିକ୍ରମ ପୂଜାରୀଙ୍କ ଖଂଜାରେ ଥିବାବେଳେ ମୋର ଜନ୍ମ ହେଲା ନୟାଗଡ଼ରେ । ବାପା ତହସିଲଦାର, ସେକେଣ୍ଡ ମାଜିଷ୍ଟ୍ରେଟ, ଟ୍ରେଜେରି ଅଫିସର, ସବଡେପୁଟି ଭାବରେ କର୍ଯ୍ୟରତ ଥିଲେ ଓ ସାମୟିକ ଭାବରେ ଖୋର୍ଦ୍ଧା ସବଡିଭିଜନକୁ

ବଦଳି ହେଉଥିଲେ। ଦ୍ୱିତୀୟ ମହାସମର ଲାଗିଯିବା ପରେ ମୋ ବାପାଙ୍କୁ ଲାହୋର ପଠେଇ ଦିଆଗଲା। ସିଭିଲ ଡିଫେନ୍ସ ଟ୍ରେନିଂ ପାଇଁ। ସ୍ଥଳ ଭାଗରେ ଓ ବାୟୁରେ ଯେଉଁ ଯୁଦ୍ଧର ଗୋଳାବାରୁଦ ଆସି ସାଧାରଣ ଜନଜୀବନର କ୍ଷତି କରେ, ତାହାର ପ୍ରତିରୋଧ, ପ୍ରତିକାର, ଧନ ଜୀବନ ରକ୍ଷା କରିବାର ଅର୍ଦ୍ଧ ସାମରିକ, ରେଡକ୍ରସ୍ ପରି ଏକ ଟ୍ରେନିଂ। ଛ ମାସ ପାଇଁ ମୋ ବାପା ଏ ଟ୍ରେନିଂ ନେଇ ଫେରିଲେ ଓ ପୁରୀରେ ଏ.ଆର୍.ପି ଅଫିସର ବା ସିଭିଲ ଡିଫେନ୍ସ ଅଫିସର ଭାବରେ ନିଜ ଘରେ ରହି କାର୍ଯ୍ୟରତ ଥିଲେ। ଏ ସମୟରେ ପୋଲିସ୍ ଓ ସୈନିକ ବିଭାଗ ସହିତ ତାଙ୍କର ଯୋଗାଯୋଗ ରହୁଥିଲା। ବାପା ସେତେବେଳେ ମଧ୍ୟ ନିଜର ଚେଭ୍ରୋଲେଟ ହୁଡ୍ ଗାଡି ବ୍ୟବହାର କରି ପୁରୀ ଅଫିସ୍ର ପ୍ରଦକ୍ଷିଣ କାର୍ଯ୍ୟ କରୁଥିଲେ। ସେହି ସମୟରେ କୋଟାରେ ଚାଉଳ, ଡାଲି, କିରାସିନୀ, ସାଧାରଣ ଧୋତି, ଶାଢୀ, କନା, ପିଲାଙ୍କ ପାଠପଢ଼ା କାଗଜ, ଖାତା ଇତ୍ୟାଦି ମିଳିବାର ବନ୍ଦୋବସ୍ତ ହୋଇଥିଲା। ପେଟ୍ରୋଲ୍ ମଧ୍ୟ କଂଟ୍ରୋଲରେ ମିଳୁଥିଲା। ଜଣେ ସରକାରୀ ଅର୍ଦ୍ଧସାମରିକ ଅଫିସର ଭାବରେ ମୋ ପାଇଁ ସେ କେତୋଟି ବିଦେଶୀ ରଂଗତୂଳୀ, ଚକଲେଟ୍ ପାର୍ସି ଦୋକାନରୁ ସୁବିଧାରେ ଆଣି ଦେଉଥିଲେ। 'ବାରଯୋର ଭରଥାନିଆ' ଏହି ଦୋକାନ ବାଲେଶ୍ୱର ଓ ପୁରୀରେ କଲିକତା ଓ ବମ୍ବେରୁ 'ବେଭେରିଆ' ତିନିକୋଣିଆ ପେନସିଲ୍ଠାରୁ, ଖବରକାଗଜ, କେକ୍ ପେଷ୍ଟ୍ରି, ରଂଗ, ତୂଳୀ ଓ ଡ୍ରଇଂ କାଗଜ ଏବଂ ବିଲାତି ଟିଣରେ ପ୍ୟାକ କରା ସିଗାର, ସିଗାରେଟ ଖାଦ୍ୟ ଦ୍ରବ୍ୟ କେବଳ ପାର୍ସି ଦୋକାନୀମାନେ ବିକ୍ରି କରୁଥିଲେ। ଠିକ୍ ଏହିପରି ଆଉ ଗୋଟିଏ ଦୋକାନ 'ବିଲିମୋରିଆ ପାର୍ସି ଦୋକାନ' ଭାବରେ କଟକରେ ବକ୍ସି ବଜାରରେ ମୋର କଲେଜ ପାଠ ପଢ଼ାଯାଏ (୧୯୫୪ ମସିହା ପର୍ଯ୍ୟନ୍ତ) ଚାଲିଥିଲା। ଏବେ ସେଗୁଡ଼ିକ ଆଉ ନାହିଁ। ଏ ପାର୍ସି ସଂପ୍ରଦାୟ ବମ୍ବେରୁ କଲିକତା ବାଟରେ ଆସି ପୁରୀ, ବାଲେଶ୍ୱର, କଟକ ଓ ଜଟଣୀରେ ଦୋକାନ କରିଥିଲେ। ଏମାନଙ୍କ ଠାରେ ଜର୍ମାନୀ, ଜାପାନୀ ଓ ଇଂଲଣ୍ଡର ବହୁ ନାମୀଦାମୀ କମ୍ପାନୀର ଜିନିଷ ମିଳୁଥିଲା। ସ୍ୱଚ୍ଛଳ ଓ ଶିକ୍ଷିତ ପରିବାରର ଲୋକେ ଏ ଦୋକାନ ମାନଙ୍କର ଗ୍ରାହକ ଥିଲେ।

ପୁରୀର ଆମ ଘର ପଛପଟ ରାସ୍ତା ଦେଇ ମୋଚି ସାହି ଛକକୁ ଏକ ରାସ୍ତା ଥିଲା। ସେ ରାସ୍ତାରେ ଆସିଲେ ଛକରେ ଗାଙ୍ଗୁଲି ବାବୁଙ୍କ ଫଟୋ ଦୋକାନ, ଗୋଟିଏ ବଡ଼ ଓ ଭଲ ବଙ୍ଗାଳୀ ଜଳଖିଆ ଓ ମିଠା ଦୋକାନ ଥିଲା। ଗୋଟିଏ କିରାନା ଦୋକାନ ମଧ୍ୟ ଥିଲା। ସେଠାରୁ ମୋଚି ସାହିରେ ବିଭିନ୍ନ ଚମଡ଼ାରେ ଜୋତା, ବେଗ୍, ବେଲ୍ଟ ଦୋକାନ ଥିଲା। ସେଠାରେ ବାହାର ଯାତ୍ରୀଙ୍କ ଭାରି ଭିଡ଼ ଲାଗେ। ସିଧା ରାସ୍ତାରେ ଗଲେ ଜଗନ୍ନାଥଙ୍କ ପୂର୍ବଦ୍ୱାର ଓ ଗରୁଡ଼ ଖମ୍ବ ଦେଖାଯାଏ। ବଡ଼ଦାଣ୍ଡରେ ପହଞ୍ଚିବା ବେଳକୁ ଯେଉଁ ମିଠା ଦୋକାନଟି ଥିଲା ସେଠି ବହୁ ଉଚ୍ଚକୋଟିର ସରପୁଳି ତିଆରି ହେଉଥିଲା। ତା' ଆଗକୁ ଏମାର ମଠର ବିରାଟ ବାରଣ୍ଡା।

ଏତେବେଳଯାଏ ଯେଉଁ ପୁରୀ ସହରର ଆମ ପାରିବାରିକ ଖଂକା ଘରକଥା କହୁଥିଲା ତାହା ସମୁଦ୍ରର ଖୁବ୍ ପାଖରେ । କାନମୋଡ଼ା ପାଣି କଳ ଓ କିରାସିନି ଦିଆ ରାସ୍ତାର ଆଲୁଅ କଟକଠାରୁ ପୁରୀ ମ୍ୟୁନିସିପାଲିଟି ଆଗ ବ୍ୟବସ୍ଥା କରିଥିବା ମୋର ମନେ ହେଉଛି । ଆମ ରହିବାଘର ସୂର୍ଯ୍ୟ ନିବାସଠାରୁ ପୁରୀ ହୋଟେଲ ପାଖ ରାସ୍ତା ଖୁବ୍ ପାଖ ଥିଲା । ତେଣୁ ସମୁଦ୍ର ଦର୍ଶନ ମୋ ପାଇଁ ନିତିଦିନିଆ ସହଜସାଧ୍ୟ ବ୍ୟାପାର ଥିଲା । ମୋର ନାନୀ ମୋ ଠାରୁ ତିନିବର୍ଷର ବଡ଼ ଥିଲେ ବୋଲି ସେ ମୋର ବନ୍ଧୁ ଓ ପଥପ୍ରଦର୍ଶକ ଥିଲେ । ପୁରୀର ରାମଚଣ୍ଡୀ ବାଳିକା ବିଦ୍ୟାଳୟର ପଞ୍ଚମ ଶ୍ରେଣୀର ଛାତ୍ରୀ ଥିଲେ । ପାଖରେ ଲକ୍ଷ୍ମୀ ଟକିଜ ସିନେମା ହଲ । ସଂସ୍କୃତ କଲେଜରେ ସଂସ୍କୃତ ପାଠ ଛଡ଼ା କବିରାଜି ଶିକ୍ଷାର ମଧ୍ୟ ପ୍ରାବଧାନ ଥିଲା ।

ନାନୀଙ୍କ ସହିତ ଓ ବେଳେବେଳେ ବାପାଙ୍କ ସହିତ ସମୁଦ୍ର ଦିଗବାରଣୀ (ଫ୍ଲାଗଷ୍ଟାଫ୍) ଓ ବତୀଘର ପାଖରେ ଖେଳିବା ବେଳେ ଅଳପ ଦୂରରେ ଗଭର୍ଣ୍ଣରଙ୍କ ଗ୍ରୀଷ୍ମ ନିବାସ । ତା ଆଗକୁ କଲେକ୍ଟରଙ୍କ ଅଫିସ ଓ ଅନ୍ୟାନ୍ୟ ଅଫିସ । ପୁରୀର ବିଖ୍ୟାତ ଅମଲା କ୍ଲବ । ଏଠାରେ ସରକାରୀ ଓ ବେସରକାରୀ ସଭ୍ୟ ଦୁର୍ଗାପୂଜା, କାଳୀପୂଜା, ସରସ୍ୱତୀ ପୂଜା ବ୍ୟତୀତ ବର୍ଷକୁ ଗୋଟିଏ ଦୁଇଟି ନାଟକ ପରିବେଷିତ ହେଉଥିଲା । କଲିକତାର କଳାକାରମାନେ ନୃତ୍ୟଗୀତ ବେଳେବେଳେ ଆସି ପ୍ରଦର୍ଶନ କରୁଥିଲେ । ରାସ୍ତାର ଆରପାଖରେ ଲାଲମୋହନ ବାବୁ ବୋଲି ଜଣେ ବଙ୍ଗୀୟ ଶିକ୍ଷିତ ଲୋକଙ୍କର ଆମିଷ ଜଳଖିଆ ଦୋକାନ । ମୋ ନାନୀର ଓ ମୋର ଏହା ଅତି ପ୍ରିୟ ଦୋକାନ ଥିଲା । ଏଠାରେ ଚିଙ୍ଗୁଡି କଟ୍‌ଲେଟ, କିମା କଟଲେଟ୍ ଓ ଚପ ଖୁବ୍ ସୁସ୍ୱାଦୁ ଥିଲା । ବାପା ସଚ୍ଚିଦାନନ୍ଦ ଏଠାରେ ଜଣେ ପ୍ରିୟ ଲୋକଥିଲେ । ସମସ୍ତଙ୍କ ସଙ୍ଗେ ମିଶୁଥିଲେ ।

**ପୁନଶ୍ଚ କଟକ ନଗର**

ସିଧାସଳଖ ସ୍ଥଳ ଭାଗର ବା ଜଳପଥର ରାସ୍ତାର ଚିନ୍ତା ଚେତନା କେବେ ସେ ସମୟର (୧୯୩୦ ମସିହା ପୂର୍ବର) ଖାସମାହାଲ ଓ ରାଜାମାନଙ୍କ ରାଜ୍ୟରେ, ଅଲଗା ଅଲଗା ନୀତିନିୟମ ପ୍ରୟୋଗ ଯୋଗୁ, ଅନେକ ଜାଗାରେ ତନଖି ଫାଟକ, ଘଣ୍ଟା ଘଣ୍ଟା ପଥ ଅବରୋଧ ଯୋଗୁ, ଘରୋଇ ମଟର ବସ୍ ଚଳାଚଳ ଆୟସସାଧ୍ୟ ଓ ବିରକ୍ତିକର ଥିଲା । ଯାତ୍ରୀଙ୍କ ପାଇଁ ସବୁ ସ୍ଥାନରେ ଖାଦ୍ୟ ଓ ରହିବାର ବିଶ୍ରାମ ନେବାର ପ୍ରାବଧାନ ନଥିଲା । ତେଣୁ ଘରୋଇ ବସ୍ ବା ରେଳରେ ଯାଇ ମୁଁ ସ୍ଥାନ ଦେଖିବାର କଥା କହୁନାହିଁ । ଅଙ୍ଗେ ନିଭାଇବା କଥା କହୁଛି ।

ମୋର ପିତୃପୁରୁଷଙ୍କ ଦୟାରୁ ମୁଁ ଖୁବ୍ ଅଳ୍ପବୟସରୁ ଆମ ମାମୁଁଘର ଗାଁରୁ ବା ସମ୍ବଲପୁର ସହରରୁ ଉପକୂଳର କଟକ, ଖୋର୍ଦ୍ଧା, ପୁରୀ ଦେଖିବାର ସୁଯୋଗ ପାଇଥିଲି । ମୋ ବାପା ନିଜେ ଚଲାଉଥିବା କଳା ବୁଇକ୍ ଗାଡି, ୨୭ ମସିହାର ଚେଭୋଲେଟ ହୁଡ଼ ଗାଡ଼ି

ଓ ବଡ଼ବାପା ଅଚ୍ୟୁତାନନ୍ଦଙ୍କର ୨୯ ମସିହାର ଫୋର୍ଡ ହୁଡ୍‌ଦିଆ ଗାଡି ଚଡିବା ଦେଖିଛି । ବାପା ନିଜେ ଜଣେ ମେକାନିକ୍, ବଡେଇ ଓ ଗାଡିଚାଳକ ଥିବାରୁ ଗାଡିର ସମସ୍ତ ହେପାଜତ ନିଜେ ନେଉଥିଲେ । ନିଜର ଦପ୍ତରୀ ପିଅନକୁ ଗାଡି ଚଳେଇବା ପ୍ରଥମରୁ ଶିଖାଇ ଦେଉଥିଲେ । କିନ୍ତୁ ନିଜେ ଷ୍ଟିଅରିଂ ଧରି ଦିନରାତି ଗାଡି ଚଳେଇବାରେ କ୍ଲାନ୍ତି ଅନୁଭବ କରୁ ନଥିଲେ । ମୋର ବାପାଙ୍କ ବଡଭାଇ ଇଂଜିନିୟର ଅଚ୍ୟୁତାନନ୍ଦଙ୍କର 'ବାବୁ ଖାଁ' ନାମରେ ମୁସଲିମ ଡ୍ରାଇଭର ପ୍ରାୟ କୋଡିଏବର୍ଷ ପର୍ଯ୍ୟନ୍ତ ତାଙ୍କ ଫୋର୍ଡ୍ ହୁଡ଼ଗାଡି ଚଳେଇବା ଓ ତାର ହେପାଜତ ନେଉଥିଲେ । ତାଙ୍କୁ ଆମେ ପରିବାରର ଜଣେ ବୋଲି ଜାଣୁଥିଲୁ । ସେଥିପାଇଁ ସମ୍ବଲପୁରରୁ ସବୁପ୍ରକାର ରାସ୍ତାରେ, କଚ୍ଚା, ପକ୍କା, ମୁରୁମ୍, ସରଗୀ ପାଲି, ଜରପଡା, ଅନୁଗୁଳ, ମେରାମଣ୍ଡଳୀ, ଢେଙ୍କାନାଳ ପାହାଡ଼ କଡ଼ କଚ୍ଚା ରାସ୍ତାରେ ଚୌଦୁଆର କାଠ ପୋଲର ଆନିକଟ୍‌ର ବାରାକ ଉପର ଦେଇ ଜୋବ୍ରା ଲାଇଟ ହାଉସ (ଜୋବ୍ରା ଖୁଣ୍ଟି)ଠାରେ କଟକର ଇଂଜିନିୟରିଂ ସ୍କୁଲ ପାଖରେ ସନ୍ଧ୍ୟାବେଳେ ଆମ ଗାଡ଼ି ପହଞ୍ଚୁଥିଲା । ସେଠାରୁ କ୍ୟାଣ୍ଟନମେଣ୍ଟ ରୋଡ ଦେଇ ୧୯ ନମ୍ବର କୋଠା, ମୋ ବଡ଼ବାପା ଅଚ୍ୟୁତାନନ୍ଦ ପୂଜାରୀଙ୍କ ସରକାରୀ କୋଠିରେ ବିଶ୍ରାମ ନେଉଥିଲୁ । ଦିନେ ବା ଦୁଇଦିନ ପରେ କଟକରେ ରହି ସେଠାରୁ କାଠଯୋଡିର ପୁରୀଘାଟଠାରେ ଫେୟାରଓ୍ୱେଦର ରାସ୍ତାରେ ନଦୀ ପାରିକରି ପ୍ରାୟ ଚାରିଟି ଛୋଟ଼ବଡ ନଦୀ ପାରିକରି ଖୋର୍ଦ୍ଧା, ଜଟଣୀ ବା ପୁରୀ ସହରରେ ସନ୍ଧ୍ୟାରେ ପ୍ରବେଶ କରୁଥିଲୁ । ଏ ପାରିବାରିକ ସୁବିଧା ଯୋଗୁ ମୁଁ ମୂଳରୁ କହିଛି "କଟକ ସହର ଧବଳ ଟଗର" ପଢ଼ିବା ଆଗରୁ ତାର ଚାକ୍ଷୁସ ଦୃଶ୍ୟ ଅତି ନିକଟରୁ ଦେଖି ସାରିଥିଲି । ମହାନଦୀ ଓ କାଠଯୋଡି ବଡି ସହିତ, ପୁରୀ ସମୁଦ୍ରର ପ୍ରାକୃତିକ ସୌନ୍ଦର୍ଯ୍ୟ ମୋତେ ସମ୍ବଲପୁରର ମହାନଦୀର ସୌନ୍ଦର୍ଯ୍ୟକୁ ତୁଳନା କରି ବର୍ଣ୍ଣନା କରିବାକୁ ଖୁବ୍ ଛୋଟବେଳୁ ଶିଖେଇଛି ।

ଏ ପ୍ରଭାବ ପରିବାରର ମୋର ବଡ଼ଭଉଣୀ ସତ୍ୟବତୀ ହୋତା, ମୁଁ ଓ ମୋର ବାପାଙ୍କ ଛଡା କ୍ୱଚିତ ପଶ୍ଚିମାଞ୍ଚଳ ଓଡିଶାର ଲୋକେ ଅଙ୍ଗେ ଲିଭେଇଥିବେ । ୧୯ ନମ୍ବର କୋଠି ପ୍ରାୟ ୫ ଏକରର ବ୍ରିଟିଶ ସରକାର ଅମଳର କୋଠି । ସାମନାରେ ଫୁଲ ଓ ପାଣି ଫୁଆରାର କୁଣ୍ଡରେ- ନୀଳ, ନାଲି କଇଁ ଫୁଲ । ମଲ୍ଲୀ, କାଇ, ଯାଇ ଓ ହେନା ଗଛର ବାସ୍ନା । ପଶ୍ଚିମ ପଟେ ଡ୍ରାଇଭର, ତିନିଜଣ ମାଳୀ ଓ ପରିବେଶ ସଫାରଖିବା ପିଅନ । ପଶ୍ଚିମ ପଟରେ ପାଚିରୀକୁ ଲାଗି ବିରାଟ ମାଛଛଡ଼ା ପୋଖରୀ । କୋଠିର ପଛଭାଗ ଆମ୍ବ, ଜାମ୍‌ରୋଳ ଓ ପିଜୁଳି ଗଛ । ଏବେ ସେ କୋଠୀ ବହୁ ଖଣ୍ଡରେ ବିଭକ୍ତ ହୋଇ ସାରିଛି ।

ମୋର ଇଂଜିନିୟର ବଡ଼ବାପା ଖୁବ୍ ପରିବାପ୍ରିୟ ଲୋକ ଥିଲେ । ତେଣୁ ବର୍ଷର ସବୁ ସମୟର ପରିବା ପଛପଟ ବିରାଟ ବଗିଚାରେ ବଡବାପା, ବଡମା 'ଙ୍କ ତତ୍ତ୍ୱାବଧାନରେ ଲଗା ଯାଇଥିଲା । ସବୁଦିନ ତଟକା ଶାଗ ଓ ତରକାରୀ ମୋ ବଡ଼ବାପାଙ୍କ ମୁଖ୍ୟ ଖାଦ୍ୟ ଥିଲା । ସେ ପ୍ରତିଦିନ ସକାଳୁ ଯୋଗାସନ କରୁଥିଲେ । ତାଙ୍କ ନିଜ କୋଠରୀ ପାଖରେ ବଡପୁଅ

ବିଚିତ୍ରାନନ୍ଦଙ୍କ ରହିବା ଘର । ସେ ବଡ଼ଭାଇ ଶେଷବେଳକୁ ରାଉରକେଲାର ସୁପରିନ୍‌ଟେଣ୍ଡେଣ୍ଟ ପଦରେ ମୃତ୍ୟୁବରଣ କରିଥିଲେ । ଅଚ୍ୟୁତାନନ୍ଦ ପୂଜାରୀଙ୍କ ପାଞ୍ଚ ଝିଅ ଓ ଦୁଇ ପୁଅ । ସାନପୁଅ ନିର୍ମଳଚନ୍ଦ୍ର ପୂଜାରୀ ଆମେରିକା ଯାଇ ସେଠାରେ ବସବାସ କରି ରହିଗଲେ । ପାଞ୍ଚଟି ଯାକ ଭଉଣୀ ସମ୍ବଲପୁର ଅଞ୍ଚଳରେ ବିବାହକରି ପ୍ରତିଷ୍ଠିତ ହୋଇଛନ୍ତି । ଏ ପାଞ୍ଚଭଉଣୀ ପ୍ରାୟ ସମସ୍ତେ ମୋ' ଠାରୁ ବଡ଼ । ସେମାନେ ମୋତେ ନେଇ ବହୁତ ଗର୍ବ ଅନୁଭବ କରନ୍ତି । ମୋର ନିଜର ବଡ଼ଭଉଣୀ ସତ୍ୟବତୀ, ସାନଭଉଣୀ ସଞ୍ଜୀବନି (ଯାହାକୁ ମୁଁ ନିଜେ ପାଠପଢ଼େଇ ସମ୍ବଲପୁରରେ ଜଣେ ଡାକ୍ତରଙ୍କୁ ବିବାହ କରାଇଥିଲି) ମୋ ପୈତୃକ ଘର ପାଖରେ ଏବେ ରହନ୍ତି । ଏ ସମସ୍ତ ପଇଁତିରିଶ ଜଣ ଭଉଣୀମାନେ, ପାଞ୍ଚଟି ଭାଇ ଓ ଗୋଟିଏ ଭଉଣୀର ଔରସରୁ ଜନ୍ମି ଗୋଟିଏ ପରିବାର ପରି ରହିଥିଲେ । ଏମାନଙ୍କ ସ୍ନେହ ଓ ଶ୍ରଦ୍ଧା ମୋ ପ୍ରତି ଏତେବେଶୀ ଯେ ମୁଁ ସବୁବେଳେ କହେ ମୋର ପଇଁତିରିଶଟି ଭଉଣୀ । ମୁଁ ସେମାନଙ୍କ ସମସ୍ତଙ୍କ ପାଖରେ ଋଣୀ ହୋଇ ରହିଛି । ଏହାର ଗୋଟିଏ ଗୋଟିଏ ପ୍ରତୀକ ଝାଡୁଆପଡାର ଖଂଜା, ପୁରୀ ବାଲିସାହି ଘର ଓ ଅଚ୍ୟୁତାନନ୍ଦ ପୂଜାରୀଙ୍କ ଅଠରବର୍ଷର ସରକାରୀ କୋଠି ୧୯ ନମ୍ବର କ୍ୟାଣ୍ଟନମେଣ୍ଟ ରୋଡ । (ଆଜିକାର ମଧୁବାବୁଙ୍କ ପ୍ରତିମୂର୍ତ୍ତି ପାଖକୁ ଲାଗି ସେ ସ୍ମାରକୀ) ଦୁଃଖର କଥା, ଏ କୋଠିର ଅବସ୍ଥା ୧୯୬୦ ମସିହା ପରେ ସଂପୂର୍ଣ୍ଣ ପରିବର୍ତ୍ତିତ ହୋଇଯାଇଛି । ମୋ ମାନସିକ ସ୍ତରରେ 'କଟକ ସହର ଧବଳ ଟଗର'ର ଏ ଆଦ୍ୟ ସ୍ମୃତି ଏବେବି ଜଳଜଳ ଦେଖାଯାଏ । ପ୍ରିୟ କଟକ ସହର ତୁମକୁ ପ୍ରଣାମ ।



# ସମ୍ବଲପୁରିଆ - ନଦୀ ଓ ନାରୀ

ପ୍ରାୟ ପାଞ୍ଚଶହ ବର୍ଷ ପୂର୍ବେ। ମହାନଦୀ କୂଳରେ ଅବସ୍ଥିତ ଛୋଟ ନଗରଟିଏ। ରାଜାଙ୍କ ଦୁର୍ଗ, ଚାରିପାଖରେ ଛୋଟ କେତୋଟି ଗ୍ରାମ। କେତୋଟି ଛୋଟ ନାଳ ଓ ନଦୀ ସହର ଏ ମୁଣ୍ଡରେ ସେ ମୁଣ୍ଡରେ ଆସି ମହାନଦୀରେ ପଡିଛି। ତାରି ଭିତରେ ଏ ଅତୀତର ସହର। ଆଖପାଖ ରାଜ୍ୟର, ଗ୍ରାମର, ଜମିଦାରୀର ବ୍ୟବସାୟ କେନ୍ଦ୍ର। ଜଳ ଓ ସ୍ଥଳ ପଥର ସଂଘଟନ ସ୍ଥଳୀ। ପୂର୍ବକୁ, ପଶ୍ଚିମକୁ, ଦକ୍ଷିଣକୁ ଓ ଉତ୍ତରକୁ ଯିବାପାଇଁ, ବ୍ୟବସାୟ ପାଇଁ, ତୀର୍ଥ ଭ୍ରମଣପାଇଁ ସମ୍ବଲପୁର ସହରହିଁ ଥିଲା ଏକ କେନ୍ଦ୍ରବିନ୍ଦୁ। ଜଳପଥ, ଜଙ୍ଗଲ ପଥ ଓ ପର୍ବତଧାରରେ ଅଶ୍ୱପୃଷ୍ଠରେ ଅନାୟାସରେ ଶହଶହ ମାଇଲ ଅତିକ୍ରାନ୍ତ କରିବାର ଘାଟିପଥ, ଯୋଗସୂତ୍ରଥିଲା ଏ ସହର। ଛତିଶଗଡ଼ରୁ ଅମରକଣ୍ଟକ ଓ ସେଠାରୁ ଝାଡ଼ଖଣ୍ଡ ଦେଇ ମଗଧ ରାଜ୍ୟର ପାଟଳୀପୁତ୍ର ଓ ହଜାରିବାଗ ଯାଏ ଅଶ୍ୱାରୋହୀଟିଏ ନିଷ୍କଣ୍ଟକ ଯାଇପାରୁଥିଲା ସେ ସମୟରେ। ମହାନଦୀର ଜଳପଥରରେ ହିଁ ଉପକୂଳ ଓଡିଶାର ସମସ୍ତ ଅଞ୍ଚଳକୁ ଯିବାର ବାଟଥିଲା। ପାରାଦ୍ୱୀପ ଦେଇ ବଙ୍ଗୋପସାଗରରେ ବୋଇତ ବାହିଯିବାର ଇତିହାସର ମୂକସାକ୍ଷୀ ଏ ହୀରାକୁଦ ନଗର। ଜଗନ୍ନାଥ ସଡକର ପଶ୍ଚିମା ଯାତ୍ରୀ ଶ୍ରୀକ୍ଷେତ୍ରକୁ ଯିବା ବାଟ ମଧ୍ୟ ସମ୍ବଲପୁର ସହରର ମହାନଦୀ ସେପାରିରେ ଏବେବି ଅବସ୍ଥିତ।

ସମ୍ବଲପୁର ଗଣ୍ଡରାଜା-କ୍ଷତ୍ରୀୟ ବଂଶ ଉଦ୍ଭବ। ବ୍ରାହ୍ମଣ ପୂଜକ ଓ ଉପାସକଙ୍କୁ ହୋତା, ସୁପକାର, ବେହେରା, ପୁରୋହିତ ସାଂଜ୍ଞା ଧାରୀ ସମ୍ମାନ ଦେବା ସହିତ ବିଭିନ୍ନ ଦେବଦେବୀଙ୍କ ପୂଜାର୍ଚ୍ଚନା ପାଇଁ ନିଯୋଗ କରିଥିଲେ। ବହୁ ଶିବ ମନ୍ଦିର ପାଖରେ ବହୁ ଗୁଡ଼ିଏ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ଏ ସହରର ବିଶେଷତ୍ୱ ଥିଲା। ସମ୍ବଲପୁର ସହରର ଅଧିଷ୍ଠାତ୍ରୀ ଦେବୀ ସମଲେଇଙ୍କର ସର୍ବପୁରାତନ ମନ୍ଦିର ସହିତ, ପାଟଣେଶରୀ ମନ୍ଦିର, ପାଟଣା (ବଲାଙ୍ଗୀର) ରାଜ୍ୟର ଅଧିଷ୍ଠାତ୍ରୀ ଦେବୀଙ୍କ ମନ୍ଦିର ମଧ୍ୟ ଏଠାରେ ପୂଜା ପାଉଥିଲେ। ପ୍ରାୟ ଦଶଟି ଜଗନ୍ନାଥ ମନ୍ଦିରର ପ୍ରତିଷ୍ଠା ଏ ସହରର ଆଉ ଏକ ଆକର୍ଷଣ। ସର୍ବପୁରାତନ ମନ୍ଦିର ମହାନଦୀ କୂଳରେ ଅବସ୍ଥିତ ହୋତାପଡାର ଜଗନ୍ନାଥ ମନ୍ଦିର ମଧ୍ୟ ଏକ ପୁରାତନ ମନ୍ଦିର। ଏ ମନ୍ଦିର ସହିତ ସମ୍ବଲପୁର ରାଜବଂଶର ସଂପର୍କ ଥିଲା କାରଣ ଏହା "ରାଜାବଖରି" (ରାଜାଙ୍କ ଦୁର୍ଗ)ର ସବୁଠାରୁ ପାଖରେ ଅବସ୍ଥିତ ମନ୍ଦିର। ଏଠାରେ "ବିଷ୍ଣୁ ହୋତା" ନାମରେ ଜଣେ ବ୍ରାହ୍ମଣଙ୍କୁ ଏ ମନ୍ଦିରରେ ପୂଜକ ଭାବରେ ନିଯୋଗ କରିଥିଲେ। ତାଙ୍କର ଏକମାତ୍ର ପୁତ୍ର ଦାମୋଦର ହୋତାପଡା "ଗୁଡି"ର ଦାୟିତ୍ୱ ନେବା ବେଳେ ସମ୍ବଲପୁରର ରାଜା ସସମ୍ମାନରେ ତାଙ୍କୁ "ପୂଜାରୀ" ଉପାଧିଟି ପ୍ରଦାନ କଲେ।

ତାଙ୍କର "ହୋତା" ସାଂଙ୍କାର ପ୍ରବର୍ତ୍ତନ ହୋଇ ସେହିଦିନରୁ "ପୂଜାରୀ" ଉପାଧିଟି ଏ ଅଞ୍ଚଳରେ ପରିଚିତି ପାଉଛି । ଦାମୋଦରଙ୍କର ବଳଭଦ୍ର, ଜଗନ୍ନାଥ (ଗୋଲକ), ରାମଚନ୍ଦ୍ର, ରଘୁନାଥ ଓ ନାରାୟଣ ନାମରେ ପାଞ୍ଚ ପୁଅ ଥିଲେ । ତୃତୀୟ ପିଢ଼ିବେଳକୁ ବଳଭଦ୍ରଙ୍କର ଦୁଇଟି ପୁତ୍ର ଜନ୍ମହେଲେ । ବଡପୁଅ କୃଷ୍ଣ ଓ ସାନ ପୁଅ ମଧୁ । ଚତୁର୍ଥ ପିଢିରେ ମଧୁ ନିଃସନ୍ତାନ ଥିଲେ, କିନ୍ତୁ କୃଷ୍ଣ (ଡାକ ନାଁ ତାମ୍ବି ପୂଜାରୀ)ଙ୍କର କମଳଲୋଚନ, ପଦ୍ମଲୋଚନ, ପ୍ରଦ୍ୟୁମ୍ନ ଓ ସୁରାନନ୍ଦ ଚାରିଟି ପୁଅ ଜନ୍ମ ହୋଇଥିଲେ ଓ ପ୍ରଦ୍ୟୁମ୍ନଙ୍କର ଦୁଇଟି ପୁତ୍ର ଜନ୍ମ ହୋଇଥିଲେ । ପଞ୍ଚମ ପିଢ଼ିରେ କମଳଲୋଚନଙ୍କର ପାଞ୍ଚ ପୁଅଙ୍କର ନାମ ହେଲା ତ୍ରିବିକ୍ରମ, ସନାତନ, ମୀନକେତନ, ଅଚ୍ୟୁତାନନ୍ଦ ଓ ସଚ୍ଚିଦାନନ୍ଦ । ପ୍ରଦ୍ୟୁମ୍ନଙ୍କର ଦୁଇଟି ପୁଅ । ଗୋପାଳବଲ୍ଲଭ ଓ ଗୌର ଚନ୍ଦ୍ର । ପଞ୍ଚମ ପିଢ଼ିର ସମସ୍ତଙ୍କର ବାସସ୍ଥାନ ଝାଡୁଆପଡ଼ାର ବ୍ରହ୍ମପୁରା ମନ୍ଦିର ପାଖରେ ହିଁ ଅବସ୍ଥିତ । ଏବେ (ସପ୍ତମ ଓ ଅଷ୍ଟମ ପିଢ଼ିରେ) ଏମାନଙ୍କର ସନ୍ତାନସନ୍ତତି ଓଡ଼ିଶାର ବିଭିନ୍ନ ଜାଗାରେ ଏପରିକି ବିଭିନ୍ନ ମହାଦେଶକୁ ପ୍ରସାରିତ ହୋଇ ସାରିଲେଣି ।

ସାତଟି ପିଢ଼ିର ଯେଉଁ ବଂଶବୃକ୍ଷଟି ବର୍ତ୍ତମାନ ସଂଗୃହିତ ହୋଇଛି ସେଥିରେ ଆଦ୍ୟ ଭାଗରେ ପୁରୁଷ ମାନଙ୍କ ବ୍ୟତୀତ ନାରୀମାନଙ୍କର କୌଣସି ଉଲ୍ଲେଖ ନାହିଁ । ଏହାର କାରଣ ବିଷୟରେ ବେଶୀକିଛି କହିବା ନିଷ୍ପ୍ରୟୋଜନ । କାରଣ ସପ୍ତଦଶ ଓ ଅଷ୍ଟାଦଶ ଖ୍ରୀଷ୍ଟାବ୍ଦ ଯାଏ ଆମ ଅଞ୍ଚଳରେ ନାରୀର ସ୍ଥାନ ବଂଶରକ୍ଷା ପାଇଁ ମୋଟେ କଳ୍ପନା କରାଯାଉନଥିଲା । ବାଲ୍ୟବିବାହ ଓ ଶିଶୁ ଅବସ୍ଥାରେ ଶ୍ୱଶୁରାଳୟ ଗମନ ଯୋଗୁଁ କନ୍ୟାରତ୍ନ ମାନଙ୍କର ଭବିଷ୍ୟତ କଥା, ପିତାମାତା ଅପେକ୍ଷା ଶ୍ୱଶୁରାଳୟର ଲୋକେ ବେଶୀ ବୁଝୁଥିଲେ । ଶ୍ୱଶୁର ଓ ସ୍ୱାମୀର ପରିଚର୍ଯ୍ୟାରେ ନାରୀମାନେ ସମାଜରେ ପରିଚୟ ପାଉଥିଲେ । ତଳେ ପୂଜାରୀ ବଂଶର ବଂଶବୃକ୍ଷର ଚିତ୍ର ପ୍ରଦତ୍ତ ହେଲା । ସେ ସମୟରେ ଆଜିକାଲିକା ପରି ମଣିଷ, ଜନ୍ମମୃତ୍ୟୁର ଦାୟିତ୍ୱ ନିଜ ଉପରକୁ ନନେଇ ଦୈବୀଶକ୍ତି ଉପରେ ଛାଡିଦେଉଥିଲା ।

ଛୋଟ ବୟସରୁ ପ୍ରକୃତି ମୋତେ ପ୍ରଭାବିତ କରିଛି । ବାପ ମାଆ ଯେଉଁ ଦେଶର ହେଲେ ମଧ୍ୟ ଶିଶୁଟିର ଜନ୍ମ ଓ ଲାଳନପାଳନର ପରିବେଶ ତାକୁ ଯେତେ ପ୍ରଭାବିତ କରିଥାଏ ତାହାଠାରୁ ଅନେକ କମ୍ ବାପ ମା'ଙ୍କର ରକ୍ତର ଗୁଣ (ଜିନ୍) ତାକୁ ପ୍ରଭାବିତ କରେ ବୋଲି ମୋର ବିଶ୍ୱାସ । ଏସବୁ ସତ୍ତ୍ୱେ ମୋ' କ୍ଷେତ୍ରରେ ମୋର ବଂଶାନୁକ୍ରମିକ ଗୁଣାଗୁଣ ଓ ମୋର ଲାଳନପାଳନର ପରିବେଶ ମୋତେ ସମାନ ଭାବରେ ପ୍ରଭାବିତ କରିଛି ।

ବୟସ ବଢ଼ିବା ସହିତ, ଏ ସଚେତନତା ଓ ଅନ୍ତର୍ଦୃଷ୍ଟି ମୋତେ ହତାଶା ପରିବର୍ତ୍ତେ ଅକଥନୀୟ ଆନନ୍ଦ ଦେବାରେ ଲାଗିଛି । ମୁଁ କେବେହେଲେ ଇତିହାସର ଛାତ୍ର ନଥିଲି । କିନ୍ତୁ ପ୍ରକୃତିର ଆସକ୍ତି ମୋତେ ସଂସ୍କୃତି ଓ ପରଂପରାର ଆଦିମତା ବିଷୟରେ ଅନ୍ୱେଷଣ କରିବାକୁ

ବାଧ୍ୟ କରେ । ବେଳେ ବେଳେ ଗୋଟିଏ ମଣିଷ-ଗଣ କାଳ୍ପନିକ ଯୁଗର ମଣିଷ ହିସାବରେ କେତେଗୁଡ଼ିଏ ନିୟମ କାନୁନ୍‌ରେ ମୋତେ ବାନ୍ଧି ରଖିଲେ, ମୋର ଅନ୍ତରର ବିଦ୍ରୋହୀ ମଣିଷଟି ସ୍ୱର ଉତ୍ତୋଳନ କରେ । ବୋଧହୁଏ ଏହାହିଁ ଗୋଟିଏ ମଣିଷର ସ୍ୱାଧୀନତା ଓ ମୁକ୍ତିର ନିର୍ଘୋଷ । ଏସବୁ ମୋତେ ଜଣେ ରାଜନୈତିକ ମଣିଷ ହିସାବରେ ମଧ୍ୟ ଗ୍ରହଣ କରିବାକୁ ପ୍ରସ୍ତୁତ କରି ପାରିନାହିଁ । ମୋ' ଭିତରର ଅର୍ଥନୈତିକ ମଣିଷଟି ମଧ୍ୟ କେତେବେଳେ ସେମିତି ଗୋଟିଏ ଜୀବନ ବଞ୍ଚିବାକୁ ଚାହିଁ ନାହିଁ । ମୁଁ ଆଜିଯାଏ ବିଶ୍ୱାସ କରେ, ମଣିଷ ଏକ ସାମାଜିକ ପ୍ରାଣୀ । କିନ୍ତୁ ତାହାର ସୁଖର ପରିସୀମାକୁ କେତେବେଳେ ଆବଦ୍ଧ କରାଯାଇ ପାରେନା । ଜଣେ ମଣିଷ ଚାହିଁଲେ ସବୁ ପରିସ୍ଥିତିରେ ସମୟର ଗତିପଥକୁ ବଦଳାଇ ଦେବାର କ୍ଷମତା ରଖେ ଓ ସେଥିରେ ବଞ୍ଚିବା ଶିଖେ । ତା' ଭିତରେ ସବୁ ସମୟରେ ସେମିତି ଏକ ଐଶ୍ୱରୀୟ ଶକ୍ତି ଲୁଚି ରହିତାଏ ।

ମୋର ଜୀବନ କାଳରେ ବା ମୁଁ ଯେଉଁ ଶତାବ୍ଦୀର ଲୋକ ଭାବରେ ପରିଚୟ ପାଉଛି, ତା' ଭିତରେ ମୋର ପୂର୍ବସୁରୀ ମାନଙ୍କ ବିଷୟରେ ସଚେତନ ହେବାକୁ ଚେଷ୍ଟା କରେ । ସେମାନଙ୍କର ସମୟ, ପରିବେଶ, ଜ୍ଞାନ ସେମାନଙ୍କୁ କିପରି ସକ୍ଷମ ବା ଅକ୍ଷମ କରିଛି ତାହାହିଁ ଖୋଜି ଚାଲେ । ମୁଁ ଜାଣେ ନା ଏହା ଏକ ଐତିହାସିକ ଅନ୍ୱେଷଣ କି ନୁହେଁ । ଅଥଚ୍‌ ଏପରି ଲୋକଟିଏ ଭୁଲ ବୁଝାମଣାର ଶିକାର ହୁଏ । ନିନ୍ଦିତ ହୁଏ ବା ପ୍ରଶଂସା ପାଏ । ଏହାର ଅନୁଭୂତି ମଧ୍ୟ ମୁଁ ପାଇଛି ।

ହଁ, ପରିବେଶର କଥା କହୁଥିଲି । ସମସ୍ତଙ୍କ ମୁହଁରେ ଏବେ ଜଳ, ଜମି ଓ ଜଙ୍ଗଲକୁ ନେଇ ତର୍ଜମା । ହଠାତ୍ ଷାଠିଏ ବର୍ଷର ସ୍ୱାଧୀନତା ପରେ ଏହା ଉପରେ ଏତେ ଗବେଷଣା, ରାଜନୀତି ଓ ସଚେତନତାର ପରିସର କେବଳ ଏକ ଆଧୁନିକ ଇଂରାଜୀ ଶବ୍ଦର ଖେଳ ଓ ଭେଲିକି ଭାବରେ ମୋ ଆଖିକୁ ଦେଖା ଯାଉଛି । ସମାଜର ମୂଳ ସମସ୍ୟାକୁ ସାଧାରଣ ଜନତାର ଅନ୍ତରାଳରେ ରଖିବାର ଏକ ଆପ୍ରାଣ ଚେଷ୍ଟା । ବୋଧହୁଏ ଏହାହିଁ "ଗ୍ଲୋବାଲାଇଜେସନ୍‌" । ଆତ୍ମ-ନିର୍ଭରଶୀଳତା ଓ ତ୍ୟାଗ ସ୍ୱୀକାର କରିବାର ସତ୍ୟତାଠାରୁ ସାଧାରଣ ଜନତାକୁ ଦୂରକୁ ନେଇଯିବାର ଏକ ଅନ୍ତିମ ଅପଚେଷ୍ଟା । ଅନ୍ତତଃ ଭାରତ ପରି ଦେଶ ପାଇଁ ଏହା ଆତ୍ମ-ପ୍ରବଞ୍ଚନା ଛଡ଼ା କିଛି ନୁହେଁ । ଦେଶର ପ୍ରତ୍ୟେକ ଯୋଜନା ଓ ପରିକଳ୍ପନା ପଛରେ ହତାଶାର ପରିଣତିକୁ ଦେଖିଲେ ମନେହୁଏ ଏହାହିଁ ଆମ ସଭ୍ୟତାର ପ୍ରକୃତ ପରିଚୟ ।

ଅତ୍ୟଧିକ ମାତ୍ରାରେ ବିଜ୍ଞାପନ, ପ୍ରଚାର, ଆନନ୍ଦ, ଉଲ୍ଲାସ, ସ୍ନାୟବିକ ଉତ୍ତେଜନା, ହିଂସା, ପ୍ରତିହିଂସା ଓ ଯୌନତାକୁ ଏକ ଆସ୍ତରଣ ଦେବା ଆଧୁନିକ ମଣିଷର ଶ୍ରେଷ୍ଠ ଆକାଂକ୍ଷା । ଦିବାରାତ୍ର ମାଳା ଜପିବାର ସାଧନା, କେତେଜଣ ବୁଦ୍ଧିମାନ ଖେଳାଳୀ ଖେଳି ଚାଲିଛନ୍ତି ଆମ ସମାଜରେ । ସେମାନଙ୍କର ସଂଖ୍ୟା ଦୃଷ୍ଟିରୁ ସେମାନେ ଭାରତର ଦଶ ଭାଗରୁ ଭାଗେ ଲୋକ ମଧ୍ୟ ହେବେ ନାହିଁ । ତଥାପି, ଭାରତରେ "ପ୍ରଜ୍ଞା"ର ଉଦୟ

ହେଉନାହିଁ । ଭୋଗ ଓ ତ୍ୟାଗର ଏକ ଆଦିମ ସଂଘର୍ଷ ଲାଗିରହିଛି । ଭାରତ ସ୍ୱାଧୀନତା ପାଇବା ବେଳକୁ ଏହାର ଖସଡ଼ା ଓଡ଼ିଶା ରାଜ୍ୟପାଇଁ ତିଆରି ହୋଇସାରିଥିଲା । ତାହାର ଏକ ନମୁନା ଜନ୍ମ ଦେଇଥିଲା, 'ବୃହତ୍ ମହାନଦୀ ବନ୍ଧ ଯୋଜନା' ଭାବରେ ।

**ସମ୍ବଲପୁରର ମହାନଦୀ ସଂସ୍କୃତି**

ମହାନଦୀ ପରି ଏ ପୃଥିବୀରେ ଛୋଟବଡ଼ ଅନେକ ନଦୀ ଅଛି । ହଜାର ହଜାର ବର୍ଷ ହେଲା ଐତିହାସିକ, ଭୂଗୋଳବିତ୍, ସମାଜଶାସ୍ତ୍ରୀ ଓ ନୃତତ୍ତ୍ୱବିତ୍ମାନେ ନଦୀ ସଂସ୍କୃତି ଓ ସଭ୍ୟତା ବିଷୟରେ ବହୁକଥା କହି ଚାଲିଛନ୍ତି । କେତେ ନୂଆ ସୂତ୍ର, ପଦ୍ଧତି, ବିଜ୍ଞାନ ଓ କଳା ବିଷୟରେ ଏ ଗବେଷକମାନେ ଆଜିର ତତ୍ତ୍ୱବିତ୍ମାନଙ୍କୁ ସୂଚନା ଦେଉଛନ୍ତି । ଏ ମହାମହା ନଦୀ ମାନଙ୍କର ନଦୀଶଯ୍ୟାକୁ ଆବିଷ୍କାର କରି ଆମାଜନ, ନୀଳନଦୀ, ସିନ୍ଧୁ, ଇଉଫ୍ରେଟିସ୍, ହ୍ୱାଙ୍ଗ ହୋ ଉପତ୍ୟକାର ସଭ୍ୟତା ଓ ସଂସ୍କୃତି ଏବେ ମଧ୍ୟ ଆଶ୍ଚର୍ଯ୍ୟାନ୍ୱିତ କରୁଛି ପୃଥିବୀର ଲୋକଙ୍କୁ । ସେ ବିଷୟରେ କିନ୍ତୁ ଉତ୍କଳପ୍ରଦେଶରେ କୌଣସି ଆଲୋଚନା ହେବା ଆମ୍ଭେ ଜାଣି ପାରିଲୁନାହିଁ ବିଗତ ଗୋଟିଏ ଶତାବ୍ଦୀର ଇତିହାସରେ । ଏଠି ଯଦି ସଭ୍ୟତା ଗଢ଼ି ଉଠିନଥିଲା, ତେବେ ଉତ୍କଳୀୟମାନେ "ଆକାମାଭେି-ଗୁଆପାନ" ଥୋଇ କିମ୍ବଦନ୍ତୀଟିକୁ ନେଇ ଏତେ ଭାବାବେଶ ଦେଖାଉ କାହିଁକି ? ଗାଡିଆପାଣିରେ ବର୍ଷକୁ ଥରେ କଦଳୀ ପଟୁଆର ଡଙ୍ଗା ବାହି ଆମେ ଯାହା ସ୍ମରଣ କରୁ ତାହା କଣ ଚିଲିକା, ପାରାଦ୍ୱୀପ ଓ ଓଡ଼ିଶାର ଏକମାତ୍ର ସାଂସ୍କୃତିକ ସହର ମଧ୍ୟରେ ସିମୀତ ହୋଇ ରହିବ ନାଁ ଉତ୍କଳ, କୋଶଳ, କଳିଙ୍ଗର ସବୁ ଅଞ୍ଚଳର କଳାକୁଶଳୀ ଓ ନୌଚାଳନାର ଦକ୍ଷତା ଉପରେ ଆଲୋକପାତ କରିବ ? ଥରେ ଆମର ନୃତତ୍ତ୍ୱବିତ୍ମାନେ ଏହା ଆମ୍ଭକୁ ବୁଝାଇଲେ କି ?

ଯେଉଁ ନଈକୂଳିଆ ଲୋକେ ପାଣିକୁ ଭୟକରନ୍ତି, ନଦୀଶଯ୍ୟାର ପ୍ରକୃତ ମୂଲ୍ୟାୟନ ନକରି, ତାହାର ଜଳର, କୂଳର ଅବମୂଲ୍ୟାୟନ କରନ୍ତି, ତାହାକୁ ନିଜର ଭୋଗ, ବିଳାସ ଲାଳସା ପାଇଁ ଅପବ୍ୟବହାର କରନ୍ତି ସେମାନେ ଏପରି ଏକ ସଂସ୍କୃତିର ବାହାସ୍ଫୋଟ ମାରିବା ଜଗତର ଲୋକଙ୍କ ପାଖରେ କେବେ ଗ୍ରହଣୀୟ ହେବ କି ?

ମହାନଦୀ ଶଯ୍ୟା ଓ ତାହାର ସ୍ୱଚ୍ଛ ନିର୍ମଳଜଳ, ତା' ଶଯ୍ୟାର କୁଡ଼ କୁଡ଼ ପ୍ରସ୍ତର, ଖଣି, ମଣି, ହୀରା, ଗୋମେଦ, ବୈଦୁର୍ଯ୍ୟ, ନୀଳା, ବାଲୁକା, ଗୁଳ୍ମ, ଅସଂଖ୍ୟ ପ୍ରକାରର ଔଷଧୀୟ ଉଦ୍ଭିଦ, ଲତାବୃକ୍ଷ, ନଦୀଶଯ୍ୟା ମଧ୍ୟର ପଠା, ତା'ର ଦୁଇକୂଳର ଉପତ୍ୟକା ଜଙ୍ଗଲ ସମ୍ପଦ, ସେଥିରେ ରହୁଥିବା ଯୁଗଯୁଗର ପଶୁପକ୍ଷୀ, ଜୀବଜନ୍ତୁ ନଦୀଜଳରେ ପ୍ରବାହିତ ଓ ପ୍ରତିପାଳିତ ଅସଂଖ୍ୟ ପ୍ରକାର ମତ୍ସ୍ୟଜାତୀୟ ଜୀବଙ୍କ ବିଷୟରେ ସ୍ୱାଧୀନ ଭାରତରେ କେହି ଗବେଷଣା କଲେନାହିଁ । ଏ ନଦୀ କୂଳର ଆଦିମ ମଣିଷଠାରୁ ଆଜିର ମଣିଷ ମଧ୍ୟରେ ନଦୀକୁ ଯେଉଁ ସଂସ୍କୃତି ଓ ସଂସ୍କାର ହଜାର ହଜାର ବର୍ଷ ହେଲା ଗଡିଉଠିଛି ସେ ବିଷୟରେ ତ ଉତ୍କଳୀୟ ସଂସ୍କୃତିବିତ୍ଗଣ କିଛି ଗବେଷଣା କଲେ ନାହିଁ । ବୌଦ୍ଧ ଧର୍ମ

ଓ ତାମିଲ ଇଲମ୍ ସହିତ ଆମ୍ଭର ସଂପର୍କ ବେଶୀ ବୋଲି ଏବେ ଆମର ସଂସ୍କୃତିବିତ୍‌ମାନେ ବଡ଼ ବ୍ୟସ୍ତ ।

ଛତିଶଗଡ଼ ପ୍ରଦେଶର ଏକ ପ୍ରସ୍ତରିତ ମାଳଭୂମିରୁ ନିର୍ଗତ ଏକ ଛୋଟ ଜଳସ୍ରୋତ ଯାହା କେବଳ ଅପନ୍ତରା, ପଥୁରିଆ, ଅରମା, ବଣୁଆ, ଜଙ୍ଗଲିଆ ନଦୀଶଯ୍ୟାରେ ଗଡ଼ି ଆସି ବହୁ ହଜାର ବର୍ଷ ହେଲା ନରାଜ ପାହାଡ଼ ପାଖରେ ତାହାରି ସଂସ୍କୃତି ବିକଶିତ ହୋଇଛି ତାହାରି ତର୍ଜମା କରି ଚାଲିଛୁ ଅର୍ଦ୍ଧଶତାବ୍ଦୀ ହେଲା । ଆମେ ନିଜକୁ ତାହାର ଆଧୁନିକ ଇତିହାସ ଲେଖକ ମନେ କରନ୍ତି । ଚିତ୍ରୋତ୍ପଳା ଗଙ୍ଗା କହି ଆତ୍ମସନ୍ତୋଷ ଲାଭ କରେ । ହସ, କାନ୍ଦ, ଦାରିଦ୍ର୍ୟ, ବୈଭବ ଉପରେ ଯେମିତି ନିର୍ଭର କରୁଛି ସାରା ଉତ୍କଳର ବିକାଶ ଓ ଉନ୍ନତି, ସମ୍ମାନ ଓ ସଂସ୍କୃତି । ଦୁଇ ଶହ କିଲୋମିଟରର ଏ ଗତିପଥରେ, ନଈକୂଳର ଦୁଇପାର୍ଶ୍ୱରେ ଯେଉଁ ସଭ୍ୟତା ହଜାର ହଜାର ବର୍ଷରେ ଗଢ଼ିଉଠିଥିଲା ତାହା କେବଳ ହାତୀ (ଗଜ), ବାଘ, ଭାଲୁ, ଗୟଳ, ସମ୍ବର, ସାପ, କୁମ୍ଭୀର, ଉଲଗ୍ନ ଆଦିମ ହିଂସ୍ର ମଣିଷ ବସବାସ କରୁଥିବା ଏକ ଅରଣ୍ୟ ଓ ଉର୍ବର ଅଞ୍ଚଳ ମାତ୍ର । ତେଣୁ ଉତ୍କଳର ସୁସଭ୍ୟ "ଫିଟେଷ୍ଟ" ମାନବମାନଙ୍କ ପାଇଁ ଏହା ଅପନ୍ତରା ଅଞ୍ଚଳ । ଏଇ ଜଙ୍ଗଲୀ ଅସଭ୍ୟ ମଣିଷଙ୍କ ଅପନ୍ତରା ସଂସ୍କୃତି ସଲିଳ ସମାଧି ଲଭିବ । ପୁରୁଣା ସେଣ୍ଟ୍ରାଲ ପ୍ରଭିନ୍‌ସରୁ ଅବଲୁପ୍ତ ହେଲେ କ୍ଷତି କ'ଣ ?

ଆଜିର ଛତିଶଗଡ଼ ପ୍ରଦେଶରୁ ନିର୍ଗତ ଏ ନଦୀଟି ମଧ୍ୟ ମୂଳରୁ 'ମହାନଦୀ' ନାମରେ ନାମିତ ହୋଇଛି । ଏହାର ଉପନଦୀମାନଙ୍କୁ ହୀରାକୁଦଠାରୁ ବଉଦ ପର୍ଯ୍ୟନ୍ତ ସମଭାବରେ ମହାନଦୀ ପରି ଏ ଅଞ୍ଚଳର ଲୋକେ ସମ୍ମାନ ଦେଇଥାଆନ୍ତି । ଏ ସମ୍ମାନ କଳାହାଣ୍ଡିଠାରୁ ସୁନ୍ଦରଗଡ଼ ପର୍ଯ୍ୟନ୍ତ ଦେଖାଯାଏ । ନଦୀଶଯ୍ୟା ଓ କୂଳ ସହିତ ସଂଲଗ୍ନ ବିସ୍ତୃତ ଜଙ୍ଗଲ ଓ ପର୍ବତର ଅମୂଲ୍ୟ ସମ୍ପଦର ଅପଚୟ ସ୍ୱାଧୀନତା ପ୍ରାପ୍ତିପର୍ଯ୍ୟନ୍ତ ଆମ୍ଭର ଦୃଷ୍ଟିଗୋଚର ହୋଇନାହିଁ । ଏହି ଅଞ୍ଚଳହିଁ ପୂର୍ବେ "ହୀରାଖଣ୍ଡ" ଅଞ୍ଚଳ ଭାବରେ ନାମିତ ହେବାବେଳେ ଏବେ "ପଶ୍ଚିମାଞ୍ଚଳ" ନାମରେ ନାମିତ ହେଇଛି । ଏବେ "କେବିକେ ଅଞ୍ଚଳ" ବୋଲି ନାମକରଣ କରା ହେଉଛି । ଏ ଅଞ୍ଚଳରେ ମହାନଦୀ କୂଳରେ ଓ ଅନ୍ୟାନ୍ୟ ନଦୀ କୂଳରେ ଯେଉଁ ସଭ୍ୟତା ଗଢ଼ି ଉଠିଛି ହଜାର ହଜାର ବର୍ଷ ହେଲାତାହା ମଧ୍ୟରେ ଏକ ମାର୍ମିକ ଓ ତାତ୍ତ୍ୱିକ ଯୋଗସୂତ୍ର ଅଛି ଯାହା ପ୍ରକାଶପାଏ ଭାଷାରେ, ଚଳଣୀରେ, ନୃତ୍ୟଗୀତରେ, ନାରୀ ପୁରୁଷର ସାମାଜିକ ସ୍ତରରେ ସମଭାବାପନ୍ନ ଏକ ଅତ୍ୟାଧୁନିକ ନାରୀ ସ୍ୱାଧୀନତାର ସଂସ୍କାର ବଳରେ । ହୀରାକୁଦ ବନ୍ଧ ନିର୍ମିତ ହେବା ପୂର୍ବରୁ ସମ୍ବଲପୁର ସହରର ବାସିନ୍ଦା, ଏପରିକି ବାଳକ/ବାଳିକା, ଚାରିବର୍ଷ ବୟସରୁ ନଦୀରେ ସ୍ନାନ ଓ ପାଣି ଧାରରେ ପହଁରିବା ଶିଖୁଥିଲେ । ସେଇ ନଦୀ ବର୍ଷାଦିନରେ ଯେତେବେଳେ କୂଳ ଲଂଘନ କରି ଅକାତକାତ ପାଣି ନେଇ ସମ୍ବଲପୁର ସହରର ରାସ୍ତାକୁ ସ୍ପର୍ଶ କରୁଥିଲା । ବୁରୁଜର ଉପରୁ ପ୍ରାୟ ୫୦/୬୦ ଫୁଟ ଉପରୁ ଜଳ ମଧ୍ୟରୁ ଲମ୍ଫ ପ୍ରଦାନ କରିବାର ଦୃଶ୍ୟ ଏବେ ବିସ୍ମୃତି ଗର୍ଭରେ ଲୀନ

ହୋଇଛି । ସେ ପିଲା ଆଉ ଜନ୍ମ ନେଉନାହାନ୍ତି । ତାହା ହେଉଛି ମାଳ ଅଞ୍ଚଳ । ଅର୍ଥାତ୍, ମେଲେରିଆ, ସନ୍ନିପାତ, ପାଳିଜର, ଡାଇରିଆ, ମସ୍ତିଷ୍କ ଜ୍ୱର ଓ ହିଂସ୍ରଜନ୍ତୁଙ୍କ ଆକ୍ରମଣ ସହିତ ହିଂସ୍ର ମଣିଷ ମାନଙ୍କ ଶୀକାର ହେବା ଏକ ସାଧାରଣ କଥା ଭାବରେ ଗଣାଯାଉଥିଲା । ସେ ଯାହାହେଉ ଏହାହିଁ ଉତ୍କଳର ମୁଖ୍ୟ ଅଞ୍ଚଳର ସଭ୍ୟତାଠାରୁ ସମ୍ପୂର୍ଣ୍ଣ ଭିନ୍ନ । ପଶ୍ଚିମାଞ୍ଚଳର ମୁଖ୍ୟସହରଟିକୁ ଭାରତ ସ୍ୱାଧୀନତା ପାଇବା ପର୍ଯ୍ୟନ୍ତ ଏ ଅଞ୍ଚଳର ସାମଗ୍ରିକ ସାଂସ୍କୃତିକ ବାର୍ତ୍ତାବହ ଭାବରେ ବ୍ରିଟିଶ ମ୍ୟୁଜିୟମରେ ମଧ୍ୟ ଲିପିବଦ୍ଧ ହୋଇ ରହିଛି । ସେଠାର ଏକ ଐତିହାସିକ ସହରରେ ଆମ୍ଭର ବାସସ୍ଥାନ । ଉତ୍କଳର ଶ୍ରେଷ୍ଠ ସାହିତ୍ୟିକ ଓ ବୁଦ୍ଧିଜୀବିଗଣ ଏ ବିଷୟରେ ମୁକ୍ତକଣ୍ଠରେ ଚର୍ଚ୍ଚା କରିବାର ସତ୍‌ସାହାସ ଏବେ ସୁଦ୍ଧା ଦେଖାଇପାରିନାହାଁନ୍ତି ବୋଲି ମନେହୁଏ । ଏ ସହରର ନାମ ଉଚ୍ଚାରଣ କରିବାରେ ଏତେ ସଙ୍କୋଚ କାହିଁକି ? ଶହେବର୍ଷ ପୂର୍ବରୁ ମହାନଦୀ ଶଯ୍ୟାର ଦୃଶ୍ୟ କିପରି ଥିଲା, ତାହା ବର୍ତ୍ତମାନର ଆଧୁନିକ ଲୋକେ କଳ୍ପନା ମଧ୍ୟ କରିପାରିବେ ନାହିଁ । ଶୀତ ଓ ଖରାଦିନରେ ଜନବସତି  ପାଖରୁ ଜଳସ୍ରୋତଟିକୁ ସାନଧାର ଓ ଅପର ପାର୍ଶ୍ୱର ମୁଖ୍ୟ ସ୍ରୋତଟିକୁ ବଡ଼ଧାର ନାମରେ ନାମିତ କରା ହେଉଥିଲା । ଏହା ମୂଳରୁ ବାଲିର ବନ୍ଧ ସାହାଯ୍ୟରେ ଗାଁର ବା ସହରର ଉପରମୁଣ୍ଡ ନଦୀଶଯ୍ୟାରେ କରାଯାଉ ଥିଲା । ଏଥିରେ ଖରସ୍ରୋତା ନଦୀଶଯ୍ୟା ଭିତରର ପଥର ଖଣ୍ଡମାନ ସାହାଯ୍ୟ କରୁଥିଲେ । ଏ ପଥରଖଣ୍ଡମାନଙ୍କୁ କୂଳ ପାଖର ଲୋକେ ଅତି କଳାତ୍ମକ ଭାବରେ ନାମକରଣ କରିଥିଲେ । ମହାନଦୀ ଶଯ୍ୟାରେ ନଇପଠା ଠାରୁ ଏ ପଥରର ଦୃଶ୍ୟକୁ ଚିତ୍ତାକର୍ଷକ କରିବାପାଇଁ ବହୁ ମନ୍ଦିର ଗଢ଼ି ସେଠାରେ ଦେବାଦେବୀ ପୂଜା କରାଯାଉଥିଲେ । ବର୍ତ୍ତମାନର ସୁବର୍ଣ୍ଣପୁର ସହର ପରିଭ୍ରମଣ କଲେ ସମ୍ବଲପୁର ୭୦୦ ଶହ ବର୍ଷ ଧରି କଣ ଥିଲା ଜଣାଯାଏ । ଅନ୍ତତଃ ପକ୍ଷରେ ହୀରାଖଣ୍ଡ ଅଞ୍ଚଳରେ ତାହା ହୀରାକୁଦ ବନ୍ଧ ଯୋଜନା ପାଇଁ ଧ୍ୱସ୍ତବିଧ୍ୱସ୍ତ ହୋଇ ଯାଇଛି । ପଥରର ପ୍ରାଚୁର୍ଯ୍ୟ ପାଇଁ, ବାଲି ପଟୁମାଟି ସଂପର୍କରେ କେତେଗୁଡ଼ିଏ ଗୁଳ୍ମ, ଘାସଜାତୀୟ ଗଛ ପ୍ରଚୁର ପରିମାଣରେ ମିଳୁଥିଲା । ସେସବୁକୁ ନେଇ ଅନେକ ପ୍ରକାରର ଘରକରଣା ଜିନିଷ, ଖେଳଣାର କଳାତ୍ମକ ପରିପ୍ରକାଶ ଛୋଟଛୋଟ ଝିଅ ବୋହୁ ବୃଦ୍ଧ ଓ ବୃଦ୍ଧାମାନଙ୍କ ପାଇଁ ଅର୍ଥ ଉପାର୍ଜନର ଏକ ପନ୍ଥା ହେଉଥିଲା । ନଇ କୂଳ "ଆଟ" ଜମିରେ ଜଙ୍ଗଲରୁ ଜାତ ପ୍ରାୟ କୋଡ଼ିଏ ପ୍ରକାର ଶାଗ ଏ ଅଞ୍ଚଳର ଧନୀ ଦରିଦ୍ରମାନଙ୍କର ଏକ ସାଂସ୍କୃତିକ ଖାଦ୍ୟ ଭାବରେ ଗ୍ରହଣ କରାହେଉଥିଲା । ସେମାନଙ୍କର ନାମଗୁଡ଼ିକ ଏହିପରି, ୧) ଫାଏନ୍ ଶାଗ, ୨) ହୁଲ୍‌ହୁଲିଆ, ୩) ଢ଼େଉର୍ ଶାଗ, ୪) ସରେଲ ଶାଗ, ୫) ଘି'କୁଆଁରୀ ଶାଗ, ୬) ଭୂଇଁକଦମ୍ ଶାଗ, ୭) ଗୁରଡ଼ି ଶାଗ, ୮) କୁଂକୁର୍ ଶାଗ, ୯) ସିଲେର୍ ଶାଗ, ୧୦) ମୁଟି, ୧୧) ବଁକ୍‌ଛେରା, ୧୨) ହାତ୍‌ଙ୍ଗେଗରୀ, ୧୩) ଲାଲକଅଁରିଆ, ୧୪) ସମଧେନ୍, ୧୫) ଚିମ୍, ୧୬) କଁଝେର ଶାଗ ଇତ୍ୟାଦି । ଏ

ଅଞ୍ଚଳର ମହାନଦୀ ଦୁଇକଡ଼ରେ ଲୋକେ ଏବେ ମଧ୍ୟ ପ୍ରାୟ ଷାଠିଏ ପ୍ରକାରର ଶାଗ ବ୍ୟବହାର କରନ୍ତି ।

ନଦୀ ଜଳରେ, ପଥର ଖୋଲରେ ପ୍ରାୟ ଷାଠିଏ ପ୍ରକାରର ମାଛ, ଜିଙ୍ଗୁଡ଼ି (ମଧୁର), ଚିଙ୍ଗ୍ରି, ଚିଙ୍ଗରା ବର୍ଷର ବିଭିନ୍ନ ସମୟରେ (ଖରା, ବର୍ଷା ଓ ଶୀତ ଦିନରେ) ସାମୟିକ ଭାବରେ ମିଳୁଥିଲା । ପ୍ରକୃତିର ଏ ଅମୂଲ୍ୟଦାନକୁ ହୀରାକୁଦ ବନ୍ଧ ଅତି ନିର୍ମମ ଭାବରେ ନିଶ୍ଚିହ୍ନ କରିଦେଲା । ଖପସି, ଟେଗାନୀ, ଝାଏଁ ଝୁରି, ଜର୍ଡ଼ା ପରି ମାଛ ଏବେ ଏ ଅଞ୍ଚଳରେ ନଦୀ ଓ ପୋଖରୀମାନଙ୍କରେ ଦେଖିବାକୁ ମିଳନ୍ତି ନାହିଁ । ନଦୀଶଯ୍ୟାର ପ୍ରାକୃତିକ ଜଳସ୍ରୋତକୁ ଗାଁ ଓ ସହର ଲୋକେ ଭଲଭାବରେ ଗବେଷଣା କରି ବର୍ଷର ଖରା ଓ ଶୀତ ଦିନରେ ବହୁପ୍ରକାର ପନିପରିବା, ଚଣା ଓ ଡାଲି ଜାତୀୟ ତଥା ଆଖୁ ଓ କୁଆଁରିଆ ଚାଷ କରିବାର ନଇବାଲି ଓ "ଆଟ"ମାନଙ୍କରେ ଚାଷକରି ଲାଭବାନ୍ ହେଉଥିଲେ । ବନ୍ଧ ତିଆରି ହେବାପରେ ବର୍ତ୍ତମାନ ଆଉ ବ୍ୟାପକ ଭାବରେ ନଦୀଶଯ୍ୟାରେ ଦେଖିବାକୁ ମିଳେ ନାହିଁ ।

ପଶ୍ଚିମ ଅଞ୍ଚଳର ଗ୍ରୀଷ୍ମ, ଶୀତ ଓ ବର୍ଷାର ଜନଜୀବନ ଉପରେ ଯେଉଁ ପ୍ରଭାବ ତାହା ପରିବର୍ତ୍ତିତ ହୋଇଛି ସତ, କିନ୍ତୁ ଏଠିକାର ମଣିଷକୁ କିଛିଟା ଦୁର୍ବଳ, ପରମୁଖାପେକ୍ଷୀ ଓ କୁଟିଳ ଭାବରେ ଗଢ଼ିତୋଳିଛି । ସେ ଏବେ ଆତ୍ମନିର୍ଭରଶୀଳ ନୁହେଁ । ସାହସୀ ନୁହେଁ । ପ୍ରଚଣ୍ଡ ଗ୍ରୀଷ୍ମରେ ନଇବାଲିରେ ଚାଲିଚାଲି ନଇପାରିହେବାର ଦୃଶ୍ୟ ଏବେ ଦେଖିବାକୁ ମିଳେନାହିଁ । ସୂର୍ଯ୍ୟ ଉଦୟ ପୂର୍ବରୁ ନଇ ସେପାରି ଜଙ୍ଗଲରୁ ପତ୍ର, କାଠି (ଦାନ୍ତକାଠି), ମୁଢ଼ି, ଖଲିଦନା, ନାନାଜାତି ଶାଗ, ପ୍ରତ୍ୟେକ ଋତୁରେ ଜଙ୍ଗଲରେ ଫଳୁଥିବା କୋଳି ଓ ଫଳ, ଛତୁ, ଔଷଧୀୟ ଗୁଳ୍ମ ଓ ଚେରମୂଳ, କନ୍ଦା ଗ୍ରାମୀଣ ମହିଳାମାନେ ବର୍ଷସାରା ନିଜଚେଷ୍ଟାରେ ସଂଗ୍ରହ କରି, ନଦୀଶଯ୍ୟାର ଉତ୍ତପ୍ତବାଲି, ଦନ୍ତୁରିତ ପଥର, ସ୍ରୋତବତୀ, ଉତ୍ତାଳ ତରଙ୍ଗାୟିତ ଫେନିଳ ବନ୍ୟାର ଜଳକୁ ଭୟ ସଙ୍କୋଚ ଖାତିର ନକରି ନଇପାରି ହୋଇ ସହରର ବଜାର, ହାଟ, ଗଳିକନ୍ଦିରେ ବିକ୍ରୟ କରିବା ଦୃଶ୍ୟ ଧୀରେଧୀରେ ଏକ କାଳ୍ପନିକ ଦୃଶ୍ୟରେ ପରିଣତ ହୋଇଗଲା । ଏହା ଉଲ୍ଲେଖକରିବାର ତାତ୍ପର୍ଯ୍ୟ ଏହା ଯେ, ଏ ଅଞ୍ଚଳର ସାମାଜିକ ପ୍ରଥାରେ ନାରୀକୁ କେବେ ଏକ ଦୁର୍ବଳା, ଅବଳା ଭାବରେ ହଜାରବର୍ଷର ଇତିହାସରେ ଗ୍ରହଣ କରାଯାଇନାହିଁ । ଏବେବି ଏହାର ପରିଚୟ ମିଳେ ଉଚ୍ଚଜାତିରୁ ଗିରିଜନମାନଙ୍କ ଭିତରେ ସାମାଜିକ ବିବାହ ପ୍ରଥାମାନଙ୍କରେ ।

ପୁରୁଷ ଓ ନାରୀ ମଧ୍ୟରେ କର୍ତ୍ତବ୍ୟ ସଚେତନତା, କର୍ମ ବିତରଣ-ନାରୀ ନିର୍ଯାତନାକୁ ସମାଜ କେବେ ପ୍ରଶ୍ରୟ ଦିଏନାହିଁ- ଏ ନଦୀକୂଳର ସଂସ୍କୃତିରେ । ତେଣୁ ଏବେ ମଧ୍ୟ ଛୋଟ ଟାଙ୍ଗିଆଟିଏ ଧରି ମହିଳାଜଣେ ନିଜବାଡି ଓ ଜଙ୍ଗଲରୁ କାଠ କାଟି ବାଡ଼ ଦିଏ । ଦାଆଟିଏ ଧରି ପୁରୁଷମାନଙ୍କ ସହିତ ଖେତ ଓ ଖଳାରେ କୃଷିଜାତ ସମସ୍ତ କର୍ମରେ ସହଯୋଗ କରେ । ଗୋଧନ ସେବାରେ ବ୍ୟସ୍ତ ରହେ । ବାଳିକା ସମୟରୁ ନଇ ପୋଖରୀ ପହଁରିବା;

ନଈକୂଳିଆ ଝିଅଟି ହୁଲିଡଙ୍ଗାର କାଠପଟା କାତ ଓ ବାଉଁଶ କାତରେ ମଙ୍ଗ ସଜାଡ଼ି, ଖରାବର୍ଷା ଶୀତରେ ମହାନଦୀ ପରି ନଈପାରି ହେବାର କଳାଟିକୁ ମଧ୍ୟ ଶିଖିଥାଏ। ବେଣାଚେର, "ଥରଥରି" ଲଟାରେ ରଂଗଦେଇ କୋଚିକମ 'ଟୁପ୍‌ଲି' 'ଭୁଗ୍‌ଲି' ବୁଣିବାର କଳା, ଘର ଲିପାପୋଛା ସମସ୍ତ କାର୍ଯ୍ୟ, 'ଅଲପିନା' (ରୂପକଳାଠାରୁ ଏକ ଭିନ୍ନ ପ୍ରତୀକଧର୍ମୀ) ଝୋଟି ଦେବା, ପିଠାପଣା ଗଢ଼ିବା ଇତ୍ୟାଦି ସମସ୍ତ ନାରୀସୁଲଭ କଳାର ବୈଶିଷ୍ଟ୍ୟ ଏ ଅଞ୍ଚଳର ଅନୁଢ଼ା କନ୍ୟାପାଇଁ ଯେତିକି ଆଦରଣୀୟ ହୋଇ ଥାଏ ସେତିକି ପୁରୁଷଠାରୁ କେତେକ କାର୍ଯ୍ୟରେ ପ୍ରତିଯୋଗିତା ସମ୍ପନ୍ନ ହେବାକୁ ସାହସ ଦେଇଥାଏ। ଶାରୀରିକ ଶକ୍ତିରେ ଓ ମନୋବଳରେ ଭାର ଉଠାଇବା ଓ ଶରୀରକୁ ସୁସ୍ଥ ରଖିବାର ଏକ ଅଭୂତପୂର୍ବ ବୈଶିଷ୍ଟ୍ୟ ହେଉଛି ଜଳ ଓ ଭାର ଉତ୍ତୋଳନକୁ ନେଇ। ଜଣେ ପୁରୁଷ ଏ ନଈକୂଳ ଅଞ୍ଚଳରେ ଯେତେ ଗରା ବା ମାଠିଆ ଭାର ବୋହିବାର ଶକ୍ତି ପ୍ରଦର୍ଶନ କରିବାର ସାମର୍ଥ୍ୟ ଦେଖାଏ, ତାହାର ଅର୍ଦ୍ଧାଙ୍ଗିନୀ ତାହାଠାରୁ ଅଧିକ ଭାର ବୋହିବାର ଏକ ସାଧାରଣ ଲୌକିକ ପ୍ରଥାକୁ ଟିକିଏ ଦୃଷ୍ଟି ଦିଆଯାଇପାରେ। ପୁରୁଷ ଏଠାରେ ମୁଣ୍ଡରେ ବୋଝ ବୋହିବାର ଚଳଣୀ ନାହିଁ। ସେ ନିଜର ସ୍କନ୍ଧ ଓ ବାହୁ ସାହାଯ୍ୟରେ କାଠ ବା ବାଉଁଶର ଭାରଟିରେ, ଦୁଇଟି ଲେଖାଏଁ ଗରା ବା କଳସୀ ଗୋଟିଏ ଗୋଟିଏ ପାଖରେ ରଖି ସମୁଦାୟ ଚାରିଟି ଗରାର ପାଣି ମହାନଦୀ ଶଯ୍ୟାରୁ ଶହେଫୁଟ ଉଚ୍ଚର କୂଳକୁ ବୋହି ଆଣିବାର ପ୍ରଦର୍ଶନ କଲାବେଳେ, ତାହାର ଅର୍ଦ୍ଧାଙ୍ଗିନୀ ମୁଣ୍ଡରେ ଦୁଇଟି ଓ ଗୋଟିଏ କାଖରେ ଆଉ ଦୁଇଟି ଗରା ବୋହି ପାରିବା ପରେ ତା'ଉପରେ ଡ଼ାଳଟିଏ କିମ୍ବା ଛୋଟ ଗରାଟିରେ ପାଣି ଭରିବାର କମନୀୟ ଢଙ୍ଗରେ ଯେଉଁ କଳା ପ୍ରଦର୍ଶନ କରେ, ତାହା ନଦେଖିଲେ ବିଶ୍ୱାସ କରି ହୁଏନା। ଏହା କରିବାପରେ, ଜଳଭରା ଗରାକୁ ଭାରସାମ୍ୟ ରକ୍ଷା କରି ସେହି ଶହେଫୁଟ ଉଚ୍ଚ କୂଳକୁ ଉଠି ନିଜଗୃହକୁ ଆସିବାର ଦୃଶ୍ୟ ଭାରତବର୍ଷର ଆଉ କେଉଁଠାରେ ଦେଖିବାକୁ ମିଳେନାହିଁ ? ତ୍ରିକୋଣ ଭୂମିର ନଦୀ ସଭ୍ୟତା ଓ ସଂସ୍କୃତି ମଧ୍ୟରେ ଏପରି ଏକ ଦୃଶ୍ୟ ଦେଖିବାର ସୁଯୋଗ ନମିଳିବାର କାରଣ ବିଷୟରେ ସଂସ୍କୃତିବିତ୍‌ଗଣ ସଚେତନ ନହେଲେ ମଧ୍ୟ ଆମ୍ଭେ ଯାହା ନିଜ ଆଖିରେ ଦେଖିଛୁ ଓ ବୁଝିଛୁ, ତାହା ହେଉଛି ଚାରିଶହ ବର୍ଷର ଏ ଅଞ୍ଚଳର ଇତିହାସ। ପଠାଣ, ମୋଗଲ, ଇଂରେଜ, ମରହଟ୍ଟା ମାନଙ୍କର ଆକ୍ରମଣ। ନଦୀପଥର ସରଳତା ଓ ସ୍ଥଳପଥର ସୁଗମତା ତଥା ବିସ୍ତୀର୍ଣ୍ଣ ଅଞ୍ଚଳର ଜଙ୍ଗଲ ଧ୍ୱଂସ ପ୍ରକ୍ରିୟା ଉପକୂଳ ଅଞ୍ଚଳର ନାରୀମାନଙ୍କୁ ବାଧ୍ୟ କରିଛି ଓଢ଼ଣା ଦେବାକୁ ଓ ଘରକୋଣରେ କର୍ମକୁ ଆଦରି ନେବାକୁ।

ସ୍ମରଣ କରିବାକୁ ହେବ ଯେ ବିଂଶ ଶତାବ୍ଦୀର ଚତୁର୍ଥ ଦଶକ ପର୍ଯ୍ୟନ୍ତ ଉପକୂଳର ମଣିଷଙ୍କ ପାଇଁ ଟିକରପଡ଼ା ଉପରକୁ (ଢେଙ୍କାନାଳ ରାଜ୍ୟ) ପ୍ରବେଶ କରିବା ବିପଦଶଙ୍କୁଳ ଜଣାଯାଉଥିଲା। ନଦୀଶଯ୍ୟାର ପ୍ରସ୍ତରିତ ଖରସ୍ରୋତା ଜଳରାଶି ନୌକାଚାଳନା ପାଇଁ ଉପକୂଳର କୈବର୍ତ୍ତମାନଙ୍କ ପାଇଁ ବିରାଟ ସମସ୍ୟା ଭାବରେ ଜଣାଯାଉଥିଲା। ଏହି ଅଞ୍ଚଳ

ପର୍ଯ୍ୟନ୍ତ ଗଭୀର ଜଳରେ ଦୁଇ ତିନି ପ୍ରକାରର କୁମ୍ଭୀର ଦୌରାତ୍ମ୍ୟ, ମହାନଦୀର ଦୁଇ କୂଳର ପର୍ବତ ଓ ଅରଣ୍ୟର ହାତୀ, ବାଘ, ଭାଲୁ, ସାପ ଓ ଆରଣ୍ୟକ ମଣିଷମାନଙ୍କ ପାଇଁ ଏକ ଅହେତୁକ ଲୋକଭୟ, ଉପକୂଳୀୟ ଅଞ୍ଚଳରେ ବ୍ୟାପକ ଭାବରେ ପ୍ରଚାରିତ ହେଉଥିଲା । ମାଳ ଅଞ୍ଚଳ ଓ ପଶ୍ଚିମାଞ୍ଚଳକୁ ପ୍ରାୟ "ହାଇଲେଣ୍ଡର" ଭାବରେ ଉପକୂଳୀୟ ଶିକ୍ଷିତଲୋକେ ନାମକରଣ କରୁଥିଲେ । ଏ ଅଞ୍ଚଳର ଲୋକଙ୍କୁ "ହାଇଲେଣ୍ଡର" ଭାବରେ ତାଚ୍ଛଲ୍ୟ ସହକାରେ ସମ୍ବୋଧନ କରାଯାଉଥିଲା । ଏହାର ଉଦାହରଣ ଏକବିଂଶ ଶତାବ୍ଦୀରେ ମଧ୍ୟ ଏଠାର ମୁଖ୍ୟ ସାଂସ୍କୃତିକ ଦଶହରାର ଡାଲଖାଇ ପର୍ବକୁ ସ୍କୁଲପାଠ ବହିରେ ଜଙ୍ଗଲର ଜନ୍ତୁ ଜାନୁଆରଙ୍କ ପର୍ବ ଭାବରେ ତାଚ୍ଛଲ୍ୟ କରାଯାଉଛି । ଏ ସମସ୍ତ ବିବିଧତା ଓ ବିଭେଦତା ପାଇଁ ମହାନଦୀ, ତାହାର ଶଯ୍ୟା, ତାହାର ସ୍ରୋତର ପ୍ରଖରତା ଓ ତାହାର କୂଳର ପ୍ରକୃତି ଯେ ସଂପୂର୍ଣ୍ଣ ଭାବରେ ଦାୟୀ ତାହା ଅସ୍ୱୀକାର କରିହେବନାହିଁ । ଏ ନଦୀପଥ ଦୁଇଶହ ବର୍ଷ ପୂର୍ବେ ଉପକୂଳ ଅଞ୍ଚଳ ସହିତ ପଶ୍ଚିମାଞ୍ଚଳର (ହୀରାଖଣ୍ଡକୁ) ଏକମାତ୍ର ଯୋଗସୂତ୍ର ଥିଲା । କିନ୍ତୁ ପଶ୍ଚିମାଞ୍ଚଳର ଲୋକେ ଯେମିତି ସହଜସାଧ୍ୟ ଭାବରେ ନିଜ ଅଞ୍ଚଳର ନଦୀ ସ୍ରୋତକୁ ଅତିକ୍ରମ କରି ଉପକୂଳ ଅଞ୍ଚଳରେ ପ୍ରବେଶ କରିପାରୁଥିଲେ, ବେପାର ବଣିଜ କରିପାରୁଥିଲେ ବା ଆରାଧ୍ୟ ଦେବତା ଜଗନ୍ନାଥଙ୍କୁ ଦର୍ଶନ କରୁଥିଲେ, କିଳାପୋତା ମାହାସୁଲ ଦେଉଥିଲେ, ପୂର୍ବାଞ୍ଚଳର ନାଉରିଆ କିନ୍ତୁ ଆଜିପର୍ଯ୍ୟନ୍ତ ହୀରାଖଣ୍ଡ ଅଞ୍ଚଳକୁ ଆସିବା ଦେଖାଯାଏ ନାହିଁ । ତେବେ, କେଉଁ ସମ୍ପଦନେଇ ଉତ୍କଳୀୟ ବା କଳିଙ୍ଗର ବଣିକ ଜାଭା ସୁମାତ୍ରାକୁ ଯାଇ ତାହାର ପାରଦର୍ଶିତା ଦେଖାଉଥିଲେ ? ତାହାର ଐତିହାସିକ ପ୍ରମାଣ କଣ ବର୍ତ୍ତମାନ ସମୟର ଉପକୂଳର ନୋଳିଆ ବା ଚିଙ୍ଗୁଡ଼ି ଘେରି ସମ୍ଭାଳୁଥିବା ବଙ୍ଗବାସୀ ବା ଟ୍ରଲର୍ ଚାଳକଗଣ କହିପାରିବେ ? ଆମ୍ଭର କେଉଁ ପୂର୍ବପୁରୁଷ ଓ କେଉଁ ସମ୍ପଦ ଜାଭା ସୁମାତ୍ରା ବାଲିଦେଶରେ ଅମୂଲ୍ୟ ସମ୍ପଦ ଭାବରେ ସମ୍ମାନ ପାଉଥିଲା ତାହାର ଗବେଷଣା ଆମ୍ଭର ସଂସ୍କୃତି ସଚେତକ ପଚାଶ ବର୍ଷ ମଧ୍ୟରେ ନକରିବାର ରହସ୍ୟ କଣ ? ଗ୍ରୀସ୍ ଇତିହାସ କିଛି କହୁଛି କି ? ଆଜିକାର କେରଳର ଉପକୂଳରେ ବାସ କରୁଥିବା ନୌଚାଳକ ସଭ୍ୟତା ସହିତ ଆମେ ଓଡ଼ିଶାର ବାଣିଜ୍ୟିକ ପରଂପରା ସହିତ ତୁଳନା କରିପାରିବା କି ? ଅବଶ୍ୟ ଆମେ ଆମ ଜୀବନ କାଳରେ ଯାହା ଦେଖିଲୁ ସେ ଯେ ଯେତେ ବିଜ୍ଞ ସେ ସେତେ ନିଜ ପୂର୍ବପୁରୁଷଙ୍କୁ ନପୁଂସକ ଭାବରେ ତୋଲ ପିଟେ ସେ ହିଁ ପ୍ରବାଦ ପୁରୁଷ ଭାବରେ ପୂଜାଯାଏ । ସାଂସ୍କୃତିକ ପରିଚୟ ମଧ୍ୟରେ ନାରୀପୁରୁଷର ସଂପର୍କ ଏକ ବିଶେଷ ସ୍ଥାନ ଅଧିକାର କରିଥାଏ । ମହାନଦୀ କୂଳର ପଶ୍ଚିମାଞ୍ଚଳର ବିବାହ ସଂସ୍କାର ଓ ଉପକୂଳ ଅଞ୍ଚଳର ବିବାହ ସଂସ୍କାର ବିଷୟରେ ଆଲୋକପାତ କଲେ କେତୋଟି ବିଭେଦତାର ପରିଚୟ ମିଳେ । ପଶ୍ଚିମାଞ୍ଚଳର ଧନୀ, ଦରିଦ୍ର ଉଚ୍ଚନୀଚ ଜାତି ନିର୍ବିକାରରେ-ଦେବା ନେବା, ଯାନିଯୌତୁକ, ବାଟଖର୍ଚ୍ଚ, ବାଣରୋଷଣି, ବରଯାତ୍ରୀଙ୍କୁ ମଦମାଂସରେ ଆପ୍ୟାୟନ କରିବାର ଉପକୂଳୀୟ ସଂସ୍କୃତି କେବେ ଦେଖାଯାଇ ନଥିଲା, ବା ଆଲୋଚନା କରାଯାଉ ନଥିଲା ।

ଏହାର କାରଣ ହେଉଛି ଯେକୌଣସି ଘରେ ବନ୍ଧୁବାନ୍ଧିଲେ ତାହା ସହିତ ଜନ୍ମଜନ୍ମାନ୍ତର ଏକ ସଂପର୍କ ବିଷୟରେ ପଶ୍ଚିମାଞ୍ଚଳର ନଦୀସଂସ୍କୃତି ସୂଚନା ଦେଇଥାଏ। ଏହାକୁ ସେ ମହାପ୍ରସାଦ ବନ୍ଧୁ ବୋଲି ସମ୍ମାନ କରେ। ତାହା ଆଧୁନିକ ସଂଗୀତ ଓ ନୃତ୍ୟରେ ଦେଖାଇ ଓଡ଼ିଆ ସଂସ୍କୃତିର ଦିବାରାତ୍ର ପ୍ରଚାର ଚାଲିଛି। ଘୋଷିତ ପ୍ରଥାରେ 'ମହାପ୍ରସାଦ' ବନ୍ଧୁ ନାଁରେ ମହାପ୍ରଭୁଙ୍କୁ ସାକ୍ଷୀ ରଖିବାର ଛଳନା ଓ ଚଞ୍ଚକତା। ଉପକୂଳ ଅଞ୍ଚଳର ସଂସ୍କୃତି କିନ୍ତୁ ବନ୍ଧୁ ସହିତ ହାମବଡ଼ା ନୀତି, ପ୍ରତାରଣା, ପ୍ରବଞ୍ଚନା, ଶଠତା ଚଞ୍ଚକତାର ଖେଳଖେଳିବାର ସଂସ୍କୃତି। ଶାକ୍ତ, ଶୈବ, ବୌଦ୍ଧ, ବୈଷ୍ଣବ ପରେ ଚାରିଶହ ବର୍ଷରେ କାହିଁକି ସଂସ୍କୃତି ମଧ୍ୟରେ ସମ ଲିଙ୍ଗି ଯୌନତାର ଏକ ଅପ୍ରାକୃତ ସଂପର୍କର ସଂସ୍କୃତି ଗଢ଼ିଉଠି ସାହିତ୍ୟ, କଳା, ସ୍ଥାପତ୍ୟ ଓ ଧାର୍ମିକ ଅନୁଷ୍ଠାନର ଅଙ୍ଗ ଭାବରେ ବିବେଚିତ ହେଉଛି। ଏବେ ନଦୀ ସଭ୍ୟତାରୁ ଏ ଅଞ୍ଚଳର ଲୋକେ ଶିକ୍ଷାକରନ୍ତି, ପ୍ରଚାର କରନ୍ତି, ବାହାସ୍ଫୋଟ ମାରନ୍ତି। ଏହାର ଏକ ଜ୍ୱଳନ୍ତ ଉଦାହରଣ ହେଉଛି କନ୍ୟାଘରର ପରିବାର ଲୋକଙ୍କୁ ସାମାଜିକ ସ୍ତରରେ ନିକୃଷ୍ଟ ଦେଖାଇବାର ଏକ ଅଘୋଷିତ ପ୍ରଥା। ତାହା ହେଉଛି ଘନଘନ କନ୍ୟାକୁ ତା ବାପଘରକୁ ପଠାଇ ବିଭିନ୍ନ ଆଳ ଦେଖାଇ "ବେଭାର" ନେଇ ଆସିବା ପ୍ରଥା-ସାବିତ୍ରୀ ବେଭାର ଇତ୍ୟାଦି, ବାଟଖର୍ଚ୍ଚ, ବୋହୂ ଲେଉଟାଣି, କୋଇଁ କୁଣିଆ ପରି କୁପ୍ରଥା। ଏହାରି ଫଳରେ ଉପକୂଳ ଅଞ୍ଚଳର ଝିଅଟିଏ ଛାତିଫୁଲେଇ ତା' ବାପଘର ବା ସ୍ୱାମୀଘରକୁ ନେଇ ଗର୍ବକରିପାରେ ନାହିଁ। ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ସେ ଉନ୍ନତ ଗ୍ରୀବା, ଉତ୍‌ଫୁଲ୍ଲିତ ବକ୍ଷରେ, ବିଷ୍ଫାରିତ ନେତ୍ରରେ ଆଗନ୍ତୁକକୁ ବା ବାହ୍ୟଦୃଶ୍ୟ ଦେଖିବାର ସାହାସ କରିପାରେ ନାହିଁ। ତା'ର ସଂସ୍କୃତି ହେଉଛି କୁମାରୀ ବୟସରୁ ହାତେ ଲମ୍ବ ଓଢ଼ଣା, ଚୁଟୁ କଥା, ଅଣ୍ଟେଇଇଁ, ପିଠି ବଙ୍କା କରି, ମୁଣ୍ଡପୋତି ଚାଲିବାର ଏକ ବହୁପ୍ରଚଳିତ ଅମାନୁଷିକ ସଂସ୍କାର। ଏହାକୁ କଣ ଲଜ୍ଜାର ଏକ ପ୍ରତୀକ ବୋଲି ଗ୍ରହଣ କରିବା ? ନାରୀକୁ ଶକ୍ତିରୂପରେ ଉପାସନା କୁରଥିବା ଲୋକେ ଏହାର ଗବେଷଣା କରିଛନ୍ତି କି ?

ଏପରି ଏକ ପାରିବାରିକ ଓ ସମାଜିକ ଚଳଣିର (ସଂସ୍କୃତିର) ଦୃଷ୍ଟାନ୍ତ ଦେବାବେଳେ, ମନେ ରଖିବାକୁ ହେବ ଯେ ଆମ୍ଭେ ଏବେ ଅତ୍ୟାଧୁନିକ ଯୁଗରେ ଜୀବନ ବିତାଉଛୁଁ। କମ୍ପ୍ୟୁଟର ଓ ଇଣ୍ଟରନେଟ୍ ବଳରେ ଧରାକୁ ସରା କରିଦେବାର ଲକ୍ଷ୍ୟ ରଖିଛୁ। ପ୍ରକୃତିକୁ, ବିଜ୍ଞାନ ବଳରେ କବଳିତ କରିବାର ମହାଶକ୍ତି ରଖିଛୁ। ତେବେ ଆମେ ଭୁଲିଯିବା ଉଚିତ ନୁହେଁ, ଜନସଂଖ୍ୟାର ଅର୍ଦ୍ଧେକ ଯାହାଙ୍କୁ ଅବଳା, ଦୁର୍ବଳା ବୋଲି ମାନସିକସ୍ତରରେ ଆମେ ବିଚାରକରୁ, ଅଥଚ ପାଣ୍ଡିତ୍ୟ ଦେଖାଇ ଶକ୍ତିର ଉପାସକ ଭାବରେ ପୃଥିବୀର ଜନତାଙ୍କ ଆଗରେ ଗର୍ବକରୁ, ସେମାନଙ୍କୁ ମଧ୍ୟଯୁଗରୁ କିପରି ଶୋଷଣ କରିବାର ଅଭିପ୍ରାୟ ରଖି ଏ ସଂସ୍କୃତିକୁ ସମୃଦ୍ଧ କରି ଚାଲିଛୁ ? ଏପରି ଚଞ୍ଚକତା ଶିକ୍ଷା ଓ ନାରୀ ଜାତିର ସ୍ୱାଧୀନତା ବିରୁଦ୍ଧରେ କାର୍ଯ୍ୟ କରି ଚାଲିଛି, ତାହାହିଁ ଆମ୍ଭର ହୃଦବୋଧ ହେଉଛି। ଏହା ଆମ୍ଭଙ୍କୁ ଆମ ପରିବାର ଓ ସମାଜ ମଧ୍ୟରେ ପ୍ରତାରକ, ଶୋଷଣକାରୀ, ଭୀରୁ ମଣିଷଟିଏ କରି ଗଢ଼ି

ତୋଳିଛି । ଆମ ମଧ୍ୟରେ ସତ୍‌ସାହସ ନାହିଁ । ସତ୍ୟକୁ ଦେଖିବାର ଆକାଂକ୍ଷା ନାହିଁ । ସମାଜକୁ ଗଢ଼ିବାକୁ ଓ ପ୍ରକୃତିକୁ ପରିବେଶକୁ ସଂରକ୍ଷଣ କରିବାର ଅଭୀପ୍ସା ନାହିଁ । କଷ୍ଟ ସ୍ୱୀକାର ସହିତ ବିକଳ୍ପ ପନ୍ଥା ନିର୍ଣ୍ଣୟ କରିବାର ମାନବିକତା ଆମ ସଂସ୍କୃତିରୁ ଆମେ ପୋଛି ଦେବାକୁ ଚାହୁଁ । ଅନ୍ୟର ଦୟନୀୟତା, ସେ ନିଜର ଯେତେ ଆତ୍ମୀୟ ହେଲେ ମଧ୍ୟ ଆମ୍ଭର ନିଜର ଦେହ ଓ ମନର ସୁଖପାଇଁ-ସେତେ ବାଧକ ହୁଏ ନାହିଁ । ଆମ୍ଭର ସମବେଦନା ଏକ ପ୍ରବଞ୍ଚନା । ଆମ୍ଭର ପ୍ରଗତି, ଏକ ଅନ୍ଧମୁହାଣୀର ସନ୍ଧାନରେ ଧାବମାନ ବ୍ୟକ୍ତିକୈନ୍ଦ୍ରିକ ସଂସ୍କୃତି । ଏ ସଂସ୍କୃତିକୁ ନେଇ ଦଳଗଠନ କରି ଆମ୍ଭେ ଉତ୍କଳର ଜନତାଙ୍କୁ ସବୁ ସମୟରେ ପ୍ରତାରଣା କରିବାର ଆସ୍ଫାଳନ କରିବା ଉତ୍ତର ଆଧୁନିକତାର କେଉଁ ପର୍ଯ୍ୟାୟରେ ଆସି ଆମକୁ ପହଞ୍ଚାଇଛି ?

ଏ ସମସ୍ତ ଦର୍ଶନ ମହାନଦୀ କୂଳର ବାସିନ୍ଦା ଭାବରେ ଆମ୍ଭର ପ୍ରାପ୍ତି ହେଉଛି । ତେଣୁ ଆମ୍ଭେ ନଦୀ ସଂସ୍କୃତିର ଗୁଣଗାନ କରିବାକୁ ଯାଉଛୁ । ଚାରିଶହ ବର୍ଷ ହେଲା ନଦୀ ଆମ୍ଭଙ୍କୁ, ଆମ୍ଭର ଜୀବନକୁ, ଆମ ସହରକୁ, ଆମ୍ଭର ଜୀବିକାକୁ, ଆମ୍ଭର ପ୍ରକୃତି ଓ ପ୍ରବୃତ୍ତିକୁ ମଧ୍ୟ ପ୍ରଭାବିତ କରେ, ଶିକ୍ଷାଦିଏ । ଏହାକୁ କବଳିତ କରିବା, ଏହାର ବିରୁଦ୍ଧରେ ଯିବା ଓ ଏହାର ପ୍ରଭାବକୁ ପ୍ରତିହତ କରିବା ମାନବସମାଜ ପାଇଁ ଏକ ଧ୍ୱଂସର ସୂଚନା ଦିଏ । ଯେଉଁ ଅଞ୍ଚଳରେ ନାରୀ ଓ ପୁରୁଷର ପବିତ୍ର ସଂପର୍କ ମଧ୍ୟରେ ଯୌତୁକ, ବାଟଖର୍ଚ୍ଚ, ସାବିତ୍ରୀ ବେଭାର ପରି ଚଳଣୀକୁ ହଜାର ହଜାର ବର୍ଷ ପର୍ଯ୍ୟନ୍ତ ପ୍ରଚଳନ କରାଯାଏ ସେଠାରେ ନଦୀ ସଂସ୍କୃତିର ଯେ ବିରୁଦ୍ଧାଚରଣ କରାହୋଇଛି ତାହା ସ୍ପଷ୍ଟ ଜଣାପଡ଼େ । ଏହା ଆଧୁନିକ ଓଡ଼ିଶାର ଘରେ ଘରେ ନାରୀ ନିର୍ଯ୍ୟାତନାର କଦର୍ଯ୍ୟ ରୂପ ପ୍ରଦର୍ଶନ କରୁନାହିଁ କି ?

ମହାନଦୀ ଗତିପଥରେ ମୁହାଣରୁ ଟିକରପଡ଼ା ପର୍ଯ୍ୟନ୍ତ ସୁଗମ୍ୟ କୂଳର ପ୍ରକୃତି ଓ ମଣିଷକୁ ଯେତେ ସମସ୍ୟା ସମ୍ମୁଖୀନ କରିବାକୁ ଦେଇଛି, ହୀରାଖଣ୍ଡ ଅଞ୍ଚଳରୁ ଟିକରପଡ଼ା ପର୍ଯ୍ୟନ୍ତ ଅଗମ୍ୟ ପ୍ରସ୍ତରିତ ନଦୀଶଯ୍ୟା ଏକ ଆଶୀର୍ବାଦ ଭାବରେ ଦେଖା ଦେଇଛି । ମହାନଦୀର ପ୍ରକୃତିକୁ ସହନଶୀଳତା ଦେଖାଇବାର ସଭ୍ୟତା ହେଉଛି ପଶ୍ଚିମାଞ୍ଚଳର । ଏହାର ପ୍ରକୃତିର ବିରୁଦ୍ଧାଚରଣ କରିବାହିଁ ପୂର୍ବାଞ୍ଚଳତାର ସଭ୍ୟତା । ଏହା ଏବେ ସ୍ପଷ୍ଟ ଭାବରେ ଜଣାପଡ଼ି ଯାଉଛି । ଏ ପରିପ୍ରେକ୍ଷୀରେ ଅତ୍ୟାଧୁନିକ ପାରିବାରିକ ଓ ସାମାଜିକ ଚଳଣୀରେ ବିଗତ ପଚାଶବର୍ଷ ମଧ୍ୟରେ ଯେଉଁ ପରିବର୍ତ୍ତନ ଲକ୍ଷ୍ୟ କରାଯାଇଛି ତାହାର ଉଦାହରଣ ତଳେ ଦିଆଗଲା । ନାରୀକୁ ନଦୀ ପ୍ରକୃତିର ଏକ ପ୍ରତୀକ ଭାବରେ ଆମେ ଗ୍ରହଣ କରୁଛୁ । ଏ ଅଞ୍ଚଳର ଆଦିମ ବାଦ୍ୟ, ସଂଗୀତ ଓ ନୃତ୍ୟକୁ ଓଡ଼ିଶାର ନିଜର ସଂସ୍କୃତି ବୋଲି ଜଗତୀକରଣ ବଜାରରେ ବ୍ୟବସାୟ କରି ଧନୀକ ହେବାର ଗର୍ବରେ ଆମେ ଫାଟିପଡୁଛୁ ।

ସଭ୍ୟତାର ଆଲୋକ ଉପକୂଳ ବା ଓଡ଼ିଶାର ପୂର୍ବାଞ୍ଚଳରେ ବଙ୍ଗୀୟ ନେତୃତ୍ୱରେ ପ୍ରାୟ ହଜାରେ ବର୍ଷ ହେଲା ଆସିଛି । ଏହା ପୂର୍ବରୁ ଏ ଅଞ୍ଚଳରେ ନାରୀକୁ ଶିକ୍ଷା ନଦେବା ଓ

ନାରୀକୁ ପାରିବାରିକ ସ୍ତରରେ ଏକ ହେୟ଼ ଜୀବ ଭାବରେ ରଖିବାର ଜ୍ୱଳନ୍ତ ନିଦର୍ଶନ ହେଉଛି ଭିତର ଖଞ୍ଜା ଓ ବାହାର ଖଞ୍ଜା ଥିବା ଗୃହ ନିର୍ମାଣ । ଏ ଭିତର ଖଞ୍ଜାମାନଙ୍କର ଅନ୍ଧକାର ଓ ବାୟୁଚଳାଚଳ ରହିତ ବ୍ୟବସ୍ଥା ଏ ଅଞ୍ଚଳର ନାରୀମାନଙ୍କୁ ରୁଗ୍‌ଣ ପଶୁଟିଏ ଭାବରେ ରହିବାକୁ ବାଧ୍ୟ କରୁଥିଲା । ଏଠାକୁ ଛୋଟ ପିଲା ବ୍ୟତୀତ ପୁରୁଷମାନଙ୍କୁ ଯିବାର ଆଦେଶ ନଥିଲା । ଏଠାରେ ବହୁ ନାରୀ ବିବସନା ହୋଇ ରହିବାର ଏକ ପ୍ରଚଳନ ଥିଲା । ସେମାନେ ଦୁଇପ୍ରକାରର ଲୁଗା ପିନ୍ଧିବାର ବିଧି ଥିଲା । ଗୋଟିଏ ଧୋତିପରି ଧଳା ଲୁଗା । ଯାହା ଅତି ପତଳା । ସଧବାମାନେ ଏହାକୁ ହଳଦି, ଗେରୁଆ ଓ ନାଲି ମାଟି ରଂଗରେ ରଂଗେଇ ପିନ୍ଧୁଥିଲେ । ଅନ୍ୟକୌଣସି ରଂଗର ଲୁଗା (ଶାଢ଼ି) ପିନ୍ଧିବାର ସଂସ୍କୃତି ଉପକୂଳ ଅଞ୍ଚଳରେ ସ୍ୱାଧୀନତା ପାଇବା ପର୍ଯ୍ୟନ୍ତ ଦେଖା ନଥିଲା । ଏହାଛଡ଼ା ପବିତ୍ରତା ପାଇଁ କାଣ୍ଟିଆ, ମଠା ଓ ପାଟ ଲୁଗା ଯାହା ପହରଣ ଥିଲା ତାହା ସାଧାରଣ ପର୍ବପର୍ବାଣୀ ଓ ପୂଜାରେ ବ୍ୟବହୃତ ହେଉଥିଲା । ଏ ପାଟ ଓ ମଠା, ନାଲୀ, ନେଳି, ସବୁଜ ଓ ହଳଦି ରଂଗଛଡ଼ା ଅନ୍ୟ ରଂଗର ନଥିଲା । ଷାଠିଏ ଦଶକପରେ, ସମ୍ବଲପୁରୀ ଶାଢ଼ୀର ପ୍ରଚଳନ ଉପକୂଳ ଅଞ୍ଚଳରେ ପ୍ରବର୍ତ୍ତନ ହେବା ପରେ ଏଥିରେ ପରିବର୍ତ୍ତନ ଆସିଛି ।

ପଶ୍ଚିମାଞ୍ଚଳ କିନ୍ତୁ ଉପକୂଳ ଅଞ୍ଚଳର ଲୋକଙ୍କ ପାଇଁ କିଛି ଯୁଗ ପାଇଁ ଏକ "ଅନ୍ଧାରି ମୂଲକ" ଭାବରେ ଥିବାର ବହୁଗୁଡ଼ାଏ ଐତିହାସିକ ଓ କିମ୍ବଦନ୍ତୀମୂଳକ ଲୋକକଥା ଅଛି । "ଭଲା ରାମଚଣ୍ଡୀ ଭଲାରେ, ଦୁଆରେ ବସାଇ କଳାପାହାଡ଼କୁ, ଭଲା ପାଣି ଆଣି ଗଲାରେ" ଓ "ଆଇଲା କଳାପାହାଡ଼, ଭାଙ୍ଗିଲା ଲୁହାର ବାଡ଼, ପିଇଲା ମହାନଦୀ ପାଣି, ସୁବର୍ଣ୍ଣ ଥାଳିରେ ହେଡା ପରସିଲେ ମୁକୁନ୍ଦଦେବଙ୍କ ରାଣୀ" ପରି ଲୋକକଥା ଅଛି ତାହା ନଦୀର କୂଳ ବା ଦୁର୍ଗଦ୍ୱାର ଶତ୍ରୁପାଇଁ ଦୁର୍ବଳ ହୋଇପଡିବାର ଏକ ସୂଚନା ଦିଏ । କଳାପାହାଡ଼ ପରି ଏ ବିଧର୍ମୀର, ଉତ୍କଳର ହିନ୍ଦୁ ମନ୍ଦିର ଓ ଦୁର୍ଗ ଲୁଣ୍ଠନର ଏକ ଐତିହାସିକ ସୂଚନା ଦିଏ । ଏ ସମୟରେ ଉତ୍କଳୀୟ ଶୌର୍ଯ୍ୟ ଓ ବୀରତ୍ୱର ଅଧୋଗତି ଘଟିଥିଲା । ଏହାପରେ ଏକ ଘନ ଅନ୍ଧକାରର ସମୟ ଉପକୂଳର ମହାନଦୀ ସଭ୍ୟତାକୁ ଘୋଟିଥିଲା । ଠିକ୍ ଏହାପରେ ପଶ୍ଚିମାଞ୍ଚଳ ବିଶେଷରେ ହୀରାଖଣ୍ଡ ମହାନଦୀ ଶଯ୍ୟାରେ ଆଉ ଏକ କିମ୍ବଦନ୍ତୀ ମଧ୍ୟ ଅଛି, ଯାହାର ଐତିହାସିକ ସତ୍ୟତା ଖୁବ୍ ନିକଟରେ ରିଂ ରୋଡ଼ର ମାଟିତଳେ ପୋତିହେବାର ସମ୍ଭାବନା ଅଛି । କିମ୍ବଦନ୍ତୀ କହେ କଳାପାହାଡ଼ ସମ୍ବଲପୁର କୂଳର ମହାନଦୀର କୂଳେକୂଳେ ଉପକୂଳ ଅଞ୍ଚଳରୁ ଆସି ସମଲାଇ ମନ୍ଦିରର ଚାରିପାଖରେ ଅବସ୍ଥିତ ନାଳ ଓ ଦୁର୍ଗ ବାହାରେ ରହି ଆକ୍ରମଣ କରିବାର ମସୁଧା କରିବା ସମୟରେ ହିଁ ହଇଜା ରୋଗରେ ଆକ୍ରାନ୍ତ ହୋଇ ମୃତ୍ୟୁବରଣ କରିଥିଲା । ଏଥିସହିତ ଶହ ଶହ ସଂଖ୍ୟାର ସୈନିକ ମଧ୍ୟ ମୃତ୍ୟୁମୁଖରେ ପଡ଼ିଲେ ଓ ସେମାନେ ଛତ୍ରଭଙ୍ଗ ଦେଇ ପଳାୟନ କରିଥିଲେ । ପ୍ରାୟ ତିନିଶହ ବର୍ଷ ପର୍ଯ୍ୟନ୍ତ କଳାପାହାଡ଼ ଓ ତାହାର ସେନାପତିମାନଙ୍କର କବର ମହାନଦୀ କୂଳରେ ଜୀର୍ଣ୍ଣଶୀର୍ଣ୍ଣ ଭାବରେ ବଡ଼ବଜାର ଓ ଦୁର୍ଗାପାଲି ମଧ୍ୟରେ ଅବସ୍ଥିତ ହୋଇଥିଲା ।

ରଜାବଖରି, ମହାନଦୀ କୂଳର ବହୁ ପୁରୁଣା ବୁରୁଜ, ମଠ, ମନ୍ଦିର, ଖାଇ, ଜଳପ୍ରକଳ୍ପ ସବୁ ପଶ୍ଚିମାଞ୍ଚଳର ମୁଖ୍ୟ ସହରର ଇତିହାସ, ଜାଣିଶୁଣି ସୁରେନ୍ଦ୍ର ସାଏଙ୍କର ତିରୋଧାନରେ ନିଶ୍ଚିହ୍ନ କରାଇବାର ସୁଚିନ୍ତିତ ଯୋଜନା ହୋଇଛି ୧୯୪୨ ମସିହା ପରେ। ଏବେ "ରିଂରୋଡ଼୍ ପ୍ରକଳ୍ପ" ଦ୍ୱାରା ଏହା କରାଯାଉଛି।

ଦ୍ୱିତୀୟ ମହାସମରର ଆତଙ୍କ ଉପକୂଳ ଅଞ୍ଚଳରେ ଯେଉଁ ବିଭୀଷିକା ସୃଷ୍ଟି କରିଥିଲା, ତାହାରି ଫଳରେ ଓଡ଼ିଶା ସରକାର ମୁଖ୍ୟ ଶାସନ ଅଫିସ ସମ୍ବଲପୁରକୁ ଉଠେଇ ନେବାର ଯୋଜନା ଇଂରେଜ ସରକାର ସମୟରେ କରିଥିଲେ। ଏଥିପାଇଁ ଅନିଛାସତ୍ତ୍ୱେ ବହୁ ଉପକୂଳୀୟ ସରକାରୀ ଚାକିରିଆ ବାଧ୍ୟହୋଇ ସମ୍ବଲପୁର ସହରକୁ ଆସିବାର ସାହସ ଦେଖାଇଥିଲେ। ସେହି ସମୟରେ ହିଁ ପଶ୍ଚିମାଞ୍ଚଳର ଜନସାଧାରଣ ଓ ଏମାନଙ୍କର ସଂସ୍କୃତି ବିଷୟରେ ଉପକୂଳର ଲୋକେ ଅଙ୍ଗାଙ୍ଗୀ ଭାବରେ ଜାଣିବାକୁ ପାଇଥିଲେ। ଯେଉଁମାନେ ଏ ସଂସ୍କୃତିକୁ ଆତ୍ମୀୟତା ଦେଖାଇ ବନ୍ଧୁବାନ୍ଧି, ଜମି କିଣି ଘର କରି ରହିଲେ, ସେମାନଙ୍କର ପୁତ୍ରପୌତ୍ରାଦି ଏବେ ଉପକୂଳ ଅଞ୍ଚଳ ସହିତ ସଂପର୍କ ରଖିବାକୁ କୁଣ୍ଠାବୋଧ କରନ୍ତି। କିନ୍ତୁ ଯେଉଁମାନେ ସେଠାର ନେତୃତ୍ୱ ନେବାକୁ ଚାହାଁନ୍ତି ସେମାନେ ଏବେବି ଉପକୂଳୀୟ ସଂସ୍କୃତିକୁ ବାରଂବାର ଆଶ୍ରୟ ନେବାର ନିଦର୍ଶନ ଦେଖାଇ ଚାଲିଛନ୍ତି। ବିଗତ ପଚାଶବର୍ଷରେ ଏ ଦୁଇ ସଂସ୍କୃତି ମଧ୍ୟରେ ପରସ୍ପର ବୈରଭାବର ସୂଚନା ଦେଇ ଯେଉଁ ସଂସ୍କୃତି ଗଢ଼ି ଉଠିଲା ତାହାର ପରିଣାମ ହେଲା ହୀରାକୁଦ ବନ୍ଧ ଯୋଜନା ଓ ପଶ୍ଚିମାଞ୍ଚଳର ଆଞ୍ଚଳିକତା। ଆଜିର ପଶ୍ଚିମାଞ୍ଚଳ ଓଡ଼ିଶାକୁ ଦଶଟି ଜିଲ୍ଲାରେ ଭାଗକରିବା ପରେ ମଧ୍ୟ ରଂଗବତୀ ଗୀତକୁ ସମ୍ବଲପୁରୀ ଗୀତ କହିବାର କି ଯଥାର୍ଥତା ଅଛି ?

ଏହାର ମୁଖ୍ୟ ପ୍ରବକ୍ତା ଦଳ ଯେଉଁ ସ୍ୱପ୍ନିଳ ଉତ୍କଳର କାଳ୍ପନିକ ଦୃଶ୍ୟ ଦେଖାଇ ଏ ଯୋଜନାକୁ ସଫଳିକୃତ କଲେ ସେତେବେଳର ଭାରତ ସରକାରଙ୍କ "ମଲ୍‌ଟିପରପକ୍ ଡ୍ୟାମ ଏଟ୍ ହୀରାକୁଦ୍ ଅନ୍ ମହାନଦୀ" ବିଷୟରେ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରି କହିବେ କି ଏହି ବହୁମୁଖୀ ଯୋଜନାର କେଉଁ ଦିଗଟି ବିଗତ ପଚାଶବର୍ଷ ମଧ୍ୟରେ ସଫଳତାର ସହିତ କାର୍ଯ୍ୟକାରୀ ହୋଇଛି ବା ହେଉଛି ବା ହେବାର ସମ୍ଭାବନା ଅଛି ? ତାହାହିଁ ଆମ୍ଭପାଇଁ ମୁଖ୍ୟ ପ୍ରସଙ୍ଗ ! ପ୍ରଥମରୁ ମହାନଦୀର ପ୍ରବାହିତ ଜଳକୁ ଓଡ଼ିଶାର ଦୁଃଖ ଓ ଦାରିଦ୍ର୍ୟର ମୁଖ୍ୟ କାରଣ ଭାବରେ ପ୍ରତ୍ୟେକ ଯୋଜନାର ଖସଡ଼ା ତିଆରି ଚାଲିଛି। ତାହା ପ୍ରଥମେ ବଢ଼ି, ମରୁଡ଼ି ପ୍ରତିକାର ଭାବରେ ଘୋଷଣା କରି, ଦ୍ୱିତୀୟରେ ବୈଦ୍ୟୁତିକ ଶକ୍ତିର ଉତ୍ସ; ତୃତୀୟରେ ମତ୍ସ୍ୟ ଉତ୍ପାଦନ; ଚତୁର୍ଥରେ ପଶ୍ଚିମରୁ ଉପକୂଳକୁ ଜଳପଥର ସଂଯୋଗର ସୂତ୍ର ଓ ପଶ୍ଚିମାଞ୍ଚଳର ସାମୁହିକ କୃଷି ବିପ୍ଳବର ସୂତ୍ର ଭାବରେ ବାରମ୍ବାର ଘୋଷଣା କରିଚାଲିଛୁ ? ତଥାପି ଏହାର ସମାଧାନ ହେଲାଣି କି ? କାହାପାଇଁ ଏ କୋଟି କୋଟି ଟଙ୍କାର ଯୋଜନା ? ଏ କି ସଂସ୍କୃତିର ପରିଚୟ ?



*"Life can only be understood backwards, but it must be lived forwards."* *(Soren Kierkigaard)*

# ଆଈ ଓ ତାଙ୍କ ସଂସ୍କାର

## (୧)

ଏହା ସ୍ୱୀକାର କରିବାକୁ ହେବ ଯେ ଜୀବନରେ ମୁଁ ଆନ୍ତରିକ ଭାବରେ ବହୁ ନାରୀମାନଙ୍କ ଦ୍ୱାରା ପ୍ରଭାବିତ ହୋଇଛି । ମୋର ଯାହାକିଛି ଜୀବନର ଉପଲବ୍ଧି ଓ ଯଶକୀର୍ତ୍ତି ତାହା ବେଶୀ ଭାଗରେ କେତେ କଣ ନାରୀଙ୍କ ଆନ୍ତରିକତା ଓ ଭଲପାଇବା ଯୋଗୁ ସମ୍ଭବ ହୋଇଛି । ଆଜିଯାଏ ମୁଁ ବହୁ ନାରୀମାନଙ୍କ ପାଖରେ ଋଣୀ । ସେମାନେ ବହୁବର୍ଣ୍ଣା, ବହୁ ଗୌରବମଣ୍ଡିତା, ପରମ ଦୟାଶୀଳା ଓ ସ୍ୱାଭିମାନୀ । ଏ ବୟସରେ ସେମାନଙ୍କୁ ସ୍ମରଣ କରିବା ବେଳେ ମନେହୁଏ ପ୍ରତିଦାନରେ ମୁଁ ସେମାନଙ୍କୁ କିଛି ଦେଇପାରି ନାହିଁ । ଏ ଅଭାବବୋଧଟି ଆଜିଯାଏ ମୋତେ ବ୍ୟଥିତ କରେ । ତେଣୁ ଆଜି ମୋର ଏ ସ୍ୱୀକାରୋକ୍ତି । ଏଠାରେ ମୁଁ କିଛି ଅତିଶୟୋକ୍ତି କରୁନାହିଁ । ଯାହା ବାସ୍ତବରେ ଘଟିଯାଇଛି, ମୋ' ଦୃଷ୍ଟିରେ ତାହାର ବାସ୍ତବ ଚିତ୍ର ଉପସ୍ଥାପନ କେବଳ କରୁଛି ।

ନିଜ ଇଚ୍ଛାରେ ମୁଁ ଏ ସଂସାରକୁ ଆସିନାହିଁ । ଯେଉଁ ବଂଶ ଓ ଯୌଥ ପରିବାରରେ ମୁଁ ଜନ୍ମ ନେଲି, ସେ ମଣିଷମାନଙ୍କୁ ପିଲାବେଳୁ ବିସ୍ମୟ ଓ ଉତ୍କଣ୍ଠାରେ କେବଳ ଦେଖିଛି । ସେମାନଙ୍କ ସଂସ୍କାରକୁ ପରଖିବା ବା ବୁଝିବାର ଶକ୍ତି ବୋଧହୁଏ ମୋ ପାଠପଢ଼ା ସରିବା ପର୍ଯ୍ୟନ୍ତ ମୋ' ମନକୁ ଆସିନଥିଲା । ଏ ବୟସରେ ନିଜେ ଅଜାଟିଏ ହେବାପରେ ସେମାନଙ୍କ ପ୍ରକୃତ ସ୍ୱରୂପ ମୋତେ ଦୃଶ୍ୟମାନ ହେଉଛି । ମୋ ପରିବାରର ବିଶେଷତ୍ୱ ହେଉଛି ନାରୀକୁ ପ୍ରାଧାନ୍ୟ ଦେବା, ସମ୍ମାନ ଦେବା ଓ ଅଧିକାରକୁ ସ୍ୱୀକାର କରିବା ।

ଦୁଃଖର କଥା, ଯେଉଁମାନଙ୍କ ପାଖରେ ମୁଁ ଋଣୀ, ସେମାନେ କେହି ମୋ' ପାଖରେ ଏବେ ଉପସ୍ଥିତ ନାହାଁନ୍ତି । ଥିଲେ ହୁଏତ ମୁଁ ସେମାନଙ୍କୁ କୃତଜ୍ଞତା ଜଣାଇ ଥାଆନ୍ତି । ମହାର୍ଘ ପଦାର୍ଥଟିଏ ଉପହାର ଦେଇଥାଆନ୍ତି । ପାଦ ଛୁଇଁ ପ୍ରଣାମ କରିଥାଆନ୍ତି । ଆଶ୍ଚର୍ଯ୍ୟର ବିଷୟ, ସେ ମହାନ୍ ଓ ମହୀୟସି ଚରିତ୍ର ମାନଙ୍କଠାରୁ ମୁଁ ଯାହା ପାଇଛି, ସେମାନଙ୍କର ଅବର୍ତ୍ତମାନରେ, ତାହାର କିଛି ବିଭୂତି ଅନେକ ନୂତନ ଓ ଅନ୍ୟ ଚରିତ୍ରମାନଙ୍କ ଜରିଆରେ ପ୍ରାପ୍ୟ ହେଉଛି । ଠିକ୍ ଭାବରେ କହିଲେ, ଯାହା ମୋର ପ୍ରାପ୍ୟ ନୁହେଁ, ତାହାର ଶ୍ରେୟ ମୋତେ ଅଯାଚିତ ଭାବରେ ମିଳିଯାଉଛି । ଏ ଅନୁଦାନ ମୋର ଶେଷ ମୁହୂର୍ତ୍ତପାଏ ଅସରନ୍ତି ହୋଇରହିବ ! ଏହାହିଁ ମୋ' ଭାଗ୍ୟର ବିଡ଼ମ୍ବନା !

ମୋର ପୈତୃକ ଘର ସମ୍ବଲପୁର ସହରର ଝାଡୁଆପଡ଼ାରେ ଅବସ୍ଥିତ । ତେଣୁ ମୁଁ ଜଣେ ପଶ୍ଚିମ ଓଡ଼ିଶାବାସୀ । କିନ୍ତୁ ମୋର ପିତାମହଙ୍କ ଅମଳରୁ ପ୍ରାୟ ଶହେବର୍ଷ ହେଲାଣି ମୋ' ପରିବାରର ଲୋକେ ଉଚ୍ଚଶିକ୍ଷିତ ହେବାକୁ ଚାହିଁଛନ୍ତି । ସେଥିପାଇଁ ସେମାନଙ୍କ ଭିତରୁ ଅଧିକାଂଶ ଗୃହତ୍ୟାଗୀ ଓ ରାଜକର୍ମଚାରୀ । ମୋ ବାପା ସଚ୍ଚିଦାନନ୍ଦ ପୂଜାରୀ ସେମିତି ଜଣେ ବ୍ୟକ୍ତି ଯେ, ବିହାରଓଡ଼ିଶା ପ୍ରଦେଶରେ ଇଂରେଜ ସରକାରଙ୍କର ରାଜସ୍ୱ ବିଭାଗର ରେଭିନ୍ୟୁ ଇନସ୍‌ପେକ୍ଟର, ତହସିଲଦାର, ସବଡେପୁଟି, ଡେପୁଟି ମାଜିଷ୍ଟ୍ରେଟ ଓ ଏସ୍.ଡ଼ି.ଓ. ଭାବରେ ଅନେକ ଜାଗାରେ ଅବସ୍ଥାପିତ ଥିଲେ । ସମ୍ବଲପୁର ପୈତୃକ ଘର ଓ ସଂସ୍କାରଠାରୁ ସେ କେବେ ଦୂରେଇ ଯାଇ ନଥିଲେ । ୧୯୩୪ ମସିହାରେ ନୟାଗଡ଼ରୁ ବଦଳି ହେବାପରେ ସେ ଝାଡୁଆପଡ଼ାର ନିଜ ପୈତୃକ ଜମିର ଭାଗ ସହିତ ଆଉ କିଛି ଜମି କିଣି ନିଜର ଅଲଗା ଗୋଟିଏ ତିନିମହଲା ଘର ତିଆରି କରିଥିଲେ । ନାମକରଣ କରିଥିଲେ "କମଳ ନିବାସ" । ଯଦିଓ ବାହାରେ, ଚାଲିଚଳଣିରେ ସେ ଜଣେ ସରକାରୀ ଅଫିସର ଭାବରେ ଦେଖା ଯାଉଥିଲେ ସ୍ଥାନ, କାଳ, ପାତ୍ର ବିଷୟରେ ସେ ଯଥେଷ୍ଟ ସଚେତନ ଥିଲେ । ବର୍ଷକୁ ଅନ୍ତତଃ ପକ୍ଷରେ ଥରେ ଦୁଇଥର ଛୁଟି ସମୟରେ ସମ୍ବଲପୁର ଓ ପାଖଆଖର ଗ୍ରାମାଞ୍ଚଳର ବନ୍ଧୁବାନ୍ଧବଙ୍କ ସହିତ ବିତେଇବାକୁ ସେ କେବେ ଭୁଲି ଯାଉନଥିଲେ । ତେଣୁ, ମୋର ଶୈଶବ ଗୋଟିଏ ବିରାଟ ବଡ଼ ମଧ୍ୟବିତ୍ତ ସଂଘର୍ଷପୂର୍ଣ୍ଣ ପରିବାର ଭିତରେ ଗତି କରିଥିଲା । ମୋତେ ଦେଢ଼ବର୍ଷ ହେବା ବେଳକୁ ମୋ ତଳ ଭାଇ, ସୁବୋଧଚନ୍ଦ୍ର ଜନ୍ମଗ୍ରହଣ କରିଥିଲେ । ତା'ପରେ ପ୍ରତି ଦୁଇବର୍ଷରେ ୧୯୫୩ ମସିହା ପର୍ଯ୍ୟନ୍ତ ମୋର ମା' ଗୋଟିଏ ଲେଖାଏଁ ଏମିତି ଆଠଟି ଭାଇ ଭଉଣୀ ମୋ ପରିବେଶରେ ଆଣି ଥୋଇ ଦେଉଥିଲେ । ସେଥିପାଇଁ ଶୈଶବରୁ ମାତୃସ୍ନେହରେ ପ୍ରତିପାଳିତ ହୋଇ ନଥିଲି । ଏ ଅଭାବବୋଧ ଅନେକାଂଶରେ ମୋର ଏକମାତ୍ର ବଡ଼ଭଉଣୀ, ଯେ ମୋର ବୟସରୁ ତିନିବର୍ଷ ବଡ଼ଥିଲେ, ତାଙ୍କଦ୍ୱାରା ଦୂରୀଭୂତ ହୋଇଥିଲା । ମୋ ନାନୀଙ୍କର ସତରବର୍ଷ ବୟସରେ ବିବାହ ହେବା ସତ୍ତ୍ୱେ ମୁଁ ତାଙ୍କର ସ୍ନେହ ଓ ଶ୍ରଦ୍ଧାର ପାତ୍ର ଭାବରେ ସବୁବେଳେ ତାଙ୍କ ନିକଟରେ ରହିବାର ସୁଯୋଗ ପାଇ ଆସୁଛି । ଛୋଟ ବେଳୁ ମୋର ଖେଳସାଥୀ ତଥା ଶୈଶବର ଅସାଧାରଣ ଅନୁଭୂତି ଓ ସାହସିକ ପ୍ରଚେଷ୍ଟାରେ ମୋ ନାନୀ ମୋର ବନ୍ଧୁ, ଦାର୍ଶନିକ ଓ ପଥପ୍ରଦର୍ଶକ ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି । ନାନୀଙ୍କ ଛଡ଼ା ବାପାଙ୍କ ସଂପର୍କ ଯୋଗୁଁ ମୋର ସମ୍ପର୍କୀୟ ଆହୁରି ଚ଼ବିଶଜଣ ଭଉଣୀ ଓ ଭିଣୋଇ ଓ ସାତ ଆଠଜଣ ଭାଉଜ ଓ ଭାଇଙ୍କ ସ୍ନେହ, ଶ୍ରଦ୍ଧା ଓ ଆଦର ପାଇବାର ଯୋଗ୍ୟତା ମୋତେ ମିଳିଛି ।

ମୋ' ନାନୀ 'ସତ୍ୟବତୀ', ମୋ ବାପା ମା'ଙ୍କର ପ୍ରଥମ ସନ୍ତାନ, ଖୋର୍ଦ୍ଧାରେ ଜନ୍ମଗ୍ରହଣ କରିଥିଲେ । ମୁଁ ଦ୍ୱିତୀୟ ସନ୍ତାନ ଓ ବଡ଼ ପୁଅ ଭାବରେ ନୟାଗଡ଼ ସହରରେ ଜନ୍ମଗ୍ରହଣ କରିଥିଲି । ମୋ ନାନୀ ଓ ମୋର ପାଠପଢ଼ା ଖୋର୍ଦ୍ଧା ଓ ପୁରୀରେ ଆରମ୍ଭ

ହୋଇଥିଲା । ତେଣୁ, ଆମେ ଦୁଇଜଣ ଉପକୂଳ ଅଞ୍ଚଳର ସଂସ୍କୃତି ଓ ସଂସ୍କାର ସହିତ ଅନ୍ତରଂଗ ଭାବରେ ଜଡ଼ିତ ଥିଲୁ ପ୍ରାୟ ବାରବର୍ଷ ଯାଏ । ପୁରୀ ସହରରେ ମୋର ତୃତୀୟ ଓ ଚତୁର୍ଥ ଭାଇ, ଯଥାକ୍ରମେ ସୁନୀଲଚନ୍ଦ୍ର ଓ ଶିଶିରଚନ୍ଦ୍ର ଜନ୍ମଗ୍ରହଣ କରିଥିଲେ । ଏବେ ମୁଁ ସେଇ ନାରୀଙ୍କ କଥା କହିବି, ଯେ ଆମ ଦଶଜଣ ଭାଇଭଉଣୀଙ୍କୁ ଜଣଙ୍କ ପରେ ଜଣଙ୍କୁ ଭୂମିଷ୍ଠ କରାଇ ସୂର୍ଯ୍ୟର ଆଲୋକ ଦେଖାଇ ଥିଲେ । ମଣିଷ ପରି ବଞ୍ଚିବାର ଆଶୀର୍ବାଦ ଦେଇଥିଲେ ।

(୨)

୧୮୯୮ ମସିହାରେ ସମ୍ବଲପୁର ଜିଲ୍ଲାର ମହାନଦୀ କୂଳର ହୁମା ଶିବ ମନ୍ଦିରର ମୁଖ୍ୟ ପୁରୋଧା ଓ ପୁରୋହିତ ପଣ୍ଡିତ ମାଧବ ହୋତାଙ୍କର କନିଷ୍ଠା କନ୍ୟା ଭାବରେ ତାଳମତୀ ଦେବୀ ଜନ୍ମଗ୍ରହଣ କରିଥିଲେ । ହୁମାର ବକ୍ର ମନ୍ଦିର ସେତେବେଳେ ମଧ୍ୟ ଖୁବ୍ ପ୍ରସିଦ୍ଧି ଲାଭ କରିଥିଲା । ପଣ୍ଡିତ ମାଧବ ହୋତା ଥିଲେ ଜଣେ ଶାସ୍ତ୍ରଜ୍ଞ ସଂସ୍କୃତ ପଣ୍ଡିତ । ଶିବ ମନ୍ଦିରର ପୂଜକ ବ୍ୟତୀତ ସେ ଜ୍ୟୋତିଷ ବିଦ୍ୟା, ଆୟୁରବେଦ ଓ ଗ୍ରାମ୍ୟ ତୁଟୁକା ଔଷଧ ବିଷୟରେ ଗଭୀର ଗବେଷଣା କରିଥିଲେ । ସମ୍ବଲପୁର ଓ ବଲାଙ୍ଗୀର ଅଞ୍ଚଳର ଶିବ ମନ୍ଦିରର ଉପାସନା ଓ ଉତ୍ସବ ସମୟରେ ମାଧବ ହୋତାଙ୍କୁ ସମ୍ମାନର ସହିତ ରାଜା, ମହାରାଜା, ଜମିଦାର ଓ ଗୌନ୍ତିଆ ମାନେ ନିମନ୍ତ୍ରଣ କରି ନେଉଥିଲେ ।

ତାଙ୍କର ତିନୋଟି ପୁଅ ଓ ତିନୋଟି ଝିଅ ଥିଲେ । ସେତେବେଳର ବ୍ରାହ୍ମଣକୂଳର ପରଂପରା ଅନୁଯାୟୀ ପୁତ୍ରକନ୍ୟାମାନଙ୍କୁ ଶିକ୍ଷିତ କରିବାକୁ ପିତାମାତା ମାନେ ସେତେ ଯତ୍ନ ନେଉନଥିଲେ । ଫଳରେ ମାଧବ ହୋତାଙ୍କର ତିନୋଟିଯାକ ଶିକ୍ଷିତ ପୁତ୍ର ବାପାଙ୍କ ପରି ବିଦ୍ୱାନ ନଥିଲେ । ସେହିପରି ପରଂପରା ଅନୁଯାୟୀ ଝିଅମାନଙ୍କୁ ବାଲ୍ୟବିବାହ ପ୍ରଥା ଅନୁଯାୟୀ ଚାରି ପାଞ୍ଚ ବର୍ଷ ବୟସରେ ବିବାହ କରି ଦିଆଯାଉଥିଲା । ବାଳମତୀ ଥିଲେ କନିଷ୍ଠା କନ୍ୟା । ସେ ତାଙ୍କ ପିତାଙ୍କ ସହିତ ବେଶୀ କାଳ ବିତାଇଥିଲେ । ବାପାଙ୍କର ଗେହ୍ଲା ଝିଅ ଭାବରେ ବାପାଙ୍କ ଆୟୁର୍ବେଦ ଚିକିତ୍ସା ଓ ତୁଟୁକା ଔଷଧ ପ୍ରସ୍ତୁତି ଓ ବ୍ୟବହାର ବିଷୟରେ ଖୁବ୍ ଛୋଟବେଳୁ ଅନେକ ବିଷୟ ଶିଖିଥିଲେ । ପଣ୍ଡିତ ମାଧବ ହୋତାଙ୍କ ପୈତୃକ ଗ୍ରାମ ବରଗଡ଼ ସବଡିଭିଜନ ଭେଡ଼େନ ଥାନା ଅନ୍ତର୍ଗତ ପପଙ୍ଗା ପାହାଡ଼ ପାଖ ଲୁଇସିରା ଗ୍ରାମରେ ଥିଲା । ନିଜର ଝିଅମାନଙ୍କୁ ସେ ବାଲ୍ୟକାଳରୁ ପ୍ରତିଷ୍ଠିତ ଗୌନ୍ତିଆ ପରିବାରରେ ବିବାହ ଦେଇଥିଲେ । ତିନୋଟିଯାକ ଝିଅ ମହାନଦୀ କୂଳିଆ ସମ୍ବଲପୁରର ଗ୍ରାମ ମାନଙ୍କରେ ଗୋଟିଏ ଥାନା ଅଞ୍ଚଳରେ ଥିବାରୁ ଏମାନଙ୍କର ତିନିପୁରୁଷ ପରସ୍ପର ସହିତ ଯୋଗାଯୋଗ ଘନିଷ୍ଠ ଥିଲା ।

ବାଳମତୀ ଦେବୀ ଲୁଇସିରା ଗ୍ରାମ ଅତି ନିକଟରେ ମାନପୁର ଗ୍ରାମର ହିଂସାଦାର ଗୌନ୍ତିଆଙ୍କ ଜ୍ୟେଷ୍ଠପୁତ୍ର ଜନାର୍ଦ୍ଦନ ପାଣିଗ୍ରାହୀଙ୍କୁ ବିବାହ କରିଥିଲେ । ଜନାର୍ଦ୍ଦନ ପାଣିଗ୍ରାହୀ

ପିଲାଟି ଦିନରୁ ମେଧାବୀ ଥିବାରୁ ଓ ତାଙ୍କର ପିତାଙ୍କ ଉତ୍ସାହବଳରେ ସମ୍ବଲପୁର ଜିଲ୍ଲା ସ୍କୁଲରୁ ଏଣ୍ଟ୍ରେନ୍ସ ପାସ୍ କରି କିଛିଦିନ ସମ୍ବଲପୁର କମିସନର ଅଫିସରେ ବନ୍ଦୋବସ୍ତ ଓ ଶିକ୍ଷକ କାର୍ଯ୍ୟ କରୁଥିଲେ। ସେ ଇଂରାଜୀ ପଢ଼ିବାରେ ଓ ଲେଖିବାରେ ଯଥେଷ୍ଟ ରୁଚି ରଖୁଥିଲେ। ନିଜ ଚେଷ୍ଟାରେ ହିନ୍ଦୀ ଓ ବଙ୍ଗଳା ଭାଷାର ପୁସ୍ତକ ପଢ଼ି ପାରୁଥିଲେ।

ବାଳମତୀ ଦେବୀ ମୋଟେ ପନ୍ଦରବର୍ଷ ବୟସରେ ମାତୃତ୍ୱ ଲାଭ କରିଥିଲେ। ତାଙ୍କର ପ୍ରଥମ ସନ୍ତାନ ହେଉଛନ୍ତି ମୋ ମା'। ବାପା ଓ ମା'; ମୋ ମା'ଙ୍କୁ ନାମକରଣ କରିଥିଲେ ଭଗବତୀ। ଅଳ୍ପ ବୟସରୁ ଭଗବତୀଙ୍କର ପାଠପ୍ରତି ଶ୍ରଦ୍ଧାଦେଖି ଜନାର୍ଦ୍ଦନ ଓ ବାଳମତୀ ମାନପୁର ଗୌନ୍ତିଆଙ୍କର ଅନୁମତି ନେଇ ସମ୍ବଲପୁର ସହରରେ ଭଡ଼ାଘରେ ରହି ଜିଲ୍ଲାର ଏକମାତ୍ର ଗାର୍ଲ୍ସ ସ୍କୁଲରେ ପାଠ ପଢ଼ାଉଥିଲେ। ସେତେବେଳେ ନାରୀ ଶିକ୍ଷାର ପ୍ରସାର ନଥିଲା। ସେ ଦୃଷ୍ଟିରୁ ଗ୍ରାମାଞ୍ଚଳର ଜଣେ ବ୍ରାହ୍ମଣ ଗୌନ୍ତିଆ ନିଜେ ସରକାରୀ ଚାକିରୀ କରି ଏକମାତ୍ର ଝିଅଙ୍କୁ ପାଦାଡି (ପାଦ୍ରୀ) ସ୍କୁଲରେ ପଢ଼ାଇବା ଏକ ବିପ୍ଳବ ବୋଲି ଧରା ଯାଉଥିଲା। ମୋର ଅଜା ଜନାର୍ଦ୍ଦନ ପାଣିଗ୍ରାହୀ କିନ୍ତୁ ନିର୍ବିକାର ଥିଲେ। ସେ ଖୁବ୍ ଶାନ୍ତ, ଶିଷ୍ଟ ଓ ଭଦ୍ର ଥିଲେ। ଛୋଟପିଲାମାନଙ୍କ ସହିତ ବେଶୀ ସମୟ ବିତାଉଥିଲେ। ସବୁବେଳେ ସରଳ ଭାଷାରେ ମଜାକଥା କହି ଜଟିଳ ବୈଜ୍ଞାନିକ କଥା ବୁଝାଉଥିଲେ। ଚାଷବାସ, ଫଳ, ପନିପରିବା ଚାଷରେ ବେଶୀ ସମୟ ବିତାଉଥିଲେ। ତାଙ୍କର କୌଣସି ବଦ୍‌ଗୁଣ ନଥିଲା। ମୋ' ଆଇ କିନ୍ତୁ ଥିଲେ ଖୁବ୍ ଚତୁରୀ, କାର୍ଯ୍ୟକ୍ଷମ ଓ ସଂସାରୀ। ସେ ଘରର ସବୁ କଥା ବୁଝୁଥିଲେ। ଶାଶୂ ଓ ଶଶୁର ତାଙ୍କ ପ୍ରତି ବେଶ୍ ସନ୍ତୁଷ୍ଟ ଥିଲେ। ତେଣୁ ବାପଘରେ ସେ ଯେତିକି ସ୍ୱାଧୀନତା ପାଇଥିଲେ, ଅଳ୍ପବୟସରେ ଶଶୁରଘରେ ମଧ୍ୟ ତାହା ଅକ୍ଷୁର୍ଣ୍ଣ ରହିଥିଲା। ସ୍ୱାମୀ ଓ ଏକମାତ୍ର କନ୍ୟା ସମ୍ବଲପୁର ସହରରେ ରହିବା ସମୟରେ ହିଂସାବାର ଗୌନ୍ତିଆଙ୍କର ଏକମାତ୍ର ପୁତ୍ରବଧୂ ଭାବରେ ମାନପୁର, ମହଲାକଣ୍ଟା, ଫଟାଟିକରା ଓ ସୁଖପାଲି ଏପରି ଚାରଟି ଗ୍ରାମର ଜଟିଳ ଆଇନ ସମ୍ବନ୍ଧୀୟ, ପ୍ରଶାସନିକ ଓ ଖଜଣା ଅସୁଲି ବିଷୟରେ ସେ ନିଷ୍ପତ୍ତି ନେଇ ପାରୁଥିଲେ। ନିଜେ ଶିକ୍ଷିତା ନହୋଇ ମଧ୍ୟ, ଏକରୁ କୋଡ଼ିଏ ପର୍ଯ୍ୟନ୍ତ ଚିହ୍ନଦେଇ ଗଣିବା ଓ ବାପା ପଣ୍ଡିତ ମାଧବ ହୋତାଙ୍କର ମୁହଁରୁ ଶୁଣିଥିବା ନ୍ୟାୟ, ଅନ୍ୟାୟ, ଭଲମନ୍ଦ ବିଷୟରେ ଠିକଣା ସମୟରେ ସମସ୍ତଙ୍କ ସମ୍ମୁଖରେ ମୁହଁ ଖୋଲି ଓଢ଼ଣା ଭିତରୁ ସଂଯମ ସହିତ କହିବାର ଏକ ଅସାଧାରଣ ଶକ୍ତିଥିଲା ମୋ' ଆଇଙ୍କର।

ଏ ଯେଉଁ ସମୟଥିଲା, ସେତେବେଳେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର କଳ୍ପନା ମଧ୍ୟ କେହି କରିନଥିଲେ। ଏବର ପଶ୍ଚିମ ଓଡ଼ିଶାର ସମ୍ବଲପୁର ଡିଭିଜନ ହିଁ ମଧ୍ୟପ୍ରଦେଶର କମିସନର ଅଧୀନରେ ଶାସିତ ହେଉଥିଲା। ସମ୍ବଲପୁରର ସ୍ୱାତନ୍ତ୍ର୍ୟ ଛଡ଼ା ପ୍ରାୟ ସବୁ ପଶ୍ଚିମ ଓଡ଼ିଶା ରାଜା ଓ ରାଜୁଡ଼ାଙ୍କ ଅଞ୍ଚଳ ଥିଲା। ଏ ସମସ୍ତ ଅଞ୍ଚଳରେ ଗୌନ୍ତି ପ୍ରଥାର ପ୍ରଶାସନ ଚାଲୁଥିଲା। ନ୍ୟାୟ ପ୍ରଦାନ ଚାଲୁଥିଲା।

ଖୁବ୍ ଅଳ୍ପ ବୟସରୁ ଆଈଙ୍କର ବିଚକ୍ଷଣ ବୁଦ୍ଧି, ପରୋପକାରୀ ଗୁଣ, ସ୍ପଷ୍ଟବାଦିତା ଯୋଗୁଁ ସେ ପ୍ରାୟ ପଚିଶ/ ତିରିଶ ମାଇଲ ଆକ୍ରାନ୍ତର ଗାଁ ଗଣ୍ଡାର ଲୋକଙ୍କ ପାଖରେ "ମାନପୁରର ଗୌନ୍ତିଏନ୍" ଭାବରେ ଜଣାଶୁଣା ଥିଲେ। ମୋ ପିଲାବେଳେ ମୁଁ ତାଙ୍କପରି ଜଣେ "ଗୌନ୍ତିଏନ୍"ଙ୍କୁ ଦେଖିବାକୁ ପାଇନାହିଁ। ତାଙ୍କପରି ସମ୍ମାନିତା ସଂପୂର୍ଣ୍ଣ ପାରିବାରିକ ମହିଳାଟିଏ ଖୋଜି ପାଇନାହିଁ।

ଗୌନ୍ତି ପରିସର ମଧ୍ୟରେ, ପୁରୁଷ ପ୍ରାଧାନ୍ୟ ସମସ୍ତ ଆଲୋଚନା ଓ ନିଷ୍ପତ୍ତି ଭିତରକୁ ସେ କେବେ ଯାଉନଥିଲେ। କିନ୍ତୁ ପ୍ରତ୍ୟେକ ସଭ୍ୟ ତାଙ୍କୁ ଦେଖାନକରି କେବେ ସଭାରେ ନିଜନିଜର ମନ୍ତବ୍ୟ ବା ନିଷ୍ପତ୍ତି ଜଣାଉ ନଥିଲେ। ସମସ୍ତଙ୍କର ବିଶ୍ୱାସ ଥିଲା ଯେ, ବାଳମତୀ ଦେବୀ ଯେଉଁ ନ୍ୟାୟ, ନିଶାପ ଓ ଶେଷକଥା କହୁଥିଲେ, ତାହାହିଁ ସର୍ବଶ୍ରେଷ୍ଠ ଓ ସମସ୍ତଙ୍କ ପାଇଁ ଗ୍ରହଣୀୟ। ସବୁ ସଭ୍ୟ ମୋ' ଅଜା ବା ଗୌନ୍ତିଆଙ୍କୁ ନଜଣାଇ ମୋ' ଆଈଙ୍କର ଶେଷ କଥାଟି ଶୁଣିଯାଉଥିଲେ। ୧୯୪୭ ମସିହାଯାଏ ମୁଁ ଏହା ନିଜ ଆଖିରେ ଦେଖିଛି।

(୩)

ପଶ୍ଚିମ ଓଡ଼ିଶାର ଶହେବର୍ଷ ପୂର୍ବର ପ୍ରାୟ ସବୁ ପ୍ରତିଷ୍ଠିତ ଗ୍ରାମରେ ଶ୍ରୀଜଗନ୍ନାଥଙ୍କର ବାରମାସର ତେରଯାତ ହୁଏ। ବ୍ରାହ୍ମଣ କୂଳର କୂଳବଧୂ ଭାବରେ, ମନ୍ଦିର ଅଭାବରେ ନିଜ ଘରେ ଗୋଟିଏ କୋଠରୀରେ ଶହେ ବର୍ଷର ପୁରାତନ ଶ୍ରୀଜଗନ୍ନାଥଙ୍କ ତ୍ରିମୂର୍ତ୍ତୀଙ୍କୁ ଆସ୍ଥାନ ଦେଇଥିବାରୁ ଅତି ନିଷ୍ଠାର ସହିତ ଛୁଆଁ ଅଛୁଆଁ ବାରୁଥିଲେ। ତିନୋଟି ଖଞ୍ଜାରେ ତିନିପ୍ରକାର ଲୁଗା ପିନ୍ଧି ଚଳପ୍ରଚଳ କରୁଥିଲେ ଓ ସମସ୍ତଙ୍କୁ ନିର୍ଦ୍ଦେଶ ଦେଉଥିଲେ। ଗାଧୋଇ ସାରିବା ପରେ ଓଦାଲୁଗା ବଦଳାଇ ଠାକୁର ଘରେ ସଫା ପାଟ, ମଠା, ସିଲ୍କ ଶାଢୀ ପିନ୍ଧି ବା ମୋ' ଅଜାଙ୍କୁ ପିନ୍ଧାଇ ଜଗନ୍ନାଥ ଠାକୁରଙ୍କୁ ପ୍ରତିଦିନ ପୂଜାର୍ଚ୍ଚନା କରୁଥିଲେ। ଠିକ୍ ସେହିପରି ରୋଷେଇ ଘରକୁ ପ୍ରବେଶ କରିବା ପୂର୍ବରୁ ଅନ୍ୟ ଶାଢ଼ୀ, ଧୋତି, ଗାମୁଛା ସବୁ ଗୋଟିଏ ବାଉଁଶ ଅଡ଼ାରେ ଧୋବାଘରୁ ଆସି ସାଇତା ହୋଇ ରହୁଥିଲା। ସମସ୍ତେ ଲୁଗା ପାଲଟି ରୋଷେଇ ଘରକୁ ପ୍ରବେଶ କରୁଥିଲେ। ବାରିପଟ ଖଞ୍ଜାରେ ଢେଙ୍କିଶାଳ ଥିଲା। ସେଠିକୁ ଯେଉଁ ଅନ୍ୟଜାତିର ମହିଳାମାନେ ଆସୁଥିଲେ ସେମାନଙ୍କ ସହିତ ବିରିବଟା, ବଡ଼ିପାରିବା, ଆଚାର ପ୍ରସ୍ତୁତି, ଧାନ ଓ ଚାଉଳ କୁଟିବା, ମୁଗ ଡ଼ାଲି ଓ ମୁଡ଼ି ଭାଜିବା ଚୁଲିର ବ୍ୟବହାର ଓ ମାଛ ମାଂସ ରନ୍ଧା ବ୍ୟବସ୍ଥା ପାଇଁ ଅନ୍ୟପ୍ରକାର ଲୁଗାର ବ୍ୟବହାର କରୁଥିଲେ। ଆମେ ନାତି ନାତୁଣୀମନେ ଛୋଟବେଳୁ ଏ ବ୍ୟବସ୍ଥା ଅଭ୍ୟସ୍ତ ଥିଲୁ।

ଏ ସମସ୍ତ କୁଳୀନ ବ୍ରାହ୍ମଣ ବ୍ୟବସ୍ଥା ଭିତରେ ସେ ଯେତେବେଳେ ସମସ୍ତ ମାନବଜାତି ପାଇଁ ନିଃଶୁଳ୍କ ସେବାକାରିଣୀ ଦେବୀଟିଏ ପାଲଟି ଯାଉଥିଲେ- ସେ ରୂପଟି ମୁଁ ଏଯାଏ ଭୁଲି ପାରୁନାହିଁ। ସେଥିଲେ ଜଣେ ଗର୍ଭଧାରିଣୀ ନାରୀମାନଙ୍କ ପାଇଁ ସର୍ବଶ୍ରେଷ୍ଠ ଚିକିତ୍ସିକା ଓ

ଧାଇ । ସେତେବେଳେ ଚିକିତ୍ସାର ସୁବିଧା ନଥିଲା କହିଲେ ଚଳେ । ପ୍ରସୂତି ସମୟରେ ମା'ର ବା ଶିଶୁର ମୃତ୍ୟୁ ଏକ ସାଧାରଣ କଥା । ସେ ଦୃଷ୍ଟିରୁ "ମାନପୁରର ଗୌନ୍ତିଏନ୍"ଙ୍କର ଟୁଟୁକା ଔଷଧ, ଜରିବୁଟି ଓ ଆୟୁର୍ବେଦୀୟ ଚିକିତ୍ସା ଆଚ଼ାଣ୍ଡାଳ ବ୍ରାହ୍ମଣ ପ୍ରଶଂସା ନକରି ରହିପାରୁ ନଥିଲେ । ଦିନ ଓ ରାତିର ଯେକୌଣସି ସମୟରେ ଜରୁରୀକାଳିନ ସମ୍ବାଦ ଭାବରେ ପ୍ରସୂତିଟିର ଖବରପାଇଲେ, ସେ ଖାଇବା, ଶୋଇବା, ପୂଜାଆରାଧନା ପାଖରୁ ଉଠି ଆସୁଥିଲେ । ଗମ୍ଭୀର ହୋଇଯାଉଥିଲେ । ନିଜ ଭଣ୍ଡାର ଘରକୁ ଯାଇ ପୋଟଳିଟିଏ ବାନ୍ଧୁଥିଲେ । ତାଙ୍କ ମନରୁ ଛୁଆଁଅଛୁଆଁ ଭାବ ସଂପୂର୍ଣ୍ଣ ଚାଲିଯାଉଥିଲା । ସେ ଖବରନେଇ ଆସିଥିବା ଲାଠିଆଳ ସହିତ ବା ଶଗଡ଼ ଗାଡ଼ିରେ ଯିବାପାଇଁ ରାସ୍ତାରେ ଯାଇ ଛିଡ଼ା ହେଉଥିଲେ । ଦିନ ଓ ରାତିକୁ ଭ୍ରୁକ୍ଷେପ କରୁନଥିଲେ । ଜାତି, ଗୋତ୍ର, ଶତ୍ରୁ, ମିତ୍ର, ହରିଜନ, ଦୁର୍ଜନ କେହି ତାଙ୍କ ଆଖିକୁ ଦେଖାଯାଉ ନଥିଲେ । ଖରା, ବର୍ଷା, ଶୀତ ମାନୁନଥିଲେ । ଆଶ୍ଚର୍ଯ୍ୟର କଥା, ରଢ଼ିବାଦୀ ପୁରୁଷ ସମାଜ ଏହାର ବିରୋଧ କରୁନଥିଲା ।

(୪)

୧୯୩୯ ମସିହାରେ ଦ୍ୱିତୀୟ ମହାସମର ଆରମ୍ଭ ହେବାପରେ ଛ'ମାସ ପାଇଁ ସଚ୍ଚିଦାନନ୍ଦ ପରିବାରକୁ ସମ୍ବଲପୁର ଓ ମାନପୁର ପଠେଇ ନିଜେ "ସିଭିଲ ଡିଫେନ୍ସ ଟ୍ରେନିଂ" ନେବାକୁ ଲାହୋର ଗଲେ । ଏହି ସମୟରେ ସମ୍ବଲପୁରରେ ତାଙ୍କ ଷଷ୍ଠ ସନ୍ତାନ ଓ ପଞ୍ଚମ ପୁତ୍ର "ସୁଭାଷଚନ୍ଦ୍ର" ଜନ୍ମଗ୍ରହଣ କଲେ । ସଂପୂର୍ଣ୍ଣ ଭାବରେ ବାଳମତୀ ଦେବୀଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ । ଯୁଦ୍ଧର ଘନଘଟା ଭିତରେ ପୁରୀର ସିଭିଲ ଡିଫେନ୍ସ ଅଫିସର ଥିବା ସମୟରେ ବଡ଼ପୁଅ 'ସୁରେଶଚ଼ନ୍ଦ୍ର' ଘରୋଇ ଚିକିତ୍ସା ଓ ଶିକ୍ଷାପାଇ ଏକ ସୁଦୃଶ୍ୟ, ସବଳ ଯୁବକ ପାଲଟି ଯାଇଥିଲେ । ଯୌବନର ଉଦ୍ଦାମତା ଓ ନୃତ୍ୟ ଅଭିନୟ ପ୍ରତି ସହଜାତ ଆକର୍ଷଣ ତାଙ୍କୁ ବହୁ ପ୍ରକାରର ଲୋକଙ୍କ ସହିତ ପରିଚ଼ୟ କରାଉଥିଲା । ଅସ୍ପଷ୍ଟ ଭାବରେ ତବଲା ଓ ଢ଼ୋଲର ଶବ୍ଦ ଶୁଣି ସେ ଉଚ୍ଚକୋଟୀର ପଲ୍ଲୀନୃତ୍ୟ ଓ ଆଧୁନିକ ନୃତ୍ୟ ପରିବେଷଣ କରିପାରୁଥିଲେ । କଳକବଜା, ଗାଡ଼ିମଟରର ମରାମତି କରିବାରେ ଦକ୍ଷତା ଦେଖାଇ ପାରୁଥିଲେ, ଚିତ୍ର ମଧ୍ୟ ଆଙ୍କୁଥିଲେ । କିନ୍ତୁ କୌଣସିଥିରେ ସେ ସନ୍ତୁଷ୍ଟ ହୋଇପାରୁ ନଥିଲେ । ପିତା ଓ ପରିବାରର ବାସ୍ତବତାକୁ ହୃଦୟଙ୍ଗମ କରିବାର କ୍ଷମତା ତାଙ୍କ ପାଖରେ ନଥିଲା । ମାନସିକ ସ୍ତରରେ ସେ ସବୁବେଳେ ନିଜକୁ ଅବହେଳିତ ଓ ଉପେକ୍ଷିତ ମନେ କରୁଥିଲେ । ବାପ ଓ ମା'ଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରୁଥିଲେ । ମିଥ୍ୟା ଓ ପ୍ରବଞ୍ଚନାର ଆଶ୍ରୟ ନେଉଥିଲେ । ସଚ୍ଚିଦାନନ୍ଦ ଏଥିପାଇଁ ଅତ୍ୟନ୍ତ ବ୍ୟଥିତ ହେଉଥିଲେ । ତାଙ୍କର ବ୍ୟଥା, ଦୁଃଖ, କ୍ରୋଧ ପ୍ରକାଶ କେବଳ ମୁଁ ଓ ମୋ ନାନୀ ସତ୍ୟବତୀ ସବୁଦେଖି ହୃଦୟଙ୍ଗମ କରିପାରୁଥିଲୁ । ଆମର ସେ ଶିଶୁବୟସ, ଆମକୁ ମୂକ ଦର୍ଶକ କରି ରଖୁଥିଲା ।

୧୯୪୨ ମସିହା ପର୍ଯ୍ୟନ୍ତ ମୁଁ ଓ ନାନୀ ବଡ଼ଭାଇ ସୁରେଶଚ଼ନ୍ଦ୍ରଙ୍କୁ ଠାରରେ ଅନେକ କଥା ବୁଝେଇବାକୁ ଚେଷ୍ଟା କରୁଥିଲୁ। ତାହା ପରେ ମୋତେ ଜଣେ ଅଭିନେତା ହେବାକୁ ସାହାଯ୍ୟ କରିଛି।

୧୯୪୨ ମସିହାରେ ସଚ୍ଚିଦାନନ୍ଦ ଡେପ୍ୟୁଟି ମାଜିଷ୍ଟ୍ରେଟ ଓ ସିଭିଲ ଡିଫେନ୍ସ ଅଫିସର ପଦରେ କଟକ ବଦଳି ହେଲେ। ଅଠରବର୍ଷର ଯୁବକ ସୁରେଶଚ଼ନ୍ଦ୍ର ଆଉ ପରିବାର ସହିତ ରହିବାକୁ ଚାହିଁଲେ ନାହିଁ। ସେ ବାହାରର ବନ୍ଧୁ ମାନଙ୍କ ଦ୍ୱାରା ପରିଚାଳିତ ହେଲେ। ନିଜ ପରିବାରର ବାସ୍ତବତାକୁ ମୋ ସହିତ ଆନ୍ତରିକତା ଥିବା ସତ୍ତ୍ୱେ ଗ୍ରହଣ କଲେ ନାହିଁ।

ସମ୍ବଲପୁର ନିଜଘରେ ଏକା ରହି ସୁରେଶଚ଼ନ୍ଦ୍ର ଚିହ୍ନା ଗେରେଜ୍‌ର ମୋଟର ମେକାନିକ କାର୍ଯ୍ୟ କରିବାକୁ ଚାହିଁଲେ। ସଚ୍ଚିଦାନନ୍ଦ ଏଥିରେ ରାଜି ହୋଇ ତଳମହଲା ଭଡ଼ାଦେଇ, ଉପର ମହଲାରେ ସୁରେଶଚ଼ନ୍ଦ୍ରଙ୍କୁ ରହିବାକୁ ଅନୁମତି ଦେଲେ। କଟକରେ ୧୯୪୨ ରୁ ୧୯୪୫ ମସିହାଯାଏ ରହିବା ସମୟରେ, ମାନପୁର ଗ୍ରାମରେ ମୋର ଗୋଟିଏ ସାନଭଉଣୀ ସଞ୍ଜିବନୀ ଜନ୍ମଗ୍ରହଣ କଲା। ବାପା ସେତେବେଳେ ବୁଇକ ଗାଡ଼ି ବଦଳରେ ଗୋଟିଏ ୧୯୨୯ ମସିହାର ହୁଡ଼୍‌ଲଗା ଚ଼େଭର୍‌ଲେଟ ଗାଡ଼ି କିଣି ସାରିଥିଲେ। ଏଇ ଗାଡ଼ିରେ ସପରିବାର ସଚ୍ଚିଦାନନ୍ଦ ପୁରୀ, କଟକ, ସମ୍ବଲପୁର, ବଲାଙ୍ଗୀରର ଅନେକ ଦର୍ଶନୀୟ ସ୍ଥାନ ବୁଲିଦେଖିବାର ଅଭ୍ୟାସ ଜାରି ରଖିଥିଲେ।

(୫)

୧୯୪୫ ମସିହା। ଦ୍ୱିତୀୟ ମହାସମର ଅବସାନର ଅବ୍ୟବହିତ ପୂର୍ବରୁ ସଚ୍ଚିଦାନନ୍ଦ ଏସ୍.ଡ଼ି.ଓ. ପଦରେ କୋରାପୁଟ ବଦଳି ହେଲେ। ହୁଡ଼୍‌ଲଗା ଚ଼େଭର୍‌ଲେଟ ଗାଡ଼ିରେ ପରିବାରର ସମସ୍ତଙ୍କୁ ନେଇ ନିଜେ ଗାଡି ଚଲେଇ ସେ କୋରାପୁଟରେ ପହଞ୍ଚିଲେ। ପ୍ରାୟ ଚାରିପାଞ୍ଚ ମାସ ପରେ ଯୁଦ୍ଧ ସରିବାର ଘୋଷଣା ହେଲା। ଏଠି ପରିବେଶ ଓ ପ୍ରକୃତି ସଚ୍ଚିଦାନନ୍ଦଙ୍କୁ ଯଥେଷ୍ଟ ଉଲ୍ଲସିତ କରିଦେଇଥିଲା। ଏଠିକାର କାର୍ଯ୍ୟ ପରିଚ଼ାଳନାରେ ସଚ୍ଚିଦାନନ୍ଦ ଯଥେଷ୍ଟ କୃତିତ୍ୱ ଦେଖାଇଲେ। ଛ'ମାସ ପରେ କୋରାପୁଟର ନୂତନ ସବଡିଭିଜନ ନବରଙ୍ଗପୁର ପ୍ରତିଷ୍ଠିତ ହେଲା। ସଚ୍ଚିଦାନନ୍ଦ ନବରଙ୍ଗପୁର ଏସ୍.ଡି.ଓ. ଭାବରେ ଯୋଗଦେଲେ। ୧୯୪୭ ମସିହା ଶେଷଯାଏ ସେ ଏଠି ରହିଲେ। ଏଠି ତାଙ୍କର ଅଷ୍ଟମ ସନ୍ତାନ ଓ ଷଷ୍ଠ ପୁତ୍ର ସୁଧୀରଚନ୍ଦ୍ର ଜନ୍ମଗ୍ରହଣ କଲେ। ପ୍ରାୟ ତିନିମାସ ଯାଏ ବାଳମତୀ ଦେବୀ ଝିଅ ଓ ନାତିର ସେବା ଯତ୍ନ କରି ଫେରିବା ସମୟରେ ଗୋଟିଏ ଅନୁରୋଧ ଜୁଆଁଇଙ୍କୁ କରିଥିଲେ। ସେ ଦେଖିଲେ ସଚ୍ଚିଦାନନ୍ଦ ଯେତିକି କର୍ମଠ, ସେତିକି ଖର୍ଚ୍ଚି। ଅତିମାତ୍ରାରେ ସୌଖୀନ। ଯାହା ଦରମା ପାଆନ୍ତି ତାହା ମାସ ଶେଷବେଳକୁ

ସରିଯାଏ । ବିବାହର ସତରବର୍ଷ ପରେ ମଧ୍ୟ ସେ କିଛି ସଂଚ୍ୟ କରି ନାହାଁନ୍ତି । ପିଲାମାନଙ୍କ ଖାଇବା, ପିନ୍ଧିବା, ବୁଲିବାରେ କୌଣସି ଆକଟ ନାହିଁ । ତେଣୁ, ତାଙ୍କର ପ୍ରସ୍ତାବ ଥିଲା, "ବାପା, ତମେତ ଏତେ ରୋଜଗାର କରୁଛ । ସମସ୍ତଙ୍କୁ କେତେ କଣ ଦେଉଛ । ମତେତ ଆଜିଯାଏ ସେମିତି କିଛି ଦେଇନାହଁ । ମୋତେ ମାସକୁ ଶହେ ଟଙ୍କା କଣ ଦେଇ ପାରିବନି ।" ସଚ୍ଚିଦାନନ୍ଦ ସ୍ତମ୍ଭୀଭୂତ ହେଲେ । "ଆପଣଙ୍କ କେତେ ଦରକାର ? ଶହେ ଟଙ୍କା କଣ ହେବ ?" ମୋ' ଆଈ ଉତ୍ତର ଦେଲେ, "ଧରିନିଅ ମୁଁ ତୁମ ଝିଅ ପୁଅଙ୍କ ଭିତରୁ ଜଣେ । ତମେ ସବୁ ପିଲାଙ୍କ ପାଇଁ, ଯେମିତି ଅଲଗା ପଇସା ରଖ, ସେମିତି ଦରମା ପାଇଲେ ମୋ ପାଖକୁ ଶହେଟଙ୍କାର ମନିଅର୍ଡର ପଠେଇ ଦେବ ।" ସଚ୍ଚିଦାନନ୍ଦ ଆଉ କିଛି କହି ପାରିଲେ ନାହିଁ । କେବଳ କହିଲେ, "ମୁଁ କଥା ଦେଉଛି, ସିଧା ଅଫିସରୁ ଦରମା ପାଇବା ସଙ୍ଗେ ସଙ୍ଗେ ମୁଁ ଟଙ୍କା ପଠେଇ ଦେବି ।"

ସଚ୍ଚିଦାନନ୍ଦ ଏ ବ୍ୟବସ୍ଥା ୧୯୫୧ ମସିହା ପର୍ଯ୍ୟନ୍ତ ଜାରି ରଖିଲେ । ବାଳମତୀ ଦେବୀ ଏଭିତରେ ଜାଣିସାରିଥିଲେ ଯେ ସଚ୍ଚିଦାନନ୍ଦଙ୍କ ପୈତୃକ ସମ୍ପତ୍ତି ଏତେ କମ୍ ଯେ ସେଥିରେ ତାଙ୍କ ପିଲାମାନଙ୍କ ଭବିଷ୍ୟତ ଗଢ଼ିପାରିବେ ନାହିଁ । ସମ୍ବଲପୁରରେ ନିଜେ ତିଆରି କରିଥିବା ଘରଟି ଛଡ଼ା ପ୍ରାୟ ପାଞ୍ଚ ଏକର ଜମି ତାଙ୍କୁ ଭାଇ ଭାଗରେ ମିଳିବ । ନିଜ ଜୀବନର ଅର୍ଦ୍ଧେକ ସମୟ ନିୟତିର କ୍ରୁର ଅଟ୍ଟହାସ୍ୟ ପାଇଁ ସେ ଜର୍ଜରିତ ହୋଇଛନ୍ତି । ଦ୍ୱିତୀୟ ବିବାହ କରିବାପରେ ତାଙ୍କ ସୁଖର, ସମୃଦ୍ଧିର ଓ ଉନ୍ନତିର ଦିନ ଫେରିଆସିଛି । ତାହାକୁ ସେ ହୃଦୟଭରି ଉପଭୋଗ କରିବାକୁ ଚାହାଁନ୍ତି । ତେଣୁ ବିଗତ ଦିନର ସବୁକଥା ସେ ଭୁଲେଇ ଦେବାକୁ ଚାହାଁନ୍ତି । କିନ୍ତୁ ବର୍ତ୍ତମାନର କଳନା କରିବାରେ ସେ ବୋଧହୁଏ ସମୟ ପାଉନାହାଁନ୍ତି । ନିଜର ସନ୍ତାନସନ୍ତତି ମାନଙ୍କ ପାଇଁ ସେ କିଛି ସଂଚ୍ୟ କରିବା ଅଭ୍ୟାସ କରିପାରୁ ନାହାଁନ୍ତି । ତେଣୁ କ୍ୱାଇଁ ଦେଇଥିବା ଅର୍ଥରେ ନିଜର ଅଲିଅଳ ଝିଅ ନାଁରେ ସେ ଦଶଏକର ଜମି କିଣି ରେଜେଷ୍ଟ୍ରି କରି ସାରିଲେଣି । ସେଇ ଜମିରୁ ଭାଗଚାଷ ଦେଇ ଚାଉଳ ସେ ଝିଅ ଘରକୁ ପଠାଉଛନ୍ତି । ୧୯୫୨ ମସିହାରେ କଟକରେ କୃଷି ନିର୍ଦ୍ଦେଶକ ଭାବରେ ଯୋଗ ଦେବାପରେ ତାଙ୍କୁ ଏ ରହସ୍ୟ ବିଷୟରେ ଅବଗତ କରାଇଲେ ବାଳମତୀ । ସଚ୍ଚିଦାନନ୍ଦ ଯେତିକି ସ୍ତମ୍ଭୀଭୂତ ହେଲେ, ସେତିକି ବାଳମତୀଙ୍କ ପ୍ରତି ତାଙ୍କର ସମ୍ମାନ ବଢ଼ିଗଲା । ସେ ଖୋଲା ମନରେ ପରିବାରର ସବୁ ବିଷୟ ଓ ସମସ୍ୟା ଉପରେ ଶାଶୁଙ୍କର ମତାମତ ଲୋଡ଼ିଲେ ।

ପରିଣାମ ସ୍ୱରୂପ, ୧୯୫୨ ମସିହା ପରେ ସଚ୍ଚିଦାନନ୍ଦଙ୍କ ପରିବାରରେ ଯାହାସବୁ ନିଷ୍ପତ୍ତି ନିଆ ଯାଉଥିଲା, ତା'ର ଅନ୍ତିମ ରୂପ ବାଳମତୀଙ୍କ ବଳିଷ୍ଠ ଚିନ୍ତାରୁ ଜନ୍ମ ନେଉଥିଲା । ସଚ୍ଚିଦାନନ୍ଦଙ୍କ ପ୍ରଥମ ଚାରୋଟି ସନ୍ତାନଙ୍କ ବିବାହ ଓ ପାତ୍ରୀ ପାତ୍ର ଚୟନ ବାଳମତୀହିଁ କରିଥିଲେ । ସୁରେଶଚନ୍ଦ୍ର, ସତ୍ୟବତୀ, ଶରତଚ୍ନ୍ଦ୍ର ଓ ସୁବୋଧ ଚ୍ନ୍ଦ୍ରଙ୍କ ଶ୍ୱଶୁର ସମସ୍ତେ

ବାଳମତୀଙ୍କ ସମ୍ପର୍କୀୟ ଥିଲେ। ଏପରିକି ବିବାହଯୋଗ୍ୟା ହୋଇନଥିବା ସାନଝିଅ ସଞ୍ଜୀବନିର ବରଘର ବାଳମତୀ ଖୋଜି ରଖିଥିଲେ। ସଚ୍ଚିଦାନନ୍ଦଙ୍କର ସପ୍ତମ ଓ ଅଷ୍ଟମ ପୁତ୍ର ଯଥାକ୍ରମେ ଭବାନୀପାଟଣା ଓ କଟକରେ, ୧୯୪୮ ଓ ୧୯୫୩ ମସିହାରେ ଜନ୍ମଗ୍ରହଣ କଲେ ବାଳମତୀ ଦେବୀଙ୍କ ଉପସ୍ଥିତିରେ। ସେମାନଙ୍କର ନାମକରଣ ହେଲା ସତୀଶଚନ୍ଦ୍ର ଓ ଶିରୀଷଚନ୍ଦ୍ର। ସତ୍ୟବତୀଙ୍କ ବିବାହ ମଧ୍ୟ ୧୯୪୭ ମସିହାରେ ସମ୍ପନ୍ନ ହେଲା। ସୁଶୀଳା ଦେବୀ ରକ୍ତହୀନତା ଦୋଷରେ ଦୁର୍ବଳ ହୋଇପଡ଼ିଲେ। ଜ୍ୟେଷ୍ଠ ପୁତ୍ର ସୁରେଶଚନ୍ଦ୍ରଙ୍କ ପାଇଁ, ସଚ୍ଚିଦାନନ୍ଦ ସମ୍ବଲପୁରର କୃଷିବିଭାଗର ଯନ୍ତ୍ରପାତି ଓ୍ୱାର୍କସପରେ ମେକାନିକ ଚାକିରିଟିଏ ଯୋଗାଡ଼ କରିଦେଇଥିଲେ। ତାଙ୍କର ବୟସ ମଧ୍ୟ ତିରିଶବର୍ଷ ପାଖାପାଖି ହୋଇଥିଲା। ବାଳମତୀ ଦେବୀ ଝିଅ ପାଇଁ ଗୋଟିଏ ନୁହେଁ, ଦୁଇଟି ପୁତ୍ରବଧୂ ଆଣିବା ଚିନ୍ତାରେ ଲାଗିଲେ। ସୁରେଶଚନ୍ଦ୍ର ୨୮ ବର୍ଷ ଓ ଶରତଚନ୍ଦ୍ରଙ୍କ ୨୧ ବର୍ଷ ବୟସରେ ପ୍ରାୟ ଏକବର୍ଷ ମଧ୍ୟରେ ଶୁଭବିବାହ କରାଇଲେ। ଦୁର୍ବଳା ସୁଶୀଳାଦେବୀଙ୍କ ଗହଣରେ ଦଶଟି ପୁତ୍ରକନ୍ୟାଙ୍କ ଦାୟିତ୍ୱ ବୁଝିବା, ଗ୍ରାମୀଣ ସଂସ୍କାର ଥିବା ଦୁଇଜଣ ପାଠପଢୁଆ ଯୁବତୀଙ୍କୁ ବାଳମତୀହିଁ ଚୟନ କରି ବୋହୁକରି ଆଣିଲେ।

୧୯୫୬ ମସିହାରେ ସଚ୍ଚିଦାନନ୍ଦ ଅବସର ନେବା ଆଗରୁ, ଏସବୁ ଯୋଜନା ସଂପୂର୍ଣ୍ଣ କଲେ ବାଳମତୀ। ସଚ୍ଚିଦାନନ୍ଦ କଳ୍ପନା କରିଥିଲେ ପୈତୃକ ଗ୍ରାମରେ ଦଶଏକର ନିଜ ଭାଗର ଜମିରେ ଏକ ଆଧୁନିକ ଫାର୍ମହାଉସ କରି ଚଳିବେ। ସହରରେ ବେଶୀ ସମୟ ରହିବେ ନାହିଁ। ପେନସନ କମ୍ୟୁଟ କରି ସେ ପଇସାରେ ଓ ଝାଡ଼ୁଆପଡ଼ାର ନିଜ ଘର ବନ୍ଧାଦେଇ ଗୋଟିଏ ଫର୍ଗୁସନ ଟ୍ରାକ୍ଟର ଓ ଟ୍ରଲିଟିଏ କିଣି ନୂଆପାଲି ଗ୍ରାମରେ ଚାଷକାର୍ଯ୍ୟ ଆରମ୍ଭ କରି ଦେଇଥିଲେ ୧୯୫୫ ମସିହାରୁ। ସେତିକିବେଳେ ସେ ରାଉରକେଲା ଷ୍ଟିଲ୍‌ପ୍ଲାଣ୍ଟ୍‌ର ଡେପୁଟି ଜେନେରାଲ ମେନେଜର ଭାବରେ ଅବସ୍ଥାପିତ ଥିଲେ। ୧୯୪୮ ମସିହାରୁ ଆଠ ସିଲିଣ୍ଡର ଫୋର୍ଡ ଷ୍ଟେସନ ଓ୍ୱାଗନଟିଏ ହୁଡ଼ଲଗା ଚେଭରଲେଟ୍ ଗାଡ଼ି ବଦଳରେ ସେ କିଣି ସାରିଥିଲେ। ଏ ସମସ୍ତ ବ୍ୟବସ୍ଥା କରି ଅବସର ନେବାର ଦଶମାସ ପରେ ସମ୍ବଲପୁରର ନିଜ ବାସଭବନ "କମଳ ନିବାସ"ରେ ୧୯୫୬ ମସିହା ଡିସେମ୍ବର ଦୁଇତାରିଖ ଦିନ ଅଢେଇଟା ବେଳେ ହୃଦଘାତରେ ମୃତ୍ୟୁବରଣ କଲେ।

(୬)

୧୯୫୪ ମସିହାରୁ ୧୯୫୬ ମସିହାଯାଏ, ମୁଁ ଶରତଚନ୍ଦ୍ର ପ୍ରୟାଗ ବିଶ୍ୱବିଦ୍ୟାଳୟରେ ଜଣେ, ସୁରକ୍ଷିତ, ସଫଳ ଛାତ୍ର ଥିଲି। ଅର୍ଥନୀତିରେ ଏମ୍.ଏ. ଓ ଦୁଇବର୍ଷିଆ ଭାରତୀୟ କଳାରେ ଡିପ୍ଲୋମା କରିସାରିବା ପରେ ଆଇନ ବିଭାଗର ଶ୍ରେଣୀରେ ନାଁ ଲେଖାଇଥିଲି ସଚ୍ଚିଦାନନ୍ଦଙ୍କ ବାଧ୍ୟ ବାଧକତାରେ। ଏ ସମୟରେ ମୋର ପରିବାରର

ଘଟଣାବହୁଳ ନିଷ୍ପତ୍ତିରେ ମୋର ସ୍ଥାନ ନଥିଲା । ମୋର ପିତା ମୋତେ ସେ ବିଷୟରେ ସୂଚନା ମଧ୍ୟ ଦେଇ ନଥିଲେ । କେବଳ ନିୟମିତ ହାତଲେଖା ଚିଠିରେ କେତୋଟି ଧାଡ଼ିରେ ତାଙ୍କର ଦୃଷ୍ଟିକୋଣ, ଦର୍ଶନ ଓ ଜୀବନର ଲକ୍ଷ୍ୟ ବିଷୟରେ ମୋତେ ସ୍ମରଣ କରାଉଥିଲେ । ସେଗୁଡ଼ିକ ହେଉଛି, "Do you think, I will be always there to look after the family? You, as the educated elder brother, shall take the responsibility of your younger brothers." "Life is a series of struggles." "Take life as it comes."

ସଚ୍ଚିଦାନନ୍ଦଙ୍କ ମୃତ୍ୟୁ ସମୟରେ ତାଙ୍କର ଜ୍ୟେଷ୍ଠପୁତ୍ର, ମୋର ମୂକବଧିର ବଡ଼ଭାଇ ସୁରେଶଚନ୍ଦ୍ର ଓ ମୋର ପାଠ ଆରମ୍ଭ ନକରିଥିବା ସବାସାନଭାଇ ଶିରୀଷଚନ୍ଦ୍ରଙ୍କ ଛଡ଼ା ଆଉ କେହି ପୁରୁଷ ଲୋକ ନଥିଲେ । କେବଳ ମୋର ପଇଁଚାଳିଶ ବର୍ଷର ମା' ସୁଶୀଳା ଦେବୀ, ମୋର ଭାଉଜ ଓ ମୋର ସ୍ତ୍ରୀ ଓ ସେମାନଙ୍କର ଶିଶୁକନ୍ୟାମାନେ ଉପସ୍ଥିତ ଥିଲେ । ମୋର ସାତଟି ଭାଇଭଉଣୀ ସମସ୍ତେ କଲେଜ ଓ ସ୍କୁଲରେ ପଢ଼ିବାକୁ ଯାଇଥିଲେ । ମୁଁ ବାପାଙ୍କ ଅନୁମତି ନେଇ କଟକ ଓ ଭୁବନେଶ୍ୱରକୁ ଚାକିରୀ ଖୋଜିବାକୁ ଆସିଥିଲି । ତେଣୁ, ସବୁକିଛି ଘଟଣା ଘଟିଗଲା କେବଳ ବଡ଼ଭାଇ ସୁରେଶଚନ୍ଦ୍ରଙ୍କ ଆଖି ଆଗରେ । ମୁଁ ଘରକୁ ଫେରି ସୁରେଶଚନ୍ଦ୍ରଙ୍କୁ ଯାହା ବୁଝେଇଲେ ମଧ୍ୟ ସେ ଅବୁଝା ରହିଲେ ।

ଘରର ପ୍ରଭାବଶାଳୀ ମୁରବିଟିଏ ଅକାଳରେ ମୃତ୍ୟୁବରଣ କଲେ ପରିବାରର କି ଅବସ୍ଥା ଉପୁଜିଥାଏ ଜଣେ ଭୁକ୍ତଭୋଗୀଟିଏ କେବଳ ହୃଦୟଙ୍ଗମ କରିପାରେ । ମୃତ୍ୟୁପରେ ପରିବାରର ସଦସ୍ୟମାନଙ୍କ ସଂପର୍କ ଭିତରେ ଯେଉଁ ଅବିଶ୍ୱାସ, ତିକ୍ତତା ସନ୍ଦେହ, ଆକ୍ରୋଶ, ସ୍ୱାର୍ଥପରତା ଓ ପଳାୟନପନ୍ଥୀ ଭୁଲବୁଝାମଣା ସୃଷ୍ଟିହୁଏ ତାହାହିଁ ଘଟିଲା ମୋ' ଜୀବନରେ । ଗୋଟିଏ ଦିନ ଭିତରେ ଏ ଯେଉଁ ପରିବର୍ତ୍ତନ ଆସିଲା ତାହା ସୁନାମୀଠାରୁ ମଧ୍ୟ ଭୟଙ୍କର । ମୋର ଚବିଶ ବର୍ଷର ଜୀବନକାଳ ମଧ୍ୟରେ ଏପରି ଏକ ସମୟ ଆସିବ ତାହା ମୁଁ ସ୍ୱପ୍ନରେ ସୁଦ୍ଧା କଳନା କରିନଥିଲି । ସବୁ ଆକସ୍ମିକ । ମୋତେ ଲାଗିଲା, ମୁଁ ଯେମିତି ଗୋଟିଏ ଅଗମ୍ୟ ଜଙ୍ଗଲଭରା ପାହାଡ଼ ଚଢ଼ି ଶିଖରରେ ପହଞ୍ଚି ଦୂରଦିଗବଳୟ ଦେଖିବାକୁ ପ୍ରୟାସୀ ହେଉଥିବା ବେଳେ, ଗୋଟିଏ ମହାବାତ୍ୟାରେ ପଡିଯାଇ ଏକମାତ୍ର ଗଛତଳେ ଆଶ୍ରୟ ନେଇଛି । ମୋର ଚାରିପାଖରେ ଝଡ଼ ଓ ବାତ୍ୟାର ପ୍ରକୋପ ମୋତେ ଅସ୍ଥିର କରି ପକାଉଛି । ମାଟି ଅତଡ଼ା ଖସୁଛି । ପାଦ ତଳର ମାଟି ସହିତ ଆଶ୍ରିତ ଗଛ ମଧ୍ୟ ସମୂଳେ ଉପୁଡ଼ିଯାଇ ରସାତଳକୁ ଚାଲିଯିବ । ଆଉ କୌଣସି ଆଶ୍ରା ନାହିଁ । ସାହାରା ନାହିଁ । ମୃତ୍ୟୁହିଁ ସୁନିଶ୍ଚିତ । ପ୍ରାୟ ଚାରିପାଞ୍ଚ ମାସ ମଧ୍ୟରେ ବହୁବାର ଆତ୍ମହତ୍ୟା କରିବାର ଚିନ୍ତା ମୋ ମନକୁ ଆସିଛି ।

ସେପଟେ ସୁରେଶଚନ୍ଦ୍ରଙ୍କ ହିତାକାଙ୍‌କ୍ଷୀମାନେ, ଓକିଲ ଜରିଆରେ ଜିଲ୍ଲା କଲେକ୍ଟର, ତହସିଲଦାର, ଆର.ଟି.ଓ., କୃଷି ନିର୍ଦ୍ଦେଶକ, ମ୍ୟୁନିସିପାଲଟି ଚେୟାରମେନ୍‌ଙ୍କ ପାଖରେ

ଅକ୍ଷମ ସୁରେଶଚନ୍ଦ୍ରଙ୍କ ପ୍ରତି ତାଙ୍କ ସାବତ ମା' ଯେପରି ଅନ୍ୟାୟ କରିପାରିବେ ନାହିଁ, ତାହାର ଦୃଢ଼ ପଦକ୍ଷେପ ନେବାପାଇଁ ଦରଖାସ୍ତ କଲେ। ସଚ୍ଚିଦାନନ୍ଦଙ୍କ ଜ୍ୟେଷ୍ଠପୁତ୍ର ଭାବରେ ନୂଆପାଲି ପୈତୃକ ଗ୍ରାମର ଦଶଏକରର ଘରକମି, ଫୋର୍ଡ ଷ୍ଟେସନ ଓ୍ୱାଗନର ମାଲିକାନା ଓ ସଦ୍ୟ କୃଷିଋଣରେ ଘରବନ୍ଧା ପକାଇ ଆଣିଥିବା ଫର୍ଗୁସନ୍ ଟ୍ରାକ୍ଟରମାଲିକାନା ସଚ୍ଚିଦାନନ୍ଦଙ୍କ ପାଖରୁ ସୁରେଶଚନ୍ଦ୍ରଙ୍କ ନାମରେ ହସ୍ତାନ୍ତର କରାଇଲେ। ସୁଶୀଳା ଦେବୀଙ୍କ ବିନା ପରାମର୍ଶ ଓ ଅନୁମତିରେ ଏ କାର୍ଯ୍ୟ କରିବାରେ ମୋ' ପରିବାରର ବନ୍ଧୁବାନ୍ଧବହିଁ ସଂପୂର୍ଣ୍ଣ ସହଯୋଗ କରିଥିଲେ। ଏପରିକି ପାରିବାରିକ ପେନ୍‌ସନ୍‌ର ଅର୍ଦ୍ଧେକ ସୁରେଶଚନ୍ଦ୍ରଙ୍କୁ ମିଳିବାପାଇଁ ଦାବୀ କରାଗଲା। ଆଶ୍ଚର୍ଯ୍ୟର କଥା ସେତେବେଳେ ଆଇ.ଏ.ଏସ୍. ପେନ୍‌ସନ୍‌ଧାରୀଙ୍କ ପାଇଁ ପାରିବାରିକ ପେନ୍‌ସନ୍ ମଞ୍ଜୁରୀ ଭାରତ ସରକାର କରିନଥିଲେ। ଏ ପେନ୍‌ସନ୍ ପାଇବା ପାଇଁ ସୁଶୀଳା ଦେବୀଙ୍କୁ ଆହୁରି ତିରିଶବର୍ଷଯାଏ ଅଭାବ ଓ ଦୁଃଶ୍ଚିନ୍ତାରେ ବଞ୍ଚି ରହିବାକୁ ପଡ଼ିଥିଲା। ଏପରି ଏକ ପରିସ୍ଥିତିରେ, ପରିବାରର ସମସ୍ତେ ଏକମାତ୍ର ବିଶ୍ୱବିଦ୍ୟାଳୟ ସ୍ନାତୋକତ୍ତର ଉପାଧିଧାରୀ ଜ୍ୟେଷ୍ଠ ପୁତ୍ର ଶରତ୍‌ଚନ୍ଦ୍ରଙ୍କ ଉପରେ ସମସ୍ତ ଦାୟିତ୍ୱ ଅର୍ପଣ କଲେ। ଯାହାକିଛି ପରିବାରର ସମସ୍ୟା ଓ ତା'ର ସମାଧାନ ତତ୍‌କ୍ଷଣାତ୍ ଯେପରି କରାଯିବ ସେ ଦାୟିତ୍ୱ କେବଳ ଶରତଚନ୍ଦ୍ରଙ୍କର। ଅଜ୍ଞାନ, ଅସହାୟ, କପର୍ଦ୍ଦକଶୂନ୍ୟ ଜ୍ୟେଷ୍ଠ ପୁତ୍ର ଉପରେ, ସୁଶୀଳା ଦେବୀ ମଧ୍ୟ ଏପରି ଆକ୍ଷେପ ଆଣିଲେ। ଏପଟେ ଅସହାୟ ବିଧବା ମା', ସେପଟେ ମୂକବଧିର ବୟସ୍କ ଭାଇ।

ସମସ୍ତେ ମୋତେ ଅକର୍ମା, ଅପଦାର୍ଥ, ସ୍ୱାର୍ଥପର ଦୃଷ୍ଟିରେ ଦେଖିବାରେ ଲାଗିଲେ। ମୋ ଚାରିପାଖରେ ମୋ ଦୁଃଖ, ମୋର ହତାଶାବୋଧର ଆକଳନ କେହି କରିପାରିଲେ ନାହିଁ। ଏ ସମୟରେ କେବଳ ଦୁଇଜଣ ବିଶ୍ୱାସର ପାତ୍ର ଥିଲେ। ଜଣେ ମହାନଦୀ ସେପାରିର ବ୍ରହ୍ମପୁରା ଗ୍ରାମର ମୋର ଶ୍ୱଶୁର ଶ୍ରୀ ରାଜେନ୍ଦ୍ର ପଣ୍ଡା ଓ ମାନପୁର ଗ୍ରାମର ମୋର ଆଇ ଶ୍ରୀମତୀ ବାଳମତୀ ଦେବୀ। କିନ୍ତୁ ଏମାନଙ୍କର ସମ୍ବଲପୁର ସହରରେ କିଛି ପ୍ରତିପତ୍ତି ନଥିଲା। ସମ୍ବଲପୁରର ଘର ଓ ପରିବେଶ ମୋ' ପାଇଁ ଅଣନିଃଶ୍ୱାସୀ ଲାଗିଲା। ବାହାରେ ମୋର ଦୁଇତିନିଜଣ ପିଲାଦିନର ପଢ଼ାସାଥୀଙ୍କ ପାଖରେ ମୁଁ ଟିକିଏ ଶାନ୍ତିରେ ନିଃଶ୍ୱାସ ମାରି ପାରୁଥିଲି।

ସଚ୍ଚିଦାନନ୍ଦ ପେନସନ୍ ପାଉଥିବା ଅର୍ଥରେ ପିଲାମାନଙ୍କର ମାସିକିଆ ଖର୍ଚ୍ଚ ଓ ପାଠପଢ଼ା ଚାଲୁଥିଲା। ଏହା ହଠାତ୍ ବନ୍ଦ ହେବା ଯୋଗୁ ମୋର ତଳଭାଇ 'ସୁବୋଧଚନ୍ଦ୍ର' ଷ୍ଟେଟ୍ ବ୍ୟାଙ୍କରେ ଅସ୍ଥାୟୀ ଚାକିରୀ କଲେ। ତା' ତଳଭାଇ ସୁନୀଲଚନ୍ଦ୍ର ଆଇ.ଏସ୍.ସି. ପାଠଛାଡ଼ି ଲଇଡ଼ା ସ୍କୁଲରେ ଶିକ୍ଷକତା କଲେ ଘରଖର୍ଚ୍ଚ ଚଳେଇବା ପାଇଁ। ମୋର ଏକମାତ୍ର ମାମୁଁ ପ୍ରସନ୍ନ କୁମାର ପାଣିଗ୍ରାହୀ ସମ୍ବଲପୁର ଘରେ ଆସି ସପରିବାର ରହି ମୋ'

ଭାଇଭଉଣୀଙ୍କୁ ପାଠପଢ଼ାରେ ସାହାଯ୍ୟ କଲେ ବାଳମତୀ ଦେବୀଙ୍କ ନିର୍ଦ୍ଦେଶରେ । ଏମାନେ କେହି ଡିଗ୍ରୀଧାରୀ ନଥିଲେ । ମାମୁଁ ମଧ୍ୟ ଜଣେ ଶିକ୍ଷକ ଥିଲେ । ଆମ ସମସ୍ତଙ୍କ ଲକ୍ଷ୍ୟ ଥିଲା ପାରିବାରିକ ଘରେ ରହି, ମାନପୁର ଗ୍ରାମରୁ ଆସୁଥିବା ମୁଠେ ଚାଉଳରେ ପରିବାରକୁ ବଞ୍ଚାଇ ରଖିବା । ସମ୍ବଲପୁର ସହରରେ ରହି ମୁଁ କୌଣସି ଆୟ କିମ୍ବା ଚାକିରୀର ସମ୍ଭାବନା ଦେଖି ପାରିଲିନାହିଁ, ତେଣୁ ଚାରିମାସ ପରେ ମୁଁ ସ୍ତ୍ରୀ ଓ ମୋ' ସନ୍ତାନକୁ ଛାଡ଼ି ଗୃହତ୍ୟାଗୀ ହେଲି, କଟକରେ ବଡ଼ଭଉଣୀ ସତ୍ୟବତୀ ଦେବୀଙ୍କ ଘରେ ରହି ନିଜର ଆତ୍ମପ୍ରତ୍ୟୟକୁ ଫେରାଇ ଆଣିବା ପାଇଁ । ମୋର ମାନସିକ ସନ୍ତୁଳନ ପାଇଁ ଦରକାର ଥିଲା ନିଜସ୍ୱ ମାସିକ ଆୟ, ନିଜସ୍ୱ ପରିଚୟ । ବଂଶ ପରିଚୟ ବାହାରେ ଏକ ସ୍ୱାଭିମାନ । ଏକ ସ୍ୱାତନ୍ତ୍ର୍ୟ ! ଅର୍ଥ ପାଇଁ ନୁହେଁ, ଏକ ଆଦର୍ଶ ପାଇଁ ସଂଘର୍ଷ ।

(୭)

କଟକରେ ଆସି ତଗରପଢ଼ାରେ ମୋର ନାନୀ ଓ ଭିଣୋଇଙ୍କ ଭଡା ଘରେ ରହିଲି । ମୋର ଉଦ୍ଦେଶ୍ୟଥିଲା ଏକ ସ୍ଥାୟୀ ଚାକିରୀ ଓ ମାସିକ ଆୟ । ପଶ୍ଚିମାଞ୍ଚଳର ଲୋକ ଭାବରେ ତାହା ମୋ' ପାଇଁ ସହଜଲଭ୍ୟ ହୋଇନଥିଲା । ତେଣୁ ସାମୟିକ କାର୍ଯ୍ୟପାଇଁ ମୁଁ ମୋର ଚିତ୍ରାଙ୍କନର ସାହାଯ୍ୟ ନେଲି । ଖବରକାଗଜ ପ୍ରେସ୍‌ର ବ୍ଲକ୍ ଡିଜାଇନର ଓ କମିସନ୍ ଏଜେଣ୍ଟର କାର୍ଯ୍ୟ କରିବା ଭିତରେ ମୋର କଲେଜ ଜୀବନର ଅଭିନୟ ମୋତେ ସୁଯୋଗ ଦେଇଥିଲା ୧୯୫୮-୫୯ ମସିହାର ମହାଲକ୍ଷ୍ମୀ ପୂଜାରେ ଜଗନ୍ନାଥଙ୍କ ଚରିତ୍ରରେ ଅଭିନୟ । ମୋର ପ୍ରଥମ ଚଳଚ୍ଚିତ୍ର ଅଭିନୟରୁ ମୁଁ ଜାଣିସାରିଥିଲି ଏହା ମୋତେ ନିଧାର୍ଯ୍ୟ ଭାବରେ ମାସିକ ଟ.୫୦୦/-ଙ୍କାରୁ ଅଧିକ ଆୟ ଦେବ ନାହିଁ ।

ତେଣୁ ସ୍ଥାୟୀ ଚାକିରୀ ସନ୍ଧାନରେ ଦରଖାସ୍ତ ପଠାଉଥିଲି ବହୁ ସଂସ୍ଥା ଓ ବ୍ୟକ୍ତିଙ୍କ ପାଖକୁ । ଏ ମଧ୍ୟରେ କଟକର ଓଡିଶା ସେକ୍ରେଟେରୀଏଟ୍‌ରେ ସାମୟିକ ଭାବରେ ଗୋଟିଏ କିରାଣୀ ଚାକିରୀ ମଧ୍ୟ କରିଥିଲି ତିନି ଚାରିମାସ । ସେତେବେଳେ ମୋର କ୍ଷମତା ନଥିଲା ବହୁଲୋକଙ୍କ ପାଖକୁ ଯାଇ ଚାକିରୀଟିଏ ପାଇଁ ଅନୁରୋଧ କରିବା ପାଇଁ । ମୋର ଚଳଚ୍ଚିତ୍ରରେ ଅଭିନୟହିଁ ଶେଷରେ ସୁଯୋଗଦେଲା ବରଗଡ଼ କଲେଜର ଅର୍ଥନୀତିର ଅଧ୍ୟାପକ ଚାକିରୀ ପାଇବା ପାଇଁ । ମୋର ମାସିକ ଆୟରୁ କେତେ ଜଣ ଭାଇ ଓ ଭଉଣୀଙ୍କୁ ପାଠ ପଢ଼ାଇବାପାଇଁ ସାହାଯ୍ୟ କରିପାରିଲି । ଏହା ମୋତେ ଯଥେଷ୍ଟ ଆତ୍ମବିଶ୍ୱାସ ଦେଇଥିଲା । ପାଞ୍ଚବର୍ଷପରେ ଏହା ପ୍ରହେଳିକାରେ ପରିଣତ ହେଲା । ପୁନର୍ବାର ମୋର ଚଳଚ୍ଚିତ୍ରର ପରିଚୟ ମୋତେ ସାହାଯ୍ୟ କଲା ନରଣଗଡ଼ (ଖୋର୍ଦ୍ଧା) ପାଖର ଢ଼ଳେଇ କାରଖାନାର ୱାର୍କ୍ସ ମେନେଜର ପଦବୀ ପାଇବା ପାଇଁ । ପାଞ୍ଚମାସ ପରେ ଏକ ସଂଗରେ ଚାରିଟି ଓଡ଼ିଆ ଚଳଚ୍ଚିତ୍ରରେ ଅଭିନୟ କରିବାର ଆହ୍ୱାନ ପାଇଁ ମୁଁ କଟକରେ ଆସି ଧୀର

ବିଶ୍ୱାଳଙ୍କ ଘର ପାଖରେ ଗୋଟିଏ ଭଡ଼ାଘରେ ରହିଲି । ଏହିଠାରେ ଥିବା ସମୟରେ ମୁଁ ଅଧିକାଂଶ ସମୟରେ କଲିକତା ଓ ବିଭିନ୍ନ ଗାଁ ଗହଳିରେ ସୁଟିଂ ପାଇଁ ବ୍ୟସ୍ତ ରହୁଥିଲି । ମାଟିର ମଣିଷ ଓ ଅରୁନ୍ଧତୀ ଚଳଚ୍ଚିତ୍ରର ସୁଟିଂ ଏହିଘରେ ଥିବାବେଳେ ହୋଇଥିଲା । ଏହି ସମୟରେ ଏକ ଦାରୁଣ ଦୁଃସମ୍ବାଦ ପାଇଲି । ମୋ ମା' ସୁଶୀଳା ଦେବୀଙ୍କର ଏକମାତ୍ର ମାର୍ଗଦର୍ଶିକା, ସାହସଦାତ୍ରୀ ମା' ବାଳମତୀ ଦେବୀ କର୍କଟ ରୋଗରେ ପୀଡ଼ିତା ଅଛନ୍ତି । ଡାକ୍ତର ପରାମର୍ଶରେ କଟକ ବଡ଼ ଡାକ୍ତରଖାନାରେ ଚିକିତ୍ସିତା ହେବାପାଇଁ ସେ ମୋ' ଭଡ଼ାଘରେ ଆସି ପହଞ୍ଚିଲେ । ସେତେବେଳେ ମୋ' ଡାକ୍ତରୀ ପାଠ ପଢୁଥିବା ସାନଭାଇ ଶିଶିରଚନ୍ଦ୍ର ମଧ୍ୟ ମୋ ଘରେ ଉପସ୍ଥିତ ଥିଲେ । ପ୍ରାଥମିକ ପରୀକ୍ଷା ପରେ ଜଣାଗଲା ବିଳମ୍ବ ହୋଇଯାଇଛି । ଔଷଧ ଖାଇବା ସହିତ କେତୋଟି ରଶ୍ମି ସଂଚାରଣ ଦରକାର ପଡୁଛି । ବାଳମତୀ କାହାକୁ ଖର୍ଚ୍ଚାନ୍ତ କରିବାକୁ ଚାହିଁଲେ ନାହିଁ । ନିଜ ପରିବାର ଓ ଝିଅର ପରିବାର ଉପରେ ବୋଝ ହେବାକୁ ଚାହିଁଲେ ନାହିଁ । ସେ କେମୋଥେରାପି ଗ୍ରହଣ କରିବେ ନାହିଁ । କେବଳ ଔଷଧ ଖାଇବେ । ମୋ ନିଜର ଦାରିଦ୍ର୍ୟ ଯୋଗୁଁ, ମୁଁ ଆଈଙ୍କୁ ଭଲ ଚିକିତ୍ସା କରାଇ ପାରିଲି ନାହିଁ । ଔଷଧ ଖାଇ ଯେତେବେଳେ ସୁସ୍ଥ ଲାଗୁଥିଲା, ସେ ମୋ' ଘରେ ନାତିବୋହୂଟିର ଘରକରଣାରେ ସାହାଯ୍ୟ କରୁଥିଲେ । ମୋର ଚାରିଟି ଝିଅପୁଅଙ୍କର ଯତ୍ନ ନେଉଥିଲେ । କିନ୍ତୁ ରାତ୍ରିର ଅନ୍ଧାରରେ ସେ ଯେତେବେଳେ ତୀବ୍ର ଯନ୍ତ୍ରଣା ଜର୍ଜରିତ ହେଉଥିଲେ, ସେତେବେଳେ ଚଟାଣରେ ସପଟିଏ ପାରି ଏପଟସେପଟ ଗଡୁଥିଲେ । ତାଙ୍କର କ୍ଷିପ୍ରନିଃଶ୍ୱାସ ଦେଇ ଯେଉଁ ସ୍ୱଗତୋକ୍ତି କରୁଥିଲେ ତାହା ଏପରି ଥିଲା;- "ହେ ଭଗବାନ, ଜୀବନରେ ମୋତେ ସବୁ ଦେଲୁ । ଏତେ ଲୋକଙ୍କର ରୋଗ, ଦୁଃଖ, କଷ୍ଟବେଳେ ସେବା କରିବାକୁ ସୁଯୋଗ ଦେଲୁ । କେତେ ଲୋକଙ୍କ ଉପକାର ହେଲା, ତଥାପି ମୁଁ ନିଜ ଦେହ ଭିତରର ଏ ରୋଗଟାକୁ ଆଗରୁ ଚିହ୍ନିପାରିଲି ନାହିଁ । ପାଠ ଦି' ଅକ୍ଷର ପଢ଼ିନଥିଲି ବୋଲି ସିନା ଏତେ ସରି ହେଲି । ଆଉ ଗୋଟିଏ ଜନ୍ମ ପାଇଲେ ମୋତେ ପାଠ ପଢ଼େଇବୁ ଠାକୁର । ଅନେକ ପାଠ । ଯେମିତି ମୁଁ ନିଜକୁ ଭଲଭାବରେ ଚିହ୍ନିପାରିବି, ମହାପ୍ରଭୁ !" ଏ କଥାଗୁଡ଼ିକ ମୋର ଚିରସ୍ମରଣୀୟ ହୋଇ ରହିଛି ।

କଟକରେ ମୋ' ଭଡ଼ାଘରେ ତିନିମାସ ରହିବାପରେ, କାର୍ତ୍ତିକ ମାସରେ ସେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ନାଗାର୍ଜୁନ ବେଶ ମୋ' ପରିବାର ଗହଣରେ ପୁରୀ ଯାଇ ଦର୍ଶନ କଲେ ଓ ମାନପୁର ଗ୍ରାମକୁ ଫେରିଗଲେ । ପ୍ରାୟ ପାଞ୍ଚ ମାସଯାଏ ସେଠାରେ ରୋଗର ଯନ୍ତ୍ରଣାରେ ପଡିରହି ବୈଶାଖ ମାସର ଗୋଟିଏ ଭଲ ତିଥିରେ ନିଜସ୍ୱାମୀ, ପୁତ୍ର ଓ ମୋ ମା'ଙ୍କୁ ଅନୁରୋଧ କଲେ କେହି ଘରଛାଡ଼ି ନଯିବାକୁ । ଗାଧୁଆପାଧୁଆ ସାରି ମୋ ମା'ଙ୍କୁ ଭାଗବତ ପଢ଼ିବାକୁ କହିଲେ । ମଧ୍ୟାହ୍ନର କିଛି ସମୟ ଅତିକ୍ରାନ୍ତ ହେବାପରେ ସଧବା ହୋଇ

ଇଚ୍ଛାମୃତ୍ୟୁ ବରଣ କଲେ। ତାଙ୍କ ବୟସ ସେତେବେଳେ ଏକସ୍ତରୀ ବର୍ଷ ହୋଇଥିଲା। ସେହି ଦିନଠାରୁ ମୋ ମା' ସୁଶୀଳାଦେବୀ ଏ ସଂସାରରେ ସଂପୂର୍ଣ୍ଣ ଅସହାୟ ହୋଇଗଲେ। ସ୍ମୃତିଶକ୍ତି ତାଙ୍କର କମିବାରେ ଲାଗିଲା। ୧୯୬୭ ମସିହାର ଏ ଘଟଣା ପରେ ୧୯୬୮ ମସିହାରେ ଆକସ୍ମିକ ଭାବରେ ଲରମ୍ବା କଲେଜର ଅଧ୍ୟକ୍ଷ ଭାବରେ ଯୋଗ ଦେଲି ବର୍ଷକପରେ। ୧୯୯୨ ମସିହା ଯାଏ ପରିଚାଳନା ସମିତିର ସଂପାଦକ ପଦ ମଧ୍ୟ ମୋତେ ମିଳିଲା। ସେତେବେଳେ ଗ୍ରାମାଞ୍ଚଳ ଝିଅମାନେ ଉଚ୍ଚଶିକ୍ଷାର ସୁଯୋଗ ପାଉନଥିଲେ। ବାପ ମା' ମାନେ ଝିଅମାନଙ୍କୁ ସହରରେ କଲେଜପାଠ ପଢ଼ାଇବାକୁ ମନକରୁନଥିଲେ। ଲରମ୍ବା କଲେଜ ଗ୍ରାମୀଣ କଲେଜ ହେବା ସତ୍ତ୍ୱେ ଗୋଟିଏ ଦୁଇଟି ଝିଅ କଲେଜକୁ ପ୍ରତିବର୍ଷ ପଢ଼ିବାକୁ ଆସୁଥିଲେ।

ପ୍ରଥମରୁ ମୁଁ ମୋର ପରିବାରର ସମସ୍ତ ଝିଅଙ୍କୁ ଉଚ୍ଚଶିକ୍ଷା ଦେବାପାଇଁ ଜୋର ଦେଉଥିଲି। ମୁଁ ନିଜ ଚେଷ୍ଟାରେ ଲରମ୍ବା କଲେଜ ଚାରିପାଖର ଝିଅମାନଙ୍କୁ ପଢ଼ାଇବାର ସୁଯୋଗ ଖୋଜିଲି। ପ୍ରଥମ ଗ୍ରାମୀଣ କଲେଜରେ ଛାତ୍ରୀନିବାସଟିଏ ଗଢ଼ିବାର ପ୍ରଚେଷ୍ଟା କଲି ମୋ' ଆଇଙ୍କ ଶେଷ ଇଚ୍ଛା ସ୍ମରଣ କରି। ତାହା ପ୍ରାୟ ପଚିଶବର୍ଷ ତଳର କଥା। ଆଜି ସେ କଲେଜର ହଜାରେ ପିଲାଙ୍କ ଭିତରେ ପ୍ରାୟ ଛ'ଶହ ଝିଅ ପାଠ ପଢ଼ନ୍ତି। କଲେଜ ପରିସର ଭିତରେ ଅବସ୍ଥିତ ଛାତ୍ରୀନିବାସରେ ପ୍ରାୟ ଦୁଇଶହ ଝିଅ ରହିବାର ବନ୍ଦୋବସ୍ତ ହୋଇଛି। ଆଗକୁ ଆହୁରି ବଢ଼ିବାର ସମ୍ଭାବନା ଅଛି। କିଏ ଜାଣେ, ସେ ଝିଅଙ୍କ ଭିତରେ ମୋ ଆଇ ଆଉଥରେ ଜନ୍ମ ନେଇ କଲେଜରେ ପାଠ ପଢୁନଥିବେ ! ଏତିକିମାତ୍ର ମୋ' ଆଇଙ୍କ ସ୍ମୃତିରେ କରି ପାରିଥିବାରୁ ମୋର ଯଥେଷ୍ଟ ଆତ୍ମସନ୍ତୋଷ ଆସେ। ଏବେ ଆମେ ଦଶଟି ନାତିନାତୁଣୀ ଧାଇ ମା'- ହାତର ସ୍ପର୍ଶ ନେଇ ଜନ୍ମ ନେଇ ଉଚ୍ଚଶିକ୍ଷିତ ଓ ପ୍ରତିଷ୍ଠିତ ହୋଇଛୁ ତାଙ୍କରି ଆଶିଷରେ।

୧୯୯୪ ମସିହାରେ ମୁଁ ଅବସର ନେବାପରେ, ଯେ କୌଣସି ଆଧୁନିକା କାର୍ଯ୍ୟତତ୍ପର, ଚତୁରୀ, ପ୍ରତ୍ୟୁତ୍ପନ୍ନମତି, ସମାଜସେବୀ ଝିଅଟିଏ ଦେଖିଲେ ବା ମୋ ସହିତ ପରିଚିତ ହେଲେ ମୋ ଅଜାଣତରେ ମୋ ମୁହଁରୁ ବାହାରିପଡ଼େ, "ତୁମକୁ ଦେଖିଲେ, ମୋ ଆଇଙ୍କ କଥା ମନେ ପଡ଼ିଯାଉଛି !" ଆଜିଯାଏ କୌଣସି ଅପରୂପା ସୁନ୍ଦରୀ ନାରୀ ମୋର ଏ ଟିପ୍ପଣୀରେ କ୍ଷୁବ୍ଧ ହୋଇ ନାହାଁନ୍ତି।



# ବାପାଙ୍କ ବେଳର କୋରାପୁଟ

## ମୋ ସ୍ୱପ୍ନବାସ୍ତବର କୋରାପୁଟ

ଆଜିକୁ ଶହେବର୍ଷ ତଳେ ଓଡ଼ିଶାକୁ ଗୋଟିଏ ଭାଷାଭିତ୍ତିକ ସ୍ୱତନ୍ତ୍ର ପ୍ରଦେଶ ଭାବରେ ଗଢ଼ିତୋଳିବାକୁ ଆମର ନେତାମାନେ ଯେତେବେଳେ ଚିନ୍ତାକଲେ, ସେତେବେଳେ କୋରାପୁଟ ମାଦ୍ରାଜ ପ୍ରେସିଡ଼େନ୍‌ସିରେ ମିଶିଥିଲା । ମାଦ୍ରାଜ ପ୍ରେସିଡେନ୍‌ସି ସେତେବେଳେ କେରଳ, ତାମିଲନାଡୁ, ଆନ୍ଧ୍ରପ୍ରଦେଶ ଓ କର୍ଣ୍ଣାଟକକୁ ମିଶାଇ ଗୋଟିଏ ବିରାଟବଡ଼ ପ୍ରଦେଶ ଭାବରେ ଇଂରେଜମାନଙ୍କ ଦ୍ୱାରା ଶାସିତ ହେଉଥିଲା । ୧୯୦୫ ମସିହାରେ ଯଦିଓ ସମ୍ବଲପୁର ଅଞ୍ଚଳରେ ଓଡ଼ିଆ ଭାଷାପ୍ରଚଳନକୁ ଗୋଟିଏ ମାନ୍ୟତା ମିଳିଥିଲା, କୋରାପୁଟ ଓ ଗଞ୍ଜାମ ଅଞ୍ଚଳକୁ ଏ ମାନ୍ୟତା ମିଳିନଥିଲା ।

୧୯୩୬ ମସିହାରେ ଉତ୍କଳ ସମ୍ମିଳନୀର ପ୍ରଚେଷ୍ଟାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ପାଇଲା । କୋରାପୁଟ ସବୁଠାରୁ ବଡ଼ ଜିଲ୍ଲାଭାବରେ ଓଡ଼ିଶାରେ ମିଶିଲା । ହେଲେ ଏଠିକାର ପ୍ରକୃତି, ମଣିଷ ଓ ବଣଜଙ୍ଗଲ ଅଧିକାଂଶ ଓଡ଼ିଆ ଲୋକଙ୍କ ପାଇଁ ଅବୁଝା, ଅଗମ୍ୟ ଓ ବିପଦଶଙ୍କୁଳ ମନେ ହେଉଥିଲା । ଉପକୂଳ ଓଡ଼ିଶାର ଲୋକେ ଏ ଅଞ୍ଚଳର ଝରଣା ପାଣିରେ ମଶାଙ୍କ ଉପଦ୍ରବ ଯୋଗୁ ମେଲେରିଆ ରୋଗ ହେଉଥିବା ଭୟରେ ଏ ଅଞ୍ଚଳକୁ ମାଳଅଞ୍ଚଳ ଓ ପାଳିଜ୍ୱରର ଅନ୍ଧାରୀମୂଳକ ଭାବରେ ବିଚାର କରୁଥିଲେ ।

ମୋର ଜନ୍ମରୁ ନଅବର୍ଷଯାଏ ମୁଁ ପୁରୀ ଜିଲ୍ଲାର ପୁରୀ ଓ ଖୋର୍ଦ୍ଧାରେ ରହିଥିଲି । ନିଜଘର ସମ୍ବଲପୁର ସହରରେ ଥିବାରୁ ପ୍ରତିବର୍ଷ ଅନ୍ତତଃ ପକ୍ଷେ ଥରେ କଟକ, ଢେଙ୍କାନାଳ, ଅନୁଗୋଳ, ରେଢ଼ାଖୋଲ ଦେଇ ଯିବାଆସିବା କରିବାର ସୌଭାଗ୍ୟ ମୋତେ ମିଳୁଥିଲା । ୧୯୩୯ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଲାଗିଗଲା । ମୋ' ବାପା, ଇଂରେଜ ସରକାରଙ୍କର ସବ୍ ଡେପୁଟି ଅଫିସର ଭାବରେ ଲାହୋର ଯାଇ ସିଭିଲ ଡିଫେନ୍‌ସ ଅଫିସରର ଟ୍ରେନିଂ ନେଇ ଫେରିଲେ । ସାଧାରଣ ଜନତାର ସୁରକ୍ଷାପାଇଁ ଯୁଦ୍ଧର ଭୟାବହତା ଭିତରେ କିପରି ପଦକ୍ଷେପ ନିଆଯାଇପାରିବ ତାହାର ଟ୍ରେନିଂ ନେବାକୁ ବାପା ଲାହୋର ଗଲେ । ପୁରୀ ଓ କଟକରେ ଅବସ୍ଥାପିତ ହୋଇଥିଲେ । ପୁରୀ ବାଲିସାହି ଏମ୍.ଇ. ସ୍କୁଲର ଦ୍ୱିତୀୟ ଓ ତୃତୀୟ ଶ୍ରେଣୀ ଓ କଟକର ପ୍ୟାରୀମୋହନ ଏକାଡ଼େମୀରୁ ଚତୁର୍ଥ, ପଞ୍ଚମ ଓ ଷଷ୍ଠ ଶ୍ରେଣୀ ପାସ୍ କରିବା ପରେ, ମୋର ସପ୍ତମ ଶ୍ରେଣୀବେଳକୁ ବାପାଙ୍କ ବଦଳିଯୋଗୁ ମୁଁ କୋରାପୁଟରେ ପହଞ୍ଚିଥିଲି । କୋରାପୁଟରେ ମୋ' ବାପା ଏସ୍.ଏ. ଏଜେଣ୍ଟ (ଏସ୍.ଡ଼ି.ଓ) ଥିବା ସମୟରେ ଦ୍ୱିତୀୟ ମହାସମର ଶେଷହେଲା ।

ସେତେବେଳେ ଆଜିକାଲି ପରି ସବୁଆଡ଼େ ପିଚୁରାସ୍ତା, ରେଳରାସ୍ତା, ପୋଲ ଘାଟ, ଡାକତର ସେବା, ସମସ୍ତଙ୍କର ବିଜୁଳୀ ଓ ପାଣିର ବ୍ୟବସ୍ଥା ଓଡ଼ିଶାର ମୁଖ୍ୟ ସହର ମାନଙ୍କରେ ମଧ୍ୟ ନଥିଲା । ସେମିତି ସ୍କୁଲ, କଲେଜ ଓ ଡାକ୍ତରଖାନାର ବ୍ୟବସ୍ଥା ମଧ୍ୟ ଖୁବ୍ କମ ଥିଲା । ଲୋକେ ରୋଗରେ ପଡ଼ିଲେ ମଶା ମାଛିପରି ମରୁଥିଲେ । ବହୁ ଅଞ୍ଚଳରେ ଲୋକେ ପାଠପଢ଼ିବାର ସୁଯୋଗ ନପାଇ ଅଧାପାଠୁଆ ଓ ଅପାଠୁଆ ହୋଇ ରହୁଥିଲେ । ଉପକୂଳ ଅଞ୍ଚଳରେ ଯାହାକିଛି ହେଲେ ଥିଲା, କିନ୍ତୁ ଓଡ଼ିଶାର ଆଭ୍ୟନ୍ତରୀଣ ଅଞ୍ଚଳ ଓ କୋରାପୁଟ ଜିଲ୍ଲା ଅନେକ ବେଶୀ ଅନୁନ୍ନତ ଥିଲା ।

ଯେଉଁ ଦିଗରୁ କୋରାପୁଟ ଜିଲ୍ଲାକୁ ପ୍ରବେଶ କଲେ କେବଳ ଘାଟିରାସ୍ତା, ପାହାଡ଼ ପର୍ବତ, ବଣ ଜଙ୍ଗଲ ଓ ଝରଣା ଡେଇଁ ଯିବାକୁ ପଡୁଥିଲା । ସେ ଜଙ୍ଗଲ ଏତେ ଘଞ୍ଚ ଥିଲା ଯେ ଦିନରେ ମଧ୍ୟ ସେଠି ସୂର୍ଯ୍ୟ ଦେଖାଯାଉ ନଥିଲେ । ଦିନବେଳେ ମଧ୍ୟ ଭାଲୁ, ହରିଣ, ବଣ ମଇଁଷି, ବାଘ ଗାଁ ପାଖରେ, ରାସ୍ତାକଡ଼ରେ ଦେଖିବାକୁ ମିଳୁଥିଲେ । ସେଠିକାର ଅଧିବାସୀମାନେ ସେଇ ଜଙ୍ଗଲ, ପାହାଡ଼ ଓ ଝରଣା ଉପରେ ନିର୍ଭର କରି ଚଳୁଥିଲେ । ଖୁବ୍ ଅଳ୍ପରେ ସେମାନେ ସନ୍ତୁଷ୍ଟ ରହୁଥିଲେ । ସହର ଓ ମୁଖ୍ୟରାସ୍ତା ପାଖର ଗାଁ ଗଣ୍ଡାର ଆଦିବାସୀ ଲୋକେ ଘନ ଜଙ୍ଗଲର ଆଦିବାସୀମାନଙ୍କ ଠାରୁ ଅଲଗା ଥିଲେ । ଜଙ୍ଗଲ ଭିତରର ଆଦିବାସୀମାନେ ଖୁବ୍ କମ ଲୁଗା ଓ ପୋଷାକ ବ୍ୟବହାର କରୁଥିଲେ । କିନ୍ତୁ ବିଭିନ୍ନ ପ୍ରକାରର ଅଳଙ୍କାର ଓ ଆଭୂଷଣ ପ୍ରତି ସେମାନେ ଆକୃଷ୍ଟ ଥିଲେ । ତାଙ୍କ ଭିତରେ ସୌନ୍ଦର୍ଯ୍ୟ ଜ୍ଞାନ ଥିଲା, କିନ୍ତୁ ତାଙ୍କର ସାମାଜିକ ଚଳଣି ଆମ ସହରିଆ ଶିକ୍ଷିତ ଲୋକଙ୍କପରି ନଥିଲା । ସେମାନେ ଖୁବ୍ ସରଳବିଶ୍ୱାସୀ ଓ ନିଷ୍କପଟ ହୃଦୟର ଲୋକଥିଲେ । ତାଙ୍କ ସମାଜରେ ନାରୀ ଓ ପୁରୁଷ ମଧ୍ୟରେ ପରସ୍ପର ପ୍ରତି ଯଥେଷ୍ଟ ସମ୍ମାନବୋଧ ଥିଲା । କୋରାପୁଟରେ ପ୍ରାୟ ନଅ/ଦଶ ପ୍ରକାରର ଆଦିବାସୀ ଜାତି ଅଛନ୍ତି । ସେମାନଙ୍କର ଭାଷା ଓ ଚାଲିଚଳଣ, ନାଚଗୀତ, ବେଶଭୂଷା ଭିନ୍ନଭିନ୍ନ ପ୍ରକାରର । ଏମାନଙ୍କ ପାଇଁ ଭାରତ ସ୍ୱାଧୀନ ହେବାଯାଏ, ସେମିତି ଉନ୍ନତିମୂଳକ ଯୋଜନା କିଛି କରାଯାଇ ନଥିଲା । ମୋ' ପିଲାବେଳେ ଏମାନଙ୍କ ଜୀବନଧାରଣର ମାନ ମୋତେ ପ୍ରଭାବିତ କରିଥିଲା ।

ବାପା କୋରାପୁଟରେ ଏସ୍.ଡ଼ି.ଓ. ଭାବରେ ଯୋଗଦେବା ବେଳେ କୋରାପୁଟର ଜିଲ୍ଲାପାଳଙ୍କୁ 'ଏଜେଣ୍ଟ' କୁହାଯାଉଥିଲା । ଏସ୍.ଡ଼ି.ଓ. ମାନଙ୍କୁ ସ୍ପେଶାଲ ଆସିଷ୍ଟାଣ୍ଟ ଏଜେଣ୍ଟ ବା 'ଏସ୍.ଏ.ଏଜେଣ୍ଟ' ବୋଲି କୁହାଯାଉଥିଲା । ସେତେବେଳେ ଏଜେଣ୍ଟ ଓ ଏସ୍.ଏ. ଏଜେଣ୍ଟ ମାନଙ୍କର ଅଖଣ୍ଡ କ୍ଷମତା ଥିଲା । ଜଙ୍ଗଲ ଓ ପୋଲିସ ବିଭାଗକୁ ଛାଡ଼ିଦେଲେ, ରାଜସ୍ୱ, ବିଚାର, ସ୍ୱାସ୍ଥ୍ୟ, ଶିକ୍ଷା, ପଶୁଚିକିତ୍ସା, ଲୋକାଲ ବୋର୍ଡ (ସ୍ୱାୟତ୍ତ ଶାସନ), ବିତ୍ତ ଓ ପୂର୍ତ୍ତ ବିଭାଗର ଅଫିସରମାନଙ୍କର କାମ ତଦାରଖ କରିବାର ଦାୟିତ୍ୱ ଏମାନଙ୍କର ଥିଲା ।

କୋରାପୁଟ ସହରଟି ସେତେବେଳେ ଖୁବ୍ ଛୋଟ ଥିଲା । ଜିଲ୍ଲାର ରାଜଧାନୀ ଭାବରେ ଏଠାରେ ସବୁ ବିଭାଗର ମୁଖ୍ୟମାନଙ୍କର ଅଫିସ ଥିଲା । କୋର୍ଟ, କଚେରୀ, ଟ୍ରେଜେରୀ, ପୋଲିସ୍ ଲାଇନ, ଜେଲଖାନା, ଲୋକାଲ ବୋର୍ଡ ଅଫିସ, ବୋର୍ଡ ମାଇନର ସ୍କୁଲ, ଖ୍ରୀଷ୍ଟ ଧର୍ମାବଲମ୍ବୀ ପାଦ୍ରୀ ଓ ଚର୍ଚ୍ଚ ତା ସହିତ ଛୋଟ ବଜାରଟିଏ ଥିଲା । କେତୋଟି ଛୋଟଛୋଟ ହୋଟେଲ ଥିବା ସତ୍ତ୍ୱେ ରହିବାର ସୁବିଧା ନଥିଲା । ଲୋକେ ସରକାରୀ କାମରେ ଏଠିକୁ ଆସିଲେ, କାମସାରି ଚଉଦ ମାଇଲ ଦୂରରେ ଅବସ୍ଥିତ କୋରାପୁଟ ଜିଲ୍ଲାର ସବୁଠାରୁ ପୁରାତନ ଓ ବଡ଼ ସହର ଜୟପୁରକୁ ଫେରି ଯାଉଥିଲେ । ଜୟପୁରର ରାଜା ବିକ୍ରମଦେବଙ୍କ ରାଜଧାନୀ ଥିଲା ଜୟପୁର । ସାରା କୋରାପୁଟ ଜିଲ୍ଲାର ଜମିର ମାଲିକଥିଲେ ଜୟପୁର ମହାରାଜା । ଜୟପୁର ସହରଟି ପରିଷ୍କାର ପରିଛନ୍ନ ଓ ଜନବହୁଳ ଥିଲା । ମହାରାଜାଙ୍କ ଉଆସ, ଉଦ୍ୟାନ, ସରୋବର, ଅତିଥିଶାଳା, ମ୍ୟୁଜିୟମ, ପୁସ୍ତକାଗାର ଓ ଦରବାର ଗୃହ ଖୁବ ସୁସଜ୍ଜିତ ଥିଲା । ରାଜା ବିକ୍ରମଦେବ ଏହାର ତତ୍ତ୍ୱାବଧାରକ ଥିଲେ । କେତୋଟି ବାହାରର ବ୍ୟବସାୟୀ ଏଠି ଧାନକଳ ଓ ଛୋଟକାଟର ଶିଳ୍ପ କାରଖାନା ମାନ ପ୍ରତିଷ୍ଠା କରିଥିଲେ । କେତୋଟି ଭଲ ହୋଟେଲ ଓ ଲଜିଂ ମଧ୍ୟ ଏ ସହରରେ ଥିଲା ।

କୋରାପୁଟ ସହରଟିକୁ ଛୋଟବଡ଼ ଲଣ୍ଡା ପାହାଡ଼ କେତୋଟି ଘେରି ରହିଥିଲେ । କେତୋଟି ଝରଣା ଓ ନାଳର ପାଣି ସର୍ବସାଧାରଣ ବ୍ୟବହାର କରୁଥିଲେ । ଆଦିବାସୀ ଖ୍ରୀଷ୍ଟିୟାନ ମାନଙ୍କର କେତୋଟି ଛୋଟ ଗାଁ ଏ ଝରଣା ଓ ନାଳକୂଳରେ ଗଢ଼ି ଉଠିଥିଲା । ଉଚ୍ଚନୀଚ଼ ସହର ରାସ୍ତା, ଘାଟିରାସ୍ତା ଓ ଉପତ୍ୟକାର ଜନବସତି, ସହରର ପାହାଡ଼ ଉପରୁ ସୁନ୍ଦର ଦେଖା ଯାଉଥିଲେ । ମୁଁ ସେତେବେଳେ ସାଇକେଲ ଚଲେଇବା ଶିଖି ସାରିଥିଲି । ନିଜର ବାଇଶ ଇଞ୍ଚିଆ-ଚ଼କର ସାଇକେଲ ଚଲେଇ ଅଙ୍କାବଙ୍କା ରାସ୍ତାରେ ଏକା ଏକା ବୁଲିବାକୁ ଭଲପାଉଥିଲି । ଆଦିବାସୀ କୁଡ଼ିଆ, ତାଙ୍କ ବାଡ଼ିବଗିଚ଼ା, ଆମ୍ବ ଓ ସଲପ ଗଛ, ଛୋଟଛୋଟ କାନ୍ଦୁଲ, ରାଗି, ଧାନ, ଅଳସି, ସୋରିଷ ଓ ପନିପରିବା ଖେତ ଖଳା କୋରାପୁଟ ସହରକୁ ରଂଗରେ ଭରି ଦେଉଥିଲେ । ନୀଳ ଆକାଶର ବଉଦ, ଗାଢ଼ନୀଳ ରଂଗର ଦୂରପର୍ବତ, ଖୁବ ପାଖର ମେରୁନ ରଂଗର ଲଣ୍ଡା ପାହାଡ଼ ଓ ଆଦିବାସୀ ଲୋକଙ୍କ ସାଧାରଣ ନିରୀହ ଜୀବନ ପ୍ରଣାଳୀ, ତାଙ୍କର ଡୁଂଗଡୁଂଗାର ସ୍ୱର ଓ ଗୀତର ଲହରୀ ମୋତେ ରଙ୍ଗତୁଳୀ ଧରି ଚିତ୍ର ଆଙ୍କିବାକୁ ପ୍ରୋତ୍ସାହିତ କରୁଥିଲା । ଖରା ବର୍ଷା ଶୀତ, ସବୁ ସମୟରେ କୋରାପୁଟ ମୋ ' ପାଇଁ ଏକ ସ୍ୱପ୍ନର ସହର ପାଲଟି ଯାଇଥିଲା ।

ବାପାଙ୍କୁ କୋରାପୁଟ ସହର ଶେଷଭାଗରେ ପାହାଡ଼ ଉପରେ, ଚର୍ଚ୍ଚ ପାଖରେ ଗୋଟିଏ ବିରାଟ ବଙ୍ଗଳାରେ ରହିବାକୁ ଦିଆଯାଇଥିଲା । ଘର ଚାରିପାଖରେ ଫୁଲ, ଫଳ, ବଗିଚ଼ା ଓ ବଡ଼ବଡ଼ ଆମ୍ବ, ପଣସ, ଲିଚୁ ଗଛ ସହିତ ଲତା ଗୋଲାପ, ତୁତ୍‌କୋଳି, ସପୁରି ଓ ମୁରୁଗା ବାଡ଼ ଘେରି ରହିଥିଲା । ଏ ଗଛମାନଙ୍କୁ ପାଣି ଦେବାପାଇଁ ଗୋଟିଏ ବଡ଼ କୂଅ

ବଙ୍ଗଳାର ସବୁଠାରୁ ଉଚ୍ଚଜାଗାରେ ଖୋଳା ଯାଇଥିଲା । ସେଇ କୂଅର ପାଣିରେ ସାରା ବଗିଚ଼ାକୁ ଦୁଇଜଣ ମାଳୀ ପାଣି ଯୋଗାଉଥିଲେ । ସେମାନେ ରହିବାପାଇଁ ଆମ ବଙ୍ଗଳାକୁ ଲାଗି ତାଙ୍କର ଘର ଯୋଗାଇ ଦିଆ ଯାଇଥିଲା । ସେଥିପାଇଁ ସବୁସମୟରେ ଆମ ବଙ୍ଗଳାର ବଗିଚ଼ା ଘାସ ଓ ଫୁଲରେ ଭରି ରହିଥିଲା ।

ବାପାଙ୍କର ନିଜସ୍ୱ ଗୋଟିଏ ୧୯୨୭ ମସିହାର ଉତ୍ପାଦିତ ଚ଼େଭରଲେଟ ହୁଡ୍‌ଲଗା ଗାଡ଼ି ଥିଲା । ସେ ଗାଡ଼ି ବାପା ନିଜେ ଚଲାଉଥିଲେ । ଛୋଟକାଟର ମରାମତି କାମ ମଧ୍ୟ ଜାଣିଥିଲେ । ତାଙ୍କର ବ୍ୟକ୍ତିଗତ ଚପରାସୀ ମାନଙ୍କୁ ସେ ଗାଡ଼ି ଚଲେଇବା ଓ ରୋଷେଇ କରିବା କାମ ପରିଶ୍ରମ କରି ଶିଖାଉଥିଲେ । ଗାଡ଼ିରେ ସବୁସମୟରେ ଚାଉଳ, ଡାଲି, ଅଟା, ସୁଜି, ଚିନି, ମସଲା, ଚା, କଫି, ବିସ୍କୁଟ, କଣ୍ଡେନ୍‌ସଡ୍ ମିଲ୍କ, ଆଳୁ, ପିଆଜ, ଡବାରେ ପେକ୍‌କରା ଫଳ, ତେଲ, ଘିଅ, କିରାସିନି ଷ୍ଟୋଭ, ସ୍ପିରିଟ୍ ଲେମ୍ପ, ତାରପୋଲିନ ଦରି, ଫୋଲ୍‌ଡିଂ ଚଉକି ଓ ଖଟ ଛୋଟ ଛୋଟ ଖୋପ କାଠବାକ୍ସରେ ସଜାଇ ରଖୁଥିଲେ । ବଡ଼ ଥର୍ମୋ-ଫ୍ଲାସ୍କରେ ପାଣି, ଫାଷ୍ଟ୍‌ଏଡ୍ ବାକ୍ସ ଓ ହୋମିଓପାଥି ଔଷଧ, ସହିତ ରାନ୍ଧିବା ବାସନକୁସନ ଓ ଏନାମେଲ୍ ବାସନ ଗାଡ଼ିର ପାଦରଖିବା ଜାଗାର ତଳେ ଯତ୍ନରେ ରଖିବାର ବନ୍ଦୋବସ୍ତ କରିଥିଲେ । ତା' ସାଙ୍ଗକୁ ଗୋଟିଏ ଦୁଇନଳିଆ ବନ୍ଧୁକ ଓ ବହୁପ୍ରକାରର ଗୁଳିର ବାକ୍ସ, ପାଞ୍ଚଟି ବେଟେରୀରେ ଜଳୁଥିବା ଟର୍ଚ୍ଚ, ଗାଡ଼ିରେ ବାପା, ଦଉଡ଼ା ଯିବା ସମୟରେ ଯାଉଥିଲା । ମାସକୁ ୧୫/୨୦ ଦିନ ବାପା ଦଉଡ଼ାରେ ଯାଉଥିଲେ । ଇଂରେଜ ସରକାର ଅମଳରେ ଅଫିସରମାନେ ପ୍ରାୟ ସବୁବେଳେ ଅପ୍ରତ୍ୟାଶିତ ଭାବରେ ଦଉଡ଼ାରେ ଯାଉଥିଲେ । ନିଜର ଦଉଡ଼ାର ପ୍ରୋଗ୍ରାମ୍, ଉପର ଅଫିସର୍ ମଞ୍ଜୁର କରିଦେବା ପରେ, ଆଜିକାଲିକା ପରି ଦଶବାରଟା ତଳିଆ କର୍ମଚାରୀଙ୍କୁ ଜଣାଇବା, ରହିବା, ଖାଇବାର ବନ୍ଦୋବସ୍ତ କରିବାର ବ୍ୟବସ୍ଥା ବା ଖବର ଦେବାର ଡ଼ାକ, ତାର, ଫୋନ ବ୍ୟବସ୍ଥା ନଥିଲା । ସବୁ ଅଚ଼ାନକ !

ବାପାଙ୍କର ପାଞ୍ଚ ଛଅଟି ପୁଅଙ୍କ ଭିତରେ ମୁଁ ସବୁଠାରୁ ସକ୍ଷମ ଓ ବଡ଼ ଥିଲି । ବାପା ମୋତେ ବାହାର ଦୁନିଆ ଦେଖେଇବାର ପ୍ରଚ଼େଷ୍ଟା ମୋ' ପିଲାଦିନରୁ କରୁଥିଲେ । ସେ ଦୃଷ୍ଟିରୁ ମୋ ସ୍କୁଲ ଛୁଟିଥିଲେ ସେ ମୋତେ ସାଙ୍ଗରେ ନେଇ ଦଉଡ଼ା ଯାଉଥିଲେ । ବାପାଙ୍କର ଏ ସଉକି ମୋତେ ମୋ' ପିଲାବେଳୁ ଓଡ଼ିଶାର ବହୁ ଅଞ୍ଚଳ ଦେଖିବାର, ବୁଲିବାର ଓ ଅନୁଭବ କରିବାର ସୁଯୋଗ ଦେଇଛି । ନିଜ ଗାଡ଼ି ଚଲେଇ ଗଲାବେଳେ, ଦରକାର ପଡ଼ିଲେ ଯେ କୌଣସି ଝରଣା, ମନ୍ଦିର, ଡ଼ାକବଙ୍ଗଳା, ଘାଟିରାସ୍ତା ଓ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ଜାଗା ଓ ଆଦିବାସୀ ଗାଁ ପାଖରେ ଗାଡ଼ି ଅଟକାଇ ପିକ୍‌ନିକ୍ ମନାଉଥିଲେ । ଖରା, ବର୍ଷା, ଶୀତକୁ ଖାତିର କରୁନଥିଲେ । ଏହାର ପ୍ରଭାବ ମୋ' ଉପରେ ପଡ଼ିଛି । ବାପାଙ୍କ ସାଙ୍ଗରେ ଯିବାବେଳେ ମୋର ଯାହା ଅନୁଭୂତି ଓ ଶିକ୍ଷା ହେଉଥିଲା, ଆଜିକାଲିକା ପିଲାମାନେ

ବହିପଢ଼ି, ଟେଲିଭିଜନ ଓ ସିନେମା ଦେଖି ସେତିକି ଅନୁଭବ ପାଉଛନ୍ତି କି ନାହିଁ ସେଥିରେ ମୋର ସନ୍ଦେହ ହେଉଛି । ସେତେବେଳେ ସେ ଏସବୁକୁ ଏକ ଦୁଃସାହସିକ କାର୍ଯ୍ୟ ଭାବରେ ଗ୍ରହଣ କରୁନଥିଲେ । ମୋର ଧାରଣା ହେଉଥିଲା, ସବୁ ବାପାମାନେ ଏମିତି କରୁଥିବେ । ଆଜି ମନେ ହେଉଛି ପ୍ରକୃତିର ଛୋଟ ପ୍ରଜାପତିଠାରୁ, ତା'ର ଭୟାବହ ଝଡ଼ ବର୍ଷା ଓ ତୋଫାନର ଦୃଶ୍ୟ ମୋତେ କାହିଁକି ଏତେ ଆକର୍ଷିତ କରେ ! ପରବର୍ତ୍ତି କାଳରେ ବାଲ୍ୟ ଜୀବନରେ ଦେଖିଥିବା ପ୍ରାକୃତିକ ଦୃଶ୍ୟଗୁଡ଼ିକ ମୋ' ମନରେ ଏପରି ଛାପ ପକାଇଥିଲା ଯେ, ମୋ' ଅଜାଣତରେ ରଂଗ ତୁଳୀ ଧରି ଚିତ୍ର ଆଙ୍କିବାକୁ ବସିଲେ ସେସବୁ ଦୃଶ୍ୟ ତା' ମନକୁ ମୋ' ଚିତ୍ରପଟରେ ଆଙ୍କି ହୋଇଯାଉଛି । ନିକଟରେ ଜଣେ ବିଦେଶୀ ପର୍ଯ୍ୟଟକ ମୋର କେତୋଟି ଚିତ୍ର ଦେଖି ନିଜ ତରଫରୁ ମୋତେ ଜଣେ ଇମ୍ପ୍ରେସନିଷ୍ଟ ଆର୍ଟିଷ୍ଟ୍ ବୋଲି ବିଦେଶର କେତେଜଣ କଳାକାରଙ୍କ ସହିତ ତୁଳନା କଲେ । ଏ ବିଷୟରେ ମୁଁ ଦୀର୍ଘ ପଚାଶବର୍ଷ ହେଲା, କେବେ ନିଜେ ନିଜକୁ ତର୍ଜମା କରିନାହିଁ ।

ବାପା କୋରାପୁଟରେ ଛ' ମାସ ରହିବାପରେ ନବରଂଗପୁର ସବଡିଭିଜନକୁ ଏସ୍.ଏ. ଏଜେଣ୍ଟ୍ ଭାବରେ ବଦଳିହୋଇ ଆସିଲେ । ମୁଁ ସାମୟିକ ଭାବରେ ଲରମ୍ବା ଆବାସିକ ବିଦ୍ୟାଳୟରେ ଅଷ୍ଟମ ଶ୍ରେଣୀରେ ଛ'ମାସ ପଢ଼ିବା ପରେ, ଶରୀର ଅସୁସ୍ଥତା ଯୋଗୁ ନବରଙ୍ଗପୁର ଫେରିଆସି ସେଠାକାର ବୋର୍ଡ ହାଇସ୍କୁଲରେ ଅଷ୍ଟମ ଓ ନବମ ଶ୍ରେଣୀର ପାଠ ପଢ଼ିଲି । ନବରଙ୍ଗପୁର କୋରାପୁଟର ସବଠାରୁ ବଡ଼ ସବ୍‌ଡିଭିଜନ୍ ଥିଲା । ଏହା ଏକ ସମତଳ ଅଞ୍ଚଳରେ ଥିବାରୁ ନବରଙ୍ଗପୁର ଚାରିପାଖରେ ସାଇକେଲ ଧରି ବୁଲିବାର ସୁଯୋଗ ବେଶୀ ମିଳିଲା । ଜୟପୁର ପରେ ନବରଙ୍ଗପୁର କୋରାପୁଟର ଗୋଟିଏ ସାଂସ୍କୃତିକ ଓ ବ୍ୟବସାୟିକ ବଡ଼ ସହର ଥିଲା । ଗୋଟିଏ ପଟେ ଇନ୍ଦ୍ରାବତୀ ନଦୀ ଓ ଅନ୍ୟପାଖରେ ଅନେକ ପ୍ରକାରର ଜଙ୍ଗଲ ଓ ଜନବସତି ଥିଲା । ନବରଂଗପୁର ସହର ଠାରୁ ପଶ୍ଚିମକୁ ଗଲେ ଯେଉଁଠି ସବଡିଭିଜନର ସୀମା, ସେଠି ଆମ୍ବପାଣି ଘାଟି । ଘାଟି ଡେ଼ଇଁଲେ କଳାହାଣ୍ଡି ରାଜ୍ୟର ସୀମା ଆସୁଥିଲା । ଏ କଳା ସଂସ୍କୃତି ସହରର ଠାକୁରାଣୀ, ଭଣ୍ଡାରଘରଣୀ ଓ ଜଗନ୍ନାଥ ମନ୍ଦିର କୋରାପୁଟର ସବୁଠାରୁ ବଡ଼ ପ୍ରତ୍ୟକ୍ଷ ଦେବୀ ଓ ଦେବତା ଭାବରେ ପୂଜା ପାଇଥାଆନ୍ତି । ସହରର ମଧ୍ୟ ଭାଗରେ ଜିଲ୍ଲାର ସବୁଠାରୁ ବଡ଼ ସାପ୍ତାହିକ ହାଟ ଗୋଟାଏ ବିରାଟ ବଡ଼ ଆମ୍ବ ତୋଟାରେ ବସୁଥିଲା । ନବରଙ୍ଗପୁର ସହରରେ ରହିବା ସମୟରେ ମୋର ଚିତ୍ର ଆଙ୍କିବା ଓ ଫଟୋ ଉଠେଇବା ପ୍ରତି ଆଗ୍ରହ ଜନ୍ମିଥିଲା । ଏ ସହର ପରବର୍ତ୍ତୀ ଜୀବନରେ ମୋତେ କଳାକାରଟିଏ ହେବାପାଇଁ ଯଥେଷ୍ଟ ପ୍ରେରଣା ଯୋଗାଇଛି । ଏଠାରେ ମୋର ଅନେକ ବନ୍ଧୁ ତେଲୁଗୁ ଓ ଆଦିବାସୀ ସଂସ୍କୃତି ବିଷୟରେ ମୋତେ ପ୍ରଭାବିତ କରିଥିଲେ । ତାହାହିଁ ମୋତେ ଜଣେ ସଂସ୍କୃତିପ୍ରେମୀ ହେବାକୁ ସାହାଯ୍ୟ କରିଥିଲା ।

କୋରାପୁଟ ଜିଲ୍ଲାର ଜଙ୍ଗଲ ଓ ଜନ୍ତୁ କହିଲେ ମୁଁ ଯାହାବୁଝେ, ତାହାର ଚିହ୍ନବର୍ଣ୍ଣ ସେଠାକାର କୌଣସି ଅଞ୍ଚଳରେ ମୁଁ ଏବେ ଦେଖିବାକୁ ପାଉନାହିଁ । ଅନେକ ଗୁଡ଼ିଏ ଅନୁଭୂତି ଭିତରୁ କେବଳ କେତୋଟି ଅବିସ୍ମରଣୀୟ ଘଟଣାର ବର୍ଣ୍ଣନା କଲେ, ଆଜିକାର ପିଲାମାନେ ବୁଝିପାରିବେ ବୋଲି ମୋର ବିଶ୍ୱାସ । କୋରାପୁଟର ଜଙ୍ଗଲ, ପାହାଡ଼, ଝରଣା ଯେତେ ଘଞ୍ଚ ଓ ସୁନ୍ଦର ଥିଲା, ସେଠାରେ ପଶୁପକ୍ଷୀଙ୍କ ସଂଖ୍ୟା ମଣିଷମାନଙ୍କ ସଂଖ୍ୟାଠାରୁ ଯଥେଷ୍ଟ ବେଶୀ ଥିଲା । ଅଧିବାସୀମାନେ ନିଜ ଜୀବନର ସୁରକ୍ଷା ଓ ଫସଲର ସୁରକ୍ଷାପାଇଁ ବନ୍ୟଜନ୍ତୁ ମାନଙ୍କୁ ଶିକାର କରିବାକୁ ବାଧ୍ୟ ହେଉଥିଲେ । ଏହା ଇଂରେଜ ସରକାର ମଧ୍ୟ ଜାଣିଥିଲେ । ତେଣୁ ଅଧିକାଂଶ ସରକାରୀ ଅଫିସର ଦଉଡ଼ାରେ ଯିବା ସମୟରେ ବଂଧୁକ ସାଙ୍ଗରେ ନେଇ ଯାଉଥିଲେ । ଶିକାର କରିବାର ଏକ ପରଂପରା ସରକାରୀ ସ୍ତରରେ ଅନୁମୋଦନ ପାଇଥିଲା । ନବରଙ୍ଗପୁର ଡାବୁଗାଁର ହବିବୁଲ୍ଲା ଖାଁ କୋରାପୁଟର ଜଣେ ବାଘ ଶିକାରୀ ଥିଲେ । ସେ ବର୍ତ୍ତମାନ ମନ୍ତ୍ରୀଙ୍କ ଆତ୍ମୀୟ । ମୋ' ବାପା ତାଙ୍କର ଶିକାରୀ ବଂଧୁ ଥିଲେ । ଆଦିବାସୀମାନେ ମଧ୍ୟ ତାଙ୍କ ଚଳଣି ଭିତରେ ପୁଷମାସ ଓ ଚଇତ୍ର ମାସରେ ଗୋଟିଏ ପରବ ପାଳୁଥିଲେ । ସାମୁହିକ ଭାବରେ ଏହାକୁ "ବେଣ୍ଟ ପରବ" କୁହା ଯାଉଥିଲା । ଏହାର ଅର୍ଥ ଦଳଦଳ ହୋଇ ଆଦିବାସୀ ପୁରୁଷମାନେ ଜଙ୍ଗଲରେ ପଶି ନିର୍ବିକାର ଭାବରେ ପଶୁମାନଙ୍କୁ ମାରି ତା'ର ମାଂସକୁ ଭୋଜିକରି ଖାଉଥିଲେ । ଖାଇବା ପଶୁର ମାଂସ ଓ ନଖାଇବା ପଶୁର ଛାଲ, ହାଡ଼, ନଖ ଇତ୍ୟାଦି ଔଷଧ ଭାବରେ ବ୍ୟବହାର କରୁଥିଲେ । ଇଂରେଜମାନେ ଏ ସଂସ୍କାରକୁ ମାନି ନେଇଥିଲେ । ସରକାରୀ ଅଫିସର ମଧ୍ୟ ଶିକାରକୁ ଏକ ସଉକ, ଖେଳ ଓ ବାହାଦୁରି ଭାବରେ ଗ୍ରହଣ କରୁଥିଲେ । ରାଜା, ମହାରାଜ ଓ ଜମିଦାର ମାନେ ସରକାରୀ କଳା ଓ ଗୋରା ସାହେବମାନଙ୍କ ପାଇଁ ଏମିତି ଶିକାର ପ୍ରାୟ ପ୍ରତିବର୍ଷ ଶୀତଦିନରେ ଆୟୋଜନ କରୁଥିଲେ । ଏହା ଖୁବ୍ ରୋମାଞ୍ଚକର ଭାବରେ ପାଳନ କରାଯାଉଥିଲା । ଆଦିବାସୀ ମାନଙ୍କୁ ମଧ୍ୟ ଏଥିରେ ଭାଗ ନେବାକୁ ସୁଯୋଗ ମିଳୁଥିଲା । କାରଣ ଜଙ୍ଗଲରେ ପଶୁମାନଙ୍କୁ ଗୋଟିଏ ପଟୁ ଘଉଡ଼ାଇବାର କାମ ସହ ଏ ଆଦିବାସୀମାନେ ପାଦରେ ଚାଲି, ବାଜାବଜେଇ ଚିତ୍କାର କରି, ଟେଣ୍ଟା, ବର୍ଚ୍ଛା ଓ ଧନୁତୀର ଧରି ଶିକାର କରିବା ସମୟରେ ସାହେବ ଓ ରାଜା ଜମିଦାର ମାନେ ଗଛଉପରେ ମଞ୍ଚାବାନ୍ଧି ଲୁଚିରହି ଜନ୍ତୁମାନଙ୍କୁ ବନ୍ଧୁକରେ ଗୁଳିକରି ମାରୁଥିଲେ । ଶହେବର୍ଷ ପର୍ଯ୍ୟନ୍ତ ଏହା ଚାଲିଥିଲା ।

କୋରାପୁଟରେ ସେଥିପାଇଁ ୧୯୩୬ ମସିହାରୁ ୧୯୭୫ ମସିହା ମଧ୍ୟରେ ହଜାର ହଜାର ସଂଖ୍ୟାରେ ହାତୀ, ବାଘ, ଚିତା, କଲରାପତରିଆ, ଅରଣା ମହିଁଷି, ଗୟଳ, ଭାଲୁ, ସମ୍ବର, ଚିତଲ, ହରିଣ, କୃଷ୍ଣସାର ମୃଗ, କୁଟୁରା, ଠେକୁଆ, ବାରହା, ମୟୁର, ବଣକୁକୁଡ଼ା ଓ ଅନ୍ୟାନ୍ୟ ପକ୍ଷୀ ମଣିଷର ସଉକି ଯୋଗୁ ମୃତ୍ୟୁବରଣ କରିଛନ୍ତି । ଏ ଅବିବେକୀ

ଜୀବହତ୍ୟା ସହିତ ଭାରତ ସ୍ୱାଧୀନ ହେବାପରେ କାଠବେପାରୀଙ୍କ ଲୋଭ ଓ ଜଙ୍ଗଲ ଅଧିକାରୀମାନଙ୍କର ଦୁର୍ନୀତି ଯୋଗୁ କୋରାପୁଟର ଜଙ୍ଗଲ ଶତକଡ଼ା ସତୁରୀ ଭାଗ ନଷ୍ଟ ହୋଇଯାଇଛି ।

ଆଜିର ଆଧୁନିକ କୋରାପୁଟ ଶିଳ୍ପ ଓ ଖଣିପାଇଁ ସବୁଆଡ଼େ ପଦା ହୋଇଯିବା ସହିତ, ସେ ନିରୀହ ଆଦିବାସୀ ଏବେ ସଭ୍ୟ ହେବାପାଇଁ ନିଜର ସଂସ୍କୃତି ଓ ପରଂପରାକୁ ଜଳାଞ୍ଜଳି ଦେଇ ଦେଉଛନ୍ତି । ଏବେବି ଆମେ ଜାଣିପାରୁନାହୁଁ ଏମାନେ ଆର୍ଥିକ ଦୃଷ୍ଟିରୁ କେତେ ଉନ୍ନତି କରିପାରିଛନ୍ତି ?

ମୁଁ ପିଲାବେଳେ ଏସବୁ ଦେଖିଛି ୧୯୪୭ ମସିହାଯାଏ । ତା'ପରେ ୧୯୭୪ ମସିହାରେ ମୁଁ ଯେତେବେଳେ କୋରାପୁଟକୁ ଦେଖିଲି ନିଜକୁ ବିଶ୍ୱାସ କରିପାରିଲି ନାହିଁ । "କି ଥିଲା ଏରାଜ୍ୟ, କି ହୋଇଛି ଆଜ !" ବଡ଼ ଦୁଃଖ ଲାଗେ । ହଁ- ସେ ଅବିସ୍ମରଣୀୟ ଘଟଣା କଥା-

**ମୋର ଅଙ୍ଗେ ଲିଭେଇଥିବା କୋରାପୁଟ**

୧୯୪୬ ମସିହାର ପୂଜାଛୁଟି ସମୟରେ ବାପା, ନିଜ ଗାଡ଼ିରେ ପରିବାରକୁ ନେଇ ସମ୍ବଲପୁର ଯିବାର ଯୋଜନା କଲେ । ନବରଂଗପୁରରୁ ଆମ୍ବପାଣି ଘାଟିଦେଇ ଭବାନୀପାଟଣା, ସେଠାରୁ ତେଲ ନଦୀର ଖରାଦିନିଆ ରାସ୍ତାଡ଼େଇଁ ଟିଟିଲାଗଡ଼, ତା'ପରେ ବଲାଙ୍ଗୀର, ବରଗଡ଼ ଦେଇ ସମ୍ବଲପୁର । ସମ୍ବଲପୁର ମହାନଦୀରେ ସେତେବେଳେ ପନ୍‌ଟୁନ୍ ବ୍ରିଜଥିଲା । ଲୁହାପିମ୍ପାର ବଡ଼ବଡ଼ ଡ୍ରୋଲ ପାଣିରେ ପକାଇ ତା'ଉପରେ କାଠପଟା ପକାଇ ବନ୍ଧାଯାଇ ବ୍ରିଜ ତିଆରି ହେଉଥିଲା । ବର୍ଷାଦିନରେ ଏହା ଉଠେଇ ନିଆ ହେଉଥିଲା । ଆମେ ସେତେବେଳେ ଭାଇଭଉଣୀ ମିଶି ଆଠଜଣ । ମୋ ମା', ଜଣେ ସାହାଯ୍ୟକାରୀ ଚପରାସୀ ଓ ରାନ୍ଧୁଣିଆ । ବାପାଙ୍କ ହୁଡ଼ଲଗା ଗାଡ଼ିରେ ଆମପାଣି ଘାଟି ରାସ୍ତାଦେଇ ଯିବାର ପରିକଳ୍ପନା ମୋ ନାନୀ ଓ ମୋତେ ଯେତେ ଦୁଃସାହସିକ ଓ ରୋମାଞ୍ଚକର ମନେହେଉଥିଲା, ମୋ' ସାନସାନ ଭାଇଭଉଣୀମାନଙ୍କୁ ସେତେ ଉତ୍ତେଜନାପୂର୍ଣ୍ଣ ମନେ ହେଉନଥିଲା ।

ବଡ଼ିଭୋରରୁ ଆମେ ନବରଂଗପୁରରୁ ବାହାରିଲୁ । ଆମପାଣି ଘାଟି ପାଖରେ ପହଞ୍ଚିଲାବେଳକୁ ଦିନ ଦଶଟା ବାଜିଥାଏ । ଚାରିଆଡ଼େ ନିସ୍ତବ୍ଧତା । କେବଳ ଆମ ଗାଡ଼ିର ଗର୍ଜନ । ସେତେବେଳେ ଏ ଘାଟି ରାସ୍ତାରେ ଖୁବ୍ କମ ଯନ୍ତ୍ରଚାଳିତ ଗାଡ଼ି ଯିବାଆସିବା କରୁଥିଲା । ଦିନବେଳେ କେତୋଟି ମାଲବୁହା ଗାଡ଼ି ଛଡ଼ା, ଶଗଡ଼ ଓ ପାଦରେ ଚାଲି ଲୋକେ ଏ ବାଟରେ ଯାଉଥିଲେ । ସାଇକେଲରେ ଯିବା ମଧ୍ୟ ପାଠପଢ଼ା ଲୋକଙ୍କର ସଉକି ଥିଲା । ରଜା, ଜମିଦାର ଓ ବଡ଼ ସରକାରୀ ଅଫିସର ନିଜ ଗାଡ଼ି କିଣୁଥିଲେ । ସେମାନଙ୍କ ସଂଖ୍ୟା ଖୁବ୍ କମ ଥିଲା । ଏ ରାସ୍ତା ବୋଲ୍‌ଡର ଓ ମୋରମ ଦ୍ୱାରା ଆଚ୍ଛାଦିତ ଥିଲା । ଆମ ଗାଡ଼ି

ଘଣ୍ଟାକୁ ତିରିଶ ମାଇଲ ବେଗରୁ ଅଧିକ ଯାଇ ପାରୁନଥିଲା । ବାପା ହଠାତ୍ ଗାଡ଼ିର ଗତିକ୍ଷିପ୍ର କରି ଆମ ଭାଇଭଉଣୀ ମାନଙ୍କୁ ସତର୍କ କରାଇ ଦେଲେ ବାମପାର୍ଶ୍ୱରେ ପ୍ରାୟ ଦୁଇମାଇଲ ଦୂରର ଗୋଟିଏ ଧୂଳିଝଡ଼ ଦେଖିବାକୁ । ଆମେ ସମସ୍ତେ ସେଇ ଆଡ଼କୁ ଅନେଇ ରହିଲୁ । ଘାଟି ରାସ୍ତାରୁ ଆମଗାଡ଼ି ଓହ୍ଲେଇ ଆସିବାବେଳେ ଘାଟିତଳର ପ୍ରାୟ ପାଞ୍ଚମାଇଲ ଆକ୍ରାନ୍ତର ଗୋଟିଏ ସମତଳ ପଡ଼ିଆ । ମଝିରେ ମଝିରେ ପଲାସ, ଗମ୍ଭାରୀ ଓ ମହୁଲ ଗଛ ଗୋଟିଏ ଗୋଟିଏ । ଛୋଟଛୋଟ ବୁଦା ଓ ଶାଗୁଆ ଘାସର ଆସ୍ତରଣ । ତା' ମଝିରେ ନାଲିମୋରମ୍‌ର ରାସ୍ତା ଡାହାଣରୁ ବାଁକୁ ମୋଡ଼ି ଯାଇଛି । ବାଁ ପାଖର ଧୂଳିଝଡ଼ ଧୀରେ ଧୀରେ ରାସ୍ତା ଉପରକୁ ନିକଟତର ହେବା ବେଳକୁ ଜଣାଗଲା ତାହା ପାଞ୍ଚ/ଛଅଶହ ପାଞ୍ଚ ପ୍ରକାରର ଚିଥଲ, ସମ୍ବର, କୁଟୁରା, ସିଂଘାଳ, କୃଷ୍ଣସାର ହରିଣ ମାନଙ୍କର ଗୋଟାଏ ବିରାଟ ଦଳ । ରାତିରେ ପାହାଡ଼ ଉପରୁ ଓହ୍ଲାଇ ସେମାନେ ପଡ଼ିଆରେ ଚରିବାକୁ ଆସିଥିଲେ । ସେ କି ଦୃଶ୍ୟ ! ଶୀତଦିନ ସକାଳର ମିଠା ମିଠା ଖରାରେ ବିଭିନ୍ନ ବନ୍ୟଜନ୍ତୁମାନଙ୍କର ଭିନ୍ନ ଭିନ୍ନ ପ୍ରକାରର ଦଉଡ଼ ଓ ଲମ୍ଫ ପ୍ରଦାନ । ମୋର ଓ ମୋ ନାନୀର ଆଖି ଖୋସି ହୋଇଗଲା । ବାପା ଗାଡ଼ି ଚଳେଇ ହରିଣ ପଲର ଖୁବ ନିକଟତର ହେବାକୁ ଚେଷ୍ଟା କରୁଥିଲେ କାରଣ ରାସ୍ତାର ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ସେମାନେ ରାସ୍ତାର ବାମପଟରୁ ଡାହାଣକୁ ଲମ୍ଫ ପ୍ରଦାନ କରିବାକୁ ବାଧ୍ୟ ହେବେ । ଆମଗାଡ଼ି ମାତ୍ର ପଚାଶଗଜ ଦୂରରେ ରହିବାରୁ ହରିଣମାନଙ୍କୁ ଅତି ନିକଟରୁ ଦେଖିବାର ସୁଯୋଗ ପାଇଲୁ । ଆଜିଯାଏ ଏ ଦୃଶ୍ୟ ମୋର ଅଭୁଲା ହୋଇ ରହିଛି । ଏବେ ଟେଲିଭିଜନରେ ଦକ୍ଷିଣ ଆଫ୍ରିକାର ସେରେନ୍‌ଗେଟି ବନ୍ୟଜନ୍ତୁ ଅଭୟାରଣ୍ୟରେ ବେଳେବେଳେ ଏପରି ତିନିଚାରି ପ୍ରକାରର ଇମ୍ପାଲା, ଏଲ୍‌କ, ଜିବ୍ରା ଓ ଅନ୍ୟ ତୃଣଭୋଜି ମାନଙ୍କର ଷ୍ଟାମ୍ପିଡ୍ ଦେଖିବାକୁ ମିଳୁଛି । ପଚାଶବର୍ଷ ପୂର୍ବେ ଓଡ଼ିଶାର ଅସୁରକ୍ଷିତ କୋରାପୁଟ କଳାହାଣ୍ଡି ଜଙ୍ଗଲରେ ବର୍ଷର ଅନେକ ଦିନରେ ଏହା ଦେଖାଯିବା କଥା ବିଶ୍ୱାସ କରିହେଉଛି କି ?

କୋରାପୁଟ ଜିଲ୍ଲା ସେତେବେଳେ ଥିଲା ଅନେକ ପ୍ରକାରର ଲତା ଗୋଲାପର ଜଙ୍ଗଲ । ସେବତୀ, ମଲ୍ଲି, ମନ୍ଦାର, ଜୁଇ, ଯାଇ, ଚମ୍ପା ଓ ପଦ୍ମ ଫୁଲର ବାସ୍ନାରେ ସହର ବଜାର ଓ ଆଦିବାସୀ ସ୍ତ୍ରୀମାନେ ନିଜକୁ ପୋତି ପକାଉଥିଲେ । ବର୍ଷାର ଆଗମନରେ ଚମ୍ପା ଫୁଲ ଓ ପଦ୍ମ ଫୁଲର ବାସ୍ନାରେ ଭଣ୍ଡାରଘରଣୀ ଓ ଜଗନ୍ନାଥ ମନ୍ଦିର ମହମହ ବାସି ଯାଉଥିଲା ମାସମାସ ଯାଏ । ଜାଙ୍ଗୁଲୁ ଜାଙ୍ଗୁଲୁ ଶୀତ ସକାଳରେ କୋରାପୁଟର ରାସ୍ତାକଡ଼ ଜଙ୍ଗଲରେ ମାଇଲ ମାଇଲ ଧରି ମହୁଲ ଫୁଲର ଫିକା ହଳଦିଆ ରଂଗର ଚାଦରର ଆସ୍ତରଣ ବିଛେଇ ହୋଇ ଯାଉଥିଲା । ଫଗୁଣର ଆଗମନରେ ପଲାସ ଫୁଲର ଉଜ୍ଜ୍ୱଳ ନାରଙ୍ଗୀ ଲାଲ ରଂଗର ଶୋଭା ମଣିଷର ମନକୁ ମତୁଆଲା କରିଦେଉଥିଲା । କୋରାପୁଟର ପ୍ରକୃତି ଓ ସ୍ୱାଧୀନ ସ୍ୱଚ୍ଛଳ ଅଧିବାସୀ ମୋତେ ତେର ବର୍ଷ ବୟସରେ ମୋତେ କୋଡ଼ିଏ ବର୍ଷର ଯୁବକର ସମସ୍ତ

ଉନ୍ମାଦନାର ଅନୁଭୂତି ଦେଇଥିଲେ ଅଯାଚିତ ଭାବରେ । ମୁଁ କୈଶୋରରେ ଯୁବକ ହୋଇଯାଇଥିଲି ।

କୋରାପୁଟର ସାଧାରଣ ଜୀବନ ସେତେ ଦୁର୍ବିସହ ନଥିଲା । ଅଳ୍ପ ପଇସାରେ ଲୋକେ ସ୍ୱଚ୍ଛଳ ଭାବରେ ଚଳିଯାଉଥିଲେ । ଆଦିବାସୀମାନଙ୍କ ମଧ୍ୟରେ ସେତେବେଳ ଯାଏ ଦ୍ରବ୍ୟ ବିନିମୟର କିଣାବିକା ବ୍ୟବସ୍ଥା ଚାଲୁଥିଲା । ଜିନିଷ ପତ୍ରର ଦରଦାମ ଖୁବ କମ୍ ଥିଲା । ଟୋକେଇ ଭର୍ତ୍ତି ବିଲାତି ବାଇଗଣ ବା ଶହେଟି ମକା ଗୋଟିଏ ଟଙ୍କାରେ ମିଳୁଥିଲା । ଟୋକେଇରେ ଟୋକେଇ ଭର୍ତ୍ତି କୁଣ୍ଡାରେ ଷାଠିଏ/ ସତୁରୀଟି କୁକୁଡ଼ା ଅଣ୍ଡା ଧରି ଆଦିବାସୀ ରମଣୀମାନେ ରାସ୍ତାକଡ଼ରେ ବସି ରହୁଥିଲେ ପଥଚାରୀଠାରୁ ଗୋଟିଏ ରୂପାଟଙ୍କା ପାଇବା ପାଇଁ । ଖାଇବା ଜିନିଷର ଦରଦାମ ଏତେ ଶସ୍ତାଥିଲା ଯେ, ପ୍ରତି ମାସରେ ମୋ ବାପାଙ୍କ କାର୍ଯ୍ୟାଳୟରେ ସମସ୍ତେ ଚାନ୍ଦା ଦେଇ ଗୋଟିଏ ଛୁଟିଦିନରେ ଭୋଜିର ଆୟୋଜନ କରୁଥିଲେ । ମୁଁ ପ୍ରାୟତଃ ସେଠାରେ ଜଣେ ନିମନ୍ତ୍ରିତ ଅତିଥି ହେଉଥିଲି ।

ନବରଙ୍ଗପୁର ବୋର୍ଡ ହାଇସ୍କୁଲରେ, ମୁଁ ନାଁ ଲେଖାଇବା ସମୟରେ ମୋତେ ବାରବର୍ଷ ହୋଇ ଥିଲା । ମୋର ଶିକ୍ଷକମାନେ ଆଦିବାସୀ ଖ୍ରୀଷ୍ଟିଆନ, ଓଡ଼ିଆ, ତେଲୁଗୁ ଭାଷା ଭାଷି ଥିଲେ । ସେମାନେ ଇଂରାଜି ଭାଷାରେ ପଢ଼ାଇବାକୁ ସୁବିଧା ମଣୁଥିଲେ । କାରଣ ପ୍ରାୟ ଅଧେ ଛାତ୍ର ତେଲୁଗୁ ଭାଷାଭାଷି ଥିଲେ ଓ ଓଡ଼ିଆ ଭାଷାର ପାଠ୍ୟପୁସ୍ତକ ବ୍ୟାପକ ଭାବରେ ବଜାରରେ ମିଳୁନଥିଲା । ଅଧିକାଂଶ ପୁସ୍ତକ ଯଥା, ସ୍ୱାସ୍ଥ୍ୟରକ୍ଷା, ବିଜ୍ଞାନ, ଭୂଗୋଳ, ଇତିହାସ ଇତ୍ୟାଦି ଇଂରାଜିରେ ପଢ଼ାପଢ଼ି କରିବା ଓ ଲେଖାଲେଖି କରିବାକୁ ମୁଁ ବାଧ୍ୟ ହୋଇଥିଲି । ଏହି ସମୟରେ ମୁଁ ତେଲୁଗୁ ଭାଷା ଓ ସଂସ୍କୃତିର ସଂସ୍ପର୍ଶରେ ଆସିଥିଲି ଓ ଭାଷା ବୁଝିବାକୁ ଚେଷ୍ଟା କରିଥିଲି ।

କୋରାପୁଟର ବିଭିନ୍ନ ଆଦିବାସୀ ସଂପ୍ରଦାୟ ନିଜନିଜ ଭାଷା ଓ ଚଳଣିର ସ୍ୱାତନ୍ତ୍ର୍ୟ ରଖୁଥିଲେ । କେବଳ ପରଜା ଜାତିର ଲୋକେ ସାଧାରଣ ଶିକ୍ଷିତ ଓଡ଼ିଆ ଓ ତେଲୁଗୁ-ମାନଙ୍କ ସଂପର୍କରେ ଆସୁଥିଲେ । ଚାକିରୀ କରିବାକୁ, ରେଜା କାମ କରିବାକୁ ମନ ବଳାଉଥିଲେ । ଯେଉଁ ଆଦିବାସୀମାନେ ଖ୍ରୀଷ୍ଟଧର୍ମୀ ଥିଲେ, ସେମାନେ ଆଚାରବ୍ୟବହାରରେ ଯଥେଷ୍ଟ ମାର୍ଜିତ, ପରିଷ୍କାର ପରିଚ୍ଛନ୍ନ ଓ ଆଧୁନିକ ଥିଲେ । ଓଡ଼ିଆ ଭାଷାରେ ଲେଖାପଢ଼ା କରି ଚାକିରୀବାକିରୀ କରୁଥିଲେ । ଏ ସଂପ୍ରଦାୟର ମହିଳାମାନେ ମୁଖ୍ୟତଃ ଶିକ୍ଷୟିତ୍ରୀ ଓ ସେବିକା ଚାକିରୀ ପାଇଁ ଆକୃଷ୍ଟ ହେଉଥିଲେ । ସେତେବେଳେ ବର୍ତ୍ତମାନର "ଦେଶୀୟ ଭାଷା" କେବଳ ଅଳ୍ପ ସଂଖ୍ୟକ ଲୋକେ ମୌଖିକ ବ୍ୟବହାର କରୁଥିଲେ । ଲିଖିତ ଭାବରେ ଏହାର ପ୍ରଚାର ମୋଟେ ଦେଖା ଯାଉ ନଥିଲା । ଦେଶୀୟ ଭାଷା, ସମ୍ବଲପୁରୀ ଭାଷାର ଅତି ନିକଟତର ଥିବାରୁ ମୋତେ ସେ ବୟସରେ ମଧ୍ୟ କୋରାପୁଟର ଆଦିବାସୀମାନେ ମୋ ନିଜ ଗାଁର ଲୋକପରି ଲାଗୁଥିଲେ । ଭାବ ବିନିମୟରେ କୌଣସି ଅସୁବିଧା ହେଉନଥିଲା ।

ସ୍ୱଚ୍ଛନ୍ଦରେ ମୁଁ ଯୁବକଯୁବତୀମାନଙ୍କ ସହିତ ମିଶି ପାରୁଥିଲି। ମୋ ଅଜାଣତରେ, ଏ ବୟସରେ ମୋର ନାରୀ ଜାତି ପ୍ରତି ଯଥେଷ୍ଟ ସମ୍ମାନବୋଧ ଓ ଉଦାରତା ଆସିଥିଲା। ବୋଧହୁଏ, ପରବର୍ତ୍ତୀ ଜୀବନରେ ଏହା ମୋର ଚରିତ୍ରଗଠନରେ ସାହାଯ୍ୟ କରିଛି।

୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନ ଓ ୧୯୪୫ ମସିହା ପର୍ଯ୍ୟନ୍ତ ଦ୍ୱିତୀୟ ମହାସମରର ପ୍ରଭାବ ଯୋଗୁଁ ମୋ ବାପାଙ୍କପରି ଅଫିସରମାନେ ଖୁବ୍ କୌଶଳରେ ଶାସନ ଚଳାଉଥିଲେ। ସମସ୍ତେ ପୁରାପୁରି ସରକାରୀ ଗୋଲାମ ନଥିଲେ। ଏମାନେ ଅନ୍ତରରେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସମ୍ମାନ ଜଣାଉଥିଲେ। ମୋ ବାପା କୋରାପୁଟ ଯିବା ବେଳକୁ ଲକ୍ଷ୍ମଣ ନାୟକ ଫାଶୀ ପାଇ ସାରିଥିଲେ। ବାପା ଗପ କହିବା ଛଳରେ ଆମ ଭାଇଭଉଣୀଙ୍କ ଆଗରେ ତାଙ୍କ ସଂଗ୍ରାମୀ ଜୀବନକଥା ଶୁଣେଇଥିଲେ। ରାଧାକୃଷ୍ଣ ବିଶ୍ୱାସରାୟ ଓ ସଦାଶିବ ତ୍ରିପାଠୀଙ୍କ ପରି ନେତାଙ୍କୁ ମୋ ବାପା ଯଥାମାନ୍ୟ ସମ୍ମାନ ଦେଇ ଅନ୍ତରଙ୍ଗ ହୋଇପାରିଥିଲେ। ନବରଙ୍ଗପୁରର ଶିକ୍ଷକ ଓ ଅଫିସରମାନଙ୍କ ସଂପର୍କ ଯଥେଷ୍ଟ ଭଲଥିଲା। ସ୍କୁଲର ସହପାଠୀ ଭାବରେ ସଦାଶିବ ତ୍ରିପାଠୀଙ୍କ ଦୁଇଜଣ ପୁତ୍ର ମୋର ବନ୍ଧୁଥିଲେ। ରାମକୃଷ୍ଣ ସାମନ୍ତରାୟ, ଏ ବିରଭଦ୍ରା ସ୍ୱାମୀ, ଗଦାଧର ପାଳ ପରି ଅନେକ ବନ୍ଧୁଙ୍କ ସହିତ ଅନେକ ଦୁରୂହ କାର୍ଯ୍ୟକରିବାର ସାହସ ମୋତେ ମିଳିଥିଲା। ରାମକୃଷ୍ଣଙ୍କ ଘରେ ଫୋଲ୍ଡିଂ କ୍ୟାମେରାରେ ଫଟୋ ଉଠାଇବା ଓ ତାକୁ ପ୍ରିଣ୍ଟ କରିବାର କୌଶଳ ଉପରେ ବହୁ ପରୀକ୍ଷା ନିରୀକ୍ଷା କରିବାର ସୁଯୋଗ ନବମଶ୍ରେଣୀରେ ହିଁ ମୋତେ ନବରଙ୍ଗପୁରରେ ପ୍ରଥମେ ମିଳିଥିଲା।

ସପ୍ତମ ଶ୍ରେଣୀରେ ଛାତ୍ରଥିବା ସମୟରେ ମୁଁ ବାପାଙ୍କ ସହିତ ଜୟପୁର ମହାରାଜା ଶ୍ରୀ ବିକ୍ରମଦେବ ବର୍ମାଙ୍କ ସହିତ ପ୍ରଥମେ ତାଙ୍କ ଉଆସରେ ସାକ୍ଷାତ କରିଥିଲି। ଏହା ପୂର୍ବରୁ ପୁରୀର ଗଜପତି ମହାରାଜା ଶ୍ରୀରାମଚନ୍ଦ୍ର ଦେବଙ୍କୁ ତାଙ୍କ ପୁରୀ ଉଆସରେ ଭେଟିଥିଲି ଅନେକ ପାତ୍ରମନ୍ତ୍ରୀଙ୍କ ସହିତ। ଗଜପତି ମହାରାଜା ମୋତେ ଯଥେଷ୍ଟ ଗମ୍ଭୀର ଓ ରାଜକୀୟ ମନେ ହୋଇଥିଲେ। ସେଥିପାଇଁ ବାପା ବୋଧହୁଏ ମୋତେ ଜୟପୁର ରାଜାଙ୍କୁ ସାକ୍ଷାତ କରିବାକୁ ନେଇ ଯାଇଥିଲେ। ଜୟପୁର ମହାରାଜାଙ୍କ ଉଆସ। ତା'ର ମୁଖ୍ୟ ଫାଟକ, ଦରବାର ପ୍ରକୋଷ୍ଠ, ପାଖରେ ଥିବା ସଂଗ୍ରହାଳୟ ଗୋଟିଏ ପରିସର ମଧ୍ୟରେ ଥିଲା। ମହାରାଜା କିନ୍ତୁ ଯେଉଁ ଘରେ ରହୁଥିଲେ, ତାହା ରାଣୀ ଉଆସ ପାଖରେ ଗୋଟିଏ ଛୋଟ ପୁରୁଣାକାଳିଆ ଘର। ଘରଟି ଏତେ ଛୋଟ ଯେ ଆଗନ୍ତୁକ ବିଶ୍ୱାସ କରିପାରିବ ନାହିଁ। ଗୋଟିଏ ଠାକୁର ଘର। ଗୋଟିଏ ରହିବା କୋଠରୀ। ଗୋଟିଏ ଲାଇବ୍ରେରୀ ଘର, ତାକୁ ଲାଗି ବୈଠକ ଘର। ଆମେ ବାପାଙ୍କ ସଂଗେ ବୈଠକଘରେ ଅପେକ୍ଷା କରି ରହିଲୁ। ସାଧାରଣ କୋଠରୀଟିଏ। ମହାରାଜା ପୂଜାରେ ବସିଥିଲେ ବୋଲି ଛାଟିଆ

କହିଦେଇଗଲେ। ତା'ପରେ ଜଣେ ବ୍ରାହ୍ମଣ ଗୋଟାଏ ବଡ଼ ଥାଳିରେ ରସଗୋଲା, ଗୋଲାପଜାମୁ ଥାଳିଆଏ ଓ ପାଣିଗ୍ଲାସ ରଖିଗଲେ।

ମୁଁ ଓ ବାପା ପରସ୍ପରକୁ ଅନେଇଲୁ। ବାପା ହସିଦେଇ କହିଲେ, "ଚିନ୍ତା କରନା। ହାତ ଲଗେଇଦେ।" ମୋତେ କିନ୍ତୁ ଭୀଷଣ ଲଜ୍ଜା ଲାଗିଲା। ମୋ ଭଳିଆ ପିଲାଟେ ପାଇଁ ଏତେ ଭବ୍ୟ ଆୟୋଜନ। ସେ ପୁଣି ଜଣେ ରାଜାଙ୍କ ଉଆସରେ। ମୁଁ ମୁଣ୍ଡପୋତି ହାତଜାକି ବସି ରହିଲି। କିଛି ସମୟପରେ ପରଦାଉଠେଇ ଜଣେ ବ୍ୟକ୍ତି ଭିତରଘରୁ ବୈଠକ ଘରେ ପ୍ରବେଶ କଲେ। ଛୋଟ ଲୋକଟିଏ। ପାଟ ଯୋଡ଼ା ଧୋତି ଓ ଖାଲିଦେହରେ ଚଦରଟିଏ ପଡ଼ିଛି। ପଶୁ ପଶୁ କଥା କହିବା ଆରମ୍ଭ କରିଦେଲେ। "ନମସ୍କାର ପୂଜାରୀ ସାହେବ, କେମିତି ଆମେ ମନେ ପଡିଗଲୁ।" ବାପା ଓ ମୁଁ ସେତେବେଳେ ଜାଗାରୁ ଉଠି ଠିଆ ହୋଇ ସାରିଥିଲୁ। ବାପା ସଂଭ୍ରମରେ ହାତଯୋଡି ନଇଁପଡି ନମସ୍କାର ଜଣେଇଲେ। ମୋତେ ମଧ୍ୟ ଇସାରା କରି ପ୍ରଣାମ ଜଣାଇବାକୁ କହିଲେ। ମୁଁ ରାଜାଙ୍କୁ ଅନେଇ ରହିଲି। ଜଣେ ପୂଜକ ବ୍ରାହ୍ମଣର ବେଶ। ମୁଣ୍ଡରେ ଚୁଟିଟିଏ ଆଉ କପାଳରେ ତିଳକ। ମୋତେ ଦେଖି ନଇଁପଡ଼ି କହିଲେ, "ତୁମେ ଜୁନିୟର ପୂଜାରୀ ନା-କେଉଁ ଶ୍ରେଣୀରେ ପଢୁଛ ?" ମୋ ମୁହଁରୁ ସପ୍ତମଶ୍ରେଣୀ ଶୁଣିବା ଆଗରୁ ପୁଣି କହିଲେ, "ତମେ ଏଯାଏ ଠା'ରେ ବସିନାହଁ। ହଇହୋ ତମେ ବ୍ରାହ୍ମଣ ଦେବତା ପରା। ପଇତା ପକେଇଲଣି ? ପରବା ନାହିଁ, ଗୋଟାଏ କଥା ମନେରଖିଥିବ। ଥରେ ଠା'ରେ ବସିଲେ ବ୍ରାହ୍ମଣ ଦେବତାଙ୍କ ନାହି ଲେଉଟେ, ପଇତା ଛିଡ଼େ, ପିଢ଼ା ଫାଟେ-ତେବେ ଯାଇ ବ୍ରାହ୍ମଣ ଠା'ରୁ ଉଠେ।" ତା'ପରେ ଗୋଟାଏ ମନଖୋଲା ହସ। ମୁଁ ଯେତିକି ସଂକୁଚିତ ହେଲି, ସେତିକି ଆଶ୍ଚର୍ଯ୍ୟ ହେଲି ଏ ମହାରାଜାଙ୍କ ପରିଚୟ ନିଜମୁହଁରୁ ଶୁଣି। ବାପାଙ୍କ ସଂଗରେ କଥାଟା ଆମ ସଂସ୍କୃତି ଓ ସାହିତ୍ୟ ଆଡ଼କୁ ଗଡିଗଲା। ମୋ ପାଇଁ ଅଲଗା ପ୍ଲେଟ ଆସିଲା। ମହାରାଜା ନିଜେ ଚାମଚ୍‌ରେ ଦୁଇଟି ଲେଖାଏଁ ରସଗୋଲା ଓ ଗୋଲାପଜାମୁ ପରସି ଦେଲେ। ଫେରିବାବେଳେ ନିଜ ରଚିତ କାବ୍ୟ ପୁସ୍ତକଟିଏ ବାପାଙ୍କୁ ଉପହାର ଦେଲେ। ଏମିତି ଉଦାର, ପଣ୍ଡିତ, ସାଧାରଣ ବ୍ୟବହାର କରୁଥିବା ମହାରାଜାଟିଏ ମୁଁ ଆଉ ଜୀବନରେ ଦେଖିବାକୁ ପାଇଲିନାହିଁ। ତାଙ୍କ ଗେଷ୍ଟ୍‌ହାଉସର ତତ୍ତ୍ୱାବଧାରକ, ଲଣ୍ଡନରୁ ଟ୍ରେନିଂପ୍ରାପ୍ତ ବାବର୍ଚ୍ଚି/ ବଟଲର ପାଇଡ଼ାତେଲିଙ୍କ ଆତିଥ୍ୟରେ ମୁଁ ଏହାପୂର୍ବରୁ "ୟେସ ମାଷ୍ଟର, ୟେସ ମାଷ୍ଟର" ସମ୍ବୋଧନରେ କଣ୍ଟିନେଣ୍ଟାଲ ଲଞ୍ଚ, ବ୍ରେକଫାଷ୍ଟ ଓ ଡିନର ଚାରି ପାଞ୍ଚଥର ଖାଇବାର ସୌଭାଗ୍ୟ ପାଇସାରିଥିଲି। ଏମିତି ଜଣେ ଓଡ଼ିଆ ମହାରାଜା ୧୯୪୦ ମସିହାଯାଏ ପାଇଡ଼ାତେଲି ଓ ତାଙ୍କ ଗୁଣକୀର୍ତ୍ତନ କରିବା ମୁଁ ନିଜେ ଶୁଣିଛି। ମହାରାଜାଙ୍କ ଜୀବଦଶା ପରେ ମଧ୍ୟ ଅତିଥିଶାଳା ପାଇଡ଼ାତେଲି ଚଳେଇ ରଖିଥିଲେ।

କୋରାପୁଟର ପାହାଡ଼, ପର୍ବତର ଘାଟି ରାସ୍ତାରେ କୁହୁଡ଼ି ଓ ମେଘ ତଳେ ଉପରେ ଓ ଭିତରେ ଅଙ୍କାବଙ୍କା ଭାବରେ ଗାଡ଼ି ଧୀରେ ଧୀରେ ଗଡ଼ିବା ସମୟରେ ମୋତେ ସେ

ସମୟରେ ମଧ୍ୟ ଏକ ସାଇକାଡେଲିକ ଆନନ୍ଦ ମିଳୁଥିଲା । ମୁଁ ଘଣ୍ଟା ଘଣ୍ଟା ନୀରବ ରହି ଏହା ଉପଭୋଗ କରୁଥିଲି । ଏ ଚୁପ୍‌ରହିବା ସମୟରେ ମୁଁ ଯଥେଷ୍ଟ ସୃଜନଶୀଳ ଚିନ୍ତାଦ୍ୱାରା ଆକ୍ରାନ୍ତ ହେଉଥିଲି । ଛବି ଅଙ୍କାର ରଙ୍ଗବିନ୍ୟାସଠାରୁ, କାହାଣୀ ମଧ୍ୟରେ ବିଭିନ୍ନ ଘଟଣା ଓ ଚରିତ୍ରମାନଙ୍କ ଚିତ୍ରଣ ମୋ ଅବଚେତନ ମନରେ ହେଇଯାଉଥିଲା । ସୁଙ୍କିରୁ କୋରାପୁଟ ଓ ଜୟପୁର, ଜୟପୁରରୁ ନବରଙ୍ଗପୁର ଓ ରାୟଗଡ଼ା ପର୍ଯ୍ୟନ୍ତ ପ୍ରତିଦିନ ବସ୍ ଚଳାଚଳ କରୁଥିଲା । ଏ ବସ୍‌ମାନଙ୍କର ସମୟର ତାଡ଼ନା କିଛି ନଥିଲା । କେତୋଟି ବସ୍ ପେଟ୍ରୋଲରେ ଚାଲୁଥିଲେ ମଧ୍ୟ 'ପେଟ୍ରୋଲ ପମ୍ପ୍'ର ପ୍ରଚଳନ ସେତେ ବେଳେ ନଥିଲା । ପେଟ୍ରୋଲ ସିଲ୍‌କରା ଟିଣରେ ଦୋକାନମାନଙ୍କରେ ମିଳୁଥିଲା । ପଶ୍ଚିମ ଓଡ଼ିଶା ଓ ଦକ୍ଷିଣ ଓଡ଼ିଶାରେ ସେତେବେଳେ ଆଉ ଗୋଟିଏ ପ୍ରକାର ଇନ୍ଧନର ବ୍ୟବହାର ହେଉଥିଲା । ତାହା ହେଉଛି ବାଷ୍ପଚାଳିତ ବସ । ଏ ବାଷ୍ପ ଗୋଟିଏ କୋଇଲା ଡ୍ରାବଲ ଉପରେ ପାଣିଟାଙ୍କି ବସାଇ । ସେ ପାଣିକୁ ବାଷ୍ପରେ ପରିଣତ କରି ନଳୀଦ୍ୱାରା ରେଳର ଇଂଜିନ ଚଲାଇବାର ପଦ୍ଧତି ପ୍ରୟୋଗ କରାହେଉଥିଲା । ଏ କୋଇଲା ଓ ପାଣିଟାଙ୍କି ବସର ପଛପଟେ ଯେଉଁଠି ଯାତ୍ରୀମାନେ ବସନ୍ତି ସେଠାରୁ କିଛିସ୍ଥାନ ଛାଡ଼ି ଯୋଡ଼ା ଯାଇଥିଲା । ଜଣେ ବସ୍‌ର କ୍ଲିନର ବଡି ଭୋରରୁ କୋଇଲା ପୁରାଇ, ଟାଙ୍କିପୁରା ପାଣିକୁ ଗରମ କରିବାକୁ କମାରଶାଳର ପଙ୍ଖାପରି ଏକ ଯନ୍ତ୍ରକୁ ବୁଲାଇ ବୁଲାଇ କୋଇଲାର ଉତ୍ତାପ, ପାଣିର ବାଷ୍ପିକରଣ ଦ୍ୱାରା ଚାପ ସୃଷ୍ଟି କରୁଥିଲେ । ପ୍ରାୟ ଦୁଇଘଣ୍ଟା ପରେ ଏ ବାଷ୍ପ ଗାଡ଼ିର ଇଂଜିନକୁ ଉପଯୁକ୍ତ ଘୂର୍ଣ୍ଣନ ଦେବାକୁ ସକ୍ଷମ ହେଉଥିଲା । ତା'ପରେ ଦିନଯାକ ଧୀରମନ୍ଥର ଗତିରେ ବସ ଚାଲୁ ରହୁଥିଲା । ସଂଧ୍ୟା ପର୍ଯ୍ୟନ୍ତ । ଲରମ୍ବାରୁ, ବରଗଡ଼, ବରଗଡ଼ରୁ ବଲାଙ୍ଗିର, ବଲାଙ୍ଗିରରୁ ଟିଟିଲାଗଡ଼, ଟିଟିଲାଗଡ଼ରୁ ପାର୍ବତୀପୁରମ, ପାର୍ବତୀପୁରମ୍‌ରୁ କୋରାପୁଟ ଅଟକି ଅଟକି ଯିବା ପାଇଁ ଦେଢ଼ଦିନ/ ଦୁଇଦିନ ସମୟ ଲାଗୁଥିଲା । ଏ ରାସ୍ତାରେ ଏକା ଯିବା ଆସିବା କରିବାକୁ ମୋ ବାପା ମୋତେ ଅନୁମତି ଦେଇଥିଲେ । ମୋର ଯାଯାବର ମନଟି ମୋତେ ବେଳେବେଳେ ଲରମ୍ବାରୁ ସମ୍ବଲପୁର, ରାୟଗଡ଼ (ମଧ୍ୟପ୍ରଦେଶ) ଦେଇ ରାୟପୁର ଓ ସେଠାରୁ ପାର୍ବତୀପୁରମ୍ ଯାଏ ରେଳରେ ଏକାଏକା ଯିବାର ଦୁଃସାହସିକ କାର୍ଯ୍ୟ କରାଇ ଦେଉଥିଲା । ମୁଁ ଜାଣେ ନାହିଁ, ମୋ ପରି ଜଣେ ୧୨/୧୩ ବର୍ଷର କିଶୋରକୁ ଆଜିଯାଏ ଏପରି ଏକ ସ୍ୱାଧୀନତା ଉପଭୋଗ କରିବାର ସୁଯୋଗ କୌଣସି ଆଧୁନିକ ଶିକ୍ଷିତ ବାପ ମା' ଦେବାକୁ ପ୍ରସ୍ତୁତ ହେଉଛନ୍ତି କି ନାହିଁ ?

**କୋରାପୁଟରୁ ବିଦାୟ - ଅଭୁଲା ସ୍ମୃତି**

୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖରେ ଭାରତ ସ୍ୱାଧୀନତା ପାଇବାର ସୁସମାଚାର ପ୍ରଥମେ ବାପା ଆମ ଘରର ଭଲ୍‌ଭ ରେଡ଼ିଓରୁ ଶୁଣି ନିଜ ଅଫିସର କର୍ମଚାରୀ

ମାନଙ୍କୁ ଘରେଘରେ ପ୍ରଚାର କରିବାକୁ କହିଥିଲେ। ସେତେବେଳେ ନବରଙ୍ଗପୁରକୁ ଦୁଇତିନି ଦିନର ପୁରୁଣା ଖବରକାଗଜ ବସ୍‌ର ଅବ୍ୟବସ୍ଥା ଯୋଗୁଁ ପହଞ୍ଚି ପାରୁନଥିଲା। ବେତାର ଯନ୍ତ୍ରର ସାହାଯ୍ୟ କେବଳ ସଦର ମହକୁମାରେ ଉଚ୍ଚପଦସ୍ଥ ଅଫିସରମାନେ ପାଇ ପାରୁଥିଲେ। ତେଣୁ ସାତଦିନ ଆଗରୁ କେତେଗୁଡ଼ିଏ ଅନୌପଚାରିକ ସଭାରେ ଏ ଦିବସଟିକୁ ପାଳନ କରିବାର କାର୍ଯ୍ୟସୂଚୀର ପ୍ରସ୍ତୁତି ଏସ୍.ଏ. ଏଜେଣ୍ଟଙ୍କ ଅଫିସରେହିଁ କରାଯାଇଥିଲା। ଏଥିରେ ନବରଙ୍ଗପୁରର ମାନ୍ୟଗଣ୍ୟ ବ୍ୟକ୍ତି, ଓକିଲ, ବ୍ୟବସାୟୀ ଓ ଖେଳୁଆଡ଼ମାନେ ଯୋଗ ଦେଇଥିଲେ। ସାତଦିନ ଯାଏ ସହରସାରା ବାଟରେ ହାଟରେ, ଅଫିସ ଓ ସ୍କୁଲମାନଙ୍କରେ ଏକ ରୋମାଞ୍ଚକାରୀ ଅନୁଭୂତିର ଢ଼େଉ ଖେଳିଯାଇଥିଲା। ସହରରେ ସେତେବେଳେ ବିଜୁଳି ସରବରାହ ଓ ପାଣିକଳର ବ୍ୟବସ୍ଥା ନଥିଲା। ସବୁ କାଗାରେ କିରୋସିନର ଲଣ୍ଠନ, ଲେମ୍ପ, ଗେସ୍ ଲାଇଟ ଓ ପେଟ୍ରୋମାକ୍ସ ଲାଇଟ ବ୍ୟବହୃତ ହେଉଥିଲା। କେବଳ ତେଲ ଓ ଧାନ ମିଲ୍ ମାନଙ୍କରେ ଜେନେରେଟର ଚ଼ଳାଇ ବିଜୁଳି ବଲ୍‌ବ ଓ ଉଚ୍ଚ ସ୍ୱରର ଡ଼ାକବାକି ଯନ୍ତ୍ର ବ୍ୟବହୃତ ହେଉଥିଲା। ରାସ୍ତାଘାଟରେ ତୋରଣ ସଜାଇବା ପାଇଁ କାଗଜ ଅପେକ୍ଷା ସାଲୁକନା ଓ ଦେବଦାରୁ ଓ ଆମ୍ବଗଛ ପତ୍ର ବ୍ୟବହାର ହେଉଥିଲା। ଆମ ସ୍କୁଲ ପ୍ରଧାନ ଶିକ୍ଷକ ନବୀନ କୁମାର ପାତ୍ରଙ୍କ ନିର୍ଦ୍ଦେଶନାରେ ଅନ୍ୟାନ୍ୟ ଶିକ୍ଷକମାନଙ୍କ ସହଯୋଗରେ ଆମେ ପିଲାମାନେ ସ୍କୁଲ ସମ୍ମୁଖରେ ଥିବା ପଡିଆକୁ ପତାକା ଉତ୍ତୋଳନ ଓ ଜାତୀୟ ସାମରିକ ସମ୍ମାନ ଦେବାର ମୁଖ୍ୟସ୍ଥଳ ଭାବରେ ସଜାଇଥିଲୁ। ସକାଳୁ ଶିକ୍ଷକମାନଙ୍କ ସହଯୋଗରେ ତ୍ରିରଙ୍ଗା ପତାକାଧରି ପ୍ରଭାତଫେରି ଯିବାକୁ ନିର୍ଦ୍ଦେଶ ଦିଆଯାଇଥିଲା। ଧଳା ଖଦଡ଼ କନାର ପେଣ୍ଟ ଓ ସାର୍ଟ ଓ ଗାନ୍ଧୀଟୋପି ପିନ୍ଧି ପ୍ରଭାତ ଫେରିରେ ଯିବାକୁ କୁହାଯାଇଥିଲା। ଯେଉଁ ସ୍ଲୋଗାନ ଦେବାକୁ କୁହାଯାଇଥିଲା, ତାହା ହେଉଛି, 'ବନ୍ଦେ ମାତରଂ', 'ଭାରତ ମାତାକୀ ଜୟ', 'ମହାତ୍ମା ଗାନ୍ଧୀକୀ ଜୟ', 'ଜବାହାର ଲାଲ ନେହେରୁ କି ଜୟ', 'ସ୍ୱାଧୀନ ଭାରତ୍‌କୀ ଜୟ' ଇତ୍ୟାଦି।

ସାରା ସହରବାସିନ୍ଦାଙ୍କ ପାଇଁ ଚ଼ଉଦ ଅଗଷ୍ଟ ରାତି ବାରଟା ପରେପରେ ସହର ଉପକଣ୍ଠର ଭେଙ୍କଟେଶ୍ୱର ରାଇସ୍ ମିଲ୍‌ର ସାଇରନ୍ ବାଜିଉଠିବା ସହିତ ଏକୋଇଶଟି ନଡିଆ ବାଣ ଫୁଟାଇବାର ବ୍ୟବସ୍ଥା କରିଥିଲେ ମିଲ ମାଲିକ। ସେତେବେଳେ ବଜାରରେ ମିଳୁଥିବା ଓଡ଼ିଆ ଓ ତେଲୁଗୁ ଭାଷାର ଦେଶାତ୍ମବୋଧକ ଗ୍ରାମୋଫୋନ୍ ରେକର୍ଡ ଗୁଡ଼ିକୁ ରାତିସାରା ବଜାଇ ଶୁଣାଇବାକୁ ମିଲ୍‌ମାଲିକ ମାନେ ଦାୟିତ୍ୱ ନେଇଥିଲେ।

ବଡ଼ି ଭୋରରୁ ଦେବାଳୟ ମାନଙ୍କରେ ଶଙ୍ଖ ଓ ଘଣ୍ଟଧ୍ୱନି କରି ଦେବବନ୍ଦନା ଓ ପ୍ରାର୍ଥନା କରିବାକୁ ସମସ୍ତ ଉପାସନା କ୍ଷେତ୍ରର ପୂଜକମାନଙ୍କୁ ଅନୁରୋଧ କରାଯାଇଥିଲା। ସହରରେ ଯେଉଁ କେତୋଟି ଭଲ୍‌ଭ ରେଡିଓ ଥିଲା, ରାତି ବାରଟା ପୂର୍ବରୁ ସେଠାରେ

ଲୋକଙ୍କ ସମାଗମ ହୋଇଥିଲା । ସାଧାରଣ ଜନତା ଓ ବିଶେଷରେ ଗୃହିଣୀମାନେ ଭୋରରୁ ନିତ୍ୟକର୍ମ ସାରି ଘର ଆଗରେ ଝୋଟି, କଳସ ଓ ଦୀପ ବସାଇ ସ୍ୱାଧୀନତାର ସକାଳକୁ ସ୍ୱାଗତ ଜଣାଇଥିଲେ । ପ୍ରାୟ ଆଠଟା ବେଳେ ହାଇସ୍କୁଲ ପଡ଼ିଆର ମଧ୍ୟଭାଗରେ ପୋଲିସ ଓ ସ୍ୱେଚ୍ଛାସେବୀ ଛାତ୍ରଜନତା ଗହଣରେ ୟୁନିୟନ ଜାକ୍‌କୁ ଧୀରେ ଧୀରେ ଓହ୍ଲାଇ, ତ୍ରିରଙ୍ଗା ପତାକାକୁ ପ୍ରାୟ ଦଶହଜାର ଜନତାଙ୍କ ଗହଣରେ ମୋ ବାପା ଏସ୍.ଏ. ଏଜେଣ୍ଟ ଭାବରେ ଉତ୍ତୋଳନ କରିଥିଲେ ଓ ସାମରିକ ଅଭିବାଦନ ଜଣାଇଥିଲେ । ନବରଙ୍ଗପୁରର ସମସ୍ତ ସ୍ୱାଧୀନତା ସଂଗ୍ରାମୀ କଟକଠାରେ ଉପସ୍ଥିତଥିବା ହେତୁ, ଶାସନକର୍ତ୍ତା ଭାବରେ ମୋ ବାପାଙ୍କୁ ଏ ଦାୟିତ୍ୱ ଦିଆଯାଇଥିଲା । ସାଧାରଣ ସରକାରୀ ଅଫିସରମାନଙ୍କୁ ସାହେବି ପୋଷାକ ପରିତ୍ୟାଗ କରି ଭାରତୀୟ ପୋଷାକରେ, ଯଥା : ଧୋତି, କୁର୍ତ୍ତା, ନେହେରୁ ଜ୍ୟାକେଟ୍, ଚପକନ୍, ଶେରୱାନି, ଭାରତୀୟ ପଗଡି ଓ ଟୋପି ପିନ୍ଧି ଏ ଉତ୍ସବରେ ଯୋଗଦେବାର ଦେଖା ଯାଇଥିଲା । ପତାକା ଉତ୍ତୋଳନ ପରେ ସ୍କୁଲପିଲାମାନଙ୍କୁ ମିଷ୍ଟାନ୍ନ ବଣ୍ଟନ କରାଯାଇଥିଲା । ସହରର ନାଟ ଓ କୀର୍ତ୍ତନଦଳ ବିଭିନ୍ନ ମନ୍ଦିର ପରିକ୍ରମା କରିଥିଲେ ।

ଦିନ ସାଢ଼େ ତିନିଟା ସମୟରେ ହାଇସ୍କୁଲ ପଡ଼ିଆରେ ଏକ କୌତୁକ ପୋଷାକର ଫୁଟବଲ ଖେଳର ଆୟୋଜନ ହୋଇଥିଲା-ଅଫିସର ଓ ଜନସାଧାରଣଙ୍କ ମଧ୍ୟରେ । ସାରା ଓଡ଼ିଶାରେ ସେତେବେଳେ ଫୁଟବଲ ଖେଳହିଁ ଲୋକପ୍ରିୟ ଖେଳଥିଲା । ମୋ ବାପା ଜଣେ ସରକାରୀ ଅଫିସର ଭାବରେ ଓ ପୁରାତନ ଖେଳାଳୀ ଭାବରେ ଦଳର କ୍ୟାପଟେନ ଥିଲେ । ଛୟାଳିଶ ବର୍ଷ ବୟସରେ ଭଲ ଖେଳି ଦଳତରଫରୁ ଗୋଲ ଦେଇ ଦଳକୁ ଜିତାଇଥିଲେ । ସନ୍ଧ୍ୟା ପରେ ସରକାରୀ ଅନୁଷ୍ଠାନ ଓ ବ୍ୟବସାୟୀମାନେ ନିଜନିଜ ଅଫିସ ଓ ଦୋକାନକୁ ଦୀପ ଓ ମହମବତୀ ଆଲୋକରେ ସଜେଇ ଦେଇଥିଲେ । ଅନେକ ଅଫିସ, କ୍ଲବ ଓ ଅନୁଷ୍ଠାନରେ ଭୋଜିର ଆୟୋଜନ ହୋଇଥିଲା ।

୧୯୪୭ ମସିହାର ସ୍ୱାଧୀନତା ଦିବସପରେ ବାପାଙ୍କର ପଦୋନ୍ନତି ସହିତ ବଦଳି ସମ୍ବାଦ ପହଞ୍ଚି ଯାଇଥିଲା । ବିଦାୟ ନେବାପୂର୍ବରୁ ସରକାରଙ୍କୁ ଶେଷ ଗୋପନୀୟ ରିପୋର୍ଟ ପଠାଇବା ସମୟରେ ଆମ ଘର ଅଫିସ୍‌ରେ ଷ୍ଟେନୋଙ୍କୁ ଯେଉଁ ଡିକ୍ଟେସନ ଦେଇଥିଲେ ତାହା ଶୁଣି ମୁଁ ଯେତିକି ବୁଝିଲି, ସେ ନିଜତରଫରୁ କୋଟିୟା ଗ୍ରାମ୍ୟପୁଞ୍ଜର ରାଜନୈତିକ ସମସ୍ୟା ଉପରେ ସରକାରଙ୍କୁ ସତର୍କ କରାଇ ଦେଇଥିଲେ । ଅଳ୍ପ ଦିନପରେ ସପରିବାର ବାପା କୋରାପୁଟ ଛାଡ଼ିଲେ । ବାପା ପ୍ରଥମେ ଢ଼େଙ୍କାନାଳର ଏ.ଡି.ଏମ୍ ଭାବରେ ଅବସ୍ଥାପିତ ହୋଇଥିଲେ । ତେଣୁ ନିଜ ଗାଡିରେ ସାଲୁର ଠାରେ ଆନ୍ଧ୍ରପ୍ରଦେଶ (ମାନ୍ଦ୍ରାଜ ପ୍ରେସିଡେନ୍‌ସି)ରେ ପ୍ରବେଶ କରି ପଲାସା, ବ୍ରହ୍ମପୁର, ଖଲ୍ଲିକୋଟ, ରମ୍ଭା, ଚିଲିକା କୂଳଦେଇ ଖୋର୍ଦ୍ଧାରୁ ରାଜଧାନୀ କଟକରେ ଆସି ପହଞ୍ଚିଲେ । କଟକରେ ପହଞ୍ଚିବା ବେଳକୁ, ବଦଳି ନିର୍ଦ୍ଦେଶ ବଦଳିଯାଇ ଭବାନୀପାଟଣାର ଏ.ଡି.ଏମ୍. ହୋଇ ଯାଇଥିଲା । ବାପା ପୁଣି କଟକରୁ

ଢେଙ୍କାନାଳ, ଅନୁଗୋଳ, ସମ୍ବଲପୁର, ବରଗଡ଼, ବଲାଙ୍ଗୀର, ଟିଟିଲାଗଡ଼ ଦେଇ ଭବାନୀପାଟଣାରେ ସପରିବାର ପହଞ୍ଚିଲେ। ସେ ମାସର ବାଟଖର୍ଚ୍ଚ ବିଲର ମୋଟା ଅଙ୍କକୁ ବିଚାରକୁ ନେଇ, ବାପାଙ୍କ ନାଁରେ ସରକାରଙ୍କୁ ଖୁଣ୍ଟ ଦେବାକୁ ନିଆଁଖୁଣ୍ଟିର ଗୋଦାବରୀଶ ମହାପାତ୍ର ଭୁଲିନଥିଲେ।

ମୁଁ ନବମଶ୍ରେଣୀର ବାର୍ଷିକ ପରୀକ୍ଷାବେଳକୁ ଲରମ୍ବା ଆବାସିକ ବିଦ୍ୟାଳୟକୁ ପ୍ରତ୍ୟାବର୍ତ୍ତନ କରିଥିଲି। ବାପା ୧୯୪୮ରେ କଳାହାଣ୍ଡିର ଏ.ଡି.ଏମ୍ ଓ ୧୯୪୯ ମସିହାରେ ମୟୁରଭଞ୍ଜର ଏ.ଡି.ଏମ୍ ଭାବରେ ଅବସ୍ଥାପିତ ହୋଇଥିଲେ। ଓଡ଼ିଶାର ଏ ମୁଣ୍ଡରୁ ସେମୁଣ୍ଡଯାଏ ବୁଲିଦେଖିବାର ମୋତେ ସୁଯୋଗ ମିଳିଲା। ମାଟ୍ରିକ ପରୀକ୍ଷା ପରେ ବାରିପଦାରେ ଖରାଛୁଟି ବିତାଇବା ଭିତରେ ଅନେକ ଐତିହାସିକ ସ୍ଥାନ, ପର୍ଯ୍ୟଟନ କ୍ଷେତ୍ର ଓ ଗୁଣିଗ୍ରାମୀ କଳାକାର ଓ ଅନ୍ୟାନ୍ୟ ବିଖ୍ୟାତ ଲୋକଙ୍କ ସହ ପରିଚୟ ହେଲା। କଲିକତା ସହରଠାରୁ ବଳରାମଗଡି, ରେମୁଣା, ଟାଟା, ଖିଚିଙ୍ଗ୍, ଶିମିଳିପାଳ ଦେଖା ହେଲା। ମୁଁ ୧୯୫୦ ମସିହାରେ ଜି.ଏମ୍. କଲେଜରେ ଆଇ.ଏସ୍.ସିର ଛାତ୍ରଥିବା ବେଳେ ବାପା ଫୁଲବାଣୀର କଲେକ୍ଟର ଭାବରେ ଅବସ୍ଥାପିତ ହେଲେ। ଫୁଲବାଣୀକୁ ସେତେବେଳେ ଦୁଇଟି ରାସ୍ତାଥିଲା। ବ୍ରହ୍ମପୁର, କଳିଙ୍ଗଘାଟି ଦେଇ ଗୋଟିଏ ରାସ୍ତା। ଅନ୍ୟଟି ସମ୍ବଲପୁର, ବରଗଡ଼, ବଲାଙ୍ଗୀର, ସୋନପୁର, ବଉଦ, ଚାରିଛକ ଦେଇ ଆଉ ଗୋଟିଏ ରାସ୍ତା। ଏ ଦୁଇରାସ୍ତାରେ ବାପାଙ୍କ ନୂଆଗାଡି ଫୋର୍ଡ ଆଠସିଲିଣ୍ଡରର ଷ୍ଟେସନ ୱାଗନରେ ବୁଲିବାର ସୌଭାଗ୍ୟ ମୋର ହୋଇଥିଲା। କୋରାପୁଟ ପରି ଫୁଲବାଣୀ ଏକ ଆଦିବାସୀବହୁଳ ଜିଲ୍ଲାଥିଲା। ଛୋଟ ସହରଟି କିନ୍ତୁ ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ବନ୍ୟଜାତ ଦ୍ରବ୍ୟ କୋରାପୁଟଠାରୁ କିଛି ଊଣା ନଥିଲା। ଏ ସହର ଭିତରେ ହଜାରହଜାର ସଂଖ୍ୟାରେ ଚନ୍ଦନଗଛ ଅଫିସରମାନଙ୍କ ବଙ୍ଗଳାର ବାଡ଼ ଭାବରେ ଲଗାଯାଇଥିଲା। ଏହାର ଚିହ୍ନବର୍ଣ୍ଣ ଏବେ ଅଛିକି ନାହିଁ ମୁଁ ଜାଣେ ନାହିଁ। କଲେକ୍ଟରଙ୍କ ଅଫିସ ସହିତ ସଂପୃକ୍ତ ଜଣେ ଇଂରେଜ ସାହେବଙ୍କ ଦ୍ୱାରା ପ୍ରଶିକ୍ଷିତ ଆଦିବାସୀ ବାବର୍ଚ୍ଚିଙ୍କ ଡାକନାମ ଖୁବ୍‌ଥିଲା। ସେ ମଧ୍ୟ ଜୟପୁରର ପାଇଡ଼ାତେଲିଙ୍କ ପରି କଣ୍ଟିନେଣ୍ଟାଲ ରୋଷେଇ କରିବାରେ ପାରଦର୍ଶିତା ଦେଖାଉଥିଲେ। ତାଙ୍କ ନାଁ ଥିଲା ରଂଗ। ଏ ବୟସରେ, ମୁଁ ଓଡ଼ିଶାର ପ୍ରତ୍ୟେକ ଜିଲ୍ଲାର ବୈଶିଷ୍ଟ୍ୟ, ଚଳଣି, ଭାଷା ଓ ପ୍ରକୃତିର ବିବିଧତା ବିଷୟରେ ଅବଗତ ହୋଇସାରିଥିଲି।

## ପୁନଶ୍ଚ କଟକ

୧୯୫୨ ମସିହା ବେଳକୁ ବାପା କଟକ ସେକ୍ରେଟେରିଏଟରେ ଯୋଗାଣ ବିଭାଗ ସଚିବ ଓ କୃଷି ନିର୍ଦ୍ଦେଶକ ଭାବରେ ଅବସ୍ଥାପିତ ହେଲେ। ମୁଁ ରେଭେନ୍‌ସା କଲେଜରେ ବି.ଏ. ଶ୍ରେଣୀରେ ନାଁ ଲେଖାଇଲି। ପାଞ୍ଚବର୍ଷପରେ ଘରେ ବାପାଙ୍କ ପାଖରେ ରହି ପଢ଼ିବାର ସୁବିଧା ପାଇଲି। ବାପା ୧୯୨୦ ମସିହାରେ ରେଭେନ୍‌ସାର ଛାତ୍ର ଥିଲେ। ସେ ସମୟରୁ

ତାଙ୍କ ଚିହ୍ନାପରିଚୟ ଅନେକବନ୍ଧୁ କଟକର ଖାସ୍ ବାସିନ୍ଦା ଥିଲେ । ମୋର ୧୯୪୨ ରୁ ୧୯୪୫ ମସିହାର ସ୍କୁଲଦିନର କେତେକ ସାଙ୍ଗ ମୋ ସହିତ ବି.ଏ. ଶ୍ରେଣୀରେ ଆସି ପଡ଼ିଲେ । ବାପା କେଣ୍ଟନମେଣ୍ଟ ରୋଡ଼ର ଏକ ନମ୍ବର କ୍ୱାଟର୍ସରେ ଗଡ଼ଗଡ଼ିଆ ଘାଟ ଓ କିଲ୍ଲାପଡ଼ିଆ ପାଖରେ ରହିଲେ । ଏଇ ସମୟରେ କଟକରେ ଏକ ସାଂସ୍କୃତିକ ନବଜାଗରଣର ସୂତ୍ରପାତ ହୋଇଥିଲା । ଏହାର ପ୍ରଭାବରେ ଆମ କଲେଜଛାତ୍ର ମାନଙ୍କ ମଧ୍ୟରେ ବୌଦ୍ଧିକ ଓ କଳାତ୍ମକ ବିକାଶ ହୋଇଥିଲା । ବାରବାଟୀ ଷ୍ଟାଡ଼ିୟମର ମୂଳଦୁଆ ଏହି ସମୟରେହିଁ ପଡିଥିଲା ।

୧୯୫୪ ମସିହାରେ ମୁଁ ବି.ଏ. ପାସ୍‌କରିବା ପରେ ମୋତେ ବାହାର ବିଶ୍ୱବିଦ୍ୟାଳୟରେ ପଡିବାର ସୁଯୋଗ ମିଳିଲା । ମୁଁ ପ୍ରୟାଗ ବିଶ୍ୱବିଦ୍ୟାଳୟରେ ଅର୍ଥନୀତିରେ ଏମ.ଏ ପଡିବାକୁ ଚାଲିଗଲି । ବାପାଙ୍କୁ ୧୯୫୫ ମସିହାରେ ବାଲେଶ୍ୱର ଜିଲ୍ଲାପାଳ ଭାବରେ ବଦଳି ହେଲା । ୧୯୫୬ ମସିହାରେ ରାଉରକେଲା ଇସ୍ପାତ କାରାଖାନାର ଡେପୁଟି ଜେନେରାଲ ମେନେଜର ଭାବରେ ୧୯୫୭ ମସିହା ପର୍ଯ୍ୟନ୍ତ ରହିବାପରେ ବାପା ଅବସର ଗ୍ରହଣ କଲେ ଓ ସମ୍ବଲପୁର ସହରରେ ନିଜେ ତିଆରି କରିଥିବା ଘରେ ଆସିରହିଲେ । ମୋର ପାଠପଢା ମଧ୍ୟ ସରିଥିଲା । ମୁଁ ଚାକିରୀ କରିବା ଅଭିପ୍ରାୟରେ କଟକ ଆସିଥିବା ସମୟରେ ୧୯୫୭ ମସିହା ଡିସେମ୍ବର ୨ ତାରିଖରେ ବାପାଙ୍କର ହୃଦ୍‌ଘାତରେ ଆକସ୍ମିକ ଦେହାନ୍ତ ହେଲା । ମୁଁ ସଂସାରର ଓ ମଣିଷ ଜୀବନର ଅସହ୍ୟ ବାସ୍ତବତା ଭିତରକୁ ଟାଣିହୋଇ ଆସିଲି । ଶେଷବେଳକୁ, ବାପା ଗୋଟିଏ କଥା ବାରଂବାର ମୋତେ କହୁଥିଲେ । ତାହା ହେଉଛି "ଗୋଟିଏ ପରେ ଗୋଟିଏ ସଂଘର୍ଷର ଅନ୍ୟନାମ ହେଉଛି ଜୀବନ ।"

ମୋତେ ସଂଘର୍ଷର ଆହ୍ୱାନକୁ ସ୍ୱୀକାର କରିବାକୁ ପଡିଲା । ଏକା ଏକା ସହିବାକୁ, ସଂଘର୍ଷ କରିବାକୁ ଓ ଶିଖିବାକୁ ପଡ଼ିଲା । ଆଜିଯାଏ ସେ ସଂଘର୍ଷ ଜାରି ଅଛି ।

ହେଲେ, ମୋର ଏ ସଂଘର୍ଷମୟ ଜୀବନ ମଧ୍ୟରେ, କୋରାପୁଟରେ ମୋ କୈଶୋରର ଦୁଇବର୍ଷର ଜୀବନାନୁଭୂତି ଯେ କେତେ ବିଭବଶାଳୀ, ଶକ୍ତିଶାଳୀ ଓ ଆତ୍ମିକ ସନ୍ତୋଷ ପ୍ରଦାନ କରିଚି ତାହା ଆଜିଯାଏ ଭୁଲି ପାରିନାହିଁ । ମୋ ସ୍ମୃତିରେ କୋରାପୁଟ, ମୋ ସ୍ୱପ୍ନର କୋରାପୁଟର ସାଂସ୍କୃତିକ ବିଭବ ଓ ଶାଶ୍ୱତ ମୂଲ୍ୟବୋଧ ଯାହା ମୁଁ ପାଇଛି, ତାହାହିଁ ମୋ ଜୀବନର ପାଥେୟ ହୋଇ ରହିଛି । ଆଧୁନିକ ପରିବର୍ତ୍ତିତ କୋରାପୁଟ ତାହାକୁ ପୁଣିଥରେ ଧରି ରଖି ପାରନ୍ତା କି ? ସେ ସ୍ୱଚ୍ଛ, ମୁକ୍ତ ବାତାବରଣରେ ପ୍ରକୃତିକୁ ଉପଭୋଗ କରିବାର ସ୍ୱାଧୀନତା ଆଜିର ଓଡ଼ିଆ କିଶୋରମାନଙ୍କୁ ମିଳନ୍ତା କି ?



# ଡାକ୍ତର ବାପା : ଜନାର୍ଦ୍ଦନ ପୂଜାରୀ

ତାଙ୍କ ସହିତ ମୋର ପ୍ରଥମ ଦେଖା ୧୯୪୦ ମସିହାରେ। ସେ ସେତେବେଳେ ମଧ୍ୟବୟସ୍କ ଓ ମୁଁ ଚତୁର୍ଥ ଶ୍ରେଣୀର ଛାତ୍ର। ପୈତୃକ ଘର ସମ୍ବଲପୁର ସହରର ଝାଡୁଆପଡ଼ାରେ ଥିବା ସତ୍ତ୍ୱେ ଜନ୍ମରୁ ମୁଁ ପ୍ରବାସୀ ଥିଲି। ଦୂରରୁ ତାଙ୍କ ବିଷୟରେ ବାପା, ମାଆ ଓ ପରିବାରବର୍ଗଙ୍କ ଠାରୁ ଯାହା ଶୁଣିଥିଲି ସେଥିରୁ ମୋର ଅପ୍ରାପ୍ତ ବୟସର ଛୋଟ ମସ୍ତିଷ୍କରେ ମଧ୍ୟ ବିରାଟ ସମ୍ମାନ ଶ୍ରଦ୍ଧା ଭରି ରହିଥିଲା ତାଙ୍କ ପାଇଁ। ତେବେ, ବାପା ଯେତେବେଳେ ମୋ ହାତଟାଣି ଆମଘରୁ ତାଙ୍କର "ଡାକ୍ତର ଦାଦା"ଙ୍କ ଘରକୁ ଟାଣି ଆଣିଥିଲେ ସେତେବେଳେ ମୋ ଅବସ୍ଥା ଶୋଚନୀୟ ଥିଲା। ମାତ୍ରାଧିକ୍ୟ ଆହାରଜନିତ ଅଜୀର୍ଣ୍ଣ ଝାଡ଼ା, ବାନ୍ତି ଓ ଜ୍ୱରରେ ପଡ଼ିବା ମୋ ବାଳୁତକାଳର ଏକ ସାଧାରଣ ଘଟଣା ଥିଲା।

ଭୟ (ଇଂଜେକ୍‌ସନ୍, କୁଇନାଇନ ମିକ୍ସଚ଼ର ଓ ପୁଡିଆ) ଓ ଉତ୍କଣ୍ଠା (ଏକ ଅଭୂତ ସର୍ବଗୁଣସଂପନ୍ନ ଦେବତୁଲ୍ୟ ବ୍ୟକ୍ତିଙ୍କ ପ୍ରଥମ ଦର୍ଶନ) ମିଶାମିଶି ଅନୁଭୂତି ନେଇ ବାପାଙ୍କ ସହିତ ମୁଁ ତାଙ୍କ ଘରେ ପହଞ୍ଚିଲି। ବଡ଼ସଡ଼କ ଉପରେ ତାଙ୍କର ନିଜଘର ସାମନାରେ ସକାଳୁ ଦିନ ବାରଟା ପର୍ଯ୍ୟନ୍ତ ଭୀଷଣ ଭିଡ଼ ଯୋଗୁ ବାପା ଓ ମୁଁ ଗଳିଦେଇ ତାଙ୍କ ବାଡିପଟ ଗୁହାଳ ବାଟରେ ଗୃହ ପ୍ରବେଶ କଲୁ। ଭିତର ଖଞ୍ଜାର ରନ୍ଧାଘର ସାମନାରେ ବାପା ତାଙ୍କ ଭାଉଜଙ୍କୁ ମୁଣ୍ଡିଆ ମାରିବା ସାଂଗେ ସାଂଗେ ବାପାଙ୍କୁ ଯେପରି ଉଚ୍ଛ୍ୱସିତ ସଂବର୍ଦ୍ଧନା ଭାଉଜ ଜଣାଇଲେ ପ୍ରାୟ ୧୦ ମିନିଟ ପର୍ଯ୍ୟନ୍ତ ମୋ ଉପସ୍ଥିତି କଥା ସମସ୍ତେ ଭୁଲିଗଲେ। ଏଇ ଅବସରରେ ମୁଁ ଟିକିଏ ଆଖିବୁଲେଇ ଆଣିଥିଲି ତାଙ୍କ ଭିତର ଖଞ୍ଜାର ସବୁ ପାଖ। ପ୍ରଶସ୍ତ ସ୍ଥାନ ନହେଲେ ମଧ୍ୟ ସେଠାରେ ଗୋଟାଏ ପାଖରେ ଦୁଧିଆଳି ହରିଆନା ଗାଈ ୪/୫ଟି, ଗୋଟିଏ ପାଖରେ ଢେଙ୍କିଶାଳ ଓ ରୋଷେଇ ଘର। ଅଗଣା ମଝିରେ ତୁଳସୀ ଚ଼ଉରା। ଆଉଗୋଟିଏ ପାଖରେ ଠାକୁର ଘର। ତା'ଭିତରୁ ଭାସି ଆସୁଥିଲା ବିଷ୍ଣୁ ସହସ୍ର ନାମ ଏକ ଅନୁଚ୍ଚ ଗମ୍ଭୀର ସ୍ୱରରେ। ଅନ୍ୟପାଖରେ ଖୋଲା ଦରଜା ଦେଇ ଦେଖାଯାଉଥିଲା ବାହାର ଖଞ୍ଜା। ମୋ ବିଷୟରେ ଉପସ୍ଥିତ ପରିବାରବର୍ଗ ସଚେତନ ହେବା ବେଳକୁ ଠାକୁରଘରୁ ବାହାରି ଆସିଥିଲେ ସେ। ପରିଧାନ ଥିଲା ସମ୍ବଲପୁରୀ ପାଟଯୋଡ଼ା। ବଳିଷ୍ଠ ହୃଷ୍ଟପୁଷ୍ଟ ଗୋରା ମଣିଷଟିଏ। ଛାତି ଓ ପେଟ ଯେତେ ପୃଥୁଳ ସେହି ଅନୁପାତରେ ମୁଣ୍ଡ ଓ ଗୋଡ଼ର ଦୁଇଟିଯାକ ସୁଷ୍ଠ ମାଂସାଳ ପେଣ୍ଡା ମଧ୍ୟ। ସେ ହସିହସି ଅଗଣାକୁ ଓହ୍ଲାଇ ଆସିଲେ। ବାପା ମୁଣ୍ଡିଆ ମାରିବା ପୂର୍ବରୁ ସେ ହାତଦୁଇଟି ବାପାଙ୍କ କାନ୍ଧରେ ଥାପି ଦେଇଥିଲେ।

ପ୍ରଶସ୍ତ ଲଲାଟରେ ଗୋରଚ଼ନା ଓ ଚନ୍ଦନର ଟିପା। ରୂପା ଫ୍ରେମ୍‌ରେ ଗୋଲକାଚର ଚଷମା। ମୁଣ୍ଡର ଚୂଳ ଅତି ଛୋଟ ଛୋଟ କଟା ହେଇଛି। ଉନ୍ନତ ନାସିକାର ଦୁଇପାଖରେ

ସାଗରର ଗଭୀରତା ଥିବା ଯୋଡ଼ିଏ ସ୍ନେହଶୀଳ ଆଖି । ଓଠରେ ଛୋଟ ଛୁଆର ଅନାବିଳ ହସ । ଅସ୍ୱାଭାବିକ ଭାବରେ ମୁଣ୍ଡ ଦୁଇ ପାଖରେ ଦୁଇଟି ବଡ କାନ ।

ମୋର ଅସୁସ୍ଥତା ବିଷୟରେ ବାପା କହିସାରିବା ପରେ ସେ ମୋ ମୁହଁକୁ ଦେଖି ଖୋଲା ହସଟିଏ ହସିଲେ । କହିଲେ "ବଂଶର ଲକ୍ଷଣ କୁଆଡ଼େ ଯିବ ?" ମୋତେ ସେତିକିରେ ଯେତେ ଆଶ୍ୱସ୍ତି ମିଳିଥିଲା , ଭରସାକରି କହିଲି, "ମୁଁ ଇଂଜେକସନ୍ ନେବି ନାହିଁ କିମ୍ବା ପିତା ଔଷଧ ଖାଇବି ନାହିଁ ।" ପୁଣିଥରେ ବଡ଼ପାଟିରେ ସେ ହସିଲେ । କହିଲେ "ମୁଁ ତୋତେ ଖାଲି ମିଠା ଔଷଧ ଦେବି । ତୁ ମହୁ ଆଉ ଚିନି ଲଗେଇ ଖାଆ ।"

ତା'ପରେ ତାଙ୍କର ଶେଷ ଜୀବନଯାଏ ମୁଁ ତାଙ୍କର ପ୍ରତିଭାର ପରିଚୟ ପାଇଛି ବହୁ କ୍ଷେତ୍ରରେ । ନିଜ ଆଖିରେ ଦେଖିଛି କ୍ଲିନିକ୍‌ରେ ବସି ଶହଶହ ରୋଗୀଙ୍କୁ ଦେଖିବାରେ ତାଙ୍କର ଧୈର୍ଯ୍ୟ । ବାରଟା ପରେ ଦିନଦୁଇଟା ପର୍ଯ୍ୟନ୍ତ ଖରାରେ ସମ୍ବଲପୁର ସହରର ପଡ଼ା ପଡ଼ା ପାଦରେ ବୁଲି ରୋଗୀମାନଙ୍କୁ ଘର ଘର ଯାଇ ଚିକିତ୍ସା କରିବା । ଗୋଟିଏ ହାତରେ ବେଗ୍, ଆର ହାତରେ ଷ୍ଟେଥୋସ୍କୋପ୍ । କାନ୍ଧରେ ଦେଉଳିଗଡ଼ା କସାଲା ସମ୍ବଲପୁରୀ ଗାମୁଛା । ଶୀତ ଦିନରେ ଏଣ୍ଡି ଚଦରଟିଏ । ପରିଧାନରେ ସଫା ଖଦଡ଼ କନାର ବା ଶସ୍ତା ମିଲର ଧୋତି ଓ ଗଞ୍ଜି , ଗୋଡ଼ରେ କଳା କେନଭାସ୍‌ର ହାଫ ସୁ । ପ୍ରାୟ ଚାରି ଦଶନ୍ଧି ସେ ସମ୍ବଲପୁର ସହର ଓ ଆଖପାଖ ଅଞ୍ଚଳର ଲକ୍ଷଲକ୍ଷ ରୋଗୀଙ୍କ ଆରୋଗ୍ୟପାଇଁ ନିଃସ୍ୱାର୍ଥ ସେବା କରି ଚାଲିଥିଲେ । ଲକ୍ଷପତି ବ୍ୟବସାୟୀଠାରୁ ଆରମ୍ଭ କରି ରାସ୍ତାର ଭିକାରୀଟିଏ ପର୍ଯ୍ୟନ୍ତ ସମସ୍ତେ ତାଙ୍କ ସେବାପାଇଁ ଲାଳାୟିତ ଥିଲେ । କାହା ଆଗରେ ସେ ହାତପତାଉ ନଥିଲେ । ପାରିବାରିକ ଅସୁବିଧା ସତ୍ତ୍ୱେ ସେ ନିଜର ପ୍ରତିଭା ଓ ପେଷାକୁ କେବେହେଲେ ଦୁନିଆ ହାଟରେ ମୂଲ କରିବାକୁ ଦେଇ ନାହାଁନ୍ତି ।

ଡାକ୍ତର ଭାବରେ ଲୋକେ ତାଙ୍କୁ ଜାଣିଥିଲେ । ତାଙ୍କର ଅନ୍ୟ ପ୍ରତିଭା ବିଷୟରେ ସମ୍ବଲପୁର ଜିଲ୍ଲା ସହରର କ୍ୱଚିତ୍ ଲୋକ ଜାଣିବାର ସୁଯୋଗ ପାଇଛନ୍ତି । କାରଣ ସେ ପ୍ରଚାରଧର୍ମୀ ଲୋକ ନଥିଲେ । ପିଲାଟି ଦିନରୁ ତାଙ୍କର ଅସ୍ୱାଭାବିକ ପ୍ରତିଭାର ପରିଚୟ ତାଙ୍କ ସମସାମୟିକ ଲୋକ ଦେଇ ପାରିଥାନ୍ତେ । ଶହେ ବର୍ଷ ପରେ ଏ ବିଷୟରେ କହିବାର ଲୋକ ବା ଆଉ କେତେଜଣ ବଞ୍ଚିଛନ୍ତି ? ମୋ ବାପାଙ୍କର ସେଥିଲେ ଆଦର୍ଶ । କଥା କଥାରେ ସେ "ଡାକ୍ତର ଦାଦା"ଙ୍କ ବିଷୟରେ ଆମ ଭାଇଭଉଣୀମାନଙ୍କୁ କାହାଣୀ କହୁଥିଲେ । ସେଥିପାଇଁ ମୋର ଚତୁର୍ଥଶ୍ରେଣୀର ବୟସରେ ମଧ୍ୟ ତାଙ୍କପ୍ରତି ଯଥେଷ୍ଟ ଶ୍ରଦ୍ଧା , ସମ୍ମାନ , କୌତୁହଳ ଓ ଉତ୍କଣ୍ଠା ମିଶା ଆକର୍ଷଣ ଆସିଥିଲା ।

ପିଲାଟି ଦିନରୁ ଡାକ୍ତର ଜନାର୍ଦ୍ଦନ ପୂଜାରୀ ଅସାମାନ୍ୟ ଥିଲେ । ଗଭୀର ଆତ୍ମବିଶ୍ୱାସ , ଆତ୍ମସଂଯମ ଓ ଆତ୍ମସମୀକ୍ଷାର ଲକ୍ଷଣଗୁଡ଼ିକ ତାଙ୍କ ଭିତରେ ଦେଖାଦେଇଥିଲା । ସାଧାରଣ

ମଧ୍ୟବିତ୍ତ ପରିବାରରେ ଜନ୍ମଗ୍ରହଣ କରି ମଧ୍ୟ ସେ ସମାଜ ସଚେତନ ଓ ଉଚ୍ଚାଭିଳାଷୀ ଥିଲେ । ଅତ୍ୟଧିକ ସାହସୀ ଓ ଧୈର୍ଯ୍ୟଶୀଳତା ଦୁଇଟି ଗୁଣ ତାଙ୍କ ପାଖରେ ଦେଖାଯାଏ ।

ମହାନଦୀ କୂଳର ବାସିନ୍ଦା ଭାବରେ ସେ ନଦୀ ପହଁରିବା, କବାଡ଼ିଖେଳ ଓ କୁସ୍ତି ଖେଳିବାକୁ ଭଲପାଉଥିଲେ । ଯୌବନ ଅବସ୍ଥାରେ ଫୁଟବଲ ଖେଳୁଆଡ଼ ଭାବରେ ସେ ସମ୍ବଲପୁରରେ ଜଣାଶୁଣାଥିଲେ । ବାଲ୍ୟବିବାହ ସତ୍ତ୍ୱେ ସେ ଉଚ୍ଚଶିକ୍ଷାପାଇଁ ବିଦେଶ ଯିବାର ଉଚ୍ଚାକାଂକ୍ଷା ରଖି ଘରେ କାହାକୁ ନକହି କଲିକତାରୁ ଗୋଟିଏ ଜାହଜରେ ଖଲାସୀ କାମକରିବା ଆଳରେ ଜାପାନ ଚାଲି ଯାଇଥିଲେ । ଜାହାଜର କପ୍ତାନ ଯୁବକଟିର ସୌମ୍ୟ ସ୍ୱାସ୍ଥ୍ୟବାନ ଶରୀର ଓ କର୍ତ୍ତବ୍ୟନିଷ୍ଠାରେ ଏତେ ପ୍ରଭାବିତ ହୋଇଥିଲେ ଯେ ଟୋକିଓରେ ସେ ଡାକ୍ତର ପୂଜାରୀଙ୍କୁ ଜେରା କରି ସତ୍ୟାସତ୍ୟ ଜାଣିବାପରେ ସ୍ତମ୍ଭୀଭୂତ ହୋଇଯାଇଥିଲେ । କପ୍ତାନଙ୍କ ପ୍ରରୋଚନାରେ ୨୦ ବର୍ଷର ଯୁବକ ଜନାର୍ଦ୍ଦନ, କଲିକତା ଫେରିଆସି ମେଡିକାଲ ସ୍କୁଲର ଛାତ୍ରଭାବରେ ଯୋଗ ଦେଇଥିଲେ । ମେଡିକାଲ ସ୍କୁଲର ଛାତ୍ର ଭାବରେ ମେସ୍‌ରେ ରହୁଥିବା ବେଳେ ଜଣେ ବଂଗଦେଶୀୟ ଛାତ୍ର ଓଡିଆମାନଙ୍କ ବିଷୟରେ କଟୂମନ୍ତବ୍ୟ ଦେବାରୁ ଛାତ୍ର ଜନାର୍ଦ୍ଦନ କ୍ଷୁବ୍ଧହେବା ଯାଗାରୁ ଉଠିଆସି ଗୋଟିଏ ହାତରେ ଛାତ୍ରଟିର କଲରକୁ ମୁଠାକରି ଧରି ଶୂନ୍ୟେ ଶୂନ୍ୟେ ଦୁଇତଲାର ରେଲିଂରୁ ତଳକୁ ଝୁଲାଇ କେବଳ ଗୋଟିଏ ପ୍ରଶ୍ନ କରିଥିଲେ, "Will you beg excuse and withdraw your statement or else I will leave your collar." ଛାତ୍ରାବାସର ସମସ୍ତ ଅନ୍ତେବାସୀ ସେହିଦିନଠାରୁ ସୌମ୍ୟ, ଶାନ୍ତ, ମିଷ୍ଟଭାଷୀ ଏଇ ଭଦ୍ର ଓଡ଼ିଆଛାତ୍ରଟିର ପରିଚୟ ପାଇଥିଲେ । କଲିକତାରେ ଛାତ୍ରଥିବା ସମୟରେ ଡାକ୍ତର ପୂଜାରୀ ବୋଧହୁଏ ଆଧ୍ୟାତ୍ମିକ ସଚେ୍ତନତା ପାଇଥିଲେ । ବଂଗଳାର ଆଧ୍ୟାତ୍ମିକ ପରିବେଶ ଓ ନିଜ ବଂଶଗତ ପାରିବାରିକ ପ୍ରଭାବ ଯୋଗୁ, ସେ ଇଂରାଜୀ, ସଂସ୍କୃତ, ଓଡ଼ିଆ, ବଙ୍ଗଳା, ହିନ୍ଦୀ ଭାଷାପ୍ରତି ଆକୃଷ୍ଟ ହୋଇଥିଲେ । ତାହାରି ପ୍ରଭାବରେ ସେ ନାଟକ ରଚୟିତା, ନିର୍ଦ୍ଦେଶକ ଓ ଅଭିନେତା ଭାବରେ ସମ୍ବଲପୁର ଅଞ୍ଚଳରେ ବିଶେଷ ସମ୍ମାନ ପାଇଥିଲେ । ପ୍ରାୟ ଦୁଇଦଶନ୍ଧିଯାଏ ତାଙ୍କ ପ୍ରରୋଚନାରେ ସମ୍ବଲପୁର ସହରର ଫ୍ରେଜର୍ କ୍ଲବରେ ଆଧୁନିକ ମଞ୍ଚରେ ଓଡ଼ିଆ ନାଟକ ପରିବେଷଣର ପରଂପରା ସୃଷ୍ଟି ହୋଇଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ଏଇ ପରଂପରା ଲୋପ ପାଇଗଲା । ନାଟକ ଚର୍ଚ୍ଚା ଓ ଅଭିନୟ ଛଡ଼ା ସମାଜ ସଚେତନତାର ଏକ ଅଦ୍ଭୁତ ଦିଗ ତାଙ୍କ ଯୁବାବସ୍ଥାରେ ଦେଖାଯାଇ ଥିଲା । ସେ ନାରୀଶିକ୍ଷା ଓ ନାରୀପ୍ରଗତି ବିଷୟରେ ବହୁଗୁଡ଼ିଏ ଗୀତ, କବିତା ଓ କାହାଣୀ ଲେଖି ପ୍ରକାଶ କରିଥିଲେ । ରକ୍ଷଣଶୀଳ ସମାଜ ମଧ୍ୟରେ ନାରୀ ଶିକ୍ଷା ଉପରେ ତାଙ୍କର 'ସୁନାବୋହୁ' ଉପନ୍ୟାସ ଏକ ଅନବଦ୍ୟ ସୃଷ୍ଟି । ସାହିତ୍ୟ, ନାଟକ, ଅଭିନୟ ବ୍ୟତୀତ ସୂକ୍ଷ୍ମକଳା (ଚିତ୍ରାଙ୍କନ) ପ୍ରତି ମଧ୍ୟ ତାଙ୍କର ଆକର୍ଷଣ ଥିଲା ।

ଡାକ୍ତର ପୂଜାରୀ ଛାତ୍ରଥିବାବେଳେ, ଓଡ଼ିଶାର ଏକ ନାଟକଦଳ ନିମନ୍ତ୍ରିତ ହୋଇ କଲିକତାରେ ସାତଦିନ ପାଇଁ ଓଡ଼ିଆନାଟକ ପରିବେଷଣ କରୁଥିଲେ। ଡାକ୍ତର ପୂଜାରୀ ତିନିଦିନ ନାଟକ ଦେଖିବାକୁ ଯାଇଥିଲେ। କଳାକାରମାନଙ୍କ ମଧ୍ୟରେଥିଲେ ପ୍ରଖ୍ୟାତ ଅଭିନେତା ମାଷ୍ଟର ମାଣିଆ। ସେ ଅଭିନେତା ଓ ନିର୍ଦ୍ଦେଶକ ଭାବରେ କଲିକତାରେ ଚହଳ ପକାଇ ଦେଇଥିଲେ। ବହୁ ବଂଗବାସୀ ତାଙ୍କ ଅଭିନୟ ଦେଖିବାକୁ ଆସୁଥିଲେ।

ଡାକ୍ତର ପୂଜାରୀ ମାଷ୍ଟର ମାଣିଆଙ୍କ ଅଭିନୟରେ ଏତେ ପ୍ରଭାବିତ ହୋଇଥିଲେ ଯେ ନିଜେଯାଇ ନିଜର ପରିଚୟ ଦେଇଥିଲେ। ଶେଷଦିନରେ "କୋଣାର୍କ" ନାଟକର ଅଭିନୟ ସମୟରେ ମାଷ୍ଟର ମାଣିଆ ଭୀଷଣ ଅସୁସ୍ଥ ହୋଇପଡ଼ିଲେ। ଉଦ୍ୟୋକ୍ତାମାନଙ୍କ ମଧ୍ୟରେ ଭାଳେଣି ପଡ଼ିଲା। ଏ ଖବର ମେଡିକାଲ ହଷ୍ଟେଲରେ ପହଞ୍ଚିବା ପରେ ସମସ୍ତ ବନ୍ଧୁଗଣ ଡାକ୍ତର ପୂଜାରୀଙ୍କୁ "ବିଶୁ ମହାରଣା" ଚରିତ୍ରରେ ଅଭିନୟ କରିବାକୁ ଅନୁରୋଧ କରିଥିଲେ। ଏ ଖବର ମାଷ୍ଟର ମାଣିଆଙ୍କ କାନକୁ ମଧ୍ୟ ଗଲା। ସେ ଡାକ୍ତର ପୂଜାରୀଙ୍କୁ ଅନୁମତି ଦେଲେ। ନାଟକ ମଞ୍ଚସ୍ଥ ହେଲା। ନାଟକ ଶେଷରେ ନିଜେ ମାଷ୍ଟର ମାଣିଆ ଡାକ୍ତର ପୂଜାରୀଙ୍କୁ ଅଭିନନ୍ଦିତ କଲେ। ଏ ଘଟଣାର ପ୍ରାୟ ଚାଳିଶ ବର୍ଷପରେ ଲେଖକ ମାଷ୍ଟର ମାଣିଆଙ୍କ ସହିତ "ମାଟିର ମଣିଷ" ଚଳଚ୍ଚିତ୍ରରେ ଅଭିନୟ କରିବାବେଳେ ସେ ନିଜେ ଗଦ୍‌ଗଦ୍ ହୋଇ ଏକଥା କହି ଲେଖକକୁ ଆଶୀର୍ବାଦ ଦେଇଥିଲେ।

ଡାକ୍ତର ହେବାପରେ ଇଂରେଜ ସରକାରଙ୍କର ମୋଟା ବେତନର ଚାକିରୀକୁ ସେ ଉପେକ୍ଷାକରି ଘରୋଇ ଚିକିତ୍ସା ଆରମ୍ଭ କଲେ। ସାଂସାରିକ ଜୀବନ ଜଂଜାଳ, ଡାକ୍ତରର ପେଷା, ସମାଜ ସଚ୍ଚେତନତା, ସାଂସ୍କୃତିକ କାର୍ଯ୍ୟକ୍ରମ ମଧ୍ୟରେ ବୁଡ଼ି ରହିବା ପରେ ମଧ୍ୟ ଜ୍ଞାନ, କର୍ମ, ଧର୍ମ ଓ ଯୋଗ ବିଷୟରେ ତାଙ୍କ ମନ ଆନ୍ଦୋଳିତ ହେଉଥିଲା। ବୁଦ୍ଧଦେବଙ୍କ ପରି ହଠାତ ଦିନେ ସେ ସମ୍ବଲପୁର ସହରରୁ ଅନ୍ତର୍ଦ୍ଧାନ ହେଲେ। ଜୀବନ ଜିଜ୍ଞାସା ଥିଲା- କର୍ମ, ଜ୍ଞାନ ଓ ଯୋଗର ସମନ୍ୱୟ ହେବ କିପରି ? ପ୍ରାୟ ଦୁଇବର୍ଷ ପରେ ଗୁରୁ ନିର୍ଦ୍ଦେଶରେ ସେ ପ୍ରତ୍ୟାବର୍ତ୍ତନ କଲେ ହିମାଳୟରୁ। ସାଂସ୍କୃତିକ ଓ ସାମାଜିକ ସଚ୍ଚେତନତା ରୂପ ନେଲା ଡାକ୍ତର ପେଷାର "ସେବା" ମନୋବୃତ୍ତିରେ- କର୍ମଯୋଗର ମାଧ୍ୟମରେ। ଆଧ୍ୟାତ୍ମିକ ଅନୁସନ୍ଧିତ୍ସା, ଜୀବନଜିଜ୍ଞାସା ରୂପନେଲା। ଗୀତା ଓ ପୁରାଣ ପ୍ରବଚନରେ, ଜ୍ଞାନଯୋଗ ମାର୍ଗରେ। ସମ୍ବଲପୁର ସହର ହେଲା ତାଙ୍କର କର୍ମଯୋଗ ଓ ଜ୍ଞାନଯୋଗ ସାଧନାର ପୀଠ ସ୍ଥଳୀ। ନିଜର ପ୍ରିୟବନ୍ଧୁ, ସମବୟସ୍କ ଓ ସମଭାବାପନ୍ନ ପରିବାରବର୍ଗ ଓ ଶୁଭେଚ୍ଛୁମାନଙ୍କ ଚେଷ୍ଟାରେ ରୂପ ପାଇଲା "ଗୀତା ଗୁଡ଼ି" (ଗୀତା ମନ୍ଦିର) ଓ "ଗୀତା ଆଶ୍ରମ"। ପ୍ରତିଦିନ ସଂଧ୍ୟାରେ ଡାକ୍ତର ପୂଜାରୀ ଅନର୍ଗଳ ଭାବରେ ଶ୍ରୀମଦ ଭଗବତ୍ ଗୀତା ଓ ହରିବଂଶ ପୁରାଣ ପରି ଗ୍ରନ୍ଥର ବ୍ୟାଖ୍ୟା କରୁଥିଲେ ଶହଶହ ଧର୍ମ, କର୍ମ, ଜ୍ଞାନ ଅନିସନ୍ଧିତ୍ସୁ ଭକ୍ତମାନଙ୍କ

ସମ୍ମୁଖରେ । ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଚାଲୁଥିଲା ସେବା-ଦୁର୍ବଳ, ଗରିବ, ଦୁଃଖୀ ଶାରିରୀକ ରୋଗୀମାନଙ୍କର । କୌଣସି ଆଡ଼ମ୍ବର, ପ୍ରଚାର, ବ୍ୟାପ୍ତି ବା ଖ୍ୟାତି ଉପରେ ଦୃଷ୍ଟି ନଥିଲା ତାଙ୍କର । କେବଳ କର୍ମ ଓ ଜ୍ଞାନ । ଏହାର "ଯୋଗ" ହିଁ ଥିଲା ତାଙ୍କର ଜୀବନ । ଲକ୍ଷଲକ୍ଷ ଶାରିରୀକ ଓ ମାନସିକ ରୋଗାକ୍ରାନ୍ତ ଜୀବନକୁ, କଷ୍ଟ, ପୀଡ଼ନ, ଯନ୍ତ୍ରଣା ଠାରୁ ଦୂରେଇ ନେବା ପାଇଁ ସେ ଚାରିଟି ଦଶନ୍ଧି ବିତେଇ ଦେଲେ । ଡାକ୍ତର ଜନାର୍ଦ୍ଦନ ପୂଜାରୀରୁ ସେ ସମସ୍ତଙ୍କ ପାଖରେ ପରିଚିତ ହୋଇଗଲେ "ଡାକ୍ତର ବାପା" ଭାବରେ । ହାତୀପରି ଝୁଲିଝୁଲି ରାସ୍ତାରେ ଚାଲିଯାଉଥିବା ବେଳେ-ଲୋକେ ଦୋକାନ, ବଜାର ଓ ଘର ଭିତରୁ ବାହାରିଆସି ତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରିବାକୁ ଯାଇ, ତାଙ୍କ ପଥ ଯେପରି ଅବରୋଧ କରୁଥିଲେ ସେ ଦୃଶ୍ୟ ଆଉ ସମ୍ବଲପୁର ସହରରେ ଦେଖିବାକୁ ମିଳିବ ନାହିଁ । ସେମାନେ ଥିଲେ ସବୁଜାତିର ଲୋକ, ସବୁଧର୍ମର ଲୋକ, ଗୁଜରାଟୀ, ମାରଓ୍ୱାଡ଼ି, ପଞ୍ଜାବି, ମୁସଲମାନ ଇତ୍ୟାଦି । ସମ୍ବଲପୁର ବାସିନ୍ଦାଙ୍କ ପାଇଁ ଡାକ୍ତର ପୂଜାରୀ ଥିଲେ ଦେବତୁଲ୍ୟ ।

ସାତଦିନ ପର୍ଯ୍ୟନ୍ତ ଅସୁସ୍ଥ ରହିବାପରେ ଓଡ଼ିଶାର ସମସ୍ତ ଡାକ୍ତର ଯେତେବେଳେ ଚିକିତ୍ସାକରି ହତାଶ ହୋଇପଡ଼ିଲେ, କଲିକତାରୁ ସର୍ବଶ୍ରେଷ୍ଠ ହୃଦୟ ବିଶାରଦ ଓ ଡାକ୍ତର ପୂଜାରୀଙ୍କ ଛାତ୍ର ସମୟର ବନ୍ଧୁଙ୍କୁ ଅଣାଗଲା । ସେ ଡାକ୍ତର ପୂଜାରୀଙ୍କ ଘରେ ଦିନଟିଏ ରହିଲେ । ସମସ୍ତ ପରୀକ୍ଷା ନିରୀକ୍ଷା ସରିବା ପରେ ଛଳଛଳ ଆଖିରେ ସେ ଡାକ୍ତର ପୂଜାରୀଙ୍କ କାନପାଖରେ ଯାଇ ଚୁପ୍‌ଚୁପ୍ କହିଲେ, "ଜନାର୍ଦ୍ଦନ, ବଲୋତୋ ଭାଇ, ତୁମି କେନୋ ମର୍‌ତେ ଚାଓ ? ଏରା ତୋମାକେ ଏତୋ ଭାଲବାସେ- । ତୋମାରତୋ କିଛୁ ହୟନି- !"

ଡାକ୍ତର ପୂଜାରୀ କଲିକତା ବନ୍ଧୁଙ୍କ ମୁହଁକୁ ଅନେଇ କେବଳ ହସି ଦେଇଥିଲେ । ତା' ପରଦିନ ସେ ସବୁଦିନ ପାଇଁ ଆଖି ବୁଜି ଦେଇଥିଲେ । ଧୀରେ ଧୀରେ "ଡାକ୍ତର ବାପା"- ପ୍ରିୟ ଡାକଟି ମଧ୍ୟ ହଜିଯାଇଛି । ଆଜି ତାଙ୍କର ଜନ୍ମର ଶହେ ବର୍ଷ ପୂର୍ତ୍ତି ହେଉଛି । ଡାକ୍ତର ଜନାର୍ଦ୍ଦନ ପୂଜାରୀଙ୍କ ପରି ଏକ ବହୁମୁଖୀ ପ୍ରତିଭାର ସ୍ମୃତିଚାରଣ କରିବା ଭିତରେ ଆଜି ମନେପଡୁଛି ସତରେ କଣ ଏପରି ଏକ ଦେବତୁଲ୍ୟ ମଣିଷର ଜୀବନ ଆଦର୍ଶକୁ ଆମେ ଲୋକଲୋଚ଼ନକୁ ଆଣିପାରିଛୁ ? ତାଙ୍କର କର୍ମ, ଜ୍ଞାନ ଓ ଯୋଗ ପରୀକ୍ଷାର ସହଜ ସମୃଦ୍ଧ ମାର୍ଗକୁ ସବୁଦିନ ପାଇଁ ଲିପିବଦ୍ଧ କରି ପାରିଛୁ କି ?



# 'ସାନ୍ତରା ବୁବା' ଓରଫ୍ ଲରମ୍ବାର 'ବାବୁ'

୧୯୪୦ ମସିହା । ପୁରୀର ବେଳାଭୂମିରେ ଗୋଡିକାଙ୍କ, ଶାମୁକା ଓ ବାଲିକଙ୍କଡ଼ା ପଛରେ ଗୋଡ଼େଇବାର ବୟସ । ଗୁଗୁଛିଆ ବଣ, ଲଙ୍କାଆମ୍ବ ବଣରେ କଙ୍କି ଧରି ଡାଳମାଙ୍କୁଡ଼ି ଖେଳିବାର ବୟସ । ବାଲିସାହି (ସାରଦା ଦେବୀ ରୋଡର ସୂର୍ଯ୍ୟ ଲଜ) ଆମ ନିଜ ଘରକୁ ସେଦିନ ସମ୍ବଲପୁରରୁ କୁଣିଆ ଆସିଥିଲେ । ମୁଁ ଉପର ମହଲାରୁ ତଳକୁ ଓହ୍ଲାଇ ଆସି ଦେଖିଲି ମୋ ମା' ଓ ଆଇ ଜଣେ ଚପରାସୀ ସହିତ ତିନି ଚାରୋଟି ବସ୍ତା ଖୋଲି, ଆମ୍ବ ଓ କମଳା ରୋଷେଇ ଘର ବାରଣ୍ଡାରେ ଗଡ଼େଇବାରେ ଲାଗିଛନ୍ତି । ମୋ ଆଖି ଖୋସି ହୋଇଗଲା । ମୋ ମୁହଁକୁ ଦେଖି ଆଇ ବୁଝିଗଲେ । ମୋ ମା', ହାତକୁ ଗୋଟାଏ କମଳା ବଢ଼େଇ ଦେଇ କହିଲେ, "ଯା' ବାଟଘରକୁ । ଦେଖିବୁ ବାପାଙ୍କ ସହିତ କିଏ କଥାବାର୍ତ୍ତା କରୁଛନ୍ତି ।" ମୋ ଆଇ ମୋ ହାତ ଧରି କହିଲେ, "ଆଃ, ମୋ ଦାଦାଙ୍କୁ ଭେଟିବୁ ।"

ବୈଠକ ଘରେ ଚଉକିରେ ବସିଥିବା ଗୋରା ତକତକ ବଳିଷ୍ଠ ଚେହେରାର ଚଷମା ପିନ୍ଧା ବୟସ୍କ ଲୋକଟି ଆଗରେ ମୋତେ ଛିଡ଼ା କରାଇ, ଆଇ ମୋତେ ଦଣ୍ଡବତ ହେବାକୁ କହିଲେ । ଧୋତି ଓ ଗଳାବନ୍ଧା ପଞ୍ଜାବି ପିନ୍ଧିଥିବା ଲୋକଟି ମୋତେ ପଣ୍ଡିତଟେ ବା ବଡ଼ଲୋକଟାଏ ପରି ଜଣାଗଲେ । ସାଙ୍ଗରେ ତାଙ୍କ ସ୍ତ୍ରୀ । ଗୋରୀ, ଦେହସାରା ସମ୍ବଲପୁରୀ ସୁନା ଅଳଙ୍କାର ଓ ସମ୍ବଲପୁରୀ ଶାଢ଼ିଟିଏ ପିନ୍ଧିଛନ୍ତି । ଦୁଇକଣ ଯାକ ମୋ ବାପାଙ୍କ ସାଙ୍ଗରେ କଥାବାର୍ତ୍ତା ହେଉଛନ୍ତି ।

ଏ ମୋର ଲରମ୍ବାର ଦଦା ଆଉ ବୋହୁ । ତାଙ୍କ ଗାଁରେ ଛୋଟ ଓ ବଡ଼ ଇସ୍କୁଲ ସବୁ ତିଆରି କରିଛନ୍ତି । ଆଉ ସେଇ ଯେଉଁ ଆମ୍ବ ଓ ସନ୍ତରା ଦେଖିଲୁ, ସେସବୁ ତାଙ୍କ ବାଡ଼ିରେ ଫଳେ । ଆଇ ମୋତେ ଚିହ୍ନେଇ ଦେଲେ । ଲୋକଟି ହସିଦେଇ, ହାତ ବଢ଼େଇ ପଚାରିଲେ, "କେଉଁ କ୍ଲାସ୍‌ରେ ପଢୁଛ ସାହେବ ?"

ଦଣ୍ଡବତ ହେଇ କହିଲି, "ତୃତୀୟ ଶ୍ରେଣୀ" ।

ସେଇଦିନଠାରୁ, ସେଇ ଦୁଇଟି ପାଚିଲା ଆମ୍ବ ଓ କମଳାପରି ଦେଖାଯାଉଥିବା ମୋର ବୁବା ଓ ଆଇଙ୍କୁ ମୁଁ ନାଁ ଦେଇଥିଲି 'ସାନ୍ତରା ବୁବା' ଓ 'ସାନ୍ତରା ଆଇ' । କହିବା ବାହୁଲ୍ୟ ପଶ୍ଚିମ ଓଡ଼ିଶାରେ କମଳାକୁ ସାନ୍ତରା କୁହାଯାଏ । ମୋ ଆଇଙ୍କ ମାମୁଁ ପୁଅ ଭାଇଥିଲେ ସାନ୍ତରା ବୁବା ବ୍ରଜମୋହନ । ସେତେବେଳେ ସମ୍ବଲପୁର ଜିଲ୍ଲାରେ ଶିକ୍ଷିତ ସଂଖ୍ୟା ଖୁବ୍ କମ୍ । ମୋ ବାପା ଓ ବ୍ରଜମୋହନ ବାବୁଙ୍କ ଅମଳରେ ରେଭେନ୍‌ସା, ପାଟଣା ବା କଲିକତାର ପ୍ରେସିଡେନ୍‌ସି କଲେଜର ଛାତ୍ର ଓଡ଼ିଶାରେ ଖୁବ କମ୍ ଥିଲେ । ମୋ ବାପା ଓ ବ୍ରଜମୋହନ

ଦୁହେଁ ପ୍ରେସିଡେନ୍‌ସି କଲେଜର ଛାତ୍ର । ବାପା ବ୍ରଜମୋହନଙ୍କ ଠାରୁ ଦଶବର୍ଷ ସାନ । କିନ୍ତୁ ବରଗଡ଼ର (୧୯୩୦ ମସିହାର) ନାମଜାଦା ତହସିଲ୍‌ଦାର ଭାବରେ ଓ ଭାଣିଜିକୋଇଁ ଭାବରେ ବ୍ରଜମୋହନଙ୍କର ବାପା ଖୁବ୍ ଅନ୍ତରଂଗ ଥିଲେ। ବ୍ରଜମୋହନ ଶ୍ରଦ୍ଧାରେ ମୋ ବାପାଙ୍କୁ 'ସାହେବ' ବୋଲି ଡାକୁଥିଲେ। ମୋ ବାପାଙ୍କ ପରେ, ପ୍ରାୟ ଶେଷବେଳଯାଏ ମୋତେ ନାତି ଭାବରେ ସେ ଗେଲରେ 'ସାହେବ' ବୋଲି ବେଳେବେଳେ ଡାକି ଦେଉଥିଲେ।

ସ୍ୱାଧୀନତା ସଂଗ୍ରାମ ଓ ଦ୍ୱିତୀୟ ମହାସମରର ଘନଘଟା ଭିତରେ ମୋ ବାପାଙ୍କୁ ପୁରୀରୁ କଟକ ଓ ପରେ କୋରାପୁଟକୁ ବଦଳି ହେଲା । ମୋର ଚତୁର୍ଥରୁ ସପ୍ତମ ଶ୍ରେଣୀର ପାଠପଢ଼ା ଭିତରେ ସାନ୍ତରା ବୁବା ଓ ଆଇଙ୍କ ସହିତ ସମ୍ବଲପୁର ଓ କଟକ ସହରରେ ମଝିରେ ମଝିରେ ଦେଖା ହେଇଛି ।

୧୯୪୫ ମସିହାରେ, ମୋ ବୟସ ଯେତେବେଳେ ବାରବର୍ଷ, ମୁଁ କୋରାପୁଟର ମାଳଅଞ୍ଚଳର ପ୍ରାକୃତିକ ପରିବେଶ ଛାଡ଼ି ଲରମ୍ବାରେ ପହଞ୍ଚିଲି। ସପ୍ତମଶ୍ରେଣୀ ପାସ୍ କରିବା ପରେ ବାପାଙ୍କ ଆଦେଶରେ ମୋତେ ଲରମ୍ବା ଆବାସିକ ଉଚ୍ଚଇଂରାଜି ବିଦ୍ୟାଳୟରେ ନାଁ ଲେଖାଇବାକୁ ପଡ଼ିଲା । ଚିଠିଲେଖି ବାପା ବ୍ରଜମୋହନ ବାବୁଙ୍କୁ ଜଣାଇ ଦେଲେ । ଲରମ୍ବାର ବଡ଼ ଗୌନ୍ତିଆଙ୍କ ବଡ଼ପୁଅ ବିମ୍ବାବାବୁ ଯେତେବେଳେ କୋରାପୁଟରେ ପୋଲିସ ଇନ୍‌ସପେକ୍ଟର ଭାବରେ ଅବସ୍ଥାପିତ ଥିଲେ। ତାଙ୍କ ସଙ୍ଗରେ ଜୁଲାଇ ମାସର ଏକ ବର୍ଷଣ ସଂଧ୍ୟାରେ ଲରମ୍ବାରେ ପହଞ୍ଚିଲି। ମୋର ଏକମାତ୍ର ନିଜମାମୁଁ ସେତେବେଳେ ହାଇସ୍କୁଲର ଏକାଦଶ ଶ୍ରେଣୀର ଛାତ୍ର ଭାବରେ ଅନ୍ତେବାସୀ ଥିଲେ। କୋରାପୁଟରୁ ପାଳିଜ୍ୱର ଧରି ଆସିଥିବାରୁ ମୁଁ ଖୁବ ରୋଗା ହୋଇଯାଇଥିଲି। ମୋ ଅବସ୍ଥାଦେଖି ହେଡ଼ମାଷ୍ଟ୍ରଙ୍କ ଅନୁମୋଦନ କ୍ରମେ ମୋତେ ମୋ ମାମୁଁଙ୍କ ପାଖରେ ଗୋଟିଏ ଦଉଡିଆ ଖଟରେ ରହିବାକୁ ଅନୁମତି ମିଳିଲା । ମାମୁଁଙ୍କ ବ୍ୟତୀତ ସେ କୋଠରୀରେ ଆହୁରି ନଅ/ଦଶଜଣ ଏକାଦଶ ଶ୍ରେଣୀର ଛାତ୍ର ରହୁଥିଲେ।

ମାଳଅଞ୍ଚଳର ପାଳିଜ୍ୱର ଓ ବର୍ଷାଦିନର ବାଟଘାଟର ଅବସ୍ଥା ଭିତରେ ମୋର ଲରମ୍ବା ଆସିବାର ଏକମାତ୍ର ଆକର୍ଷଣ ଥିଲା ସାନ୍ତରା ବୁବାଙ୍କ ବାଡ଼ିବଗିଚ଼ାର ସାନ୍ତରା, ମୋସମ୍ବି ଓ ଲିଚୁ ଗଛର ଶୋଭା ଦର୍ଶନ। ଲରମ୍ବା ପହଞ୍ଚିବା ପରେ ଗୌନ୍ତିଆ ପରିବାରର ସମସ୍ତଙ୍କ ସାଂଗରେ (ପଣ୍ଡାବଂଶ) ମୋ ମା' ଓ ବାପାଙ୍କ ସୂତ୍ରରୁ କିଛି ଗୋଟାଏ ସଂପର୍କ ଥିବାର ହିସାବ ମୁଁ ଜାଣିବାକୁ ପାଇଲି।

ଦୁଇତିନି ଦିନପରେ ମୋତେ "ଲରମ୍ବାର ବାବୁ" ଡକେଇ ପଠେଇଲେ ତାଙ୍କ ଘରକୁ। ଲରମ୍ବାରେ ସେତେବେଳେ ପ୍ରତ୍ୟେକ ଘରକୁ ଏକ ସମ୍ମାନସୂଚ଼କ ନାଁ ଦିଆ ହୋଇଥିଲା। ଯେମିତି ବଡ଼ ଗୌନ୍ତିଆ, ମଝିଆଁ ଗୌନ୍ତିଆ, ସାନ ଗୌନ୍ତିଆ। ସେମିତି "ବାବୁଘର"।

ସାଧାରଣତଃ ସମ୍ବଲପୁରୀ ଭାଷାରେ (ପୁରାତନ ଓଡ଼ିଆ ଗୀତି ସାହିତ୍ୟରେ ମଧ୍ୟ) ପୁଅକୁ 'ବାବୁ' ଡ଼ାକିବାର ପ୍ରଥା ଅଛି। କିନ୍ତୁ ଏ 'ବାବୁ' ସମ୍ମାନଟି ବଙ୍ଗଳା ଭାଷାରୁ ଓଡ଼ିଆ ଭାଷାକୁ ଧାର କରାହୋଇଥିବାର ମନେହୁଏ। କୌଣସି ଇଂରାଜି ପଢୁଆ ଭାରତୀୟ ଲୋକଙ୍କୁ ଇଂରେଜମାନେ ଊନବିଂଶ ଶତାବ୍ଦୀରେ ସମ୍ମାନର ସହିତ 'ମିଷ୍ଟର' ନକହି 'ବାବୁ' ସମ୍ବୋଧନ କରୁଥିଲେ। ସେତେବେଳର ଓଡ଼ିଆ ପ୍ରଚଳିତ ଭାଷାରେ, ଲେଖାରେ ଓ ମୁଦ୍ରଣରେ ଏହାର ବହୁଳ ପ୍ରଚାର ଥିଲା।

ସେମିତି ଜଣେ 'ବାବୁ' ଥିଲେ ବ୍ରଜମୋହନ ପଣ୍ଡା। କଲିକତାରେ ପାଠ ପଢ଼ିବା ଦିନରୁ ସମ୍ବଲପୁର ଅଂଚଳର ଲୋକେ ତାଙ୍କୁ 'ବାବୁ' ବୋଲି ଡାକୁଥିଲେ। ସେଥିସହିତ ତାଙ୍କ ତିନିତାଲା ଖଞ୍ଜାଟିକୁ ମଧ୍ୟ 'ବାବୁଘର' ବୋଲି କୁହାଯାଉଥିଲା।

୧୮୮୯ ମସିହାରେ ତଦନାନ୍ତୀନ ସେଣ୍ଟ୍ରାଲ ପ୍ରଭିନ୍‌ସର ସମ୍ବଲପୁର ଖଣ୍ଡରେ, ଏକ କ୍ଷୁଦ୍ରଗ୍ରାମର ଏକ ବିଷ୍ଣୁଭକ୍ତ ଧନାଢ୍ୟ ବ୍ରାହ୍ମଣ ପରିବାରରେ ବ୍ରଜମୋହନ ଜନ୍ମଗ୍ରହଣ କରିଥିଲେ। ଛୋଟବେଳରୁ ପାଠପଢ଼ିବାର ଆଗ୍ରହଦେଖି ତାଙ୍କର ଚାଟଶାଳୀର ପଣ୍ଡିତମାନେ ତାଙ୍କ ବାପାଙ୍କୁ ବ୍ରଜମୋହନଙ୍କୁ ପଢ଼ାଇବାପାଇଁ ପ୍ରବର୍ତ୍ତାଇ ଥିଲେ। ସେଥିଲେ ବାପାଙ୍କର ଏକମାତ୍ର ପୁତ୍ର। ଗାଁରେ ସ୍କୁଲ ନଥିବାରୁ ତାଙ୍କୁ ଚାରି ମାଇଲ ଦୂର ଟାମ୍ପରସରା ଗ୍ରାମର ପ୍ରାଥମିକ ସ୍କୁଲକୁ ଯିବାକୁ ପଡୁଥିଲା। ବ୍ରଜମୋହନଙ୍କ ପିତା ପୁତ୍ରକୁ ଜଣେ କୋଠିଆ କାନ୍ଧରେ ବସାଇ ପ୍ରତିଦିନ ସ୍କୁଲକୁ ପଠାଉଥିଲେ। ଶିଶୁ ବ୍ରଜମୋହନ ପିତାଙ୍କର ଏ ବ୍ୟବସ୍ଥା ସହିତ ଗ୍ରାମର ଅନ୍ୟ ପିଲାମାନଙ୍କ ପାଠପଢିବାର ଆଗ୍ରହ ତୁଳନାକରି, ଚିନ୍ତାକରିବା ଆରମ୍ଭ କରି ଦେଇଥିଲେ।

ଏ ଚିନ୍ତାକୁ ସେ କାହା ଆଗରେ ପ୍ରକାଶ ନକରି, ନିଜେ ନିଜର ବ୍ୟକ୍ତିଗତ ସ୍ତରରେ କିପରି ସମାଧାନ କରିପାରିବେ, ତାହାହିଁ କରିଥିଲେ। ବୟସ ମୋଟେ ତେରବର୍ଷ। ସେଇ ବୟସରୁ ବ୍ରଜମୋହନ ନିଜ ଗାଁରେ ସ୍କୁଲ ପ୍ରତିଷ୍ଠାର ଆୟୋଜନ କଲେ ତାଙ୍କର ସମବୟସ୍କ ମଧ୍ୟବିତ୍ତ ଓ ଦରିଦ୍ର ପରିବାରର ଖେଳସାଥିଙ୍କ ପାଇଁ।

ଗାଁର ସବୁଠାରୁ ଗୁଣୀ ପଣ୍ଡିତଙ୍କୁ ମାସିକ ଏକଟଙ୍କା ଦେଇ ସେ ନିଜଘର ଆଗ ବାରଣ୍ଡାରେ ଆରମ୍ଭକଲେ ଏକ ନିୟମିତ ଚାଟଶାଳୀ। ଏ ଦରମାଟଙ୍କା, ସେ ତାଙ୍କ ପିତାଙ୍କ ପାଖରୁ ଅଳିକରି ମାଗିନଥିଲେ। ପିତାଙ୍କଠାରୁ ସକାଳପ୍ରହରରେ ନିଜ ଘରବାରଣ୍ଡାରେ ଚାଟଶାଳୀ ଚଳାଇବାର ଅନୁମତି କେବଳ ଲୋଡ଼ିଥିଲେ। ଦରମାଟଙ୍କା ସେ ଦେଉଥିଲେ ନିଜର ମାସିକ "ଘିନିଖିଆ"ରୁ (ପକେଟ ଖର୍ଚ୍ଚରୁ)। ନିଜର ଭୂକାଖିଆରୁ ସଂଚୟକରି ଶିକ୍ଷକଙ୍କୁ ଦରମାଦେବା ବ୍ୟବସ୍ଥା ସେ ୧୯୦୨ ରୁ ୧୯୦୭ ମସିହା ପର୍ଯ୍ୟନ୍ତ ଚଳାଇ ରଖିଥିଲେ। ୧୯୦୭ ମସିହାରେ ଏହି ସ୍କୁଲଟି ଡିଷ୍ଟ୍ରିକ୍ଟ ବୋର୍ଡ ଅଧୀନକୁ ଆସିଲା।

ଲରମ୍ବା ଗାଁର ସବୁଠାରୁ ବଡ଼ଘର ଥିଲା "ବାବୁଘର"। ତିନିମହଲା। ପ୍ରଥମ ଅଫିସଘର ବା ଡ୍ରଇଂରୁମ୍। ତା' ଭିତରକୁ ଭିତର ଖଞ୍ଜା। କିନ୍ତୁ ଅଫିସଘରୁ ସାମନା ବାରଣ୍ଡାକୁ ଓ ବାହାର ଖଞ୍ଜାକୁ ଯିବାପାଇଁ ଅଲଗା ଅଲଗା ବାଟ। ବାହାର ଖଞ୍ଜାଟି ଖୁବ ବଡ଼। ଗୋରୁ, ଗାଇ, ବଳଦ ବାନ୍ଧିବା ବାରଣ୍ଡା। ଚାଷଜମିର ଧାନ, ବିରି, ମୁଗ ଆଣି ରଖିବା ବାରଣ୍ଡା ଓ ଲୋକବାକ ଭୋଜିଭାତ, କୁଣିଆମୈତ୍ର, ସଭାସମିତି ଓ ଛୋଟକାଟ ପୂଜାପାର୍ବଣ ପାଇଁ ଚଉଡ଼ା ବାରଣ୍ଡାମାନ ଏ ବାହାର ଖଞ୍ଜାରେ ଥିଲା।। ଚାରି ପାଖରେ ଖପର ଛାତ। ସବାଶେଷକୁ ବାଡ଼ିପଟକୁ ଯିବାପାଇଁ ଚଉଡ଼ା ଦରଜା। ବାଡ଼ିର ପ୍ରଥମ ଭାଗରେ ଏକ ପନ୍ଦରଫୁଟ ବ୍ୟାସର ଗହିର କୂଅ। କୂଅରେ ବାରମାସୀ ପାଣି ଉଠେଇବା ପାଇଁ ପରସିଏନ୍ ହୁଇଲ। ଗୋଟିଏ ବଳଦ ବା ଜଣେ ଲୋକର ବଳରେ କୂଅରୁ ପାଣି କାଢ଼ିବାର ବ୍ୟବସ୍ଥା। କୂଅର ଅନତିଦୂରରେ ବାରମାସୀ ଫୁଟୁଥିବା ଅନେକ ପ୍ରକାର ଭାରତୀୟ ଛୋଟ ବଡ଼ ଫୁଲଗଛ। ସେଥିରୁ ଅଧିକାଂଶ ବାସ୍ନା ଫୁଲ। ତେଣୁ ବାଡ଼ିପଟକୁ ଯିବା ସଂଗେ ସଂଗେ, ହେନା, ଯୁଇ, ଜାଇ, ମଲ୍ଲୀ, ଗଙ୍ଗଶିଉଳୀ, ଗୋଲାପ, ତମାଳ, ରଜନୀଗନ୍ଧା ଓ ଦୋଲନ ଚମ୍ପାର ମହକରେ ମନ ପୁଲକିତ ହୋଇ ଉଠୁଥିଲା। ତାକୁ ଲାଗି ଆଉ ଟିକିଏ ଦୂରରେ ପରିବା ବଗିଚ଼ା। ଋତୁଦେଖି ବର୍ଷସାରା ପରିବା ମିଳୁଥିଲା ଏ ବଗିଚ଼ାରୁ। ଭେଣ୍ଡି, କାକୁଡ଼ି, ଲାଉ, କଖାରୁ, କଲରା, ଝୁଡ଼ଙ୍ଗ, ଗଣ୍ଠିକୋବି, ବନ୍ଧାକୋବି, ଫୁଲକୋବି, ସାଲଗମ୍, ବିଟ, ଗାଜର, ମୂଳା, ଶିମ୍ବ, ଗୁଆର, ଲେଉଟିଆ, କୋଶଳା, ପାଳଙ୍ଗ, ଖଡ଼ା, ବିନ ଓ ପୋଟଳ ପରି ତଟକା ପରିବା ମିଳୁଥିଲା ଏ ବଗିଚ଼ାରୁ। କୂଅର ଅନ୍ୟ ଏକ ପାଖରେ ଲେମ୍ବୁ, କଦଳୀ, ଆମ୍ବ, କମଳା, ଲିଚୁ, କାମ୍‌ରୋଲ, ଜାମୁ, ସପେଟା ଓ ପିଜୁଳି ଗଛ। କୁଅଠାରୁ ଟିକିଏ ଦୂରରେ ପାଇଖାନା ଓ ଗାଧୁଆ ଘର। ଏ ବାଡ଼ିବଗିଚାର ତଦାରଖ ନିଜେ ବ୍ରଜମୋହନ ବାବୁ ପ୍ରତିଦିନ କରୁଥିଲେ। ଦୁଇ ବେଳର ଭାତ ଖାଇବା ସମୟରେ ଦଶ/ବାର ପ୍ରକାରର ସଦ୍ୟ ପନିପରିବାର ବ୍ୟଞ୍ଜନ ପରସା ନହେଲେ ବ୍ରଜମୋହନ ଠା'ରେ ବସୁନଥିଲେ।

ଭିତର ଖଞ୍ଜାରେ ଭଣ୍ଡାରଘର, ଧାନ ଖମାର ଓ ଭୂଆଷୁଣୀ ଝିଅ ବୋହୂଙ୍କ କୋଠରୀ। ତା' ପାଖକୁ ସେମାନଙ୍କ ବସିବାଉଠିବା ଘର ଓ ରୋଷେଇ ଘର। ଏ ଖଞ୍ଜାର ଚାରିପଟେ ବଡ଼ ଚଉଡ଼ାର ବାରଣ୍ଡା ଉପରେ ଖପର ଛାତ ଓ ତା ମଝିରେ ଖୋଲା ଦୁଆର। ସେଠି ଏକ ସଂଗରେ କୋଡିଏଟା ଦଉଡିଆ ଖଟ ପଡିବାର ବ୍ୟବସ୍ଥା ଥିଲା। ଖଞ୍ଜାର ଯେଉଁ ପଟ ବାଡ଼ି ସହିତ ସଂଲଗ୍ନ ଥିଲା କୁଅରୁ ପାଣି ଗଡି ଆସି ଯେପରି ଗାଧୁଆଘରେ ପାଣିକୁଣ୍ଡରେ ପାଣି ଜମା ହୋଇପାରିବ ତାହାର ବ୍ୟବସ୍ଥା ଥିଲା। ପ୍ରଥମ ମହଲାର ଏ ସମସ୍ତ ବ୍ୟବସ୍ଥା ପରେ ଦ୍ୱିତୀୟ ଓ ତୃତୀୟ ମହଲାରେ ନଥିପତ୍ର, ପାଠବହି, ଧର୍ମଧାରଣା ପାଇଁ ଠାକୁର ଘର, ଉପାସନା ଘର ଓ ରେକର୍ଡ ଓ ଦଲିଲ ଘର। ପ୍ରତ୍ୟେକ ବୟସ୍କ ପୁରୁଷଙ୍କ ପାଇଁ ଗୋଟିଏ ଲେଖାଏଁ କୋଠରୀ ଓ ତାଙ୍କ ନିଜର ଆସବାବ ରଖିବା ସ୍ଥାନ। ସବାଉପର ମହଲାଟି ପ୍ରାୟ

ଖୋଲା ରହୁଥିଲା ହାଲୁକା ଜିନିଷ ରଖିବା ପାଇଁ ଓ ଖରାଦିନରେ ରାତିରେ ଶୋଇବା ପାଇଁ। ବଡି ଓ ଓଦା ଲୁଗା ଶୁଖେଇବା ପାଇଁ ଏ ସ୍ଥାନଟି ବ୍ୟବହୃତ ହେଉଥିଲା ।

ଆଗରୁ କୌଣସି ଗାଁରେ ମୁଁ ଏତେବଡ଼ ଖଞ୍ଜା ଦେଖିନଥିଲି । ବାବୁଘରେ ସକାଳୁସଞ୍ଜ ଯାଏ ଭିଡ଼ । ବହୁ ବିଷୟରେ ବାବୁଙ୍କ ସଂଗରେ ଆଲୋଚନା କରିବାକୁ ଲୋକେ ଆସନ୍ତି । ଧର୍ମଚର୍ଚ୍ଚା, ସାହିତ୍ୟ, ଶିକ୍ଷା, ସ୍ୱାସ୍ଥ୍ୟ, କୃଷି ଓ ରାଜନୀତି ସବୁ ବିଷୟରେ ବ୍ରଜମୋହନ ବାବୁଙ୍କ ରଚି ଥିଲା । ଅତି ଅଳ୍ପ ବୟସର ପିଲା ହୋଇଥିଲେ ମଧ୍ୟ ଲରମ୍ବାର 'ବାବୁ'ଙ୍କ ଏ ବିରାଟ ରୂପଟି ମୋତେ ଅଳ୍ପ ସମୟ ମଧ୍ୟରେ ଏତେ ପ୍ରଭାବିତ କରିପକାଇଥିଲା ଯେ, ପିଲାବେଳର "ସାନ୍ତରା ବୁବା"ଙ୍କ ସମସ୍ତ ପରିକଳ୍ପନା ଉଭେଇ ଯାଇଥିଲା । ତା' ପରିବର୍ତ୍ତେ ମୋ ଅଜାଣତରେ ଭୟ, ସମ୍ଭ୍ରମ, ଆଶ୍ଚର୍ଯ୍ୟ, ସମ୍ମାନ ଓ ଦୂରତ୍ୱ ମୋ ଭିତରେ ବସାବାନ୍ଧି ସାରିଥିଲା । ଖୁବ ଅଳ୍ପଦିନ ଭିତରେ ବାବୁଙ୍କ ଜମିଜମା ବ୍ୟବସ୍ଥା, ସ୍କୁଲ ପରିଚାଳନା ବିଷୟରେ ମୁଁ ଯେତିକି ଜାଣିଲି ଓ ଦେଖିଲି ତାହା ମୋତେ ଅଭିଭୂତ କରିପକାଇଲା । ଅଜା ନାତି ସଂପର୍କଠାରୁ ସେ ଏକ ଗବେଷଣାର ବିଷୟହୋଇ ବହୁ ଉଚ୍ଚକୁ ଚାଲିଗଲେ ।

ମୁଁ ଲରମ୍ବାରେ ପହଞ୍ଚିବା ବେଳକୁ ବ୍ରଜମୋହନ ବାବୁଙ୍କ ବଡ଼ପୁଅ ଶଶୀଭୂଷଣଙ୍କ ଯୌବନାବସ୍ଥାରେ ମୃତ୍ୟୁ ହୋଇସାରିଛି । ମଝିଆ ପୁଅ ଗଙ୍ଗାଭୂଷଣଙ୍କ ପ୍ରଥମ ସ୍ତ୍ରୀଙ୍କର ମଧ୍ୟ ଅକାଳ ମୃତ୍ୟୁ ହୋଇସାରିଛି । ଦ୍ୱିତୀୟ ସ୍ତ୍ରୀ ନୂଆବୋହୁ ଭାବରେ ଘରେ ଅଛନ୍ତି । ବଡ଼ ଝିଅ ଅନେକ ଦିନରୁ ବିବାହ କରି ସାରିଛନ୍ତି । ମଝିଆ ଝିଅ ବିବାହ ହେବାପାଇଁ ପ୍ରସ୍ତାବ ପଡିଛି । ସାନପୁଅ ପଦ୍ମଲୋଚନ ଓ ସାନ ଝିଅ ସ୍କୁଲର ଛାତ୍ରଛାତ୍ରୀ । ସ୍ତ୍ରୀ ଲଳିତାଦେବୀ ବଡ଼ପୁଅ ଓ ନବବଧୂର ମୃତ୍ୟୁପରେ ବେଳେବେଳେ ମାନସିକ ସନ୍ତୁଳନ ହରାଇ ବସନ୍ତି । ଚିଡ଼ିଚିଡ଼ା ପ୍ରକୃତିର ହୋଇଯାଆନ୍ତି । ଘର ଭିତରେ ସବୁବେଳେ ଯେମିତି ଗୋଟାଏ ଥମଥମ ଭାବ । ବାହାର ଦୁନିଆରେ ବ୍ରଜମୋହନ କିନ୍ତୁ ସ୍ଥିତପ୍ରଜ୍ଞ, ଅତିବ୍ୟସ୍ତ ଓ କର୍ମରତ । ଘରେ ବାହାରେ ସେ ଯେଉଁଠାରେ ଥିଲେ ତାଙ୍କର ବିରାଟ ସାମ୍ରାଜ୍ୟର "ମେନେଜମେଣ୍ଟ"ର ଚିନ୍ତା ଛଡ଼ା ଅନ୍ୟ କୌଣସି ବିଷୟରେ ସେ ମୁଣ୍ଡ ଖେଳାଉ ନଥିଲେ । ଶୁଣିଥିଲି ବାବୁ ଯୁବାବୟସରେ ଗଙ୍ଗାଧରଙ୍କ ପରି କବିଟିଏ ଥିଲେ ।

ଅଠର ଖଣ୍ଡ ଗାଁରେ ଚାଷ ଜମି ଓ ଘର । ଘର ସହିତ ବଗିଚା ଓ ଫଳବଗିଚା । ତାହାକୁ ପରିଚାଳନା କରିବାପାଇଁ ଖମାରୀ, ବହିଦାର, କୋଠିଆ, ଗୋତି, ମାଳୀ, ବଢ଼େଇ, ହିସାବକାର, ଲେଖନକାର, ପୂଝାରୀ, ଚାକର, ଡ୍ରାଇଭର, ଗଉଡ଼, କମାର, କୁମ୍ଭାର, ପାଣିହାରି, ମିସ୍ତ୍ରୀ, ଠିକାଦାର, କୁଲି, ମଜୁରିଆ ଓ ରେଜା ସମସ୍ତେ ବାବୁଙ୍କର ଲାଗୁଆଥିଲେ । ପ୍ରାଇମେରୀ, ମାଇନର ଓ ହାଇସ୍କୁଲର ସମସ୍ତ ଖଂଜା ଓ ମାଷ୍ଟରଙ୍କ ଦରମା ତା' ସହିତ ଲରମ୍ବାର ଦାତବ୍ୟ ଚିକିତ୍ସାଳୟର ଜଣେ ଡାକ୍ତର ତଥା କମ୍ପାଉଣ୍ଡରଙ୍କ ଦରମା ଓ ସେମାନଙ୍କ

ବାସଗୃହ ତାଙ୍କର ଦାୟିତ୍ୱରେ ପରିଚାଳିତ ହେଉଥିଲା । ହାଇସ୍କୁଲ ଓ ମାଇନର ସ୍କୁଲର ଛାତ୍ରାବାସରେ ପ୍ରାୟ ତିନି ଶହ ଛାତ୍ରଙ୍କ ରହିବା ପଢ଼ିବାର ଶୃଙ୍ଖଳା ବିଷୟରେ ସେ ଟିକିନିଖି ଖବର ରଖୁଥିଲେ । ଏସବୁ ପାର୍ଥିବ ସମସ୍ୟା ମଧ୍ୟରେ ମଧ୍ୟ ସମୁଧି ଡ଼ାକ୍ତର ଜନାର୍ଦ୍ଦନ ପୂଜାରୀଙ୍କ ଗହଣରେ ଏକ "ଗୀତା ଆଶ୍ରମ"ର ପରିଚାଳନା ଭାର ନିଜେ ବହନ କରିଥିଲେ । ପ୍ରଥମେ ଲରମ୍ବାରେ ପହଞ୍ଚିବା ପରେ ପ୍ରାୟ ଚାରିଦିନ ମୁଁ ବାବୁଙ୍କ ଘରେ କୁଣିଆ ହୋଇଥିଲି । ସାନପୁଅ ପଦ୍ମଲୋଚନ ମୋର ସମବୟସ୍କ ଥିଲେ ଓ ଆମେ ଗୋଟିଏ ଶ୍ରେଣୀର ଛାତ୍ର ଥିଲୁଁ । ସଂପର୍କରେ ମାମୁଁ ହେଲେ ମଧ୍ୟ ଆମେ ଦୁଇଜଣ ମୂଳରୁ ବନ୍ଧୁ ହୋଇ ଯାଇଥିଲୁ । ମୁଁ ଚାରିଦିନ ପରେ ଛାତ୍ରାବାସ ସିଟ୍‌ରେ ଆସି ଯୋଗ ଦେଲି । ପଦ୍ମଲୋଚନ ମଧ୍ୟ 'ଷ୍ଟଡ଼ି ଆୱାର'ରେ ଛାତ୍ରାବାସକୁ ଆସି ପଢ଼ାପଢ଼ି କରୁଥିଲେ ।

ମୋଟେ ଚାରି/ପାଞ୍ଚ ମାସ ଲରମ୍ବାରେ ଆବାସିକ ଛାତ୍ର ଭାବରେ ରହିବା ଭିତରେ ମୋର 'ବାବୁଘର' ବିଷୟରେ ଏମିତି ଏକ ଅଭିଜ୍ଞତା ହେଇଯାଇଥିଲା । ଦଶହରା ଛୁଟିରେ କୋରାପୁଟ ଫେରିଲିଁ । ବାପା ସେତେବେଳକୁ କୋରାପୁଟରୁ ନବରଙ୍ଗପୁରର ଏସ୍.ଡି.ଓ. ଭାବରେ ବଦଳି ହୋଇସାରିଛନ୍ତି । ସେଠି ଗୋଟିଏ ହାଇସ୍କୁଲ ଥିଲା । ମା'ଙ୍କ ଅନୁରୋଧରେ ମୋର ଶାରୀରିକ ଅସୁସ୍ଥତା ଯୋଗୁ ମୋତେ ନବରଙ୍ଗପୁର ହାଇସ୍କୁଲକୁ ବଦଳି କରି ଅଣାଗଲା । ମୁଁ ଅଷ୍ଟମ ଶ୍ରେଣୀରୁ ନବମ ଶ୍ରେଣୀକୁ ଉନ୍ନିତ ହେଲାବେଳକୁ ଭାରତ ସ୍ୱାଧୀନତା ପାଇଲା । ୧୯୪୭ ମସିହାର ଅଗଷ୍ଟ ପନ୍ଦରରେ ବାପା ନବରଙ୍ଗପୁର ହାଇସ୍କୁଲ ପଡ଼ିଆରେ ତ୍ରିରଙ୍ଗା ପତାକା ଉଡ଼ାଇବାପରେ ତାଙ୍କର ବଦଳି ଅର୍ଡର ଆସିଲା । ମୋତେ ପୁଣିଥରେ ଲରମ୍ବା ଉଚ୍ଚଇଂରାଜି ବିଦ୍ୟାଳୟକୁ ଫେରିବାକୁ ପଡ଼ିଲା ।

ପ୍ରାୟ ଅଢ଼େଇବର୍ଷ ପର୍ଯ୍ୟନ୍ତ ଶୃଙ୍ଖଳା, ସାଧନା, କର୍ତ୍ତବ୍ୟବୋଧ, ଅଧ୍ୟବସାୟ ଓ ଆତ୍ମନିର୍ଭରଶୀଳତାକୁ ଆଶ୍ରୟ କରି ଗ୍ରାମୀଣ ପରିବେଶରେ ଓତଃପ୍ରୋତଃ ଭାବରେ ମିଶିବାକୁ ସୁବିଧା ମିଳିଲା । ଲରମ୍ବାର ବାବୁଙ୍କ ବିଷୟରେ ଆହୁରି ଅନେକ ବିଷୟ ଜାଣିବାକୁ ପାଇଲି ଏହି ସମୟରେ । ଆଧୁନିକ ଅର୍ଥନୈତିକ ବ୍ୟବସ୍ଥାର ନିଛକ ଅନୁରୂପ ଥିଲା ତାଙ୍କର "ମେନ୍ ମେନେଜମେଣ୍ଟ"ରେ । ସବୁ ଗାଁରେ ଜଣେ ଜଣେ ଖମାରୀ ବା ମେନେଜର ବାସଗୃହ, ଜମି ଓ ଫଳବଗିଚ଼ାର ତଦାରଖ ପାଇଁ ନିୟୋଜିତ ହୋଇଥିଲେ । ସେମାନେ ପ୍ରତ୍ୟେକେ ହାନିଲାଭର ହିସାବ ରଖୁଥିଲେ ଓ ସପ୍ତାହରେ ଥରେ ଯାଇ ବାବୁଙ୍କ ପାଖରେ ପହଞ୍ଚି ସବୁକଥା ବୁଝାଇ/ବୁଝି ଆସୁଥିଲେ । ଖର୍ଚ୍ଚ ଅଟକଳ ମଞ୍ଜୁର କରି ଆଣୁଥିଲେ । ମାସକୁ ଥରେ ବାବୁ ନିଜେ ତାଙ୍କ ଗାଡ଼ିରେ ଏ ଗ୍ରାମମାନଙ୍କୁ ଯାଇ ଭଲମନ୍ଦ ବୁଝୁଥିଲେ । ସମସ୍ତ ବ୍ୟବସ୍ଥା ଅବ୍ୟବସ୍ଥା ବିଷୟରେ କାର୍ଯ୍ୟ ଗ୍ରହଣ କରିବାକୁ ନିର୍ଦ୍ଦେଶ ଦେଉଥିଲେ । ଏସବୁ କରିବା ଦ୍ୱାରା ସେ ନିଜକୁ ଧନଶାଳୀ ହେବାକୁ ଚେଷ୍ଟା ନକରି ପ୍ରତ୍ୟେକ ଗ୍ରାମ, ବଗିଚ଼ା ବା ୟୁନିଟ୍ ଓ ଘରକୁ ଗୋଟିଏ ଗୋଟିଏ ଅର୍ଥନୈତିକ "ସ୍ୱୟଂସଂପୂର୍ଣ୍ଣ ଏକକ" ଭାବରେ ଗଢ଼ି ତୋଳୁଥିଲେ ।

କଲିକତା ଓ ଉତ୍ତର ଭାରତର ବହୁ କଳାକୁଶଳୀ ଓ ବୈଷୟିକ କଳାକାର/କାରିଗର ମାନଙ୍କୁ ଡକାଇ ଆଣି ସେମାନଙ୍କର ମେସିନ୍ ଓ ଯନ୍ତ୍ରର କାର୍ଯ୍ୟକାରିତା ବିଷୟରେ ସ୍ଥାନୀୟ ଯୁବକମାନଙ୍କୁ ଶିଖାଉଥିଲେ। ଅଳ୍ପଦିନ ଭିତରେ ଏ ଅଶିକ୍ଷିତ ଗ୍ରାମବାସୀମାନେ ଜଣେ ଜଣେ ଦକ୍ଷ କାରିଗର ହୋଇ ବାବୁଙ୍କ ଗ୍ରାମ୍ୟ ସଂସ୍ଥା ମାନଙ୍କରେ ଆଜୀବନ କାର୍ଯ୍ୟକରୁଥିଲେ। ବେଳେବେଳେ ଏମାନେ ପୁତ୍ର ପୌତ୍ରାଦି କ୍ରମେ କାର୍ଯ୍ୟକରିବା ଦେଖାଯାଉଥିଲା। ୧୯୪୭ ରୁ ୧୯୫୨ ମସିହା ମଧ୍ୟରେ ମୋର ଲରମ୍ଭା ଓ ସମ୍ବଲପୁର ରହଣି ମଧ୍ୟରେ ମୁଁ ତାଙ୍କ ଗ୍ରାମର ଘର, ଫଳବଗିଚ଼ା ଓ କୁଟୀରଶିଳ୍ପ ସଂସ୍ଥାମାନଙ୍କୁ ବୁଲିଦେଖିବାର ଅଭିଜ୍ଞତା ପାଇଛି। ଲରମ୍ଭା ବାବୁଙ୍କର ଅସଲ ରୂପଟା ମୋ ଆଗରେ ସେତେବେଳେ ଏତେ ବିରାଟ ହୋଇ ଯାଇଥିଲା ଯେ ମୁଁ ନିଜକୁ ଧୀରେଧୀରେ ଗୋଟିଏ କ୍ଷୁଦ୍ରଜୀବ ମନେକରୁଥିଲି। କେବଳ ତାଙ୍କର ସାନପୁଅ ପଦ୍ମଲୋଚ଼ନଙ୍କ ବନ୍ଧୁତ୍ୱ ଯୋଗୁଁ ମୋର ତାଙ୍କ ସହିତ ସଂପର୍କ ଥିଲା। ମା' ଓ ବାପାଙ୍କ ସହିତ ତାଙ୍କର ଘନିଷ୍ଠ ସଂପର୍କ ଯୋଗୁ ସେ ଆମ ପରିବାରର ଜଣେ ହିତୈଷୀ ବନ୍ଧୁଥିଲେ।

୧୯୫୪ ରୁ ୧୯୫୭ ମସିହାଯାଏ ମୁଁ ଏହ୍ଲାବାଦ ବିଶ୍ୱବିଦ୍ୟାଳୟର ଛାତ୍ରଥିଲି। ସେଠାରୁ ଡିଗ୍ରୀ ପାଇ ଘରକୁ ଫେରିବା ସତ୍ତ୍ୱେ ବାପାଙ୍କ ଆଦେଶରେ ମୁଁ ସେଠାରେ ଆଇନ ବିଭାଗର ଛାତ୍ରହେଲି। ୧୯୫୭ ଡିସେମ୍ବର ମାସରେ ବାପାଙ୍କ ଅସମୟରେ ହୃଦରୋଗରେ ମୃତ୍ୟୁହେଲା। ଲରମ୍ଭାର ବୁବା ପ୍ରଥମେ ଆସି ମୋ ମା'ଙ୍କ ପାଖରେ ଛିଡ଼ାହେଲେ। ମୋର ମାନସିକ ସ୍ଥିତାବସ୍ଥା, ସ୍ନାୟବିକ ଦୁର୍ବଳତା, ମୋର ହତାଶା ଓ କିଂକର୍ତ୍ତବ୍ୟ ବିମୂଢ଼ତା ବିଷୟରେ ସେ ଅବଗତ ଥିଲେ। ଏସବୁ ଭିତରେ ମୋର ପ୍ରଥମ ଚଳଚ୍ଚିତ୍ର ଶ୍ରୀ ମହାଲକ୍ଷ୍ମୀ ପୂଜା ମୁକ୍ତି ପାଇଲା। ସାରା ସମ୍ବଲପୁରରେ ଏହା ଏକ ଚାଞ୍ଚଲ୍ୟ ସୃଷ୍ଟିକରିଥିଲା। ଲୋକେ ମୋତେ ଦେଖିବାକୁ ଆସୁଥିଲେ। ସିନେମାରେ ଦେଖି ପଇସା ଓ ନଡ଼ିଆ ଫୋପାଡୁ ଥିଲେ। ତଥାପି ମୁଁ ଚାକିରିଟିଏ ଖୋଜୁଥିଲି। ମାର୍ଗ ଖୋଜୁଥିଲି।

ଦିନେ କୁଞ୍ଜେଲ ପଡ଼ାର 'ବ୍ରଜଧାମ' ଘର ଆଗରେ ଡାକ୍ତର ଜନାର୍ଦ୍ଦନ ପୂଜାରୀଙ୍କ ଗହଣରେ ତାଙ୍କର ଭକ୍ତମାନେ ଓ ବ୍ରଜମୋହନ ପଣ୍ଡା ଛିଡ଼ା ହୋଇଥିବା ସମୟରେ ମୁଁ ତାଙ୍କୁ ଦେଖାକରିବାକୁ ଗଲି। ମୋତେ ଦେଖି ଚଳଚ୍ଚିତ୍ର ଅଭିନୟ ବିଷୟରେ ଖୁସିରେ କେତେକ ପ୍ରଶ୍ନ ପଚ଼ାରିବା ପରେ ମୋତେ ଲରମ୍ଭାର ବାବୁ ପଚାରିଲେ, "ଚଳଚ୍ଚିତ୍ର ଅଭିନୟକୁ କଣ ପେଷା ଭାବରେ ଗ୍ରହଣ କରିନେଲ ?" ମୁଁ ତାଙ୍କୁ କହିଥିଲି, "ଚାକିରି ନମିଳିବା ଯାଏ ବସି ରହିବାଠାରୁ କିଛି କରିବା ଉଚିତ ମନେକଲି। ଚାକିରି ମଧ୍ୟ ଖୋଜୁଛି। ଆପଣଙ୍କ ପାଖରୁ ଖଣ୍ଡିଏ ସୁପାରିଶ ପତ୍ର ପାଇଲେ ଖୁବ୍ ଉପକୃତ ହୁଅନ୍ତି।" ସେ ମୋତେ ତା' ପରଦିନ ଆସିବାକୁ କହିଲେ। ତହିଁ ଆରଦିନ ମୋ ଚରିତ୍ର ପ୍ରମାଣପତ୍ରଟି ଆଣିବାକୁ ଗଲି। ଲେଖି ସାରିଥିଲେ। ମୋ ହାତକୁ ଲେଖାଟି ବଢ଼ାଇ ଦେବା ବେଳେ କହିଲେ, "ତୁମ ବାପା, ବହୁ

କଷ୍ଟରେ ତୁମକୁ ପାଠ ପଢ଼େଇଛନ୍ତି । ସେ ପାଠର ସଦ୍‌ବ୍ୟବହାର ଯେମିତି କର ।" ତା'ପରେ ମୁଁ ତାଙ୍କୁ ଭେଟିନାହିଁ ।

୧୯୬୦ ମସିହାରେ ବରଗଡ଼ ପଞ୍ଚାୟତ କଲେଜର ଅଧ୍ୟାପକ ଚାକିରୀ ମିଳିବା ପରେ ବରଗଡ଼ସ୍ଥିତ ତାଙ୍କ ଘରେ କିଛିଦିନ ପ୍ରଥମେ ଯାଇ ରହିଥିଲି । ତା'ପରେ ଭଡ଼ାଘରକୁ ଉଠିଯାଇଥିଲି । ୧୯୬୪ ମସିହାଯାଏ ବରଗଡ଼ କଲେଜର ଉନ୍ନତି ପାଇଁ ବେଶ ଉତ୍ସାହିତ ହୋଇ କାର୍ଯ୍ୟକଲି । କିନ୍ତୁ ଏ ଉତ୍ସାହକୁ ୧୯୬୫ ମସିହା ବେଳକୁ ଆଉ ପରିଚାଳନା ସମିତି ପ୍ରୋତ୍ସାହିତ କଲେନାହିଁ । ୧୯୬୪ରେ ଛାତ୍ର ଆନ୍ଦୋଳନ ପରେ, କଲେଜକୁ ସରକାରୀ କରିଦେବାପାଇଁ ଏକ ଅଘୋଷିତ ରାଜିନାମା ପରିଚାଳନା ସମିତି ସଭ୍ୟଙ୍କ ଭିତରେ ଗଢ଼ି ଉଠିଲା । ମୁଁ ସେତେବେଳେ ଭାରପ୍ରାପ୍ତ ଅଧ୍ୟକ୍ଷ । ଲରମ୍ବା କଲେଜ ପ୍ରତିଷ୍ଠା ପାଇବା ପରେ, ମୋର ପୂଜ୍ୟ ଗୁରୁ ପ୍ରଧାନଶିକ୍ଷକ ଖଗେନ୍ଦ୍ରନାଥ ସେନଗୁପ୍ତ ଥରେ ମୋତେ ଲରମ୍ବା କଲେଜର ଏକ ଉତ୍ସବକୁ ନିମନ୍ତ୍ରଣ କରିଥିଲେ । ମୋତେ ଲରମ୍ବା କଲେଜକୁ ଆସି ଅଧ୍ୟକ୍ଷ ପଦବୀ ସମ୍ଭାଳିବାକୁ ଖଗେନ୍ଦ୍ରବାବୁ ଅନୁରୋଧ କରିଥିଲେ । ମୁଁ ସେତେବେଳେ ଏହା ଉପରେ ଗୁରୁତ୍ୱ ଦେଇନଥିଲି । ବରଗଡ଼ କଲେଜର ପ୍ରଶାସନିକ ପରିସ୍ଥିତି, ଧୀରେ ଧୀରେ ଏପରି ହେଲା ଯେ ମୋତେ ତ୍ୟାଗପତ୍ର ଦେବାକୁ ପଡ଼ିଲା । ମୁଁ ତାପଙ୍ଗ, କଟକ ଓ କଲିକତାରେ ଦୁଇବର୍ଷ ରହି କେବଳ ଚଳଚ୍ଚିତ୍ରରେ ଅଭିନୟ କରିବାରେ ବ୍ୟସ୍ତ ରହିଲି । ୧୯୬୮ ମସିହାର ମେ ମାସରେ ହଠାତ ଦିନେ ମୋର ବାଲ୍ୟବନ୍ଧୁ ଧୀରେନ୍ଦ୍ରନାଥ ପାଢ଼ୀ ଓ କମଳାକାନ୍ତ ପଣ୍ଡା ମୋତେ ମୋର କଟକର ଭଡ଼ାଘରେ ଦେଖାକଲେ । ତାଙ୍କର ଅନୁରୋଧ, ଖଗେନ୍ଦ୍ରବାବୁ ବାର୍ଦ୍ଧକ୍ୟ ଯୋଗୁ ଅଧ୍ୟକ୍ଷ ପଦରୁ ବିଦାୟ ନେବାକୁ ଚାହାଁନ୍ତି । ତାଙ୍କର କହିବା ଅନୁସାରେ ମୁଁ ତାଙ୍କଠାରୁ ଦାୟିତ୍ୱ ଗ୍ରହଣ କରିବା ସେ ଚାହାଁନ୍ତି । ମୁଁ ସମୟ ଚାହିଁଲି ନିଷ୍ପତ୍ତି ନେବାକୁ । ଲରମ୍ବା କଲେଜର ଅଧ୍ୟକ୍ଷ ଦାୟିତ୍ୱ ମୋତେ ଏକ ବିରାଟ ଆହ୍ୱାନପରି ଜଣାଗଲା ।

ବ୍ରଜମୋହନ ବାବୁଙ୍କ ଶେଷ କଥାଟି ମନେପକେଇ, ଦୁଇମାସପରେ ମୁଁ ଖଗେନ୍ଦ୍ରବାବୁଙ୍କ ଠାରୁ ଲରମ୍ବା କଲେଜ ଦାୟିତ୍ୱ ଗ୍ରହଣ କଲି । ତା'ପରେ- "ଲରମ୍ବା ବାବୁ"ଙ୍କର କର୍ମକ୍ଷେତ୍ର, ବିଦ୍ୟାକ୍ଷେତ୍ର ଓ ଧର୍ମକ୍ଷେତ୍ର ଲରମ୍ବା ମହାବିଦ୍ୟାଳୟ ପରିସରକୁ ମୁଁ କୁରୁକ୍ଷେତ୍ର ମନେକରି ଜଣେ ଯୁଯୁତ୍ସୁ ଭାବରେ ଚବିଶ ବର୍ଷଯାଏ ଲଢ଼େଇ କରି ଚାଲିଲି । ଜୀବନଟା ଗୋଟାଏ ପରେ ଗୋଟାଏ ଲଢ଼େଇ । ମୋର ସ୍ୱର୍ଗୀୟ ପିତାଙ୍କ ଭାଷାରେ "ଲାଇଫ ଇଜ୍ ଏ ସିରିଜ ଅଫ୍ ଷ୍ଟ୍ରଗଲ୍ ।" "ସାନ୍ତରା ବୁବା ! ଆପଣଙ୍କୁ କୋଟୀ କୋଟୀ ପ୍ରଣାମ !! ଆପଣ ମୋତେ ମୋର ମାର୍ଗ ଦେଖେଇ ଦେଲେ !"



# ଜଣେ ଶିକ୍ଷକର ନାଟ୍ୟାନୁଭୂତି

## (୧)

ପ୍ରଚାର ସର୍ବସ୍ୱ ଆଧୁନିକ ଯୁଗରେ ନେତା ଓ ଅଭିନେତାଙ୍କୁ ସମାଜସେବୀ ଓ 'ଚଳଚ୍ଚିତ୍ର ଅଭିନେତା' କହି ପ୍ରଚ଼ାର କରିବା ଏକ 'ଷ୍ଟାଇଲ' ବ 'ଷ୍ଟାଟସ୍ ସିମ୍ବଲ' ବୋଲି ଅନେକ ମନେ କରନ୍ତି । ଦୀର୍ଘ ଚାରି ଦଶନ୍ଧି ଧରି ଏପରି ଏକ ଷ୍ଟାଟସ୍ ସିମ୍ବଲକୁ ମୋ ବେକରେ ଝୁଲେଇ ଅନେକ ବ୍ୟକ୍ତି ବେଶ ଆତ୍ମସନ୍ତୋଷ ପାଇବାର ମୁଁ ଅନୁଭବ କରିଛି । ହେଲେ, ମୋର ସାରା ଜୀବନର ନାଟ୍ୟ ଅନୁଭୂତି ବିଷୟରେ କିଛି ସୂଚନା ଦେବା ମୋର କର୍ତ୍ତବ୍ୟ ବୋଲି ମନେକରି ଏ ଲେଖାଟି ଲେଖୁଛି ।

୧୯୩୯ ରୁ ୧୯୪୫ । ଦ୍ୱିତୀୟ ମହାସମର ବେଳର କଥା । ମୋର ପ୍ରାଥମିକ ସ୍କୁଲର ପାଠପଢ଼ା ସମୟ । ଗାନ୍ଧିଜୀଙ୍କ ନେତୃତ୍ୱରେ ଅହିଂସା ସଂଗ୍ରାମ । ନେତାଜୀଙ୍କର ଆଜାଦହିନ୍ଦ୍ ଡ଼ାକରା । ସନ୍ତ୍ରାସବାଦୀଙ୍କ ପୋଡ଼ାଜଳାକାମ, ପଶ୍ଚିମବଙ୍ଗର ୧୯୪୩ ମସିହାର ଦୁର୍ଭିକ୍ଷର କରାଳଛାୟା ଓ ଶତ୍ରୁପକ୍ଷର ବୋମାମାଡ଼ର ଆତଙ୍କ ପୁରୀ ଓ କଟକବାସୀଙ୍କୁ ଯେତିକି ପ୍ରଭାବିତ କରିଥିଲା ଶିଶୁଟିଏ ହୋଇଥିଲେ ମଧ୍ୟ ମୁଁ ଏବେବି ତାହା ସ୍ମରଣ କରି ଶିହରୀ ଉଠେ ।

ପୁରୀର ଅଫିସର୍ସ କ୍ଲବ । କାଳୀବାଡି ଓ ଜଗନ୍ନାଥ କ୍ଲବ୍ ଠିକ୍ ମନେ ନାହିଁ । ଯୁଦ୍ଧ ପାଣ୍ଠିକୁ ସାହାଯ୍ୟ ଦେବା ପାଇଁ ନାଟକ ପରିବେଷଣ ହେଉଥାଏ । ବାପା ଟ୍ରେଜେରୀ ଅଫିସର ଭାବରେ ସେଥିରେ ଅଭିନୟ କରିବାର ଦେଖିଛି । ଖୋର୍ଦ୍ଧାରେ ବଙ୍ଗଳା ନାଟକ "ଦୁର୍ଗାଦାସ"ର ଓଡ଼ିଆ ଅନୁବାଦରେ ମୋ ବାପା ଓ ⁄ ନାଗରି ମୋହନ ପଟ୍ଟନାୟକଙ୍କ ଅଭିନୟ ଦେଖି ସ୍ତମ୍ଭୀଭୂତ ହେଇଛି । ପୁରୀ ସହରରେ ବାରମାସର ତେରଜାତକୁ ବାରମ୍ବାର ଦେଖିଛି । ଝୁଲଣର ଗୋଟିପୁଅ ନାଚ, ଆଖଡାଘର ଓ ସାହିଯାତ୍ରାରେ ନାଗାନୃତ୍ୟ, ମୋହନ ସୁନ୍ଦର ଗୋସେଇଁଙ୍କ ରାସଲୀଳା, ଦାସକାଠି, ପାଲା, ବୈଷ୍ଣବ ପାଣିଙ୍କ କଂସବଧ ଯାତ୍ରା ସବୁ ପରିବାରର ସଭ୍ୟଙ୍କ ଗହଣରେ ଦେଖିବାର ସୌଭାଗ୍ୟ ହେଇଛି । ଲକ୍ଷ୍ମୀ ସିନେମା ପରଦାରେ ବହୁ ନିର୍ବାକ୍ ଓ ସବାକ୍ ଇଂରାଜି, ହିନ୍ଦି ଓ ବଙ୍ଗଳା ଚଳଚ୍ଚିତ୍ର ଦେଖିଛି ବାପାଙ୍କ କୋଳରେ ବସି । ପିଲାବେଳର ଏ ଝାପ୍‌ସା ଆଲୋଡନ, ଆନ୍ଦୋଳନ ଓ ମଜାଭିତରେ ଯେଉଁ ଆନନ୍ଦ ଥିଲା- କାହା ଆଗରେ ପ୍ରକାଶ କରିନାହିଁ । ବେଶ୍ ଭଲ ଲାଗୁଥିଲା । ଠିକ୍ ଯେମିତି ସମୁଦ୍ର, ଆକାଶ, ବଣ, ପାହାଡ଼ ଓ ଝରଣା । ସେତେବେଳେ ସବୁବେଳେ ଇଚ୍ଛା ହେଉଥିଲା

ଚିତ୍ର ଆଙ୍କିବାକୁ ଓ ରଙ୍ଗ ଲଗେଇବାକୁ। ସେମିତି କିଛି ଅଭିନୟ କରିବାକୁ ଇଚ୍ଛା ହେଉନଥିଲା। ଛୋଟ ବେଳେ ମୁଁ ବେଶ୍ ଚୁପ୍‌ଚାପ୍ ଥିଲି। ଖାଲି ଜଣେ ନିର୍ବାକ୍ ଦର୍ଶକ !

ବାହାର ଦୁନିଆର ମୋ' ଉପରେ କି ପ୍ରଭାବ ପଡିଲା, ସେ ବିଷୟରେ କହିବାପାଇଁ ମୁଁ ବୋଧହୁଏ ଭାଷା ପାଉନଥିଲି। ସମ୍ବଲପୁରରେ ବଡ଼ ବାପା ଡାକ୍ତର ସନାତନ ପୂଜାରୀ, ଡାକ୍ତର ଜନାର୍ଦ୍ଦନ ପୂଜାରୀ ଓ ଗୋକୁଳାନନ୍ଦ ପୂଜାରୀଙ୍କ ନାଟକ ଅଭିନୟରେ ବେଶ୍ ଡାକ ନାଁ ଥିଲା। ଛୁଟିରେ, ଆମ ଘର ସମ୍ବଲପୁର ସହରରୁ ମାମୁଁଘର ମାନପୁର ଗାଁକୁ ଗଲେ ଦଣ୍ଡନାଚ, ସଂପ୍ରଦା, ସଂଚାର, ଗାହାକ ବାହାକ, ରସରକେଲି, ଢ଼ାଲଖାଇ, ସୁଭଦ୍ରାହରଣ, କଂସବଧ ନାଟ ଦେଖି ସାରିଥିଲି ସପ୍ତମଶ୍ରେଣୀ ପୂର୍ବରୁ।

୧୯୪୨ ମସିହାରେ ପୁରୀରୁ କଟକକୁ ବାପାଙ୍କର ବଦଳି ହେଲା। ତିନିକୋଣିଆ ବଗିଚାର ଭଡ଼ାଘରେ ରହିବା ବେଳେ ବାଁ ପଟେ କ୍ୟାପିଟେଲ ସିନେମା ଓ ଡାହାଣ ପଟେ ପ୍ରଭାତ ସିନେମା ଓ ଘର ସାମନାରେ ଅନ୍ନପୂର୍ଣ୍ଣା ଥିଏଟର। ଏଠି ମଧ୍ୟ ପରିବାର ସହିତ ଅନେକ ସିନେମା ଓ ଥିଏଟର ଦେଖା ହେଇଛି। ମାଷ୍ଟର ମାଣିଆ, ଅଶ୍ୱିନୀ ଘୋଷ, କାର୍ତ୍ତିକ ଘୋଷଙ୍କ ନିର୍ଦ୍ଦେଶନାରେ ଅନେକ ନାଟକ ଦେଖାହେଇଛି। କଟକର ବାଙ୍କାବଜାର ଗଳିରେ କାଳୀବାବୁଙ୍କ ଓଡ଼ିଶା ଥିଏଟରର୍ସର ଗେଟ୍ ଭିତରେ ଯେଉଁଦିନ ପ୍ରବେଶ କରିଥିଲି ସେଦିନ ମୋତେ ଭାରି ଖୁସି ଲାଗିଥିଲା। ବାପା କାଳୀବାବୁଙ୍କ କଲେଜରେ ସହପାଠୀ ଥିଲେ। ଦିନେ ଘରେ ଚର୍ଚ୍ଚା କରିବା ପରେ ମୋତେ ଓ ମୋ' ନାନୀଙ୍କୁ ନେଇ ପରିଚୟ କରାଇ ଦେଇଥିଲେ।

ବାଙ୍କାବଜାର ଓଡ଼ିଶା ଥିଏଟରର୍ସ ଗେଟକୁ ଲାଗି ଛୋଟ କୋଠରୀଟି ଥିଲା କାଳୀବାବୁଙ୍କ ରହିବା ଜାଗା। ସେଇଠି ତକ୍ତପୋସ ଉପରେ ସେ ପେଟତଳେ ମାଣ୍ଡିକାକି ନାଟକ ଲେଖୁଥିଲେ। ଥିଏଟରର ଭଲମନ୍ଦ କଥା ବୁଝୁଥିଲେ। ବହିଗଦା ଥିବା ଗୋଟାଏ ଥାକ। ଦୁଇ ଚାରିଟି ଟିଣ ଚଉକି। ସନ୍ଧ୍ୟାରେ ଆମେ ନାଟକ ଆରମ୍ଭ ହେବା ପୂର୍ବରୁ ତାଙ୍କୁ ଦେଖା କରିଥିଲୁ। ହାରମୋନିୟମରେ ମୋ ନାନୀ ଗୀତ ବୋଲିଥିଲା। କାଳୀବାବୁ ଶୁଣି ତାରିଫ୍ କଲେ। ନାନୀର ଡେମାଢ଼େମା ଆଖିଦେଖି କହିଲେ, 'ମୋ ମା' ପରି ଆଖି। ତା' ଭଳି ଦିଶୁଛି।' ମୋତେ ପଚାରିଲେ 'ତମ ନାନୀ ମୋ ମା' ହେଲେ, ତମେ ମୋର କଣ-କହିଲ ?' ମୁଁ ଉତ୍ତର ଦେବା ପୂର୍ବରୁ ସେ, 'ମାମୁଁ' କହି ମୋତେ କୁଣ୍ଢେଇ ବହେ ହସିଥିଲେ। ସେ 'ମାମୁଁ' ଡାକଟା ତାଙ୍କ ଶେଷ ଜୀବନ ପର୍ଯ୍ୟନ୍ତ ମୋ ପାଇଁ ରଖି ଦେଇଥିଲେ। ନାଟକ ଦେଖି ଫେରିବା ବେଳେ, ମୋର ଆନ୍ତରିକ ଭକ୍ତି, ଶ୍ରଦ୍ଧାମିଶ୍ରିତ ନମସ୍କାରଟିଏ ଜଣାଇବା ଛଡ଼ା ତାଙ୍କ ପାଇଁ ଆଉ ଭାଷା ନଥିଲା। ବାପାଙ୍କ ସାଥିରେ କାଳୀବାବୁଙ୍କ ରଚିତ ଓ ନିର୍ଦ୍ଦେଶିତ ନାଟକ ଥରେ ନୁହେଁ, ବହୁଥର ମୁଁ ଦେଖିଛି। ବୋଧହୁଏ ଅଭଙ୍ଗା କଣ୍ଢେଇର ଭିକାରୀବାବୁ ଓ ପୂର୍ଣ୍ଣଚନ୍ଦ୍ର ଭାଷାକୋଷର ସୃଷ୍ଟିକର୍ତ୍ତାଙ୍କୁ ଦେଖିବା ଓ ପରିଚିତ ହେବା ବେଳେ ମୋତେ ଏମିତି ଏକ ଆନନ୍ଦ ମିଳିଥିଲା- ସେଇ ବୟସରେ। ନିଜକୁ ଓଡ଼ିଆ ବୋଲି ଗର୍ବ ଅନୁଭବ କରିଥିଲି

ବୋଧହୁଏ-ସେତେବେଳେ। କଣ ଦେଖିଥିଲି ଏମାନଙ୍କ ଭିତରେ ମୁଁ ? ବୋଧହୁଏ ସେମାନଙ୍କର ରସିକତା ? ସ୍ୱାଧୀନତା ଅଥବା ସ୍ୱାଭିମାନ ! କହିପାରିବିନି ଠିକ୍।

(୨)

୧୯୪୫ ମସିହାର ଆଦ୍ୟ ଭାଗରେ ମୋର ସପ୍ତମ ଶ୍ରେଣୀ ବେଳକୁ କଟକରୁ ସିଧା କୋରାପୁଟ ବଦଳି ହେଲା ବାପାଙ୍କର। ନାଟକର ପଟ୍ଟପରିବର୍ତ୍ତନ ପରି ବଦଳି ଗଲା ପରିବେଶ, ଜାଗା, ପ୍ରକୃତି, ଜଳବାୟୁ ଓ ମଣିଷ। ସେଇଠି ଦେଖିଲି ଦକ୍ଷିଣୀ ନାଟ, ହରିକଥା, ଭାରତ ଲୀଳା ଆଉ ବହୁ ଆଦିବାସୀ ସମ୍ପ୍ରଦାୟର ସଂଗୀତ, ନୃତ୍ୟ, ବାଦ୍ୟ ଓ ପୂଜା ପାର୍ବଣ।

ପ୍ରକୃତିର ଅପୂର୍ବ ସମ୍ଭାର। ଏତେ ସବୁ ତାଳ, ଲୟ, ସୁର ଓ ଛନ୍ଦର ଢେଉ ମୋ ଶିଶୁ ହୃଦୟଟିକୁ କେତେ ରସସିକ୍ତ କରି ପକାଇଥିଲା ତା' କହିବାକୁ ବା ଲେଖିବାକୁ ମୁଁ ଭାଷା ପାଇନାହିଁ-ଆଜିଯାଏ।

ଔପନ୍ୟାସିକ ଗୋପୀନାଥ ମହାନ୍ତିଙ୍କ 'ପରଜା' ପଢ଼ିବା ଆଗରୁ ମୁଁ ଯେଉଁ କୋରାପୁଟ ଦେଖିଥିଲି ତାହାର ଛବି ଯେ ଏତେ ଜୀବନ୍ତ ଭାବରେ ଭାଷାରେ ପ୍ରକାଶ କରାଯାଇପାରେ ତାହାହିଁ ମୋତେ ଅଭିଭୂତ କରେ-ଆଜିଯାଏ। ସେଥିପାଇଁ ତ ଜ୍ଞାନପୀଠ ପୁରସ୍କାର ! ନବରଙ୍ଗପୁର ବୋର୍ଡ ହାଇସ୍କୁଲର ନବମ ଶ୍ରେଣୀ ଛାତ୍ର ଥିବା ବେଳେ ୧୯୪୭ର ପ୍ରଥମ ସ୍ୱାଧୀନତା ଦିବସ ଉତ୍ସବ ମୋର ଟିକିନିଖି ମନେ ଅଛି। ବାପା ଏ.ସ.ଡି.ଓ. ଭାବରେ ପତାକା ଉତ୍ତୋଳନ କରିଥିଲେ। ସନ୍ଧ୍ୟାବେଳେ ଅଫିସର ଓ ଭଦ୍ରଲୋକଙ୍କ ମଧ୍ୟରେ ଫୁଟବଲ ଖେଳ ହୋଇଥିଲା। ଭୋଜି ଓ ବାଣ ଫୁଟା ହୋଇଥିଲା। ସେହି ମସିହାର ନଭେମ୍ବର/ଡିସେମ୍ବର ବେଳକୁ କବିଚନ୍ଦ୍ର କାଳୀଚରଣ ଜୟପୁର ଆସିଥିଲେ। ଜୟପୁରରେ ନାଟକ ଦେଖେଇବା ପରେ ବାପାଙ୍କ ନିମନ୍ତ୍ରଣରେ ୩/୪ ଦିନ ପାଇଁ କାଳୀବାବୁଙ୍କ ଓଡ଼ିଶା ଥିଏଟର୍ସ ପ୍ରଥମଥର ପାଇଁ ନବରଙ୍ଗପୁରରେ 'ଜୟଦେବ', 'ଭାତ' ଓ 'ଫଟା ଭୁଇଁ' ନାଟକ ପରିବେଷଣ କରିଥିଲେ। ମୋର କି ଗର୍ବ !

ତଥାପି, ଏ ନାଚ, ନାଟଆଖଡ଼ା, ନାଟକ, ନାଟକରଚକ, ନାଟକାରୀ, ନାଟଗୁରୁମାନେ ମୋତେ କେତେ ପ୍ରଭାବିତ କରିଥିଲେ ତା'ର ହିସାବ ରଖିନାହିଁ। କେତେବେଳେ ହେଲେ ନିଜେ 'ନାଟୁଆ' ହେବାର ସ୍ୱପ୍ନ ଦେଖିନାହିଁ। ଖାଲି ଅନ୍ତରରେ ଥିଲା ଏକ ଅକଥନୀୟ ଆଲୋଡ଼ନ ଓ ଆନନ୍ଦ। ଏମିତି କିଶୋରଟିଏ ୧୯୪୫ ମସିହାରେ ଲରମ୍ଭା ଆବାସିକ ଉଚ୍ଚଇଂରାଜି ବିଦ୍ୟାଳୟରେ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇବା ପରେ ୧୯୪୬ ମସିହାରେ ପୁଣି ସ୍ୱାସ୍ଥ୍ୟଜନିତ କାରଣରୁ ନବରଙ୍ଗପୁର ବୋର୍ଡ ହାଇସ୍କୁଲରେ ନାମ ଲେଖାଇବାକୁ ବାଧ୍ୟ ହେଲା। ଓଡ଼ିଶାର ଆରଣ୍ୟକ ଓ ଗ୍ରାମ୍ୟ ସଂସ୍କୃତିର ପ୍ରଭାବ କେତେଦୂର ମୋତେ ନାଟ୍ୟପ୍ରିୟ କରିଥିଲା ତାହା ଜାଣିପାରିନାହିଁ। ନାଟ୍ୟଶାସ୍ତ୍ର ବିଷୟରେ ଅନଭିଜ୍ଞ

ଥାଇ, ନାଟ୍ୟଶାଳାରେ ନାଟୁଆ ପିଲା ନ ହୋଇ, ନାଟରେ ମିଶିବା ପାଇଁ ସାହସ ନକରି ମୋ ଭିତରେ ଯେଉଁ କଳାକାରଟିଏ ଜନ୍ମ ନେଇଥିଲା ସେ କେବଳ କାଗଜ, କଲମ, ପେନସିଲ ଓ ରଙ୍ଗତୁଳୀରେ ବ୍ୟକ୍ତ କରୁଥିଲା ତା'ର ଅଭିବ୍ୟକ୍ତି । ସୁବିଧା ବା କେତେଥିଲା ସେତେବେଳେ ଓଡ଼ିଶାରେ ? ୧୯୪୭ ଶେଷ ବେଳକୁ ପୁଣି ଲରମ୍ବା ଆବାସିକ ବିଦ୍ୟାଳୟକୁ ପ୍ରତ୍ୟାବର୍ତ୍ତନ । ଭାରତ ସ୍ୱାଧୀନ ହୋଇ ସାରିଥାଏ । ଲରମ୍ବା ସ୍କୁଲ ଛାତ୍ରାବାସର କଡ଼ାକଡ଼ି ଧରାବନ୍ଧା ନିୟମ ଓ ଶୃଙ୍ଖଳା ଭିତରେ ଆସନ୍ତା ଅଢ଼େଇବର୍ଷର ପାଠପଢ଼ା । ଗାନ୍ଧିଜୀଙ୍କ ହତ୍ୟା, ନେତାଜୀଙ୍କ ତିରୋଧାନ, ସ୍ୱାଧୀନ ଭାରତର ଉନ୍ମାଦନା ମଧ୍ୟରେ ଛାଇଛାଇ ମନେପଡୁଛି ଅଭିନୟର କଥା । ମନେପଡେ ସ୍ୱାଧୀନ ଭାରତର ସ୍ୱପ୍ନିଳ ଭବିଷ୍ୟତ ବିଷୟରେ କିଶୋର ମନର କଳ୍ପନାଜଳ୍ପନା । ନେହେରୁ, ପଟେଲ, ଆଜାଦ୍, ଶ୍ୟାମାପ୍ରସାଦ, ବିଧାନଚନ୍ଦ୍ର, ନେତାଜୀଙ୍କ ପରି ଆଦର୍ଶବାଦୀ ନେତାଙ୍କର ଦୃଢ଼ ସଂକଳ୍ପ ମୋ ମନକୁ କେତେ ପ୍ରଭାବିତ କରିଥିଲା ତାହା ଜାଣିନାହିଁ । ହଠାତ୍ ଭାରତୀୟ ସେନାବାହିନୀର ସୈନିକଟିଏ ହେବାକୁ ଇଚ୍ଛା ହୋଇଥିଲା । ପରେ ପରେ ଭାରତର ଦାରିଦ୍ର୍ୟ, ରୋଗ ଓ କଷ୍ଟ ବିରୁଦ୍ଧରେ ସଂଗ୍ରାମ କରିବାପାଇଁ ଡାକ୍ତରଟିଏ ହେବାକୁ ଇଚ୍ଛା ହୋଇଥିଲା । କିନ୍ତୁ ନାଟ୍ୟକାର ହେବାର କଳ୍ପନା ବା ସ୍ୱପ୍ନ କେବେ ମୋତେ ସ୍ପର୍ଶ କରିନଥିଲା ।

ଏହି ସମୟରେ ଏକ ବିଶେଷ ଘଟଣା ମୋତେ ଅଭିନୟ କରିବାକୁ ବାଧ୍ୟ କରିଥିଲା । ସଂପୂର୍ଣ୍ଣ ଭାବରେ ଆକସ୍ମିକ ଏ ଘଟଣା । ଲରମ୍ବା ଆବାସିକ ବିଦ୍ୟାଳୟର ଅନ୍ତେବାସୀ ପ୍ରାୟ ୨୫୦ ଜଣ ଛାତ୍ର ପ୍ରତି ଶନିବାର ସନ୍ଧ୍ୟାରେ ଏକତ୍ରିତ ହେଉଥିଲେ ସବୁଠାରୁ ବଡ଼ କୋଠରୀରେ ଏକ ପଦ୍ୟାନ୍ତ ପ୍ରତିଯୋଗିତାରେ । ଆଠଜଣ ଶିକ୍ଷକଙ୍କ ଉପସ୍ଥିତିରେ ଏ ପ୍ରତିଯୋଗିତା ହେଉଥିଲା ଦୁଇଦଳ ଛାତ୍ରଙ୍କ ମଧ୍ୟରେ । କୌଣସି ଛାତ୍ର ଏଥିରୁ ମୁକ୍ତି ପାଉନଥିଲେ । ଶିକ୍ଷକମାନେ ଜଣେଜଣେ ଛାତ୍ରର ହିସାବ ରଖୁଥିଲେ । ଥରେ ଗୋଟିଏ ଛାତ୍ର ପଦ୍ୟାନ୍ତରେ ଭାଗ ନନେଇ ପାରିଲେ, ପଦ୍ୟାନ୍ତପରେ ଆରମ୍ଭ ହେଉଥିଲା 'ଫାର୍ସ' ବା ଏକକ ଅଭିନୟ । ଏହାଥିଲା ପ୍ରତ୍ୟେକ ଛାତ୍ରପାଇଁ ଦ୍ୱିତୀୟ ସୁଯୋଗ । ମୋର ଜଣେ ସହପାଠୀ ଧୀରେନ୍ଦ୍ରନାଥ ପାଢୀ ଓ ମୁଁ ଗୋଟିଏ ସନ୍ଧ୍ୟାରେ ପଦ୍ୟାନ୍ତରେ ଭାଗ ନେଇ ପାରିଲୁ ନାହିଁ । ସେଥିପାଇଁ ଆମ ଦୁଇଜଣଙ୍କୁ ଅଭିନୟ କରିବାକୁ ବାଧ୍ୟ କରାଗଲା । ଅଳ୍ପ ସମୟ ମଧ୍ୟରେ କିଛି ଯୋଜନା କରି ଅଭିନୟ କରିବା ବେଳେ ମୁଁ ଜଣେ କାଲ ଓ ମୋର ବନ୍ଧୁ ଜଣେ ଅନ୍ଧ ପଥିକ ଭାବରେ ବାଟଚାଲିବାର ଅଭିନୟ କଲୁ । ଶିକ୍ଷକ ଓ ଛାତ୍ରବନ୍ଧୁମାନେ ଏହାର ଉଚ୍ଛ୍ୱସିତ ପ୍ରଶଂସା କଲେ । ତା'ପରେ ପ୍ରତି ଶନିବାର ସନ୍ଧ୍ୟାରେ ଆମ ଦୁଇଜଣଙ୍କ ପାଇଁ ଅଭିନୟ କରିବା ବାଧ୍ୟବାଧକତାରେ ପରିଣତ ହେଲା । ପିଲାବେଳୁ ମୁଁ ଯାହାକିଛି ନାଟକ ବା ଚଳଚ୍ଚିତ୍ରରେ ଦେଖିଥିଲି, ତାହାରି ଛାୟାରେ ଗ୍ରାମ୍ୟ ଛାତ୍ରଙ୍କୁ ସୁହାଇଲାପରି ପରିବେଷଣ କରୁଥିଲି ।

୧୯୪୯ ମସିହାରେ ମାଟ୍ରିକ ପାସ କରିବା ପରେ ଗଙ୍ଗାଧର ମେହେର କଲେଜରେ ବିଜ୍ଞାନ ଶ୍ରେଣୀର ଛାତ୍ର ଭାବରେ ନାମ ଲେଖାଇଲି । ଏଠାରେ ନାଟକରେ ଅଭିନୟ କରିବା ଅପେକ୍ଷା ଏନ୍.ସି.ସି.ରେ ଭାଗନେବାର ଆକର୍ଷଣ ଥିଲା ବେଶୀ । ଏଠାରେ ମୋର ସହପାଠୀ ଧୀରେନ୍ଦ୍ରନାଥ ଓ ମୁଁ ସୈନ୍ୟ ବିଭାଗରେ ଯୋଗଦେବା ପାଇଁ ପ୍ରସ୍ତୁତିରେ ଲାଗିଗଲୁ । ଏନ୍.ସି.ସି.ର ଆକର୍ଷଣ ଏତେଥିଲା ଯେ ଆମେ ପାଠପଢ଼ାରେ ମଧ୍ୟ ଅବହେଳା କଲୁ । ନାଟକରେ ଭାଗ ନନେଲେ ମଧ୍ୟ ସମ୍ବଲପୁରର ଦୁଇଟି ସିନେମା ହଲରେ ପ୍ରତ୍ୟେକ ଚଳଚ୍ଚିତ୍ର ଥରେ ଦୁଇଥର ଦେଖିବା ଓ ଅନ୍ନପୂର୍ଣ୍ଣା ଏ' ଗ୍ରୁପ ଟୁରିଂ ଦଳର ପ୍ରତ୍ୟେକ ନାଟକ ଦେଖିବା ଆମପାଇଁ ଏକ ନିୟମରେ ପରିଣତ ହୋଇଥିଲା । ଏନ୍.ସି.ସି.ର ପ୍ରତ୍ୟେକ ର୍‍ୟାଲି ଓ କ୍ୟାମ୍ପରେ ଯୋଗଦେବା ଓ ସେଠାରେ ପ୍ରତ୍ୟେକ ସଂଧ୍ୟାରେ ଓ କ୍ୟାମ୍ପ ଫାୟାର ବେଳେ ଏକକ ଅଭିନୟ ଓ କେରିକେଚର କରିବା ମୋ ପାଇଁ ନିୟମରେ ପରିଣତ ହୋଇଥିଲା । ତେଣୁ ମୁଁ ନିଜେ ନିଜର ନାଟ୍ୟରୂପ, ବେଶଭୂଷା ଓ ସଂଳାପ ଯୋଜନା କରି ରଖୁଥିଲି ଓ ଠିକଣା ସମୟରେ ତାହା ପରିବେଷଣ କରୁଥିଲି । ଏହାପରେ ୧୯୫୨ ମସିହାରେ ରେଭେନ୍ସା ମହାବିଦ୍ୟାଳୟରେ ବି.ଏ. ପଢିବା ସମୟରେ ଓଡ଼ିଶାର ଅଧିକାଂଶ ଏନ୍.ସି.ସି. ଛାତ୍ରଙ୍କ ପାଖରେ ତଥା ଅଫିସର (ଅଧ୍ୟାପକ)ମାନଙ୍କ ପାଖରେ ମୁଁ ପରିଚିତ ହୋଇ ସାରିଥିଲି । ଏ ସମୟରେ ମୁଁ କ୍ୱଚିତ୍ କାହାର ସାହାଯ୍ୟ ନେଉଥିଲି । ତେଣୁ, ଧୀରେ ଧୀରେ ଅଭିନୟ ତଥା ନାଟକର ବିଭିନ୍ନ ବିଭାଗ ବିଷୟରେ ଧାରଣା ହୋଇ ଯାଇଥିଲା ।

ରେଭେନ୍ସା ମହାବିଦ୍ୟାଳୟରେ ଯୋଗ ଦେବା ସଙ୍ଗେ ସଙ୍ଗେ ବିଭିନ୍ନ ସଂସଦ, ସଂଘ ଓ ବିଭାଗ ତରଫରୁ ମୋତେ ଏକକ ଅଭିନୟ କରିବାକୁ ଅନୁରୋଧ ଆସିଲା । ମୋର ଅଭିନୟ ମଧ୍ୟରେ ମୁଁ ଯଥେଷ୍ଟ ଶାଳୀନତା ରକ୍ଷା କରୁଥିଲି । ବିଶେଷକରି ପିଲାବେଳେ ଦେଖିଥିବା ଅସଂଖ୍ୟ ଚାର୍ଲିଚାପ୍ଲିନ୍, ଲରେଲ ହାର୍ଡିଙ୍କ ଚଳଚ୍ଚିତ୍ରର ମାଇମ୍, ମିମିକ୍ରି, ଉଇଟ୍, ସେଟାୟାର, ଫାର୍ସ ଇତ୍ୟାଦିର ଆଶ୍ରୟ ନେଉଥିଲି । ଅଳ୍ପ ସଂଳାପ ମଧ୍ୟରେ ଅଶାଳୀନ ଭାଷାର ପ୍ରୟୋଗ କରୁନଥିବାରୁ ଏହା ଅଧ୍ୟାପକ ଓ ଛାତ୍ରଛାତ୍ରୀଙ୍କ ଉପରେ ଖୁବ୍ ବେଶୀ ପ୍ରଭାବ ପକାଉଥିଲା । ପାଠପଢ଼ା ସହିତ ଚରିତ୍ର ଗଠନ ଓ ପ୍ରତିଭା ଉନ୍ମୋଚନ ପାଇଁ ସେତେବେଳର ଅଧ୍ୟାପକମାନେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ । ତାହାରି ଫଳରେ ମୋର ଧାରଣା, ମୁଁ ମହାବିଦ୍ୟାଳୟର ଅଧ୍ୟାପକମାନଙ୍କ ପାଖରୁ ଯଥେଷ୍ଟ ଉତ୍ସାହ ପାଇଥିଲି ।

(୩)

୧୯୫୩/୫୪ ଶିକ୍ଷାବର୍ଷରେ ମୁଁ ରେଭେନ୍ସା କଲେଜର ନାଟ୍ୟ ସଂସଦର ସମ୍ପାଦକ ଭାବରେ-ନିର୍ଦ୍ଦଳୀୟ ପ୍ରାର୍ଥୀ ହୋଇ ନିର୍ବାଚିତ ହେଲି । ମୋର ସହ ସମ୍ପାଦକ ଭାବରେ ଶ୍ରୀ ବିଶ୍ୱଜିତ ଦାସ ନିର୍ବାଚିତ ହୋଇଥିଲେ । ସେତେବେଳେ ସେ ନାଟ୍ୟକାର ହୋଇନଥିଲେ । ନାଟ୍ୟ ସଂସଦର ଉପସଭାପତି ଦ୍ୱୟ ଥିଲେ ପ୍ରଫେସର ବିଧୁଭୂଷଣ ଦାସ ଓ ଡକ୍ଟର ଦେବେନ୍ଦ୍ର

ଚନ୍ଦ୍ର ମିଶ୍ର। ଏ ଦୁଇଜଣଙ୍କ ତତ୍ତ୍ୱାବଧାନରେ ଏକ ପରୀକ୍ଷାମୂଳକ ନାଟକ ମଞ୍ଚସ୍ଥ କରିବା ପାଇଁ ସ୍ଥିର ହେଲା। ଜର୍ମାନ୍ ନାଟ୍ୟକାର ହଫ୍‌ମ୍ୟାନଙ୍କର 'ଦି ୱିଭର୍ସ'ର ଓଡିଆ ଅନୁବାଦ କରାଗଲା ପାଞ୍ଚଜଣ ଇଂରାଜୀ ଅଧ୍ୟାପକଙ୍କ ଦ୍ୱାରା। ପ୍ରଫେସର ପ୍ରଫୁଲ୍ଲ କୁମାର ପତି, ପ୍ରଫେସର ସର୍ବେଶ୍ୱର ଦାଶ, ପ୍ରଫେସର ତ୍ରିଲୋଚନ ମିଶ୍ର ଓ ପ୍ରଫେସର ଯତୀନ୍ ମହାନ୍ତି ତଥା ପ୍ରଫେସର ବିଧୁଭୂଷଣ ଦାସ ଏ ନାଟକର ପାଞ୍ଚଟି ଅଙ୍କକୁ ପୁରାପୁରି ଓଡିଶାର ପରିବେଶକୁ ଆଖିରେ ରଖି ଅନୁବାଦ କରି ନାଁ ଦେଇଥିଲେ 'ବୁଣାଳୀ'। ଶିକ୍ଷକମାନଙ୍କ ସହଯୋଗରେ ନିର୍ଦ୍ଦେଶନା ଦେଇଥିଲେ ମୟୁରଭଞ୍ଜର ବିଖ୍ୟାତ ଅଭିନେତା ଓ ନାଟ୍ୟ ନିର୍ଦ୍ଦେଶକ ଡି.ଆଇ.ଜି. ରାମଚନ୍ଦ୍ର ଦାଶ। ଚାଳିଶ ଜଣ ପାତ୍ରପାତ୍ରୀ ମଧ୍ୟରେ ଥିଲେ ଛ'ଟି ନାରୀ ଚରିତ୍ର। ସମସ୍ତ ଚରିତ୍ର ଚୟନ କରିଥିଲେ ଶିକ୍ଷକ ଓ ନିର୍ଦ୍ଦେଶକ। ପ୍ରଥମ ବାର୍ଷିକ କଳା ଶ୍ରେଣୀରୁ ଚତୁର୍ଥ ବାର୍ଷିକ ବିଜ୍ଞାନ ଶ୍ରେଣୀ ପର୍ଯ୍ୟନ୍ତ ଛ'ଜଣ ଛାତ୍ରୀଙ୍କୁ ଖୋଜି ବାହାରକରି ସେମାନଙ୍କର ପାରିବାରିକ ଅନୁମତି ଆଣିବା ଥିଲା ମୋର କାର୍ଯ୍ୟ। ଏତେଗୁଡ଼ିଏ ନାରୀ ଚରିତ୍ରରେ କଲେଜ ଛାତ୍ରଙ୍କ ସହିତ ଛାତ୍ରୀମାନେ ଅଭିନୟ କରିବା ଓଡ଼ିଶାରେ ବୋଧହୁଏ ସର୍ବପ୍ରଥମ। ଛାତ୍ରୀମାନଙ୍କର ମୋ ପ୍ରତି ଅଗାଧ ବିଶ୍ୱାସ ଥିଲା ଓ ଶିକ୍ଷକମାନଙ୍କର ସଂପୂର୍ଣ୍ଣ ସହଯୋଗ ଥିଲା। ଏ ଛାତ୍ରୀମାନଙ୍କ ମଧ୍ୟରେ ବର୍ତ୍ତମାନର ଶ୍ରୀମତି ବସନ୍ତ କୁମାରୀ ମହାନ୍ତି, ଶ୍ରୀମତି ଆଦରମଣି ବରାଳ, ଶ୍ରୀମତି ମୀରା ମହାନ୍ତି ଓ ଶ୍ରୀମତି ନିରୂପମା ମହାନ୍ତି ପରି ସମାଜସେବିକା ଓ ପ୍ରତିଷ୍ଠିତା ମହିଳାମାନେ ମଧ୍ୟ ଅଭିନୟ କରିଥିଲେ। ଶେଷ ବେଳକୁ ଜଣେ ମୁଖ୍ୟ ନାୟକଙ୍କ ଅନୁପସ୍ଥିତିରେ ମୋତେ 'ବୁଣାଳୀ' ନାଟକର ଅଭିନେତା ଭାବରେ 'ପ୍ରକ୍ସି' ଦେବାକୁ ପଡ଼ିଥିଲା ଦୁଇଦିନ। ଓଡ଼ିଆ ଅନର୍ସର ଛାତ୍ରଥିବାରୁ ନାଟ୍ୟଶାସ୍ତ୍ର ବିଷୟରେ ପଢ଼ାପଢ଼ି କଲି ଏହି ସମୟରେ।

ଅଧ୍ୟାପକମାନଙ୍କ ଘନିଷ୍ଠତା ହେତୁ, ହିନ୍ଦ୍ ସିନେମା ହଲରେ ଶନିବାର ଓ ରବିବାର ଦିନ ଭଲ କ୍ଲାସିକ୍ ଇଂରାଜି ଛବିର ମାଟିନି ସୋ'ର ବ୍ୟବସ୍ଥା ହୋଇଥିଲା ଏହି ସମୟରେ ରେଭେନ୍‌ସା କଲେଜର ଛାତ୍ରମାନଙ୍କ ଦ୍ୱାରା। ଏଥିରେ କଟକର ବହୁଲୋକ ଭଲ ଚଳଚ୍ଚିତ୍ର ଦେଖିବାର ସୁଯୋଗ ପାଉଥିଲେ। ମୁଁ ନାଟ୍ୟ ସଂସଦର ସମ୍ପାଦକ ଥିବା ସମୟରେ ଆଉ ଏକ ବିଶେଷ ଘଟଣା ମୋତେ ନାଟ୍ୟପ୍ରିୟ କରି ପକାଇଥିଲା। ଇଂଲଣ୍ଡର ପ୍ରାୟ ପଚାଶ ବର୍ଷ ପର୍ଯ୍ୟନ୍ତ ପ୍ରସିଦ୍ଧି ଲାଭ କରିଥିବା 'ସେକ୍ସପିରିଅନା' ନାଟକ ଦଳ ଭାରତ ଆସି ବିଭିନ୍ନ ବଡ ବଡ ସହରରେ ଅଭିନୟ କରି ସାରିବା ପରେ ଅଷ୍ଟ୍ରେଲିଆ ଭ୍ରମଣରେ ଯିବାର ଖବର ବାହାରିଲା। ଆମେ କେତେ ଜଣ ଛାତ୍ର ପ୍ରଫେସର ବିଧୁଭୂଷଣ ଦାସଙ୍କ ଜରିଆରେ ଏ ଦଳକୁ ନିମନ୍ତ୍ରଣ କରିଥିଲୁ କଟକକୁ। ଆଶ୍ଚର୍ଯ୍ୟର କଥା ସେମାନେ କଲିକତାରୁ ସାତଦିନ ପାଇଁ ଆସି କଟକରେ ନାଟକ ପରିବେଷଣ କରିବାକୁ ରାଜି ହୋଇଥିଲେ। କଟକର ବାଙ୍କାବଜାର ଗଳିର 'ଜନତା ଥିଏଟର୍ସ'କୁ ସାତଦିନ ଭଡାରେ ନେଇ ରେଭେନ୍‌ସା କଲେଜର

ଛାତ୍ରମାନେହିଁ ଆୟୋଜନ କରିଥିଲେ ଏ ସାତଦିନିଆ ମହୋତ୍ସବ । ଏ ନାଟ୍ୟଦଳର ମୁଖ୍ୟ ଥିଲେ ପ୍ରଫେସର ଜିଓଫ୍ରି କେଣ୍ଡେଲ । ନିଜେ ଅଭିନେତା, ନିର୍ଦ୍ଦେଶକ ଓ ପରିଚାଳକ । ତାଙ୍କୁ ସହଯୋଗ କରୁଥିଲେ ତାଙ୍କ ସ୍ତ୍ରୀ ଓ ଝିଅ ଜେନିଫର୍ କେଣ୍ଡେଲ୍ । ମୋଟେ ୧୪ ଜଣିଆ ଦଳନେଇ ସାମାନ୍ୟ କିଛି ଆସବାବ ପତ୍ର ଧରି ନାଟକର ଆମୂଳଚୂଳ ଯେମିତି ପରିଚାଳନା କରିନେଉଥିଲେ ତାହା ନଦେଖିଲେ ବିଶ୍ୱାସ କରିହେବ ନାହିଁ । ପିତା ପୁତ୍ରୀ ଥିଲେ ପ୍ରାୟ ପ୍ରତ୍ୟେକ ନାଟକର ନାୟକ ଓ ନାୟିକା । ଜନତା ଥିଏଟର୍ସ ହଲରେ ୪/୫ଟି ସେକ୍ସପିୟରଙ୍କ ନାଟକ ଓ ୨/୩ଟି ବର୍ଣ୍ଣାଡଶ'ଙ୍କ ନାଟକ ଏମାନେ ପରିବେଷଣ କରିଥିଲେ ୧୯୫୪ ମସିହାରେ । ଏହାପରେ ଶଶୀକାପୁର ଏ ଦଳରେ ଜଣେ ଅଭିନେତା ଭାବରେ ଯୋଗ ଦେଇଥିଲେ । ଜେନିଫର ତାଙ୍କୁ ବିବାହ କରି ଭାରତରେ ରହିଗଲେ । ଜିଓଫ୍ରି କେଣ୍ଡେଲ ଓ ଜେନିଫର କେଣ୍ଡେଲଙ୍କ ଅଭିନୀତ ଓଥେଲୋ, ହେମଲେଟ୍, କିଂ ଲିଅର, ପିଗ୍‌ମାଲିୟନ ଦେଖିବା ପରେ ମୁଁ ମନ୍ତ୍ରମୁଗ୍ଧ ହୋଇ ଯାଇଥିଲି । ସେ ସମୟର ଉନ୍ମାଦନା ଭୁଲିବାର ନୁହେଁ । ଇଂରାଜୀ ବିଭାଗର ବିଧୁବାବୁ, ପ୍ରଫେସର ପତି, ସର୍ବେଶ୍ୱର ବାବୁ, ଯତୀନ୍ ବାବୁଙ୍କ ସହିତ 'ସେକ୍ସପିରିଅନା' ନାଟ୍ୟ ଦଳର ନାଟକ ପରିବେଷଣ ଉପରେ ଆଲୋଚନା କରିବା ପାଇଁ, ମଞ୍ଚକଳା ଉପରେ ଜାଣିବା ପାଇଁ ମୋର ଉତ୍ସାହ ବଢ଼ିଲା । ବହୁ ବହି ଓ ଜର୍ଣ୍ଣାଲ ଲାଇବ୍ରେରୀରୁ ନେଇ ପଢ଼ାପଢ଼ି କଲି । ଏହା ପରବର୍ତ୍ତୀ ଜୀବନରେ ମୋତେ ନାଟକ ଓ ଚଳଚ୍ଚିତ୍ର ନିର୍ଦ୍ଦେଶନା ଦେବାରେ ଯଥେଷ୍ଟ ସାହାଯ୍ୟ କରିଛି । ଏହି ସମୟରେ କଟକରେ ଥିବା ସମସ୍ତ ପେଷାଦାର ଓ ସୌଖୀନ କଳାକାରମାନଙ୍କ ସହିତ ମୋର ବ୍ୟକ୍ତିଗତ ସମ୍ପର୍କ ତଥା ପରିଚୟ ହୋଇଥିଲା । ଧୀର ବିଶ୍ୱାଳ, ଗୋପାଳ ଛୋଟରାୟ, ସୁରେନ୍ ମହାନ୍ତି, ବାଳକୃଷ୍ଣ ଦାଶ, ଭୁବନେଶ୍ୱର ମିଶ୍ର, ନିତାଇ ପାଲିତ, ଯତୀନ୍ ଦାସ, ହେମନ୍ତ ଦାସ, ଶଚି ଦାସ, ବିଶ୍ୱଜିତ ଦାସ, ମନୋରଞ୍ଜନ ଦାସ, ବିଜୟକୃଷ୍ଣ ମହାନ୍ତି ଏମାନଙ୍କ ମଧ୍ୟରେ ଥିଲେ ପ୍ରମୁଖ । ରେଭେନ୍‌ସା କଲେଜରେ ମୋର ଶ୍ରେଣୀ ସହପାଠୀ ଥିଲେ ପ୍ରଫେସର ଖଗେଶ୍ୱର ମହାପାତ୍ର, ପ୍ରଫେସର ଶାନ୍ତନୁ କୁମାର ଆଚାର୍ଯ୍ୟ, ପ୍ରଫେସର ଗୌରାଙ୍ଗ ନାୟକ, ପ୍ରଫେସର ସତ୍ୟେନ୍ଦ୍ର ଆଚାର୍ଯ୍ୟ, ପ୍ରଫେସର ✓ କୃଷ୍ଣପ୍ରସାଦ ମିଶ୍ର, ପ୍ରଫେସର ✓ ରଙ୍ଗଲାଲ ମୋଦୀ, ପ୍ରଫେସର ହରିହର ରଥ, ପ୍ରଶାସକ ପ୍ରସନ୍ନ କୁମାର ପଟ୍ଟନାୟକ, ପୋଲିସ ପ୍ରଶାସକ ନଳିନୀରଞ୍ଜନ ପଟ୍ଟନାୟକ, ପ୍ରଶାସକ କବି ରମାକାନ୍ତ ରଥ, ପ୍ରଶାସକ ହରିହର ପଣ୍ଡା, ବ୍ୟବସାୟୀ କୈଳାସ ମୋଦୀ, ବ୍ୟବସାୟୀ ଗୁରୁପ୍ରସାଦ ମହାନ୍ତି, ଫୁଟବଲ ଖେଳାଳୀ ଓ ଅର୍ଥ ବିଭାଗର ଉପସଚିବ ଉମେଶ ଦାସ, ଶ୍ରମ ପ୍ରଶାସକ ସୁଶାନ୍ତ ଦାସ, ବରିଷ୍ଠ ଓକିଲ ✓ ମହମ୍ମଦ ୟୁନୁସ, ବରିଷ୍ଠ ଓକିଲ ବିଜୟକୃଷ୍ଣ ମହାନ୍ତି, ଶ୍ରମ ପ୍ରଶାସକ ✓ ବ୍ରଜବନ୍ଧୁ ସାମନ୍ତରାୟ, ପୂର୍ବତନ ମନ୍ତ୍ରୀ ✓ ପ୍ରହଲ୍ଲାଦ ମଲ୍ଲିକ, ନୀଳଗିରିର ରାଜାସାହେବ ଏବଂ

ତାଳଚେରର ଯୁବରାଜ ସାହେବ ଓ ଆହୁରି ଅନେକ । ଏମାନଙ୍କର ପ୍ରଶଂସା, ଶୁଭେଚ୍ଛା ଓ ଉତ୍ସାହ ପାଇ ମୁଁ ଅଭିନୟ କରିବାକୁ ପ୍ରେରଣା ପାଉଥିଲି ।

(୪)

୧୯୫୪ ମସିହାରେ ବି.ଏ. ପାସ କରିବା ପରେ ମୁଁ ରେଭେନ୍‌ସା କଲେଜରୁ ବିଦାୟ ନେଇ ଏଲାହାବାଦ ବିଶ୍ୱବିଦ୍ୟାଳୟକୁ ଗଲି ଏମ.ଏ ପଢ଼ିବା ପାଇଁ । ସେଠାରେ ପହଞ୍ଚିବା ପରେ ଓଡ଼ିଶାର ସହପାଠୀ ବନ୍ଧୁଙ୍କ ପାଇଁ ମୁଁ ଜଣେ ଏଜକ ଅଭିନେତା ତଥା ଚିତ୍ରକର ବୋଲି ବିଶ୍ୱବିଦ୍ୟାଳୟ ପରିସରରେ ପ୍ରଚାର ହୋଇଗଲା । ଭାରତର ତୃତୀୟ ବୃହତ୍ତମ ବିଶ୍ୱବିଦ୍ୟାଳୟ ଭାବରେ ଏଲାହାବାଦ ବିଶ୍ୱବିଦ୍ୟାଳୟର ଯଶ ଓ ଖ୍ୟାତି ପୃଥିବୀର ସବୁ ଦେଶରେ ଥିଲା । ଅର୍ଥଶାସ୍ତ୍ର ବିଭାଗ ପାଖକୁ ଥିଲା ୪ଟି ଡିପ୍ଲୋମା କୋର୍ସ । ସେଗୁଡ଼ିକ ହେଲା ହିନ୍ଦୁସ୍ଥାନୀ ସଂଗୀତ ଓ ବାଦ୍ୟଯନ୍ତ୍ର ଡିପ୍ଲୋମା, ସ୍ୱୟଂ ଶାସନ ପ୍ରଣାଳୀ ଡିପ୍ଲୋମା, ଫରାସୀ ଜର୍ମାନ୍ ଓ ଋଷିୟ ଭାଷା ଶିକ୍ଷା ଡିପ୍ଲୋମା ଓ ଇଣ୍ଡିୟାନ ପେଣ୍ଟିଂ ଡିପ୍ଲୋମା । ଆଖୁ କିଆରୀରେ ଭାଲୁ ପଶିଲା ପରି ମୁଁ ଦରାଣ୍ଡି ହେଲି । ବିଶ୍ୱବିଦ୍ୟାଳୟର ନିୟମ ଥିଲା ଯେ କୌଣସି ସ୍ନାତକୋତ୍ତର କଳା ଛାତ୍ର ନିଜ ଡିପାର୍ଟମେଣ୍ଟର ଛାତ୍ର ଥାଇ ଯେ କୌଣସି ଗୋଟିଏ ଡିପ୍ଲୋମାର ଦୁଇ ବର୍ଷିଆ ଛାତ୍ର ହୋଇ ଏକ ସମୟରେ ପରୀକ୍ଷା ଦେଇପାରିବେ । ମୁଁ ଅର୍ଥନୀତି ଏମ୍.ଏ ଶ୍ରେଣୀରେ ନାମ ଲେଖାଇବାର ମାସକ ପରେ ପେଣ୍ଟିଂ ଡିପାର୍ଟମେଣ୍ଟରେ ନାମ ଲେଖାଇଲି ।

ଆନ୍ତରିକତାର ସହ ପାଠପଢ଼ି ୧୯୫୬ ମସିହାରେ ଅର୍ଥନୀତି ଏମ.ଏ.ରେ ଦ୍ୱିତୀୟ ଶ୍ରେଣୀ ଓ ପେଣ୍ଟିଂ ଡିପ୍ଲୋମାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲି । ୧୯୫୬ ମସିହାରେ ବାପାଙ୍କ ନିର୍ଦ୍ଦେଶରେ ଏଲାହାବାଦରେ ଏଲ.ଏଲ.ବିରେ ନାଁ ଲେଖାଇଥିଲି । ଏଲାହାବାଦରେ ସାଧାରଣ ଛାତ୍ରଠାରୁ, ଅଧ୍ୟାପକ ତଥା କୁଳପତିଙ୍କ ସ୍ନେହ, ଶ୍ରଦ୍ଧା ଓ ପ୍ରଶଂସା ମୋତେ ଅଭିଭୂତ କରି ପକେଇଥିଲା । ମୋର ମନେହେଲା ମୁଁ ବୋଧହୁଏ ଜଣେ ଚିତ୍ରକର ଭାବରେ ଏଲାହାବାଦରେ ରହିଯିବି । ବିଶ୍ୱବିଦ୍ୟାଳୟର ଜଣେ ସାଧାରଣ ଓଡିଆ ଛାତ୍ରର ମୂଲ୍ୟାୟନ କୁଳପତିଙ୍କ ଦ୍ୱାରା କିପରି ଭାବରେ କରାଯାଇପାରେ, ତାହାରି ଏକ ନିଦର୍ଶନ ଏଠାରେ ଉପସ୍ଥାପନ କରିବାର ଲୋଭ ସମ୍ବରଣ କରି ପାରୁନାହିଁ । ଏହା ମୁଁ ପାଇଥିଲି ୧୯୫୬ ମସିହାରେ । ଏଲାହାବାଦରୁ ମୋର ଆକସ୍ମିକ ବିଦାୟ ପରେ ପ୍ରୟାଗ ବିଶ୍ୱବିଦ୍ୟାଳୟର ତଦାନ୍ତିନ୍ତନ କୁଳପତି ପ୍ରଫେସର ବି.ଏନ.ଝା ମୋ' ପାଇଁ ଉଦ୍ଦିଷ୍ଟ ପ୍ରମାଣପତ୍ର ଶେଷରେ ଲେଖିଲେ, 'ଶ୍ରୀ ପୂଜାରୀ ବିଶ୍ୱବିଦ୍ୟାଳୟର ଛାତ୍ରଥିବା ସମୟରେ ନିଜର ଶୈକ୍ଷିକ ଅନ୍ୱେଷଣ ସହିତ ନିଜର ଅନ୍ତର୍ନିହିତ ପ୍ରତିଭା ବଳରେ ଯେଉଁ ଉଚ୍ଚକୋଟୀର କଳା ପ୍ରଦର୍ଶନ କରିଛନ୍ତି, ଏହା

ନିଃସନ୍ଦେହରେ କୁହାଯାଇ ପାରେ ଯେ ଭବିଷ୍ୟତରେ ସେ ଜଣେ ପ୍ରଭାବଶାଳୀ ଅଭିନେତା ଅଥବା ଯଶସ୍ୱୀ ଚିତ୍ରକର ଭାବରେ ନିଜକୁ ପ୍ରତିଷ୍ଠିତ କରିବେ ।' ବିଗତ ଚାଳିଶବର୍ଷରେ ଏ ପ୍ରମାଣପତ୍ରଟିକୁ ଓଡ଼ିଶାରେ ବିନିଯୋଗ କରିବା ମୋ ପକ୍ଷରେ ସମ୍ଭବ ହୋଇନାହିଁ ।

ସବୁ ଓଲଟପାଲଟ ହୋଇଗଲା । ୧୯୫୬ ଡିସେମ୍ବର ୨ ତାରିଖରେ । ହୃଦରୋଗରେ ଅକାଳରେ ବାପା ଚାଲିଗଲେ । ମୁଁ ଘରର ବଡପୁଅ ଭାବରେ ପରିବାରର ସମସ୍ତ ଦାୟିତ୍ୱ ବହନ କରିବାକୁ ବାଧ୍ୟ ହେଲି । ସେତେବେଳେ ମୋର ସାତଟି ଛୋଟ ଭାଇ ଓ ଗୋଟିଏ ଛୋଟ ଭଉଣୀ । ସମ୍ବଲପୁରର ପୈତୃକ ଘରଛଡ଼ା, ଗାଁର ଦଶ ଏକରରୁ ଭାଗଚାଷରେ ପାଉଥିବା ଚାଉଳହିଁ ସମ୍ବଳ । ଘରେ ଆଉ କେହି ରୋଜଗାରିଆ ନଥିଲେ । ପାଠ ଛାଡ଼ି ଚାକିରୀ କରିବା ପାଇଁ ଦଉଡ଼ିଲି କଟକ, ଭୁବନେଶ୍ୱର, ରାଉରକେଲା, କଲିକତା । ମୋ' ପାଠପଢୁଆ ସାର୍ଟିଫିକେଟର ମୂଲ୍ୟ ଓଡ଼ିଶାରେ କେହି ଦେଇନଥିଲେ । ପେଟ ପୋଷିବା ପାଇଁ ଯାହା ମିଳିଲା ଗ୍ରହଣ କଲି । ବ୍ଲକ ଡିଜାଇନର, ସମ୍ବାଦପତ୍ର ପ୍ରେସର କମିଶନ ଏଜେଣ୍ଟ ଓ ଚଳଚ୍ଚିତ୍ରର ଅଭିନେତା ଭାବରେ କାମ କରିଛି ଏହି ସମୟରେ ।

୧୯୫୯ ମସିହା ମେ' ମାସରେ ହିନ୍ଦ୍ ସିନେମା ହଲରେ ମୁକ୍ତି ପାଇଲା ମୋର ପ୍ରଥମ ଅଭିନୀତ ଚଳଚ୍ଚିତ୍ର 'ମହାଲକ୍ଷ୍ମୀ ପୂଜା' । ମୁଖ୍ୟ ଅତିଥି ଥିଲେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ । ମଧ୍ୟାନ୍ତର ବେଳେ ତାଙ୍କର ପାଦଧୂଳି ନେବାପାଇଁ ଦଉଡ଼ି ଯାଇଥିଲି । ମୋର ହାତ ଦିଟାକୁ ଚାପିଧରି ସେ ଖାଲି କହିଥିଲେ, 'ମାମୁଁ, ଶେଷରେ ତମେ ଆମ ନାଟୁଆ ଦଳରେ ମିଶିଲ ! କୋଟି ପରମାୟୁ ହେଉ ତମର ।' ତା'ପରେ 'ଶରତ ପୂଜାରୀ' ନାମଧେୟ ଏକ ଚିତ୍ରାଭିନେତା ଓଡ଼ିଶାର ବହୁସ୍ଥାନରେ ପରିଚୟ ପାଇଛି, କେବଳ ଫିଲିମ୍‌ବାଲା ଭାବରେ । ୧୯୫୯/୬୦ରେ ତଥାପି ମୁଁ ଚାକିରୀ ଆଶାରେ ବସିରହିଲି । ଏ ଅଭ୍ୟାସଟା ଆଜିଯାଏ ରହିଗଲା । କବୀରଙ୍କ ଦୋହାକଥା ମନେପଡ଼େ, 'କ୍ଷୀର ବିକୁଥିବା ଗଉଡ଼ ସିନା ଘରଘର ବୁଲେ, ହେଲେ ମଦିରା ବେପାରୀ ତା ଘରେ ଥାଇ ବେପାର କରେ ।' ଯାହାର ଏ ନିଶା ଅଛି ସେହିଁ ମୋ' ପାଖକୁ ଆସନ୍ତୁ । ଜୀବନର ଏ ଦୃଷ୍ଟିଭଙ୍ଗୀ ଯୋଗୁ, କେତେ ଠକିଛି, କେତେ ଶିଖିଛି ତା'ର ହିସାବ କରିବାକୁ ବେଳ ପାଇ ନାହିଁ । ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ ଓ ଆଉ ଏକ ସଂସ୍ଥା ତରଫରୁ ନିମନ୍ତ୍ରଣ ପାଇ ୧୯୫୯ ମସିହାରେ ଅବୈତନିକ ସୌଖୀନ କଳାକାର ଭାବରେ ଦୁଇଟି ଏକାଙ୍କିକାରେ ଅଭିନୟ କରିଥିଲି- ସମୟ ବିତେଇବା ପାଇଁ । ଓଡ଼ିଶା ସଂଗୀତ ନାଟକ ଏକାଡେମୀର ନାଟକ ଉତ୍ସବ ବ୍ରହ୍ମପୁରଠାରେ ଆୟୋଜିତ ହେଲା । ଅନନ୍ତ ମହାପାତ୍ର ନିର୍ଦ୍ଦେଶିତ, ନାଟ୍ୟକାର ବିଶ୍ୱଜିତ ଦାସଙ୍କ ଲିଖିତ, ପ୍ରଜାତନ୍ତ୍ର ପ୍ରଚାର ସମିତି ପରିବେଷିତ, 'ଛଦ୍ମବେଶୀ' ନାଟକର 'ମଣିଶଙ୍କର' ଚରିତ୍ରରେ ଅଭିନୟ କରି ଦ୍ୱିତୀୟ ଶ୍ରେଷ୍ଠ ଅଭିନେତାର ସାର୍ଟିଫିକେଟ ପାଇଲି । କିନ୍ତୁ ଚାକିରୀଟିଏ ମିଳିଲା ନାହିଁ । ଦରଖାସ୍ତ ଡାକରେ ପକେଇବା ବନ୍ଦ ହେଲାନାହିଁ ।

ଗୋଟାଏ ଫିଲମ୍ ହିରୋ'ର ବିଧବା ମା', ସାତଟି ସ୍କୁଲକଲେଜର ପାଠପଢୁଆ ଭାଇ, ସ୍କୁଲରେ ପଢୁଥିବା ଭଉଣୀ, ସ୍ତ୍ରୀ ଓ ସନ୍ତାନ କଣ କେବେ ଭୋକ, ରୋଗ, ଅଭାବର ଶିକାର ହୋଇ ପାରନ୍ତି ? ତା'ର ତ 'ଉଭା ଯେତେକୁ ପୋତା ସେତେ।' ପାଞ୍ଚ ଆଙ୍ଗୁଠିରେ ଘିଅ !!

(୫)

୧୯୬୦ ମସିହାରୁ ଜୁଲାଇ ମାସରେ ବରଗଡ଼ରେ ସଦ୍ୟ ପ୍ରତିଷ୍ଠିତ ପଞ୍ଚାୟତ କଲେଜର ପରିଚାଳନା ସମିତି ପାଖରୁ ସିଧାସଳଖ 'ଏପଏଣ୍ଟମେଣ୍ଟ ଲେଟର' ପାଇଲି ଅର୍ଥନୀତି ଅଧ୍ୟାପକ ଭାବରେ। ଦୁଇଶହ ପଞ୍ଚଚାଳିଶ ଟଙ୍କା ଦରମାରେ ମୋର ଚାକିରୀ ଆରମ୍ଭ। ଅଧ୍ୟାପକ ହେବାପରେ ସମ୍ବଲପୁର ଓ ବରଗଡର ଛାତ୍ର ଓ ଜନତାଙ୍କ ଉତ୍ସୁକତା ଯୋଗୁ ସୌଖୀନ ନାଟକରେ ଅଭିନୟ ଓ ନିର୍ଦ୍ଦେଶନା ଦେବା ପାଇଁ ନିମନ୍ତ୍ରଣ ପାଇଲି।

କଲେଜର ନାଟ୍ୟ ସଂସଦର ଉପସଭାପତି ଭାବରେ ସମସ୍ତ ନିଷ୍ପତ୍ତି ମୋତେ ନେବାକୁ ପଡ଼ିଲା। ତେଣୁ ନିର୍ଦ୍ଦେଶକ ଓ ପ୍ରଯୋଜକର ଦାୟିତ୍ୱ ଓ କର୍ତ୍ତବ୍ୟ କଥା ପଢ଼ାପଢ଼ି କରି ଜାଣିଲି। ଗୋଟିଏ ପରେ ଗୋଟିଏ ନାଟକ ନିର୍ଦ୍ଦେଶନା ଦେବାବେଳେ ମୋର ଦୋଷତ୍ରୁଟି ବିଷୟରେ ସତର୍କ ହେଲି। ମନେ ପଡୁଛି, ଏହି ସମୟରେ 'ପ୍ରଜାତନ୍ତ୍ର ପ୍ରଚାର ସମିତି' ତରଫରୁ ଏକ ଅନୁରୋଧ ଫଳରେ ସମ୍ବଲପୁରୀ ନାଚ ଓ ଗୀତ ପରିବେଷଣ କରିବାକୁ ଗୋଟିଏ ଦଳ ନେଇ ବିଷୁବ ମିଳନ ଉତ୍ସବରେ ଯୋଗ ଦେଇଥିଲି। ସର୍ବଶ୍ରୀ ନରେନ୍ଦ୍ର ମହାରଣା, ଅରୁଣ ସେଠ, ଲକ୍ଷ୍ମୀ ପ୍ରଧାନ, ରଣଜୀତ ନାଗ, କୁମାରୀ ପୁଣ୍ୟପ୍ରଭା ବହିଦାର ଓ ଅନ୍ୟ କେତେକ କଳାକାରମାନଙ୍କୁ ସଂଗରେ ନେଇ, ପ୍ରଥମ କରି କଟକର ଦର୍ଶକ ଆଗରେ ସମ୍ବଲପୁରୀ ନୃତ୍ୟ ଗୀତ ପରିବେଷଣ କରିବାର ସୁଯୋଗ ମୋତେ ମିଳିଥିଲା। ସେତେବେଳେ ଉପକୂଳ ଅଞ୍ଚଳରେ ସମ୍ବଲପୁରୀ ଶାଢ଼ୀର ମଧ୍ୟ ପ୍ରଚଳନ ହୋଇନଥିଲା। ୧୯୬୧ ମସିହାରେ ଗଙ୍ଗାଧର ମେହେର କଲେଜର ଦଳେ ଛାତ୍ର ସମ୍ବଲପୁରର ନାରୀ ସେବା ସଦନରେ ସମ୍ବଲପୁର ସହରର କଳାକାର ଓ ବୈଷୟିକ ଶିଳ୍ପୀମାନଙ୍କର ସହଯୋଗରେ ଏକ ସାମାଜିକ ନାଟକର ନିର୍ଦ୍ଦେଶନା ଦେବାପାଇଁ ଅନୁରୋଧ କଲେ ମୋତେ। ସମ୍ବଲପୁର ସହରର ପଢା ଓ ସାହିର ଛାତ୍ରଛାତ୍ରୀ, ଶିକ୍ଷକ, ନର୍ସ, ସ୍କୁଲ ଶିକ୍ଷୟିତ୍ରୀ, ଓକିଲ, ସରକାରୀ ଚାକିରିଆମାନେ କଳାକାର ଓ ବୈଷୟିକ ଶିଳ୍ପୀ ଭାବରେ ବଛାଗଲେ। ଏମାନଙ୍କ ଭିତରେ ଥିଲେ କୁମାରୀ ସୁବାସିନୀ ମିଶ୍ର ଓ ସର୍ବଶ୍ରୀ ଭରତ ଚନ୍ଦ୍ର ପୂଜାରୀ, ଶରତ ବେହେରା, ମାନଭଞ୍ଜନ ହୋତା, ତୋଫାନ ତ୍ରିପାଠୀ, ଶୈଳେଶ ପଟ୍ଟନାୟକ, ଶିଳାଦିତ୍ୟ ଷଡ଼ଙ୍ଗୀ, ବନୱାରି ଅଗ୍ରୱାଲ, ଜୟଦେବ ଡନ୍‌ସନା, ଅର୍ଜୁନରଞ୍ଜନ ପଣ୍ଡା, ପ୍ରେମାନନ୍ଦ ଦାନୀ, ନରେନ୍ଦ୍ର ମହାରଣା, ଅରୁଣ ସେଠ, ବାବୁଜୀ, ବାଲେଶ୍ୱର ବରାଇ, ଲକ୍ଷ୍ମୀ ପ୍ରଧାନ ଇତ୍ୟାଦି। ଏହି 'ଅମଡା ବାଟ' ନାଟକର ନିର୍ଦ୍ଦେଶନା ଦେବାପରେ, ମୋର ଯେ କୌଣସି

ପରିସ୍ଥିତିରେ ନାଟକ ମଞ୍ଚସ୍ଥ କରିବାର ଆତ୍ମବିଶ୍ୱାସ ଆସିଥିଲା । ସ୍ଥାନୀୟ କଳାକାର, ସଂଗୀତଜ୍ଞ, ବାଦ୍ୟକାରଙ୍କୁ ନିଜର ସମ୍ବଳ ମନେକରି ସଫଳ ଓ ପ୍ରଭାବଶାଳୀ ନାଟକ ଯେ ମଞ୍ଚସ୍ଥ କରିହେବ ଏ ବିଶ୍ୱାସ ମୋର ହୋଇଥିଲା । ନାଟକ ପାଇଁ କଲିକତା, କଟକ, ଭୁବନେଶ୍ୱର ପରି ସହରର କଳାକାର ଓ ବୈଷୟିକ ଶିଳ୍ପୀ ଯେ ଅପରିହାର୍ଯ୍ୟ ଏହା ମୁଁ ଆଜିପର୍ଯ୍ୟନ୍ତ ଗ୍ରହଣ କରି ନାହିଁ । ସେଥିପାଇଁ ୧୯୯୨ ମସିହା ପର୍ଯ୍ୟନ୍ତ ମୁଁ ନାଟକ କ୍ଷେତ୍ରରେ ଏ ଦୁଇଟି ସହରଠାରୁ ଦୂରେଇ ଯାଇଥିଲି ।

ବରଗଡ କଲେଜରେ କିନ୍ତୁ ଛାତ୍ରୀମାନେ ଛାତ୍ରମାନଙ୍କ ସହିତ ଅଭିନୟ କରିବାକୁ ଅମଙ୍ଗ ଥିଲେ । ସେଥିପଇଁ ଛାତ୍ରମାନଙ୍କ ମଧ୍ୟରୁ ନାରୀ ଭୂମିକା ପାଇଁ ମୋତେ ଉପଯୁକ୍ତ ଅଭିନେତା ଖୋଜିବାକୁ ପଡୁଥିଲା । ସେମାନଙ୍କୁ ନିର୍ଦ୍ଦେଶନା ଦେବାବେଳେ ନାରୀ ଚରିତ୍ରର ଅଙ୍ଗଭଙ୍ଗୀ ଉପରେ ମୋତେ ବିଶେଷ ଭାବରେ ସେମାନଙ୍କୁ ଅଭ୍ୟାସ କରାଇବାକୁ ପଡୁଥିଲା । ଯଦିଓ ଏହା ସମୟସାପେକ୍ଷ ତଥାପି ମଞ୍ଚ ମାଧ୍ୟମରେ ଏପରି ନାରୀ ଚରିତ୍ରଗୁଡ଼ିକ ଦର୍ଶକମାନଙ୍କ ଉପରେ ସଫଳ ଓ ଯାଦୁକରୀ ପ୍ରଭାବ ପକାଇ ପାରୁଥିଲେ । ପରେ ଏମାନେ ଯଶସ୍ୱୀ ନାଟ୍ୟକାର, କଳାକାର, ନିର୍ଦ୍ଦେଶକ ଭାବରେ ନିଜକୁ ପ୍ରତିଷ୍ଠିତ କରିଛନ୍ତି । ବରଗଡ଼ର ଛଅବର୍ଷର ଚାକିରି ଭିତରେ ମୁଁ ସଂପୂର୍ଣ୍ଣ ୧୨ଟି ନାଟକରେ ନିର୍ଦ୍ଦେଶନା ଦେଇଛି । ସେଥିରୁ ପ୍ରାୟ ପାଞ୍ଚଟି ନାଟକରେ ଅଭିନୟ ମଧ୍ୟ କରିଥିଲି । ବରଗଡ ସହର ଛଡ଼ା, ଅତାବିରା, ବୁର୍ଲା ପରି ସ୍ଥାନରୁ ନିର୍ଦ୍ଦେଶନା ଦେବାପାଇଁ ଆମନ୍ତ୍ରଣ ପାଇଛି । ପ୍ରାୟ ତିନିବର୍ଷଯାଏ ମୁଁ ବୁର୍ଲା ଇଂଜିନିୟରିଂ କଲେଜର ନାଟ୍ୟ ନିର୍ଦ୍ଦେଶନା ଦେଇଛି । ଆଜିର ଓଡ଼ିଶା ସରକାରଙ୍କର ପୂର୍ବତନ ମୁଖ୍ୟ ଯନ୍ତ୍ରୀ ଶ୍ରୀ ପି.କେ. ମିଶ୍ର ଛାତ୍ରାବସ୍ଥାରେ ମୋର ନିର୍ଦ୍ଦେଶିତ ନାଟକର ଜଣେ ସଫଳ କଳାକାର । ସେହିପରି ପୂର୍ବତନ ସ୍ୱାସ୍ଥ୍ୟ ନିର୍ଦ୍ଦେଶକ ଡକ୍ଟର ଝସକେତନ ସାହୁ ମଧ୍ୟ ମୋ' ନିର୍ଦ୍ଦେଶିତ ନାଟକର ଆଉ ଜଣେ ସଫଳ କଳାକାର । ଛାତ୍ରୀମାନେ ସଂଘବଦ୍ଧ ଭାବରେ ବେଳେବେଳେ ଅନୁରୋଧ କରୁଥିଲେ କେବଳ ଛାତ୍ରୀମାନଙ୍କୁ ନେଇ ନାଟକ ମଞ୍ଚସ୍ଥ କରିବା ପାଇଁ । ଦୁଇ ତିନୋଟି ଏହିପରି ଏକାଙ୍କିକା ନିର୍ଦ୍ଦେଶନା ଦେବା ମଧ୍ୟ ମୋ' ଭାଗ୍ୟରେ ଜୁଟିଛି । ବରଗଡର ବ୍ୟବସାୟୀ ଗୋଷ୍ଠୀ ମଧ୍ୟ ହିନ୍ଦୀ ନାଟକ ନିର୍ଦ୍ଦେଶନା ଦେବାପାଇଁ ଅନୁରୋଧ କରିଥିଲେ । ଏଥିରେ ମଧ୍ୟ ଅଭିନୟ କରିବାକୁ ଓ ନିର୍ଦ୍ଦେଶନା ଦେବାକୁ ପଡ଼ିଥିଲା ମୋତେ ।

ବରଗଡ଼ କଲେଜର ଭାରପ୍ରାପ୍ତ ଅଧ୍ୟକ୍ଷ ଥିବା ସମୟରେ ମୋର ପରିଚୟ ହୋଇଥିଲା ବିଜୟ ମିଶ୍ରଙ୍କ ସହିତ । ସେତେବେଳେ ସେ ଅତାବିରା ପାଖର ରେଙ୍ଗାଲିପାଲୀ କେନାଲ କଲୋନୀରେ ଜଳସେଚନ ବିଭାଗର ଓଭରସିୟର ଭାବରେ କାର୍ଯ୍ୟରତ ଥିଲେ । ମୋର ବାଲ୍ୟବନ୍ଧୁ ଧୀରେନ୍ଦ୍ର ନାଥ ପାତ୍ରୀ ଅତାବିରା ସମବାୟ ସମିତିର ଉଦ୍ୟୋକ୍ତା ଓ ପରିଚାଳକ

ଥିଲେ । ତାଙ୍କ ଜରିଆରେ ଆମର ପରିଚୟ ହୋଇଥିଲା । ସେତେବେଳେ ସେ ତାଙ୍କର ପ୍ରଥମ ନାଟକ 'ଜନନୀ' ଲେଖିବା ଆରମ୍ଭ କରିଥିଲେ । ଏହାପରେ 'ଅଶାନ୍ତ ଗ୍ରହ' ମଧ୍ୟ ଏହିଠାରେ ଥିବା ସମୟରେ ସେ ପରିକଳ୍ପନା କରିଥିଲେ । ପରବର୍ତ୍ତି କାଳରେ ତାଙ୍କ ସହିତ ଘନିଷ୍ଠତା ବଢ଼ିଲା ଓ ସେ ମୋର ନିର୍ଦ୍ଦେଶିତ ଦୁଇଟି ଚଳଚ୍ଚିତ୍ର 'ଅଶାନ୍ତ ଗ୍ରହ' ଓ 'ତଅପୋଇ'ର ସଂଳାପ ଲେଖକ ଓ ସହ ନିର୍ଦ୍ଦେଶକ ଭାବରେ କାର୍ଯ୍ୟ କରିଥିଲେ ।

ବରଗଡ଼ କଲେଜ ତରଫରୁ ଦୁଇଟି ନାଟକ ଅତି ସଫଳତାର ସହ ମଞ୍ଚସ୍ଥ ହୋଇଥିଲା । ତାହା ବରଗଡ଼ବାସୀଙ୍କ ପାଇଁ ଅବିସ୍ମରଣୀୟ ହୋଇ ରହିଛି । ତାହା ହେଉଛି ଯୁଦ୍ଧପାଣ୍ଠିକୁ ଦାନଦେବା ପାଇଁ 'ଲୁହା ଶିକୁଳି' ନାଟକ ଓ ବରଗଡ଼ କଲେଜ ଛାତ୍ରାବାସର 'ଚଣ୍ଡାଶୋକ' ଏକାଙ୍କିକା । ଏ ଏକାଙ୍କିକାର ପ୍ରଦର୍ଶନ 'ସଁ-ଏ-ଲୁମିଏ' ପଦ୍ଧତିରେ କରିବା ବୋଧହୁଏ ଓଡ଼ିଶାରେ ସର୍ବପ୍ରଥମ । ଏ ଦୁଇଟି ନାଟକ ୧୯୬୩ ମସିହାରେ ବରଗଡ ଟାଉନ୍ ହଲ ଓ ବରଗଡ କଲେଜ ପରିସର ମଧ୍ୟରେ ପ୍ରଦର୍ଶିତ ହୋଇଥିଲା । ଏଥିରେ ବରଗଡ଼ କଲେଜର ଛାତ୍ର ଓ ଶିକ୍ଷକମାନଙ୍କର ଆନ୍ତରିକ ସହଯୋଗ ମୋର ଚିରସ୍ମରଣୀୟ ହୋଇ ରହିଛି । ପ୍ରତ୍ୟେକ ସ୍ଥାନର ସ୍ଥାନୀୟ ସଂଗୀତଜ୍ଞ, କଳାକାର, ବାଦ୍ୟକାର ଓ ବୈଷୟିକ କଳାକାରଙ୍କ ସହଯୋଗ ଥିଲା ମୋ ନାଟକ ନିର୍ଦ୍ଦେଶନାର ମୁଖ୍ୟ ପଦ୍ଧତି । ଅହେତୁକ ବ୍ୟୟ ବହୁଳ ନାଟକ ପ୍ରଯୋଜନାର ମୁଁ ପକ୍ଷପାତୀ ନୁହେଁ । ସଫଳ ନାଟକ ପରିବେଷଣ ପାଇଁ କଡ଼ାକଡ଼ି ଅଭ୍ୟାସ (ରିହାରସାଲ) ତଥା ଶବ୍ଦ, ସଂଗୀତ ଓ ଆଲୋକର 'ସିଂକ୍ରୋନାଇଜେସନ୍' (montaging) ଉପରେ ବେଶୀ ନିର୍ଭର କରୁଥିଲି ।

୧୯୬୬ ପରେ ବରଗଡ ସହରରେ ଏକ ନାଟ୍ୟ ଆନ୍ଦୋଳନର ସାଂସ୍କୃତିକ ଜାଗରଣ ସୃଷ୍ଟି ହେଲା । ସେଥିରୁ ବହୁ ଯଶସ୍ୱୀ କଳାକାର ବର୍ତ୍ତମାନ ଓଡ଼ିଶାରେ ପ୍ରତିଷ୍ଠିତ ହୋଇଛନ୍ତି । ମୁଁ ବରଗଡ଼ରେ ଅଧ୍ୟାପକ ଥିବା ସମୟରେ ଏମାନେ ସମସ୍ତେ ସ୍କୁଲ ସ୍ତରର ଛାତ୍ରଛାତ୍ରୀ ଥିଲେ । ବରଗଡ଼ର ଅଫିସର୍ସ କ୍ଲବ୍‌ର 'ଉଠାପାଟେରୀ' ମୋର ଆଉ ଏକ ସଫଳ ଅଭିନୀତ ଓ ନିର୍ଦ୍ଦେଶିତ ନାଟକ । ଏଠାରେ ଥିବା ସମୟରେ ମୁଁ ପାଞ୍ଚଟି ଚଳଚ୍ଚିତ୍ରରେ ଅଭିନୟ କରିଥିଲି ଓ ସେଥିରୁ ଗୋଟିଏ ଚଳଚ୍ଚିତ୍ର 'ସାଧନା'ର ପ୍ରଯୋଜନା ମଧ୍ୟ କରିଥିଲି । 'ସାଧନା' ୧୯୬୪ ମସିହାର ସର୍ବଶ୍ରେଷ୍ଠ ଓଡ଼ିଆ ଚଳଚ୍ଚିତ୍ର ଭାବରେ ରାଷ୍ଟ୍ରପତି ରୌପ୍ୟ ପଦକ ପାଇଥିଲା ।

ଏ ସମୟ ମଧ୍ୟରେ ଅନେକ ତରୁଣ କଳାକାର ମାନଙ୍କୁ ଉତ୍ସାହିତ କରିବା ପାଇଁ ମୋତେ ଯେତେ ଆନନ୍ଦ ମିଳିଥିଲା, ସେତିକି ବିଶ୍ୱାସ ଆସିଥିଲା ଯେ ପ୍ରକୃତ ପରିବେଶ ସୃଷ୍ଟି କଲେ ନିର୍ଦ୍ଦେଶକଟିଏ ଯେକୌଣସି ବ୍ୟକ୍ତିକୁ କଳାକାର ଭାବରେ ତିଆରି କରିପାରିବ । ଭାଷା ଓ ଶିକ୍ଷାଗତ ଯୋଗ୍ୟତା ଅବଶ୍ୟ ଏଥିପାଇଁ ମୂଳଆଧାର । ବରଗଡ ନାଟ୍ୟ

ଆନ୍ଦୋଳନରେ ଗୋଟିଏ ମୁଖ୍ୟ ଦିଗ ହେଉଛି, ବହୁଗୁଡ଼ିଏ ସିନ୍‌ରେ ନାଟକ ନକରି ଗୋଟିଏ ମୁଖ୍ୟ ସେଟ୍ ଉପରେ ସାମାନ୍ୟ ସେଟ୍ ଓ ପରଦା ବା ଆଲୋକ ସମ୍ପାତ ଦ୍ୱାରା ବହୁଗୁଡ଼ିଏ କ୍ରୋଡ ସିନ୍‌ର ଉପସ୍ଥାପନ କରିବା । ନାଟକର ସଂଳାପ କହିବା ବେଳେ ଯାତ୍ରାର ସଂଳାପ ପରି ଉଚ୍ଚାରଣ ନକରି ବାସ୍ତବାଭିମୁଖୀ ଉଚ୍ଚାରଣ କରିବା। କେବଳ ଐତିହାସିକ ଓ ପୌରାଣିକ ନାଟକରେ 'ଷ୍ଟାଇଲାଇଜଡ୍ ଏକ୍ଟିଂ'ର ସାମାନ୍ୟ ପ୍ରୟୋଗ । ମଞ୍ଚଠାରୁ ଦର୍ଶକର ଦୂରତ୍ୱ ଦେଖି ନାଟକ ପରିବେଷଣ ତଥା 'ଅଡିଏନ୍‌ସ ପାର୍ଟିସିପେସନ୍' ଦ୍ୱାରା ସାମାଜିକ ସମସ୍ୟାକୁ ଉପସ୍ଥାପନ କରିବା । ଚଣ୍ଡାଶୋକ, ଲୁହା ଶିକୁଳୀ ଓ ଉଠାପାଚେରୀ ନାଟକ ନିର୍ଦ୍ଦେଶନା ଦେବାବେଳେ ଏ ପ୍ରୟୋଗ ଦ୍ୱାରା ମୁଁ ସଂପୂର୍ଣ୍ଣ ସଫଳତା ପାଇଥିଲି ।

(୬)

'ଲୁହା ଶିକୁଳୀ' ବରଗଡ ଟାଉନହଲରେ ପ୍ରଦର୍ଶିତ ହୋଇଥିଲା । ଏଥିରେ ଅଭିନୟ କରୁଥିବା ଅଧିକାଂଶ ଛାତ୍ର ପରବର୍ତ୍ତି କାଳରେ ନାଟ୍ୟ ଆନ୍ଦୋଳନରେ ଭାଗ ନେଇ ଯଶସ୍ୱୀ ହୋଇଛନ୍ତି । ଏମାନଙ୍କ ମଧ୍ୟରୁ ଅଧ୍ୟାପକ ଜଗଦୀଶ କୁଅଁର, ଶିକ୍ଷାବିତ୍ ସନାତନ ଠାକୁର, ପୋଲିସ୍ ଡି.ଆଇ.ଜି. ସୁଶୀଲ ପ୍ରଧାନ, ରାମପୁରର ଡାକ୍ତର ବଡପଣ୍ଡା କଲେଜ ଛାତ୍ରାବାସର ଅନ୍ତେବାସୀ ଥିଲେ । ମୁଁ ୧୯୬୩ରେ କଲେଜ ଛାତ୍ରାବାସର ତତ୍ତ୍ୱାବଧାରକ ଥିଲି ଓ ସେହି ବର୍ଷ କଲେଜର ତଦାନୀନ୍ତନ ଅଧ୍ୟକ୍ଷ ପ୍ରଫେସର ବ୍ରହ୍ମ ଅନ୍ୟତ୍ର ବଦଳିରେ ଚାଲିଯିବାରୁ ମୋତେ ଭାରପ୍ରାପ୍ତ ଅଧ୍ୟକ୍ଷ ଭାବରେ ଦାୟିତ୍ୱ ହସ୍ତାନ୍ତର କରିଥିଲେ । ଛାତ୍ରାବାସର ବାର୍ଷିକ ଉତ୍ସବରେ ସାଂସ୍କୃତିକ କାର୍ଯ୍ୟକ୍ରମ ଭାବରେ ନାଟକ ପରିବେଷଣ କରିବାକୁ ଅନ୍ତେବାସୀ ଛାତ୍ରମାନେ ମୋତେ ଅନୁରୋଧ କଲେ । ସିନ୍, ପରଦା, ଷ୍ଟେଜ୍ ପାଇଁ ପଇସା ନାହିଁ । ଚା' ଜଳଖିଆ ଓ ରାତ୍ରଭୋଜିରୁ ପଇସା ବଞ୍ଚେଇ ପ୍ରାୟ ଏକ ହଜାର ଟଙ୍କାର ବ୍ୟୟ ଅଟକଳରେ ନାଟକ ପରିବେଷଣ ଯୋଜନା ହେଲା । ଲୁହାଶିକୁଳୀ ନାଟକର ସଫଳ ଅଭିନେତା (ଅଭିନେତ୍ରୀ) ଗଣ ଥିଲେ ଅନ୍ତେବାସୀ । ଏମାନଙ୍କ ଉତ୍ସାହ ଦେଖି ମୁଁ କେବଳ ଏକ ଏକାଙ୍କିକା ପରିବେଷଣ କରିବାକୁ ମନସ୍ଥ କଲି ।

ବରଗଡ କଲେଜର ଅବସ୍ଥିତି ସହରଠାରୁ ପ୍ରାୟ ତିନି କିଲୋମିଟର ଦୂରରେ । ରୁହୁନିଆ ଗ୍ରାମକୁ ଯିବା ରାସ୍ତାରେ ପ୍ରାୟ ୨୫ ଏକର ଜମି ଉପରେ ଗୋଟିଏ ପାଖରେ କଲେଜ ବିଲଡିଂ ଓ ଖେଳପଡିଆ । ଅନ୍ୟ ପାଖରେ ଗୋଟିଏ ଛୋଟ ମୁଣ୍ଡିଆ (ପାହାଡ଼)ର ଗୋଟିଏ ପାଖରେ ଇଂରାଜୀ 'ଏଲ୍' ଅକ୍ଷର ଆକାରର ଏକମହଲା ହଷ୍ଟେଲ କୋଠାଘର ଓ ଷ୍ଟାଫ୍ କ୍ୱାଟର୍ସ, ଅନ୍ୟ ପାଖରେ ଟାଇଲ୍ ଛପର ଥିବା ଆଦିବାସୀ ହଷ୍ଟେଲ୍ । ପରେ ଏହା ଅବିବାହିତ ଅଧ୍ୟାପକଙ୍କ ରହିବା ମେସ୍ ଘରଭାବରେ ବ୍ୟବହୃତ ହେଲା । ଏ ମୁଣ୍ଡିଆ କଲେଜର ଏକ ମୁଖ୍ୟ ସଙ୍କେତ । ପ୍ରାୟ ଏକଶହ ଫୁଟ ବ୍ୟାପଥିବା ଓ ମଝିରେ ପ୍ରାୟ ୧୫

ଫୁଟ ଉଚ୍ଚତା ଥିବା ଏ ଛୋଟ ଟିଲା ବା ପାହାଡଟି ମୋତେ ବହୁ ଭାବରେ ଆକର୍ଷିତ କରିଥିଲା । ପାହାଡଟି ଲମ୍ବା; କିନ୍ତୁ ଛୋଟ ବଡ଼ ପଥର ମଝିରେ ଘାସଥିବା କେତେକ ଜାଗା । ପଥରର ରଙ୍ଗ ଧଳା, କଳା ଓ କସରା । ମୋର ଆଦ୍ୟ ଚାକିରୀର ଉତ୍ସାହ ଭିତରେ ଏ ପାହାଡ଼ ଉପରେ ଏକ ଅଡିଟୋରିୟମ ଓ ଲାଇବ୍ରେରୀର ପରିକଳ୍ପନା କରିଥିଲି । ତାହା ଆଜିଯାଏ ସଫଳ ହୋଇନାହିଁ । ମୁଖ୍ୟ ଛାତ୍ରାବାସର ଭିତରପାଖ ବାରଣ୍ଡାର 'ଏଲ୍' ଆକାରର ସବୁ ପାଖରୁ ମୁଣ୍ଡିଆଟି ଦେଖାଯାଏ । ମୁଣ୍ଡିଆ ଓ ବାରଣ୍ଡାର ଦୂରତ୍ୱ ୩୫ ଫୁଟ ଠାରୁ ୭୫ ଫୁଟ । ଏ ସମତଳ ଖୋଲା ଜାଗାଟି ସଭାପାଇଁ ଉଦ୍ଦିଷ୍ଟ ଥିଲା । ଏଠାରେ ଚା'ଭୋଜିର ମଧ୍ୟ ଆୟୋଜନ ହେଲା । କିନ୍ତୁ ସମଗ୍ର ପାହାଡଟିକୁ ମୁଁ ମଞ୍ଚଭାବରେ ବ୍ୟବହାର କରିବାକୁ ମନେ ମନେ ଯୋଜନା କଲି । ପ୍ରଥମେ ଛାତ୍ରମାନେ ଉତ୍ସାହିତ ହୋଇଗଲେ କିନ୍ତୁ ପରେ ପରେ ତାଙ୍କ ମନରେ ଅନେକ ପ୍ରଶ୍ନ । ଏହା କଣ ସମ୍ଭବ ? ସେତେବେଳେ ବରଗଡ କଲେଜ ପରିସର ମଧ୍ୟରେ ବିଜୁଳୀ ସରବରାହ ନଥିଲା । ରାତି ହେଲେ ଲଣ୍ଠନ ଓ ଲେମ୍ପ ସାହାଯ୍ୟରେ ୧୫୦ ଜଣ ଛାତ୍ର ଓ ଅଧ୍ୟାପକ ନିଜ କାମ ଚଳେଇ ନେଉଥିଲେ । ରାତ୍ର ଭୋଜନ ସମୟରେ ଡାଇନିଂ ହଲରେ ଦୁଇଟି ପେଟ୍ରୋଲମ୍ୟାକ୍ସ ଲାଇଟ୍ ଜଳୁଥିଲା । ସେଥିପାଇଁ ୧୯୬୬ ମସିହା ପର୍ଯ୍ୟନ୍ତ ବରଗଡ କଲେଜର ନାଟକ ଚାରି କିଲୋମିଟର ଦୂର ଟାଉନ୍‌ହଲରେ ପରିବେଷିତ ହେଉଥିଲା । ଚଣ୍ଡାଶୋକ ଏକ ବ୍ୟତିକ୍ରମ ।

ପ୍ରଫେସର ପ୍ରାଣବନ୍ଧୁ କର୍‌ଙ୍କ ଏକାଙ୍କିକା ସମାହାର ପୁସ୍ତକର 'ଚଣ୍ଡାଶୋକ' ନାଟିକାକୁ ଶବ୍ଦ ଆଲୋକ ସଂପାତ ଦ୍ୱାରା (ସଁ-ଏ-ଲୁମିଏ) ଏହି ମୁଣ୍ଡିଆଟିରେ ପ୍ରଦର୍ଶିତ କରିବାର ପରିକଳ୍ପନା ମୁଁ କଲି । ଛାତ୍ରାବାସ ବାରଣ୍ଡାର ଗୋଟିଏ କୋଣରେ ବଛାବଛା ଛାତ୍ର ଓ ଅଧ୍ୟାପକ/ଅଧ୍ୟାପିକାଙ୍କ ଦ୍ୱାରା ସ୍ୱର, ତାଳ, ମଡ୍ୟୁଲେସନ ଦ୍ୱାରା ପଢ଼ିବାର ଅଭ୍ୟାସ କରାଇଲି । ଏଥିରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ ଉଦ୍ଭିଦ ବିଭାଗର ଅଧ୍ୟାପିକା ସୁବାସିନୀ ମିଶ୍ର । ଏହାକୁ 'ରେସିଟେସନ୍' ପଦ୍ଧତିରେ କରାଗଲା-ଯାହାକି ଦର୍ଶକମାନେ ଦେଖିପାରିବେ ନାହିଁ । ଅନ୍ୟପକ୍ଷରେ ଅନ୍ତେବାସୀମାନଙ୍କ ମଧ୍ୟରୁ ପ୍ରାୟ ୪୦ ଜଣ ଛାତ୍ରଙ୍କୁ ଭାଗଭାଗ କରି କଳାକାର ଭାବରେ ବ୍ୟବହାର କରାଗଲା । ମୁଖ୍ୟ ଚରିତ୍ର ଭାବରେ ସମ୍ରାଟ ଅଶୋକ, ତାଙ୍କର ଅମାତ୍ୟ, ଜଣେ ବିଧବା ନାରୀ, ଜଣେ ବୃଦ୍ଧ ଭିକ୍ଷୁ, ତଥାଗତ ଓ ପ୍ରାୟ କୋଡ଼ିଏ ଜଣ ମୃତ ସୈନିକ । ଅନ୍ତରାଳରେ ପ୍ରାୟ ଆଉ ୨୦ ଜଣେ ନେପଥ୍ୟେ କୋଳାହଳ କରୁଥିବା ସାହାଯ୍ୟକାରୀ । ଏକାଙ୍କିକାର ପ୍ରତ୍ୟେକ ନେରେସନ୍ ଓ ସଂଳାପ କହିବାବେଳେ ମାଇକ୍‌ରେ ଏମାନଙ୍କ ସ୍ୱର କିପରି ଶୁଣାଯିବ ତାହାର ଚିନ୍ତା କରିବାକୁ ପଡିଥିଲା । ଏହାର ଅଭ୍ୟାସ ସାଧାରଣ ଛାତ୍ରବାସ କୋଠରୀରେ କରିବା ସମୟରେ ମୁଁ ମୁଖ୍ୟ ଅଭିନେତାମାନଙ୍କୁ 'ଏକଜାକେରେଟେଡ ଆକସନ୍' ବା 'ଷ୍ଟାଇଲାଇଜଡ ଆକ୍ଟିଂ'ର ପ୍ରୟୋଗ କରି ଅଭିନୟ କରିବାକୁ ନିର୍ଦ୍ଦେଶ ଦେଲି । ମୋ' ପାଖରୁ ଯାତ୍ରାଠାରୁ ଆହୁରି ଅଦ୍ଭୁତ ଅଭିନୟ ଦେଖି

ସେମାନେ ଯୁକ୍ତି କଲେ । 'ସାର୍, ଯେ କଣ ହେଉଛି । ଏଇଟା ଲୋକ ଦେଖିଲେ ଆମକୁ ହସିବେ । ପୁରାପୁରି ମାଡ଼ ଖାଇବା ।' ମୁଁ ସେମାନଙ୍କୁ ଆଶ୍ୱାସନା ଦେଇଥିଲି । ଯାହା ଦର୍ଶକଙ୍କୁ ଦେଖାଯିବ ଓ ଶୁଣାଯିବ ତାହା ମୋ ମୁଣ୍ଡ ଭିତରେ ଅଛି ବୋଲି ବୁଝେଇ ଦେଲି । କୋଠରୀ ଭିତରେ ଅଭ୍ୟାସ (ରିହାଲସାଲ) ଚାଲିବାଯାଏ ଅତି ଦୁଃଖରେ ସେମାନେ ଏ ଅଭିନୟ କରିଥିଲେ । ଯେଉଁଦିନ ଷ୍ଟେଜ ରିହଲସେଲ୍ ପାଇଁ ମୁଁ ପାହାଡ଼ ଉପରକୁ ନେଇଗଲି ସେମାନେ ସାମାନ୍ୟ ନିଶ୍ଚିନ୍ତ ହେଲେ । ମୁଣ୍ଡିଆଟିର ଚାରୋଟି ସ୍ଥାନରେ ମୁଁ ଏକାଙ୍କିକାର ଦୃଶ୍ୟ କିପରି ଅଭିନୀତ ହେବ ଦେଖାଇଦେଲି । 'ଲାଇଟ୍‌କୋନ୍' ଓ 'ବ୍ଲକ୍'ର ବିଷୟ ବୁଝିବା ପରେ ସେମାନେ କିଛିଟା ଆଶ୍ୱସ୍ତ ହେଲେ ।

ବରଗଡରେ ସେତେବେଳେ ବହୁଲୋକଙ୍କ ପାଖରେ ଜଙ୍ଗଲରେ ଜନ୍ତୁ ଦେଖିବା ପାଇଁ ବ୍ୟବହୃତ 'ସ୍ପଟଲାଇଟ' ଥିଲା । ସେଥିରୁ ପାଞ୍ଚ ଛଅଟି ଯୋଗାଡ କରାଗଲା ଆଲୋକ ସଂପାଦ ପାଇଁ । ଏହା ପ୍ରାୟ ଜଙ୍ଗଲର ଠିକାଦାର ବା କାଠ ବ୍ୟବସାୟ କରୁଥିବା ଟ୍ରକ୍ ମାଲିକଙ୍କ ପାଖରେ ଥାଏ । ଚାରିଜଣ ଟ୍ରକ ମାଲିକଙ୍କୁ ଟ୍ରକ ସହିତ ଆସି ନାଟକ ଦେଖିବାର ଅନୁରୋଧ କରାଗଲା । ସେମାନଙ୍କ ଗାଡିର 'ବାରଭୋଲ୍‌ଟ ବେଟାରୀ' ଓ 'ସ୍ପଟ ଲାଇଟ' ସଙ୍ଗରେ ଧରି ଆସିବାକୁ ଅନୁରୋଧ କରାଗଲା । ସେମାନେ ବଡ ଖୁସିରେ, କୌତୁହଳ ଦେଖାଇ ଏହା କରିବାକୁ ରାଜି ହୋଇଥିଲେ । ଟ୍ରକ୍‌ଗୁଡ଼ିକ ହଷ୍ଟେଲ ପଛପଟରେ 'ଏଲ' ଆକାରର ବିଲଡିଂର ଚାରୋଟି କୋଣରେ ରଖିଦିଆଗଲା-ଯାହା ଦର୍ଶକ ଦେଖିପାରିବେ ନାହିଁ । ସେଠାରୁ ଛାତ ଉପରର ତିନୋଟି ସ୍ପଟ୍ ଓ ମାଇକ୍ ପାଖକୁ ସଂଯୋଗ ଦିଆଗଲା । ପାଞ୍ଚ ଛଅଜଣ ଛାତ୍ର ଆଲୋକ ସଂପାଦର ସଂପୂର୍ଣ୍ଣ ଦାୟିତ୍ୱ ନେଇ ଛାତ ଉପରେ ବସିଲେ । ବାଦ୍ୟଯନ୍ତ୍ର ଓ ସଂଳାପ ସହିତ ତାଳଦେଇ (ସିନ୍‌କ୍ରୋନାଇଜଡ୍) ଆଲୋକ ସଂପାତ କରାଗଲା । ସମସ୍ତଙ୍କୁ ବିଭିନ୍ନ 'ଚାର୍ଟ୍' ଓ 'ଡାଇଗ୍ରାମ୍' ଦ୍ୱାରା ଏହା ବୁଝେଇ ଦିଆଗଲା ।

(୭)

ସନ୍ଧ୍ୟା ୪ଟାର ସଜ୍ଜିତ ଖୋଲା ସଭାସ୍ଥଳୀରେ ସଭାକାର୍ଯ୍ୟ, ପୁରସ୍କାର ବିତରଣୀ ତଥା ଚା'ଭୋଜି କାର୍ଯ୍ୟକ୍ରମ ସରିବା ବେଳକୁ ସନ୍ଧ୍ୟା ହୋଇଗଲା । ସାଂସ୍କୃତିକ କାର୍ଯ୍ୟକ୍ରମ ପାଇଁ ଦର୍ଶକମାନଙ୍କୁ ଛୋଟ ବେଟେରୀ ଚାଳିତ ମାଇକ୍‌ରେ ଘୋଷଣା କରି କହି ଦିଆଗଲା- ସଂପୂର୍ଣ୍ଣ ଅନ୍ଧକାର ନହେବା ପର୍ଯ୍ୟନ୍ତ ଦୟାକରି ବସି ରହିବାକୁ । ଅଧିକାଂଶ ସ୍କୁଲପିଲା ଏ ବିଷୟରେ ଆଗରୁ ଶୁଣିଥିଲେ । ତେଣୁ ସେମାନେ କୁତୁହଳ ଦେଖାଇ ଏକହଜାର ସଂଖ୍ୟାରେ ସାଇକେଲରେ ଆସି କଲେଜର ମୁଣ୍ଡିଆ ଆଡ଼କୁ ରାସ୍ତାରୁ ଠିଆହୋଇ ଅନେଇ ରହିଥିଲେ । ପ୍ରାୟ ଛ'ଟା ସମୟରେ ନିମନ୍ତ୍ରିତ ଦର୍ଶକଙ୍କୁ ମଞ୍ଚଉପରୁ ଅନୁରୋଧ କରାଗଲା- ଯେ ଯାହା ସ୍ଥାନରେ ଚଉକି ସହିତ ବୁଲିଯିବା ପାଇଁ । ପ୍ରାୟ ତିନିଶହ ଦର୍ଶକ କୁତୁହଳରେ ଚଉକି

ବୁଲେଇ ପଛକୁ ମୁହଁକଲେ । ତାଙ୍କ ଆଗରେ କେବଳ ଦେଖାଯାଉଥିଲା ମୁଣ୍ଡିଆଟିର ଝାପ୍‌ସା ଚକ୍ରବାଳ । ଅନ୍ଧାରରେ ଦୂରତ୍ୱ ଜଣାଯାଏ ନାହିଁ ।

ସଂଗୀତର ମୂର୍ଚ୍ଛନା ମଧ୍ୟରେ ଗମ୍ଭୀର ସ୍ୱରରେ ଉଚ୍ଚାରିତ ହେଲା, 'ପ୍ରାୟ ଦୁଇ ହଜାର ବର୍ଷ ତଳେ, ଖ୍ରୀ.ପୂ. ୨୬୧ରେ କଳିଙ୍ଗର ଭାଗ୍ୟ ଆକାଶରେ ଦେଖାଦେଲା ଏକ ଧୂମକେତୁ-'। ଏ 'ଧୂମକେତୁ' ଶବ୍ଦ ସହିତ ତାଳଦେଇ ଗୋଟିଏ ବଡ଼ ହାବେଳୀ ବାଣ ଦର୍ଶକଙ୍କ ସମ୍ମୁଖରେ ମୁଣ୍ଡିଆର ସବୁଠାରୁ ଉଚ୍ଚକାଗାର ପଛପଟୁ, ସରସର କରି ଉଠିଗଲା ଓ ଆକାଶରେ ଉଚ୍ଚ ଶବ୍ଦ କରି ଫୁଟିଗଲା । ଏହି ଶବ୍ଦ ଓ ଆଲୋକର ସଂପାତରେ ପ୍ରାୟ ୨୦୦୦/୩୦୦୦ ଦର୍ଶକ ମନ୍ତ୍ରମୁଗ୍ଧ ହୋଇ ରହିଗଲେ। ସ୍ଥାନ କାଳ ପାତ୍ରର ସଂଜ୍ଞା ମୁହୂର୍ତ୍ତକ ପାଇଁ ଏମାନଙ୍କ ପାଖରେ ହଜିଗଲା । ତା'ପରେ ଅନ୍ଧକାର ମଧ୍ୟରେ ଘୋଷଣା ହେଲା- 'ମଗଧର ରାଜା ଚଣ୍ଡାଶୋକଙ୍କର ଧଉଳି ପାହାଡ ପାଦଦେଶରେ ରକ୍ତାକ୍ତ ସଂଗ୍ରାମ ଓ ଦୟାନଦୀର ରକ୍ତନଦୀ ।' ଏ ଘୋଷଣା ହେବା ବେଳେ ପାହାଡର ପ୍ରାୟ ୬୦ଫୁଟ ଚକ୍ରବାଳ ପଛରୁ ଛାଡିଛାଡି କୋଡ଼ିଏଟି 'ଚନ୍ଦ୍ର ଉଦିଆ' ବାଣ ଜଳାଇ ଦିଆଗଲା । ବାଣର ଧଳା ଆଲୋକ ଓ ଦୁଧିଆ ଧୂଆଁ ମଧ୍ୟରେ ପ୍ରାୟ ୧୫/୨୦ ଜଣ ଛାତ୍ର ଖାଲିଦେହରେ କେବଳ ମୁଣ୍ଡର ଟୋପି ଓ ଧୋତି ପିନ୍ଧି, ଖଣ୍ଡା ଓ ଢ଼ାଲ ଧରି ଯୁଦ୍ଧ କରିବା ଭିତରେ ଚିତ୍କାର କରୁଥିଲେ। ଏମାନଙ୍କ ପଛରୁ ସ୍ପଟ୍ ଲାଇଟ ପକାଇବାବେଳେ ଏମାନଙ୍କର ଛାଇ ଓ ଛାୟାପରି ଦୁଧିଆ ଧୂଆଁ ଭିତରେ ଏପରି 'ରିଫ୍ରାକ୍ଟେଡ୍‌ଇମେଜ୍‌ମାନ' ସୃଷ୍ଟି କଲା ଯାହା ଏକ ଦୂର ଇତିହାସର ଭୟାତୁର ଅନୁଭୂତିର ସଂଚାର କଲା । ମାଇକ୍‌ରେ ଶୁଣାଯାଉଥାଏ ଚିତ୍କାର, ଆର୍ତ୍ତନାଦ, ଖଣ୍ଡା ଓ ବର୍ଚ୍ଛାର ଶବ୍ଦ। ଆଉ ଏକ ସ୍ଥାନରୁ ଏ ବର୍ଣ୍ଣନା ଓ ସଂଗୀତର କରୁଣ ମୂର୍ଚ୍ଛନା ମଧ୍ୟରେ ପ୍ରଥମ ଦୃଶ୍ୟର ଆଲୋକ ଜଳିବା ବେଳେ ଦର୍ଶକଙ୍କଠାରୁ ପ୍ରାୟ ୧୦୦ ହାତ ଦୂରରୁ ସମ୍ରାଟ ଅଶୋକ ତାଙ୍କ ଅମାତ୍ୟଙ୍କ ସହିତ ମୁଣ୍ଡିଆର ଶିଖରଦେଶରୁ ଆତ୍ମଗର୍ବର ସହିତ ଓହ୍ଲାଇ ଆସିଲେ ଧୀରେ ଧୀରେ । ମାଇକ୍‌ର ସଂଳାପ ସହିତ ସେମାନେ ଯେଉଁ ମୂକ ଅଭିନୟ କରିଥିଲେ ତାହା ଯାତ୍ରା ଅଭିନୟଠାରୁ ମଧ୍ୟ ବେଶୀ 'ଲାଉଡ୍'। କିନ୍ତୁ ଦର୍ଶକଙ୍କ ଦୂରତ୍ୱ ଯୋଗୁଁ, ତଥା ଶବ୍ଦର 'ରେସିଟେସନ' ଧର୍ମୀ 'ନେରେସନ୍' ଓ ସଂଳାପ ଯୋଗୁ ଏହା ଏକ ଐତିହାସିକ ଦୂର ଅତୀତକୁ ମାନସିକ ସ୍ତରରେ ସମସ୍ତ ଦର୍ଶକଙ୍କୁ ନେଇ ଯାଇଥିଲା ।

ପ୍ରଥମ ଦୃଶ୍ୟର ଶେଷବେଳକୁ ସ୍ପଟ୍ ଲାଇଟ ଲିଭିବା ପୂର୍ବରୁ, ଦ୍ୱିତୀୟ ଦୃଶ୍ୟର ସ୍ପଟ ଲାଇଟ ଧୀରେ ଧୀରେ ଆକାଶରୁ ଖସି ଆସିଲା ଦର୍ଶକଙ୍କ ପାଖରୁ ପ୍ରାୟ ୪୦ ହାତ ଦୂରରେ ରକ୍ତନଦୀର ଦୃଶ୍ୟକୁ । ତୃତୀୟ, ଚତୁର୍ଥ ଓ ପଞ୍ଚମ ଦୃଶ୍ୟ ମଧ୍ୟ ଏହିପରି ସାମାନ୍ୟ ଶୁଖିଲା ଗଛର ଡାଳ, ଛୋଟ କୁଡିଆ ଓ ପଥରଖୋଲ ମଧ୍ୟରେ ଅଙ୍କାବଙ୍କା ପାଦଚଲା ରାସ୍ତା ଉପରେ ମୁଣ୍ଡିଆର ବିଭିନ୍ନ କୋଣରେ ଆଲୋକ ପକାଇ ମଞ୍ଚମାୟା ସୃଷ୍ଟି କରା ହୋଇଥିଲା । ପ୍ରାୟ

୩୦୦୦ ଦର୍ଶକ ମନ୍ତ୍ରମୁଗ୍ଧହୋଇ ଏକ ଘଣ୍ଟା ପର୍ଯ୍ୟନ୍ତ ବସି ରହିଲେ । ଶେଷ ଦୃଶ୍ୟ ବେଳକୁ ଯେଉଁଠାରୁ 'ଚଣ୍ଡାଶୋକ' ଆତ୍ମଗର୍ବ ଓ ଅହମିକା ନେଇ ଆସିଥିଲେ- ସେହି ସ୍ଥାନକୁ ବୁଦ୍ଧଙ୍କର 'ଧର୍ମମ୍ ଶରଣଂ ଗଚ୍ଛାମି, ସଂଘମ୍ ଶରଣଂ ଗଚ୍ଛାମି', ଉଚ୍ଚାରଣ ମଧ୍ୟରେ ଶାନ୍ତି ଓ ମୈତ୍ରୀର ବାଣୀ ନେଇ ଫେରି ଯାଇଛନ୍ତି । ଏଥିରେ ସମ୍ବଲପୁରର ସହନାଇ ବାଦକ ଅରୁଣ ସେଠ ଓ ତାଙ୍କ ଦଳ ସଂଗୀତ ସଂଯୋଜନା କରିଥିଲେ ।

ଦର୍ଶକଙ୍କ ମଧ୍ୟରେ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଉପସ୍ଥିତ ଥିଲେ । ବରଗଡର ନାଟ୍ୟପ୍ରେମୀ ଜନତା, କଲେଜର ପରିଚାଳନା ସମିତିର ସଭ୍ୟ ଓ ତଦାନିନ୍ତନ ବରଗଡ ଏସ୍.ଡି.ଓ ଶ୍ରୀ ରବିନାରାୟଣ ଦାସ (ଅବସରପ୍ରାପ୍ତ ମୁଖ୍ୟ ଶାସନ ସଚିବ) ସମସ୍ତେ ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ ଏ ଶବ୍ଦ/ଆଲୋକ ନାଟିକାଟିକୁ ଦେଖି । ମୋର ପ୍ରୟାସ ବା ପରୀକ୍ଷାନୀରିକ୍ଷା ଯେ ଏତେଦୂର ସଫଳତା ପାଇବ ତାହା ମୁଁ କେବେ କଳ୍ପନା କରି ନଥିଲି । ମୁଁ ଯଦିଓ 'ସଁ-ଏ-ଲୁମିଏ' ଉପରେ ପଢ଼ାପଢ଼ି କରିଥିଲି ଏହା ନିଜେ କେବେ ସ୍ୱଚକ୍ଷୁରେ ଦେଖିନଥିଲି । ପରେ ୧୯୭୩ ମସିହାରେ ଦିଲ୍ଲୀର 'ଲାଲକିଲ୍ଲା' ପ୍ୟାଲେସର 'ଲୁଭ୍ର ମ୍ୟୁଜିୟମ'ରେ ଏହା ଦେଖିବାର ସୁଯୋଗ ପାଇଲି । ସଂପୂର୍ଣ୍ଣ ଅନ୍ଧକାର ଓ ନୀରବତା ସୃଷ୍ଟି କରିନପାରିଲେ 'ସଁ-ଏ-ଲୁମିଏ' ସଫଳ ଭାବରେ ପ୍ରଦର୍ଶିତ କରି ହୁଏନାହିଁ । ଓଡ଼ିଶାର ବିଭିନ୍ନ ସ୍ଥାନରେ ନିକଟରେ ଅନେକ ଏହିପରି 'ସଁ-ଏ-ଲୁମିଏ' ନାଟକ ପ୍ରସ୍ତୁତ ହେବାର ଦେଖିଛି କିନ୍ତୁ ୧୯୬୩ ମସିହାରେ ପ୍ରଦର୍ଶିତ ବରଗଡ଼ କଲେଜର 'ଚଣ୍ଡାଶୋକ'ର ପ୍ରଭାବ କେଉଁଠାରେ ପାଇନାହିଁ ।

(୮)

୧୯୬୩ ମସିହାରେ ଆକାଶବାଣୀ, ସମ୍ବଲପୁର ପ୍ରତିଷ୍ଠିତ ହେଲା । ଆଦ୍ୟପର୍ବରେ ସୁରେନ୍ ମହାନ୍ତି ଏହାର ବ୍ୟବସ୍ଥାପକ ଭାବରେ କଟକରୁ ସମ୍ବଲପୁର ଆସିଲେ । ମୁଁ ବରଗଡ଼ରେ ରହୁଥିବାରୁ ସେ ମୋ' ପାଖକୁ 'ଶିଶୁସଂସାର' ଓ 'ଯୁବଜଗତ' କାର୍ଯ୍ୟକ୍ରମ ଉପରେ ଆଲୋଚନା କରିବାକୁ ଆସିଥିଲେ । ମୁଁ 'ଇଟିକିଲି ମିଟିକିଲି' ନାମକରଣ କରି ସମ୍ବଲପୁର ଆକାଶବାଣୀର ପ୍ରଥମ 'ଶିଶୁ ସଂସାର' କାର୍ଯ୍ୟକ୍ରମର ମାନେଶ୍ୱର ସ୍ଥିତ କଣ୍ଟ୍ରୋଲରୁମରୁ ସିଧାସଳଖ ପ୍ରସାରଣର ଆୟୋଜକ ଓ ନିର୍ଦ୍ଦେଶକ ଥିଲି । ଏହାର କୌଣସି ରେକର୍ଡିଂ ବା ତଥ୍ୟ ସମ୍ବଲପୁର ଆକାଶବାଣୀର ଆର୍କାଇଭରେ ନଥିବାର ଜାଣିପାରିଲି ୧୯୮୮ ମସିହାରେ । ଆକାଶବାଣୀ, ସମ୍ବଲପୁରର ରୌପ୍ୟ ଜୟନ୍ତୀ ଉତ୍ସବ ସମୟରେ ବୁଝାବୁଝିରୁ ଜଣାପଡ଼ିଲା ସବୁ 'ଇରେଜ୍' ହୋଇଯାଇଛି । ଇତିହାସକୁ ପୋଛିବା ଦ୍ୱାରା କେଉଁ ଦେଶ କେତେ ଉନ୍ନତି କରିଛି ତାହା ମୁଁ ଆଜିଯାଏ ଖୋଜି ପାଇନାହିଁ । ୧୯୬୫/୬୬ ଶିକ୍ଷାବର୍ଷରେ ଶିଶୁ ଚଳଚ୍ଚିତ୍ର କଳାକାର ପ୍ରଶାନ୍ତ ନନ୍ଦ ବ୍ୟକ୍ତିଗତ କାରଣରୁ କଟକରୁ ଯାଇ

ବରଗଡ ପଞ୍ଚାୟତ କଲେଜ ତୃତୀୟବର୍ଷ ବିଜ୍ଞାନଛାତ୍ର ଭାବରେ ଛାତ୍ରାବାସରେ ରହୁଥିଲେ। ମୁଁ ଅଧ୍ୟକ୍ଷ ଭାବରେ ସେ ବର୍ଷ କଲେଜର ନାଟ୍ୟ ସଂସଦରେ 'ଡାକବଙ୍ଗଳା' ନାଟକର ନିର୍ଦ୍ଦେଶନା ଦେଉଥାଏ। ସେ ନାଟକର ପାଗଳ ଭୂମିକାରେ ଅଭିନୟ କରିବା ପାଇଁ ମନୋନୀତ ହୋଇଥିଲେ। ଜାନୁୟାରୀ ୧୯୬୬ରେ ମୁଁ ବରଗଡ କଲେଜ ଛାଡିଲି। ନାଟକ ସେତେବେଳେ ରିହାରସାଲ ପର୍ଯ୍ୟାୟରେ ଥାଏ। ମୁଁ ଆସିବା ପରେ ତାଙ୍କରି ତତ୍ତ୍ୱାବଧାନରେ ଏ ନାଟକ କଲେଜର ନାଟ୍ୟ ସଂସଦ ପରିବେଷଣ କଲେ।

୧୯୬୬ ରୁ ୧୯୬୮ ପର୍ଯ୍ୟନ୍ତ ମୁଁ କଟକରେ ଅବସ୍ଥାନ କଲି। ପରପର ଚାରିଟି ଚଳଚ୍ଚିତ୍ରରେ ଅଭିନୟ କରିବାର ନିମନ୍ତ୍ରଣ ପାଇଲି। ଏ ସମୟରେ ମୁଁ ମାସ ମାସ ଧରି କଲିକତାରେ ରହିଛି। ଚଳଚ୍ଚିତ୍ରର ବୈଷୟିକ ବିଭାଗର କର୍ଯ୍ୟପ୍ରଣାଳୀ ଶିଖିବାର ଅଭିପ୍ରାୟ ନେଇ ମୃଣାଳସେନ, ସତ୍ୟଜିତ୍ ରାୟ, ତପନ ସିହ୍ନା, ରିତ୍ୱିକ ଘଟକ, ରାଜେନ୍ ତରଫଦାର, ତରୁଣ ମଜୁମ୍‌ଦାର ତଥା ହୃଷିକେଶ ମୁଖାର୍ଜୀଙ୍କ ସହିତ ବ୍ୟକ୍ତିଗତ ଯୋଗାଯୋଗ ହେଲା। ବହୁ ଦେଶର ଭଲ ଚଳଚ୍ଚିତ୍ର ଓ ନାଟକ ଦେଖିବାର ସୁଯୋଗ ମୋତେ କଲିକତା ରହଣି ସମୟରେ ମିଳିଥିଲା। ତେଣୁ ନିଜେ କେଉଁଠାରେ ହେଲେ ନାଟକ ନିର୍ଦ୍ଦେଶନା ଦେବାର ସୁଯୋଗ ପାଇନାହିଁ। ୧୯୬୬ ମସିହାରେ ମୃଣାଳସେନଙ୍କ 'ମାଟିର ମଣିଷ' ଚଳଚ୍ଚିତ୍ରରେ ଅଭିନୟ କରିବା ସମୟରେ ଦିନେ ପୁରୀର ଅନ୍ନପୂର୍ଣ୍ଣା 'ଏ' ଗ୍ରୁପର ତତ୍ତ୍ୱାବଧାରକ ବାଉରୀବନ୍ଧୁ ବାବୁ କେତେକଣ ବରିଷ୍ଠ କଳାକାରଙ୍କ ଗହଣରେ ଜଗତପୁର ସୁଟିଂ ସେଟ୍‌ରେ ଉପସ୍ଥିତ ହେଲେ। ତାଙ୍କର ପ୍ରସ୍ତାବ ଥିଲା ମୁଁ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପରେ ଯୋଗ ଦେବି ପେଷାଦାର କଳାକାର ଭାବରେ। ଏହାକୁ ମୁଁ ଗ୍ରହଣ କରିନଥିଲି। କାରଣ ପେଷାଦାର ଅଭିନେତା ହେଲେ ମୋତେ ସ୍ୱାଧୀନ ଭାବରେ ଶିଖିବାର ସୁବିଧା ମିଳିବ ନାହିଁ। ନାଟକ, ଯାତ୍ରା ଓ ସିନେମା ବିଷୟରେ ସେତେବେଳେ ମୋତେ ଯେଉଁ ଧାରଣା ମିଳିଥିଲା, ତା' ଭିତରେ ପ୍ରୟୋଗାତ୍ମକ ଭିନ୍ନତା ମୋତେ ସ୍ପଷ୍ଟ ଦେଖାଯାଉଥିଲା। ଆହୁରି ମଧ୍ୟ ଓଡ଼ିଶାର ପେଷାଦାର ରଙ୍ଗମଞ୍ଚ ସେତେବେଳକୁ ଅବକ୍ଷୟରେ ପହଞ୍ଚି ସାରିଥିଲା। ଏହା ବ୍ୟତୀତ ମୋର ଚଳଚ୍ଚିତ୍ର ସହିତ ସଂପର୍କ ଏ ଦୁଇବର୍ଷ ମଧ୍ୟରେ ଏତେ ବେଶୀ ଥିଲା ଯେ ମୁଁ କଟକର ସୌଖୀନ ନାଟକରେ ମଧ୍ୟ ଭାଗ ନେଇ ପାରିନଥିଲି। ୧୯୬୮ର ମଧ୍ୟ ଭାଗରେ ଓଡ଼ିଶାର ଚଳଚ୍ଚିତ୍ର ପ୍ରଯୋଜକମାନେ ନିଷ୍ଫଳ ହୋଇ ରହିଗଲେ। ମୋ ଭାଗ୍ୟକୁ, ଲରମ୍ବା କଲେଜ ପରିଚାଳନା ସମିତିର କେତେକ ସଭ୍ୟ 'ଅଧ୍ୟକ୍ଷ' ହେବାର ପ୍ରସ୍ତାବ ନେଇ ମୋ' ପାଖରେ ଆସି ପହଞ୍ଚିଲେ। ସେମାନଙ୍କର ସର୍ତ୍ତ ଓ ମୋର ସର୍ତ୍ତ ମୂଲଚାଲ ହେବା ପରେ, ମୁଁ ପ୍ରସ୍ତାବ ଗ୍ରହଣ କଲି। ୧୯୬୮ ମସିହାରୁ ୧୯୯୨ ମସିହା ପର୍ଯ୍ୟନ୍ତ, ଦୀର୍ଘ ଚବିଶ ବର୍ଷ ମୋ ଜୀବନର ସମସ୍ତ ସୃଜନଶୀଳ ପ୍ରତିଭାର ପରୀକ୍ଷାନୀରିକ୍ଷା ହୋଇଛି ଏଇ ଲରମ୍ବା ଗ୍ରାମରେ। ନାଟୁଆ-ଅଭିନେତା ମୁଖା ପଛରେ ଜଣେ ବାସ୍ତବାଭିମୁଖୀ ଶିକ୍ଷା ପ୍ରଶାସକଟିଏ ତିଆରି ହୋଇଗଲା।

ମୋଟ ମାସିକ ଚାରିଶହ ଟଙ୍କାରେ ଅଧ୍ୟକ୍ଷ ପଦବୀ ଧରି ପ୍ରଥମ ତିନିବର୍ଷ ମୋତେ ଅତ୍ୟଧିକ ସଂଘର୍ଷ କରିବାକୁ ପଡ଼ିଛି। ତା'ପରେ ଧୀରେ ଧୀରେ ବରଗଡର ମୁଣ୍ଡିଆ ଉପରର 'ଚଣ୍ଡାଶୋକ' ନାଟକର ସଫଳତା ପରି କଲେଜ ପାଇଁ ମୋର ପ୍ରତ୍ୟେକ ଚିନ୍ତା, ଯୋଜନା, ପରିକଳ୍ପନାର ସଫଳତା ମୁଁ ଲରମ୍ବା ରହଣି ମଧ୍ୟରେ ପାଇଛି। ନୂତନ ପ୍ରତିଷ୍ଠିତ ଗ୍ରାମ୍ୟ କଲେଜର ଅଧ୍ୟକ୍ଷ ପଦବୀ ମୋ' ପାଇଁ ଏକ ଆହ୍ୱାନ ଥିଲା। ଏଠାରେ ରହିବାର ୨୪ ବର୍ଷ ମଧ୍ୟରେ ମୁଁ ଯେ ଏ ଅଞ୍ଚଳର ଲୋକଙ୍କୁ ନେଇ, ଲୋକଙ୍କ ପାଇଁ, ଲୋକଙ୍କର ନାଟ୍ୟ ଚେତନା ସହିତ ସଂପୃକ୍ତ ହୋଇଥିଲି ତାହା ଏବେ ମୋତେ ବେଳେବେଳେ ଆଶ୍ଚର୍ଯ୍ୟ ଲାଗେ। ୧୯୬୮ ମସିହାରେ କଲେଜରେ ଯୋଗ ଦେବା ସଙ୍ଗେ ସଙ୍ଗେ ନାଟ୍ୟ ସଂସଦର ନାଟକ ନିର୍ଦ୍ଦେଶନା ଦେବାକୁ ପଡ଼ିଲା। ପରପର ୨୨ଟି ନାଟକର ନିର୍ଦ୍ଦେଶନା ଦେଇଛି ଲରମ୍ବା କଲେଜ ନାଟ୍ୟ ସଂସଦ ତରଫରୁ। ଏହାଛଡ଼ା ବହୁ ଏକାଙ୍କିକାର ମଧ୍ୟ ନିର୍ଦ୍ଦେଶନା ଦେବାକୁ ପଡ଼ିଛି ମୋତେ। ଗ୍ରାମ୍ୟ ପରିବେଶରେ ଛାତ୍ରୀମାନେ ଛାତ୍ରମାନଙ୍କ ସହିତ ନାଟକରେ ଭାଗ ନେବାକୁ ଇଚ୍ଛା କରନ୍ତି ନାହିଁ। ମୋତେ ସେଥିପାଇଁ ପ୍ରତିବର୍ଷ ଅଭିନେତାଙ୍କ ମଧ୍ୟରେ ଅଭିନେତ୍ରୀ ବାଛିବାକୁ ପଡୁଥିଲା। ଏହା କଷ୍ଟକର ହେବା ସତ୍ତ୍ୱେ ଦେଢ଼ମାସର ଅଭ୍ୟାସ ବଳରେ ମୁଁ ଅଧିକାଂଶ ସମୟରେ ସଫଳତା ପାଉଥିଲି। ବେଳେବେଳେ କେବଳ ଛାତ୍ରୀମାନେ ନାଟକ କରିବାର ଇଚ୍ଛା ପ୍ରକାଶ କଲେ ତାହା ମଧ୍ୟ ମୁଁ ନିର୍ଦ୍ଦେଶନା ଦେଉଥିଲି। ଏହାଛଡ଼ା ଏ ସମୟ ଭିତରେ ବୁର୍ଲା, ଅତାବିରା, ଗୋଡଭଗା ଓ ଅନ୍ୟାନ୍ୟ ଗ୍ରାମ୍ୟ ସାଂସ୍କୃତିକ ସଂଘର ନିମନ୍ତ୍ରଣରେ ମୁଁ କେତେକ ସ୍ଥାନରେ ନିର୍ଦ୍ଦେଶନା ଦେବାକୁ ଯାଉଥିଲି। ଲରମ୍ବା କଲେଜରେ ଯୋଗଦେବା ସମୟରେ ନାଟ୍ୟକାର ଏମ୍.ଏ. ରସିଦ (ତାମିଲନାଡୁର ଲୋକ) ଆକାଶବାଣୀ ସମ୍ବଲପୁର ନିର୍ଦ୍ଦେଶକ ଭାବରେ ଯୋଗ ଦେଲେ। ତାଙ୍କର ନିମନ୍ତ୍ରଣରେ ୧୯୬୮ ରୁ ୧୯୭୨ ମସିହା ଭିତରେ ମୁଁ ଅନେକ ଗୁଡ଼ିଏ ଆକାଶବାଣୀ ନାଟକରେ ଅଭିନୟ କରିଛି। କେତୋଟି ବେତାର ନାଟକର ନିର୍ଦ୍ଦେଶନା ମଧ୍ୟ ଦେଇଛି। ଆକାଶବାଣୀ ସମ୍ବଲପୁରର ରୌପ୍ୟଜୟନ୍ତୀ ବେଳକୁ ଆଶ୍ଚର୍ଯ୍ୟ ଭାବରେ ଏହାସବୁ 'ଇରେକ୍' ହୋଇଯାଇଥିଲା। ଏହି ପରମ୍ପରା ଧରି ଦୂରଦର୍ଶନକୁ ଆକାଶବାଣୀର କର୍ମକର୍ତ୍ତାମାନେ ଆସିଲେ। ଏହା ଆଜି ପର୍ଯ୍ୟନ୍ତ ଏ ଦୁଇଟି ସଂସ୍ଥାର ଏକମାତ୍ର ଉନ୍ନତିର ମାର୍ଗ ଭାବରେ ଗ୍ରହଣ କରାଯାଏ।

ପେଷାଦାର ନାଟକକୁ ନେଇ ଗର୍ବକରୁଥିବା ଜାତିଟିଏ, ଗାଁ ଗଣ୍ଡାର ଲୋକଙ୍କ ମଧ୍ୟରେ ନିଜେ ସଂଗଠିତ ହୋଇ ଅଭିନୟ କରିବାର ପ୍ରୟାସ କେବେ କେହି ଦେଖିଛନ୍ତି କି ? ଏହା ପେଷାଦାର ଯାତ୍ରା ବା ନାଟକଠାରୁ କେତେ ସାଂସ୍କୃତିକ, କେତେ ଆମୋଦଦାୟକ ତା' ଏ ଜାତି ବୁଝିଛି କି ? ତାହାହିଁ ଘଟିଲା ମୋ' ଭାଗ୍ୟରେ। ଅଧ୍ୟାପକ ଓ ହାଇସ୍କୁଲ ଶିକ୍ଷକଙ୍କ ସହଯୋଗରେ ଲରମ୍ବାରେ ପ୍ରତିଷ୍ଠିତ ହେଲା, 'ବ୍ରଜମୋହନ ସାଂସ୍କୃତିକ ସଂସଦ'

୧୯୭୨ ମସିହାରେ। ଲରମ୍ବା ଗ୍ରାମର ଅର୍ଦ୍ଧଶିକ୍ଷିତ ଚାଷୀ ମୂଲିଆ, ଗ୍ରାମ୍ୟ କଳାକାର, ସଂଗୀତକାର, ବାଦ୍ୟକାରଙ୍କ ସହିତ ଶିକ୍ଷକ, ଅଧ୍ୟାପକ ତଥା ବୟୋବୃଦ୍ଧ ଲୋକ-କଳାକାର ଗହଣରେ ନାଟକ କରିବାର ପ୍ରସ୍ତାବ ନେଇ ମୋ' ପାଖରେ ପହଞ୍ଚିଲେ ପ୍ରାୟ ଅଶୀଜଣ ସକ୍ରୀୟ ସଭ୍ୟ। ଗୋଟଏ ଦଶନ୍ଧିଧରି ଏ ଅନୁଷ୍ଠାନ ତରଫରୁ ମୋ' ନିର୍ଦ୍ଦେଶନାରେ ୧୧ଟି ନାଟକ ପ୍ରଦର୍ଶିତ ହୋଇଥିଲା। ଏ ନାଟକ ପାଇଁ ସଂସଦ ତରଫରୁ ଯୋଜନା ହେଉଥିବାରୁ ଏହାର ଖର୍ଚ୍ଚ ଅଟକଳ ପ୍ରାୟ ଦଶ/ବାର ହଜାର ଟଙ୍କା ପର୍ଯ୍ୟନ୍ତ ହେଉଥିଲା। ଟିକଟରୁ ଏ ଖର୍ଚ୍ଚ-ସଂସଦ ଉଠାଇ ପାରୁଥିଲେ। କଟକର ରୂପସଜ୍ଜା, ଆଲୋକ ସଂପାତ ସହିତ କଟକ, ଭୁବନେଶ୍ୱରରୁ ଯଶସ୍ୱିନୀ ଅଭିନେତ୍ରୀମାନଙ୍କୁ ଅଭିନୟ କରିବାକୁ ନିମନ୍ତ୍ରଣ କରାହେଉଥିଲା। ଏ ନାଟକଗୁଡ଼ିକ ଚାକଚକ୍ୟ ସହିତ ଦୁଇତଳ ସେଟ୍ ଉପରେ ପ୍ରଦର୍ଶିତ ହେଉଥିଲା। ଏ ଗୁଡ଼ିକ ମୁଖ୍ୟତଃ ପୌରାଣିକ, ଧାର୍ମିକ ଓ ଐତିହାସିକ ନାଟକ, ଯଥା: ବିଜୟୀ ପାଣ୍ଡବ, ବକ୍ସି ଜଗବନ୍ଧୁ, ଶ୍ରୀ ଜଗନ୍ନାଥ, କର୍ଣ୍ଣାର୍ଜ୍ଜୁନ, ବିକ୍ଷତ ଗଜପତି, ସମ୍ରାଟ ଚନ୍ଦ୍ରଗୁପ୍ତ, କୁରୁକ୍ଷେତ୍ର, ଇତିହାସ ରତ୍ନଗଡ଼ର, ଶାମୁକା ସମାଧି, ଶୁଣ ପରୀକ୍ଷ ଦଣ୍ଡଧାରୀ। ଏହି ନାଟକମାନଙ୍କରେ ଅଭିନୟ କରିବା ପାଇଁ ଶ୍ରୀମତୀ ସରସ୍ୱତୀ ଦେବୀ, ଶ୍ରୀମତୀ ରୁକ୍ମଣୀ ଦେବୀ, ମାମିନା, ବିଦ୍ୟୁଲତା, ରୁନୁ, କୁନି ମିଶ୍ର, ଶ୍ରୀମତୀ କୃଷ୍ଣାଦେବୀ ଇତ୍ୟାଦି ଅଭିନେତ୍ରୀ ଲରମ୍ବାର ଆତିଥ୍ୟ ସ୍ୱୀକାର କରିଛନ୍ତି।

(୯)

ଲରମ୍ବା ମହାବିଦ୍ୟାଳୟ ନାଟକରେ କିନ୍ତୁ କେବଳ ଛାତ୍ର, ଅଧ୍ୟାପକ ଓ ଶିକ୍ଷାକର୍ମୀମାନେ ଭାଗ ନେଉଥିଲେ। ଛାତ୍ରୀମାନେ ଅଭିନୟରେ ଅଂଶଗ୍ରହଣ କରୁନଥିଲେ। ୧୯୯୨ ମସିହା ପର୍ଯ୍ୟନ୍ତ ଏ ଅଭାବ ସତ୍ତ୍ୱେ ମହାବିଦ୍ୟାଳୟର ନାଟ୍ୟ ସଂସଦର ନାଟକ ଛାତ୍ର ତଥା ଜନତା ଉପଭୋଗ କରୁଥିଲେ। ଏ ନାଟକ ଗୁଡିକ ହେଲା- ଲୁହା ଶିକୁଳୀ, ଆଜି ଓ କାଲି, ଅଶାନ୍ତ ଗ୍ରହ, ଭୁଲିହୁଏନା, ଜନନୀ, ବକ୍ସି ଜଗବନ୍ଧୁ, ମୟୁର ସିଂହାସନ, ଭରସା, ଡାକବଙ୍ଗଳା, ଭାନୁମତୀର ଖେଳ, ଭାଇ ଭାଉଜ, ପଳାତକ, ସ୍ୱର୍ଣ୍ଣଚମ୍ପା, ମୁଁ ବାହା ହେବି, ଚନ୍ଦ୍ରଭାନୁ, ମୁଁ ସୟତାନ କହୁଛି, ଚମ୍ପା, ନରୋତ୍ତମ ଦାସ କହେ, ଶୂନ୍ୟ ଆକାଶ ଇତ୍ୟାଦି। ଏହାଛଡ଼ା କେତେଗୁଡ଼ିଏ ଏକାଙ୍କିକା ମଧ୍ୟ ଏ ୨୪ ବର୍ଷ ମଧ୍ୟରେ ମତେ ନିର୍ଦ୍ଦେଶନା ଦେବାପାଇଁ ପଡିଥିଲା। ୧୯୯୨ ମସିହା ପର୍ଯ୍ୟନ୍ତ ମୋଟ ପ୍ରାୟ ୭୫ଟି ସଂପୂର୍ଣ୍ଣ ନାଟକ ନିର୍ଦ୍ଦେଶନା ଦେବା ମଧ୍ୟରେ ମୁଁ କୌଣସି ନାଟକ ନିଜେ ଲେଖିନାହିଁ। କୌଣସି ନାଟ୍ୟକାରଙ୍କୁ ନୂତନ ନାଟକ ଲେଖିବାକୁ ଅନୁରୋଧ କରିନାହିଁ। ଚିରାଚରିତ ପ୍ରକାଶିତ ନାଟକକୁ ଗଣତାନ୍ତ୍ରିକ ପଦ୍ଧତିରେ ଚୟନ କରିବା ପରେ ସ୍ଥାନୀୟ ସଂବଳ ଓ ଖର୍ଚ୍ଚ ଅଟକଳକୁ ଦେଖି ସାମାନ୍ୟ ସମ୍ପାଦନା କରି ମୁଁ ନାଟକର ନିର୍ଦ୍ଦେଶନା ଦେବାକୁ ଆଗଭର ହେଉଥିଲି।

ମୁଖ୍ୟ ବିଷୟ ଥିଲା ଅଭ୍ୟାସ ଓ ଆଲୋକ ସଂପାତ । ଗ୍ରାମାଞ୍ଚଳରେ ବିଜୁଳୀ ଆସିବା ପରେ ଆମେ ସହରଠାରୁ ଗ୍ରାମାଞ୍ଚଳ ପର୍ଯ୍ୟନ୍ତ ନାଟକ ପରିବେଷଣରେ ସେପରି ଉତ୍କର୍ଷ ଦେଖାଇ ପାରିନାହୁଁ ବୋଲି ମୋର ମନେ ହୁଏ । ନାଟକରେ ଉଚ୍ଚସ୍ୱରରେ ସଂଳାପ କହିବା, ଅପେରାଧର୍ମୀ ଅଭିନୟ କରିବା, ଅବାନ୍ତର ନୃତ୍ୟ ଗୀତ ଯୋଡ଼ିବାର ପକ୍ଷପାତୀ ମୁଁ ନୁହେଁ । ଏହାଦ୍ୱାରା ନାଟକର ମାନ ଓ ନାଟ୍ୟକାରର ଉଦ୍ଦେଶ୍ୟ ସଫଳ ହୁଏନାହିଁ ବୋଲି ମୋର ବିଶ୍ୱାସ ।

ମୋର ଏ ପରୀକ୍ଷାନୀରିକ୍ଷା ମଧ୍ୟରେ ବହୁ ଗ୍ରାମାଞ୍ଚଳରେ ଛାତ୍ରଛାତ୍ରୀ ଓ ଯୁବକଯୁବତୀ ନାଟ୍ୟ ଆନ୍ଦୋଳନରେ ସାମିଲ ହୋଇ ଯଶସ୍ୱୀ ହୋଇଛନ୍ତି । ପରବର୍ତ୍ତୀ କାଳରେ ୧୯୮୦ ମସିହା ବେଳକୁ ସମ୍ବଲପୁର ବ୍ୟତୀତ ହୀରାକୁଦ, ବୁର୍ଲା, ବରଗଡ ପରି ସହରରେ ସୌଖୀନ ନାଟ୍ୟ ସଂସ୍ଥାମାନ ଗଢ଼ି ଉଠିଲା । ବହୁ ନାଟ୍ୟକାର, ସଂଗୀତକାର, ଲେଖକ, ଅଭିନେତା ଓ ଅଭିନେତ୍ରୀ ନିଜ ସାମାଜିକ ପରିବେଶ ମଧ୍ୟରେ ପ୍ରତିଷ୍ଠିତ ହୋଇଛନ୍ତି । ନବ ନାଟ୍ୟ ଆନ୍ଦୋଳନକୁ ଆଗେଇ ନେଇଛନ୍ତି । ଏଇ ଆଗତ ଭବିଷ୍ୟତର କଳାକାର ମାନେ ନିଜ ଅଞ୍ଚଳର ଓ ଦେଶର ସମସାମୟିକ ସମସ୍ୟା, ସାମାଜିକ ଓ ସାଂସ୍କୃତିକ ପରମ୍ପରାକୁ ଆଧାର କରି ନାଟକ ଓ ଏକାଙ୍କିକା ଲେଖି ଚାଲିଛନ୍ତି । ଏମାନେ ନିଜ ଅଞ୍ଚଳର ଭାଷାରେ କେତେ ସମ୍ବଲପୁରୀ, କେତେ ଦେଶୀୟ ଭାଷା ବ୍ୟବହାର କଲେ ତାହା ଓଡ଼ିଆ ନାଟ୍ୟ ଆନ୍ଦୋଳନର ବହିର୍ଭୁତ ଏକ ପରୀକ୍ଷା ବୋଲି କହିବା ମୋ ମତରେ ଯଥାର୍ଥ ନୁହେଁ । ୧୯୬୬ ମସିହାରେ ଓଡ଼ିଶାର ବିଶ୍ୱବିଦ୍ୟାଳୟ ସ୍ତରୀୟ ଶିକ୍ଷାର ପ୍ରସାର ଏମାନଙ୍କୁ ଯଥେଷ୍ଟ ଆତ୍ମନିର୍ଭରଶୀଳ କରିପାରିଛି । ତେଣୁ ଆଜି ନବନାଟ୍ୟ ଆନ୍ଦୋଳନର ପ୍ରତିଧ୍ୱନି କେବଳ କଟକ ଓ ଭୁବନେଶ୍ୱରରେ ଶୁଣାନଯାଇ ରାଉରକେଲା, ସମ୍ବଲପୁର, ବାଲେଶ୍ୱର, ଭଦ୍ରକ, କେନ୍ଦୁଝର, ସୁନ୍ଦରଗଡ଼, ବରଗଡ଼, ପଦ୍ମପୁର, ବଲାଙ୍ଗୀର, କୋରାପୁଟ, ସୁନାବେଡା, ଜୟପୁର, ବ୍ରହ୍ମପୁର, ଯାଜପୁର, ନୂଆପଡା, ଭବାନୀପାଟଣା, କରଞ୍ଜିଆ, ଢେଙ୍କାନାଳ, ଫୁଲବାଣୀ, ସୋନପୁର, ବଉଦ, ଅନୁଗୁଳ, ତାଳଚେର, ଖୋର୍ଦ୍ଧା ପରି ଛୋଟ ବଡ଼ ସହରରେ ଶୁଣାଯାଉଛି । ଏପରିକି ଛୋଟ ଛୋଟ ଗ୍ରାମାଞ୍ଚଳରେ ମଧ୍ୟ ଏହାର ପ୍ରଭାବ ପଡିଛି । ନାଟ୍ୟ ସମାଲୋଚକମାନେ ଏଥିପ୍ରତି ଆଜିଯାଏ ସଚେତନ ହୋଇନାହାନ୍ତି ବୋଲି ମୋର ମନେ ହୁଏ ।

ଏଠାରେ ମନେ ରଖିବାକୁ ହେବ ଯେ, ଲୀଳା, ଯାତ୍ରା, ଦଣ୍ଡନାଚ, ପଲ୍ଲୀ ସଂଗୀତ, ନୃତ୍ୟ ଓ ବାଦ୍ୟକୁ ମୋର ନାଟ୍ୟ ଆନ୍ଦୋଳନ ମଧ୍ୟରେ ମୁଁ ସଂପୃକ୍ତ କରୁନାହିଁ । ଠିକ୍ ସେମିତି ଚଳଚ୍ଚିତ୍ର ଓ ରଙ୍ଗମଞ୍ଚକୁ ମୁଁ ପୃଥକ ଭାବରେ ଦେଖେ । କିଏ କେତେ ଦୂର କାହାଦ୍ୱାରା ପ୍ରଭାବିତ ସେ ବିଷୟରେ ମୁଁ ସ୍ପଷ୍ଟ ଭାବରେ ଦେଖିପାରେ । ମୋ ପାଇଁ ରଙ୍ଗମଞ୍ଚ ନାଟକର

ସଂଜ୍ଞା ସଂପୂର୍ଣ୍ଣ ପୃଥକ । ତାହା କେବଳ ସେଟ୍, ସିନ୍, ଏକ୍ସପେରିମେଣ୍ଟାଲ, ଆବ୍‌ସର୍ଡ, ପ୍ରୋଗ୍ରେସିଭ୍, ବ୍ୟଙ୍ଗ, ସଁ-ଏ-ଲୁମିଏ, ପଥପ୍ରାନ୍ତ ନାଟକ ଓ ମୁକ୍ତ ରଙ୍ଗମଞ୍ଚ ମଧ୍ୟରେ ସୀମିତ । କାରଣ, ବର୍ତ୍ତମାନ ଲୀଳା, ଯାତ୍ରା, ଅପେରା, ପଲ୍ଲୀ ସଂଗୀତ, ବାଦ୍ୟ ଓ ନୃତ୍ୟ ମଧ୍ୟରେ ଅଯଥା ଅବାନ୍ତର ଇଲେକ୍‌ଟ୍ରନିକ୍‌ସର ଶବ୍ଦ ଓ ଆଲୋକ ପ୍ରୟୋଗ କରି ଆମେ ଏଗୁଡିକୁ ଗୋଟିଏ ଗୋଟିଏ 'ଡିସ୍‌କୋ' ଓ 'ପପ୍' ସଂସ୍କୃତି କରି କଳୁଷିତ କରି ସାରିଲୁଣି । ଆଧୁନିକ ଭଜନ ଓ ଜଣାଣ କ୍ୟାସେଟ୍ ଏହାର ଏକ ଜ୍ୱଳନ୍ତ ନିଦର୍ଶନ । ଆଧୁନିକ କ୍ୟାସେଟ୍ ବଜାରରେ କଣେ·ଖାଉଟି ଭାବରେ ମୁଁ କେବେ ମୋ ସୃଜନୀକୁ କିଣାବିକା କରିନାହିଁ । ଏ ସବୁଠାରୁ ଦୂରରେ, ଜୀବନ-ଯନ୍ତ୍ରଣା ଭିତରେ, ସାମାଜିକ ଓ ରାଜନୈତିକ ଉତ୍‌ଥାନପତନର ବନ୍ଧୁର ପଥରେ ଯେଉଁ ନାଟକ ଲେଖା ହୋଇଛି ବା ପ୍ରଯୋଜିତ ହୋଇଛି ତାହା ସହିତ ମୁଁ ୩୦ ବର୍ଷ ବିତେଇଛି । ସେଠାରେ କୌଣସି ବ୍ୟବସାୟିକତା ନଥିଲା ବା ପ୍ରଚାରର ପ୍ରଶ୍ନ ନଥିଲା । କେବଳ ଥିଲା ନିଜକୁ ନିଜେ ପ୍ରକାଶ କରିବାର ଏକ ଅଦମ୍ୟ ପିପାସା । ଏକ ପ୍ରଶାନ୍ତି । ଯାହା ପ୍ରତ୍ୟେକ କଳାକାର ପାଇଁ ଅଚ୍ଛିମନ୍ଧାଗତ ।

୧୯୯୬ ମସିହାରେ (ମୋର ୬୨ ବର୍ଷ ବୟସରେ) ଓଡ଼ିଶା ସଂଗୀତ ନାଟକ ଏକାଡେମୀର ସମ୍ମାନ ମଧ୍ୟରେ ମୋ ନାମର ଉଲ୍ଲେଖ ଅନେକ ନାଟ୍ୟ ସମାଲୋଚକଙ୍କ ପାଇଁ ଏକ ବ୍ୟତିକ୍ରମ ଭାବରେ ଦେଖାଯାଇଥିଲା । ଚଳଚ୍ଚିତ୍ରବାଲା ଜୋର ଜବରଦସ୍ତି ନାଟକର ସମ୍ମାନ ଓ ପୁରସ୍କାର ପେଷାଦାର ବୟୋବୃଦ୍ଧ ନାଟକ କଳାକାର ପାଖରୁ ଛଡ଼ାଇ ନେଉଛନ୍ତି ବୋଲି ବିଖ୍ୟାତ ପତ୍ରପତ୍ରିକାରେ କ୍ରିଟିକ୍‌ମାନେ ଚର୍ଚ୍ଚା ଓ କର୍ମକର୍ତ୍ତାଙ୍କୁ ପ୍ରଶ୍ନ କରାଗଲା । ଏହା ପୂର୍ବରୁ କୌଣସି କଳାକାରଙ୍କୁ ନେଇ ପତ୍ରପତ୍ରିକାରେ ଆଲୋଚନା ହୋଇନଥିଲା ।



# ପ୍ରଫେସର ସୂର୍ଯ୍ୟକାନ୍ତ ଦାସ ଓ ମୁଁ

୧୯୪୯ ମସିହା । ଲରମ୍ବା ଗ୍ରାମର ଆବାସିକ ଇଂରାଜି ଉଚ୍ଚ ବିଦ୍ୟାଳୟରୁ ମାଟ୍ରିକ ପାସକରିବା ପରେ ମୁଁ ଗଙ୍ଗାଧର ମେହେର କଲେଜର ବିଜ୍ଞାନ ଶ୍ରେଣୀରେ ନାଁ ଲେଖାଇଥାଏ । ଓଡ଼ିଶାରେ ସେତେବେଳେ ମୋଟେ ବାରଟି କଲେଜ । ସେଥିରୁ ଗଙ୍ଗାଧର ମେହେର କଲେଜର ଭଲ ନାଁ ଥାଏ । ପ୍ରଥମ କଥାହେଲା କଳା, ବିଜ୍ଞାନ ଓ ବାଣିଜ୍ୟ ତିନୋଟି ବିଭାଗ ଏଠି ପ୍ରଥମରୁ ଖୋଲିଥିଲା । ସେତେବେଳେ ରେଭେନ୍‌ସା କଲେଜରେ ମଧ୍ୟ ବାଣିଜ୍ୟ ବିଭାଗ ଖୋଲି ନଥିଲା ।

ଦ୍ୱିତୀୟ କଥାଟି ହେଲା- ଅଧ୍ୟକ୍ଷ । ଆମେ କଲେଜରେ ନାଁ ଲେଖାଇବା ବେଳେ ପଦାର୍ଥ ବିଜ୍ଞାନୀ ପ୍ରଫେସର ଜି.ବି. ବେନାର୍ଜୀ ଆମ ଅଧ୍ୟକ୍ଷ ଥିଲେ । ଠିକ୍ ପରେ ପରେ ଆସିଲେ ଡ଼କ୍ଟର ମାୟାଧର ମାନସିଂହ । ସେ ଓଡ଼ିଆ ଓ ଇଂରାଜି ଦୁଇଟି ବିଷୟରେ ଦକ୍ଷତା ହାସଲ କରିଥିଲେ । ଜଣେ ପ୍ରତିଷ୍ଠିତ ଲେଖକ ଓ କବି ଭାବରେ ଛାତ୍ରମାନଙ୍କ ପାଖରେ ଅତି ପ୍ରିୟ ଥିଲେ । ଡକ୍ଟର ମାନସିଂହ ଜଣେ ଦୂରଦର୍ଶୀ ଆଦର୍ଶ ଶିକ୍ଷାବିତ୍ ଥିଲେ । ସେ ଯୁବ ମାନସର ଆଶା, ଆକାଙ୍‌କ୍ଷା, ଉନ୍ମାଦନା ବିଷୟରେ ସଚେତନ ଥିଲେ । ଗଙ୍ଗାଧର ମେହେର ମହାବିଦ୍ୟାଳୟକୁ ଏକ ଆଦର୍ଶ ଅନୁଷ୍ଠାନ ଭାବରେ ଗଢ଼ିତୋଳିବାକୁ ସେ ଯେଉଁ ପ୍ରଶାସନିକ ଓ ପାଠ୍ୟକ୍ରମ ପଦ୍ଧତି ଅନୁସରଣ କରିଥିଲେ ତାହା ଆଜିର ସ୍ୱୟଂଚାଳିତ ମହାବିଦ୍ୟାଳୟ ମାନଙ୍କରେ ମଧ୍ୟ ଆଉ ଦେଖିବାକୁ ମିଳିବ ନାହିଁ ।

ତୃତୀୟରେ ଛାତ୍ରଛାତ୍ରୀଙ୍କ ପାଇଁ ସାଧାରଣ ପାଠ୍ୟକ୍ରମ ବ୍ୟତୀତ ଅତିରିକ୍ତ ଅଭିଜ୍ଞତା ପାଇଁ ସମବାୟଭିତ୍ତିକ ଗୋପାଳନ କେନ୍ଦ୍ର, ସମବାୟଭିତ୍ତିକ କ୍ୟାଣ୍ଟିନ୍, ଛାତ୍ରାବାସରେ ସ୍ୱୟଂଚାଳିତ ମେସ୍, ମ୍ୟୁଜିକ ଆସୋସିଏସନ୍ (ବାଦ୍ୟ ଓ ସଂଗୀତ), ଫଟୋଗ୍ରାଫି ଆସୋସିଏସନ୍, ଜାତୀୟ ସମର ଶିକ୍ଷାର୍ଥୀ ବାହିନୀ (ସ୍ଥଳଭାଗ), ସମାଜ ସେବା ସଂସ୍ଥା, ନାଟ୍ୟ ସଂଘ, କ୍ରୀଡ଼ା ସଂସଦ, ବିଜ୍ଞାନ ସଂସଦ, କଳା ସଂସଦ, ସାହିତ୍ୟ ସଂସଦ, ଛାତ୍ର ସଂସଦ ଓ କଲେଜ ମୁଖପତ୍ର ପରି ସକ୍ରିୟ ଅନୁଷ୍ଠାନଗୁଡ଼ିକ ଅଧ୍ୟାପକ ମାନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ କାର୍ଯ୍ୟକରୁଥିଲେ ।

ପ୍ରତ୍ୟେକ ସଂଘ ଓ ସଂସଦରେ ଅଧିକାରପ୍ରାପ୍ତ ଅଧ୍ୟାପକମାନେ ଛାତ୍ରଛାତ୍ରୀ ମାନଙ୍କୁ ସବୁସମୟରେ ଉତ୍ସାହ ଓ ପ୍ରେରଣା ଯୋଗାଉଥିଲେ । ଏମାନେ ସମୂହ ଭାବରେ କାର୍ଯ୍ୟ କରିବାର ଏକ ପଦ୍ଧତି ଡକ୍ଟର ମାନସିଂହ ତାଙ୍କ ପ୍ରଶାସନ ମଧ୍ୟରେ ଅନୁସରଣ କରୁଥିଲେ । ସମ୍ବଲପୁର ଗଙ୍ଗାଧର ମେହେର ମହାବିଦ୍ୟାଳୟର ଏ ବିଶେଷ ଗୁଣଟି ପାଇଁ, ପ୍ରଥମରୁ 'ଟ୍ରଷ୍ଟ ଫଣ୍ଡ'ର ଅବଦାନ ଯେ ମୁଖ୍ୟତଃ ଦାୟୀ ସେ ବିଷୟରେ ଆଜି କେହି ସ୍ମରଣ କରନ୍ତି ନାହିଁ ।

ଆଦ୍ୟ ପ୍ରଚେଷ୍ଟାରେ ବୁଢ଼ାରଜା ପାହାଡ଼ ତଳେ ଅଧ୍ୟାପକମାନଙ୍କ ପାଇଁ ବାସଗୃହ ଯୋଗାଇ ଦେବା ଯୋଗୁ, ସେମାନଙ୍କ ମଧ୍ୟରେ ଯେ ସୌହାର୍ଦ୍ଦ୍ୟ ଜାଗୃତ ହେଉଥିଲା ତାହା ଆଜି କଣ କୌଣସି ମହାବିଦ୍ୟାଳୟରେ ସମ୍ଭବ ହୋଇ ପାରୁଛି ? ବୁଢ଼ାରଜାର ଅଧ୍ୟାପକ କଲୋନୀରୁ ଗଙ୍ଗାଧର ମେହେର ମହାବିଦ୍ୟାଳୟ କେତେ ବା ଦୂର । ତେଣୁ ସବୁ ପାଠ୍ୟକ୍ରମ ଓ ଅତିରିକ୍ତ ସଭା, ସମିତି, ଖେଳ କୁଦ ଓ ଉତ୍ସବରେ ଅଧ୍ୟାପକମାନଙ୍କ ଉପସ୍ଥିତି ଛାତ୍ରଛାତ୍ରୀମାନଙ୍କୁ ପ୍ରେରଣା ଯୋଗାଉଥିଲା, ପ୍ରଭାବିତ କରୁଥିଲା । ଏହାର ଏକ ଜୀବନ୍ତ ଉଦାହରଣ ହେଉଛି- ଏ ଲେଖକ ।

ବିଜ୍ଞାନ ବିଭାଗର ସେପରି ଜଣେ ବିଚକ୍ଷଣ ଛାତ୍ର ନହେଲେ ମଧ୍ୟ କଳା ଓ ସାହିତ୍ୟ ପ୍ରତି ମୋର ରୁଚି ପିଲାଟି ବେଳରୁ ଥିଲା । ଗ୍ରାମାଞ୍ଚଳ ସ୍କୁଲରୁ ପାସ୍ କରି ଆସିଥିବା ଆମେ କେତେଜଣ ଛାତ୍ର ଗୋଟିଏ ହାତଲେଖା ମାସିକ ପତ୍ରିକା ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ ସ୍ମୃତିରେ ପ୍ରକାଶ କରିବାକୁ ଇଚ୍ଛା କଲୁଁ । ଏଥିପାଇଁ ଆମକୁ ଉତ୍ସାହିତ କରିଥିଲେ ଅଧ୍ୟାପକ ସର୍ବେଶ୍ୱର ଦାଶ (ଓଡ଼ିଆ), ଅଧ୍ୟାପକ ମହାନନ୍ଦିଆ (ଓଡ଼ିଆ), ଅଧ୍ୟାପକ ଗୋଲକ ବିହାରୀ ଧଳ (ଓଡ଼ିଆ), ଅଧ୍ୟାପକ ସର୍ବେଶ୍ୱର ଦାଶ (ଇଂରାଜି), ଅଧ୍ୟାପକ ଦାଶରଥି ମିଶ୍ର (ରସାୟନ), ଅଧ୍ୟାପକ ସୂର୍ଯ୍ୟକାନ୍ତ ଦାସ (ବାଣିଜ୍ୟ) ଓ ଗ୍ରନ୍ଥାଗାର ଅଧିକାରୀ ଶ୍ରୀ ଅକ୍ଷୟ ବେହେରା । ମୋର ବାଲ୍ୟବନ୍ଧୁ ଯେ ପରେ ଲେଖକ ଓ କବି ଭାବରେ ପ୍ରତିଷ୍ଠିତ ହେଲେ, ୰ ଗୌରୀ ପାଣିଗ୍ରାହୀ ଏ ପତ୍ରିକାର ମୁଖ୍ୟ ଉଦ୍ୟୋକ୍ତା ଓ ସଂପାଦକ ଥିଲେ । ସେ ପ୍ରଥମବର୍ଷ କଳାର ଛାତ୍ର ଥିଲେ । ମୋର ହସ୍ତାକ୍ଷର ଭଲଥିବାରୁ ସେ ମୋତେ ଜଣେ ଲେଖନକାର ଭାବରେ ତାଙ୍କର ଏ ଦୁଃସାହସିକ କାର୍ଯ୍ୟର ସହଯୋଗୀ ହେବାକୁ ଅନୁରୋଧ କରିଥିଲେ । ଏକ ସଂଗରେ ତିନୋଟି କାର୍ବନ ପକେଇ ଗୋଟିଏ ଲେଖାକୁ ତିନିଥର ଲେଖି ୧୦ଟି କପି ବାହାରକରିବା ହେଲା ମୋ କାର୍ଯ୍ୟ । ମୋ ସହିତ ଆଉ ତିନିଜଣ ଲେଖନକାର ବୋଧହୁଏ ଥିଲେ । ଏ ପତ୍ରିକାଟିର ଛ/ସାତଟି ସଂସ୍କରଣ ମହାବିଦ୍ୟାଳୟରେ ବାଣ୍ଟିବାର ସୌଭାଗ୍ୟ ଆମର ହୋଇଥିଲା । ଲାଇବ୍ରେରୀର ପଠନଗୃହରେ ଏହା ପ୍ରାୟ ଛ'ସାତ ବର୍ଷଯାଏ ଥିବାର ମୋର ସ୍ମରଣ ଅଛି । ଉଲ୍ଲେଖଯୋଗ୍ୟ ଏହା ଯେ ସେତେବେଳେ ସମ୍ବଲପୁର ସହରରେ ଭଲ ମୁଦ୍ରଣଯନ୍ତ୍ରଟିଏ ମଧ୍ୟ ନଥିଲା । ବହି ଦୋକାନଟିଏ ମଧ୍ୟ ନଥିଲା ।

ସକାଳୁ ସନ୍ଧ୍ୟାଯାଏ ମହାବିଦ୍ୟାଳୟର ପରିସର ମଧ୍ୟରେ ପ୍ରାୟ ପାଞ୍ଚଶହ ଛାତ୍ରଛାତ୍ରୀଙ୍କ ଗହଣରେ ପ୍ରାୟ ଚାଳିଶ ଜଣ ଅଧ୍ୟାପକଙ୍କ କାର୍ଯ୍ୟକ୍ରମ ସୁରୁଖୁରୁରେ ଚାଲିଥିଲା । ଏନ୍.ସି.ସି. ପ୍ୟାରେଡ଼, ଫୁଟବଲ ପଡ଼ିଆ, ନାଟକ, ସମାଜସେବା, ପିକ୍‌ନିକ୍, ପ୍ରାକ୍ଟିକାଲ କ୍ଲାସ, ସଂଗୀତ, ସାହିତ୍ୟ ବା ତର୍କ ସଭା ଓ ପ୍ରତିଯୋଗିତାରେ ଛାତ୍ରଙ୍କ ଗହଣରେ ପ୍ରଫେସର ପିଲ୍ଲାଇ, ପ୍ରଫେସର କେ.ଭି.କେ. ରାଓ, ପ୍ରଫେସର ସର୍ବେଶ୍ୱର ଦାଶ (ଇଂରାଜି

ଓ ଓଡ଼ିଆ), ପ୍ରଫେସର ଦାଶରଥି ମିଶ୍ର, ପ୍ରଫେସର ରାଜଗୁରୁ, ପ୍ରଫେସର ଉପାଧ୍ୟାୟ, ପ୍ରଫେସର ଶ୍ରୀମତ୍ ସାହୁ, ପ୍ରଫେସର ପି.ଏନ୍.ଚାଙ୍ଗାର୍ଯ୍ୟୀ, ପ୍ରଫେସର ଶଛି ନାୟକ, ପ୍ରଫେସର ଧରଣୀଧର ଜେନା, ପ୍ରଫେସର ହରେକୃଷ୍ଣ ମିଶ୍ର, ପ୍ରଫେସର ଶୁକଦେବ ସାହୁ, ପ୍ରଫେସର ଗୁପ୍ତା, ପ୍ରଫେସର ଏସ୍.ନାଥ, ପ୍ରଫେସର ଡି.ନାୟକ, ପ୍ରଫେସର ବଟକୃଷ୍ଣ ମହାନ୍ତି, ପ୍ରଫେସର ଏସ୍. ଚକ୍ରବର୍ତ୍ତୀ, ପ୍ରଫେସର ପରେଶ ରାୟ ଓ ପ୍ରଫେସର ସୂର୍ଯ୍ୟକାନ୍ତ ଦାସ ପରି ଗୁରୁମାନେ ମୋ ପରି ଗୋଟିଏ ସାଧାରଣ ଛାତ୍ରର ଚାରିପାଖରେ ଘୂରିବୁଲୁଥିବା ପରି ମନେହେଉଥିଲା ।

ହାତଲେଖା ପତ୍ରିକା, ସମର ଶିକ୍ଷାର୍ଥୀ ବାହିନୀର କେଡ଼େଟ୍ ଓ ମୋର ଏକକ ଅଭିନୟ ପାଇଁ ମୁଁ ଅଧ୍ୟାପକମାନଙ୍କର ନିକଟତର ହୋଇପାରିଥିଲି। ଲେଖା ନକଲ କରିବା ସମୟରେ ମୋର ଗଳ୍ପ ଲେଖିବାର ଇଚ୍ଛା ହେଲା । ସେଥିପାଇଁ ସେହି ହାତ ଲେଖା ପତ୍ରିକା ପାଇଁ ଦୁଇଟି ସଂଖ୍ୟାରେ ଦୁଇଟି ଗଳ୍ପ ଲେଖିଥିଲି। ପ୍ରଥମଟି 'ଗୋଟିଏ ରାତି', ଯାହା ଓଡ଼ିଆ ଭାଷାରେ; ଦ୍ୱିତୀୟଟି ସମ୍ବଲପୁରୀ ଭାଷାରେ "ଫିଜିକ୍ସ"। ବୋଧହୁଏ ଏ "ଫିଜିକ୍ସ" (୧୯୫୦) ଗଳ୍ପଟିହିଁ ସମ୍ବଲପୁରୀ ଭାଷାର ପ୍ରକାଶିତ ପ୍ରଥମ ଗଳ୍ପ। ଏହା ପୂର୍ବରୁ ସମସ୍ତେ ସମ୍ବଲପୁରୀରେ ଗୀତ ଓ କବିତା ଲେଖୁଥିଲେ। ସମ୍ବଲପୁରୀରେ ଗଦ୍ୟ ଲେଖାର ପ୍ରଚେଷ୍ଟା ହୋଇନଥିଲା ।

ମୋ ଲିଖିତ ଦୁଇଟିଯାକ କ୍ଷୁଦ୍ରଗଳ୍ପର ନାୟକ ଜଣେ ଜଣେ ପରିବାରର ପ୍ରଥମ ପିଢ଼ିର କଲେଜ ପଢୁଆ ଯୁବକ। "ଗୋଟିଏ ରାତି"ର ନାୟକ ପାରିବାରିକ ଅବସ୍ଥାରୁ ପାଠଛାଡ଼ି, ବିବାହକରି, କିରାଣୀ ଚାକିରୀ କରି ସହରରେ ଭଡ଼ା ଘରେ ରହେ। ତାହା ପାଇଁ ଉଚ୍ଚଶିକ୍ଷାର ମୂଲ୍ୟ କିପରି ଧୂଳିସାତ୍ ହୋଇଛି-ତାହାହିଁ ମୋ ଗଳ୍ପର ହାସ୍ୟରସାତ୍ମକ ଉପସ୍ଥାପନା। ମୋର 'ଫିଜିକ୍ସ' ଗଳ୍ପର ନାୟକ ପ୍ରଥମପିଢ଼ିର ଛାତ୍ର, ଗାଁ ସ୍କୁଲରେ ପରୀକ୍ଷାଗାର ନଦେଖି, କଲେଜର ବିଜ୍ଞାନ ବିଭାଗର ପରୀକ୍ଷାଗାରରେ କାର୍ଯ୍ୟରତ ହେବାବେଳେ ଚାଷି ପରିବାରର କୌଳିକ ବୃତ୍ତି ସ୍ମରଣ କରି ବିବ୍ରତ ଓ ହତାଶ ହୋଇ ପାଠଛାଡ଼ି ଗୃହ ପ୍ରତ୍ୟାବର୍ତ୍ତନ କରିଛି। ସମ୍ବଲପୁରୀ ଭାଷାରେ ହାସ୍ୟରସାତ୍ମକ ଶୈଳୀରେ ଗଳ୍ପଟିର ଉପସ୍ଥାପନା କରାଯାଇଥିଲା। ମୋର ଆଇ.ଏସ୍‌ସି. ଦ୍ୱିତୀୟ ବର୍ଷର ଶେଷରେ ଏ 'ଫିଜିକ୍ସ' ଗଳ୍ପଟି ପ୍ରକାଶିତ ହୋଇଥିଲା ଓ ତା'ପରେ ମୁଁ ଅସୁସ୍ଥ ହୋଇ ପଡିଥିଲି। କଟକରେ ଆସି ବାପାଙ୍କ ସରକାରୀ ବାସଭବନରେ ଥାଏ। ଖବର ପାଇଲି ପ୍ରଫେସର ସୂର୍ଯ୍ୟକାନ୍ତ ଦାସ ହାତଲେଖା ପତ୍ରିକାର କେତେକଣ ଲେଖକଙ୍କୁ ନିଜ ତରଫରୁ ବାର୍ଷିକ ପୁରସ୍କାର ବିତରଣୀ ଉତ୍ସବରେ ପୁରସ୍କୃତ କରିଛନ୍ତି। ତା' ମଧ୍ୟରେ ମୁଁ ମୋ ଗଳ୍ପପାଇଁ ଦୁଇଟି ଗଳ୍ପବହି ପୁରସ୍କାର ପାଇଛି। କହିବା ବାହୁଲ୍ୟ ତା'ପରେ ଅଧ୍ୟାପକ ସୂର୍ଯ୍ୟକାନ୍ତ ଦାସଙ୍କ ସହିତ ମୋର ଦେଖା ହୋଇନାହିଁ। ମୁଁ କଟକରେ ରେଭେନ୍‌ସା ମହାବିଦ୍ୟାଳୟର ବି.ଏ. ଶ୍ରେଣୀର

ଛାତ୍ର ଭାବରେ ଯୋଗଦେଲି । ଅଧ୍ୟାପକ ଦାସ ଉଚ୍ଚତର ଶିକ୍ଷାପାଇଁ ବିଦେଶ ଚାଲିଗଲେ । ତା'ପରେ ୧୯୫୪ ମସିହାରେ ମୁଁ ପ୍ରୟାଗ ବିଶ୍ୱବିଦ୍ୟାଳୟରେ ଯୋଗଦେଇ ୧୯୫୭ ମସିହା ପର୍ଯ୍ୟନ୍ତ ଓଡ଼ିଶା ବାହାରେ ରହିଲି । କିନ୍ତୁ ଅଧ୍ୟାପକ ଦାସଙ୍କ ଶହଶହ ସଂଖ୍ୟାର ଅର୍ଥନୈତିକ, ବାଣିଜ୍ୟିକ, ବ୍ୟବସାୟିକ ତଥ୍ୟଗତ ଲେଖା, ଭ୍ରମଣ କାହାଣୀ, ତୁଳନାତ୍ମକ ଅର୍ଥନୀତି, ସାଂସ୍କୃତିକ ଲଘୁକଥା, ପ୍ରଶାସନିକ ଓ ଶିକ୍ଷା ସମ୍ବନ୍ଧୀୟ ଗୁରୁପାକ ଓ ଲଘୁପାକର ଲେଖା ପଢ଼ିବାକୁ ହେଳା କରିନାହିଁ । ସେତିକି ନୁହେଁ ତାଙ୍କ ଲେଖା ମୋତେ ସବୁବେଳେ ପ୍ରୋତ୍ସାହିତ କରିଛି । ତାଙ୍କ ଶୈଳୀର ସାର୍ବଜନୀୟତା ପାଇଁ ଅନୁରାଗୀ ହୋଇ ମୁଁ ରହିଗଲି ।

୧୯୬୦ ମସିହା ବେଳକୁ ମୁଁ ନିଜେ ବରଗଡ କଲେଜର ଅଧ୍ୟାପକ ହେଲି । ସିନେଟ୍ ସଭାରେ ଦେଖାହେଲେ ମୁଁ ପ୍ରଣାମ ଜଣାଏ । ସେ ସବୁଥର ପଚାରନ୍ତି ଲେଖାଲେଖି କରୁଛ ନା ନାହିଁ । କିଛି ଉତ୍ତର ଦେଇପାରେ ନାହିଁ । ସମ୍ବଲପୁର ବିଶ୍ୱବିଦ୍ୟାଳୟ ହେବାପରେ ମାଧ୍ୟମିକ ଶିକ୍ଷା ପରିଷଦ ଓ ଉଚ୍ଚ ମାଧ୍ୟମିକ କାଉନ୍‌ସିଲର ସଭ୍ୟ ଭାବରେ କଟକ ଓ ଭୁବନେଶ୍ୱରରେ ଦେଖାହେଲେ ମୋର ସାମୟିକ ଲେଖାଟିଏ ବା ଅଭିନୟ ଉପରେ ନିଜର ଆନ୍ତରିକ ମନ୍ତବ୍ୟ ଓ ପ୍ରୋତ୍ସାହନ ଦେବାକୁ କେବେହେଲେ ଭୁଲନ୍ତି ନାହିଁ । ପ୍ରଫେସର ଦାସ ମୋ ପାଇଁ ଗୁରୁଟିଏ ହୋଇଗଲେ ।

୧୯୯୨ ମସିହାରେ ମୁଁ ଭୁବନେଶ୍ୱର ବାସିନ୍ଦା ହେଲି । ସବୁବେଳେ ଦେଖାହେଲେ ମୋତେ ଛାତ୍ରଭାବରେ ପିଠିରେ ହାତଦେଇ କୁଶଳ ସମାଚାର ପଚାରୁଥିଲେ । ମୋର ସାମୟିକ ପତ୍ରପତ୍ରିକାର ଲେଖାକୁ ପ୍ରଶଂସା କରିବାକୁ ଭୁଲୁନଥିଲେ । ଆହୁରି ଆହୁରି ଲେଖିବାକୁ କହୁଥିଲେ ।

ସ୍ୱାବଲମ୍ବୀ, ଛାତ୍ରବତ୍ସଳ, ମିଷ୍ଟଭାଷୀ ଅତ୍ୟନ୍ତ ଭଦ୍ର ବ୍ୟବହାର କରୁଥିବା ଜଣେ ସାହିତ୍ୟ-ସଂସ୍କୃତି ପ୍ରେମୀ ବାଣିଜ୍ୟ ପ୍ରଫେସରଙ୍କ ପ୍ରେରଣା ଆଜି ପର୍ଯ୍ୟନ୍ତ ବହୁ ଲେଖକଙ୍କୁ ଅନୁପ୍ରାଣିତ କରିଛି । ତାଙ୍କପରି ଜଣେ ଗୁରୁଙ୍କ ତିରୋଧାନରେ ତାଙ୍କର ହଜାର ହଜାର ଛାତ୍ରଛାତ୍ରୀଙ୍କ ଅପୂରଣୀୟ କ୍ଷତି ହୋଇଛି । ତାଙ୍କ ବିୟୋଗରେ ତାଙ୍କର ଶୋକାକୁଳ ପରିବାରବର୍ଗଙ୍କୁ ସମବେଦନା ଜଣାଇବାକୁ ମୁଁ ଭାଷା ପାଉନାହିଁ । ମୁଁ ପ୍ରଫେସର ଦାସଙ୍କୁ ହରେଇ ସାହିତ୍ୟିକ ସଂସ୍କାର ପ୍ରଥମ ପ୍ରେରଣାଦାତା ଓ ପୁରୁସ୍କାରଦାତାଙ୍କୁ ହରେଇଲି । ତାଙ୍କ ପବିତ୍ର ଆତ୍ମା ନିଶ୍ଚୟ ଶାନ୍ତିରେ ରହିବ ।

ସେ ମହାନ୍ ଆତ୍ମାଙ୍କୁ ମୋର କୋଟି କୋଟି ପ୍ରଣାମ ।



# ବନ୍ଧୁ ଧୀରେନ୍ଦ୍ର ପାତ୍ରୀ
# ଓ ଲରମ୍ବା ହେଡ଼ମାଷ୍ଟ୍ରେ-ସେନଗୁପ୍ତ ଆଜ୍ଞା

ଦେଖୁ ଦେଖୁ ଛଅଟା ଯୁଗ ଚାଲିଗଲା । ନୂଆ ପୁରୁଣା ହେଲା । ପୁରୁଣା ଲୋକେ କହନ୍ତି ଆଗ କାଳର କଥା ଆଉ ନାହିଁ । ସବୁ କଣ ସତରେ ଏମିତି ବଦଳି ଯାଏ ?

୧୯୪୫ ମସିହାର ପଲାଶ, ଲିମ୍ବ, ଚ଼ାର, ଗମ୍ଭାରି, କଅ, ଆମ୍ବ, ତାଳ, ଖଜୁରୀ, ଶିମୁଳି, ମହୁଲ, କେନ୍ଦୁ, ଆଡ ଗଛର ପଚିଶ ତିରିଶ ଏକରର 'ପତରା'କୁ ଲାଗି ନିର୍ଜନ ବିରାଟ ଖୋଲା ପଡିଆଟାଏ । ତା' ଭିତରେ ପତର ଫାଙ୍କରେ ଖପର ଛାତର ଲମ୍ବା ଚଉଡ଼ା ବିରାଟ ଘରଟା ବହୁତ ଦୂରରୁ ଦେଖାଯାଏ । ବାଟଚ଼ଲା ବାଟୋଇ କହନ୍ତି 'ଲରମ୍ବା ସ୍କୁଲ' । ଗୋଡ଼ଭଗା-ତୁରୁମ ପୂର୍ତ୍ତବିଭାଗ ନାଲି ମୁରୁମ୍ ରାସ୍ତାର ସାତ ମାଇଲ 'ମାଇଲ-ଖୁଣ୍ଟ' ପାଖରେ ସରୁ ଶଗଡ଼ ଗୁଳାର ଗ୍ରାମ୍ୟ ରାସ୍ତାଟିଏ ପୂର୍ବରୁ ପଶ୍ଚିମକୁ ସେଇ ସ୍କୁଲ ଆଗଦେଇ ପଡିଆକୁ ଦୁଇଭାଗରେ ବିଭକ୍ତ କରି ଆଗକୁ ବଢ଼ି ଯାଇଛି । ସ୍କୁଲ ଅଳ୍ପଦୂରରେ କେଉଁଟେନ୍ ପାଲି ବା ଅମସ୍ତଲା ଗାଁ । ତା' ଆଗକୁ ଗଲେ ଲରମ୍ବା ଗାଁ । ରାସ୍ତାଟା ଲରମ୍ବା ଗାଁରେ ଶେଷ ହୋଇଛି। ଲରମ୍ବାରେ ପୁଣି ତଳିପଡ଼ା ଓ ଉପର ପଡ଼ା। ଉପର ପଡ଼ାରେ ପ୍ରାୟ୍ ବ୍ରାହ୍ମଣମାନଙ୍କର ଘର। ତଳ ପଡ଼ାରେ ପ୍ରାୟ୍ ସବୁ ଜାତିର ଲୋକେ ରହନ୍ତି । ପରସ୍ପର ଉପରେ ନିର୍ଭର କରି ଚଳନ୍ତି । କିଛି ଦୂରରେ ବାରପାହାଡ଼ର ବୋହି ଆସିଥିବା ଝାଏଁ ଯୋର (ଛୋଟ ନଦୀ) । ଉତ୍ତରରୁ 'ଅଏନକା ନଲିଆ' ଗୋଟିଏ ଛୋଟ ପାଣି ଧାର ଝାଏଁ ଯୋରରେ ପଡିଛି ଅମସ୍ତଲା ଗାଁ ପାଖରେ ।

ସ୍କୁଲ ସାମନା ରାସ୍ତାରେ ଚାଲିଗଲା ବେଳେ ଡାହାଣରେ ସ୍କୁଲ ଓ ଛାତ୍ରାବାସର କେତେ ବଡ଼ ଜଣାପଡ଼େ । ପୂର୍ବକୁ ହେଡ଼ ମାଷ୍ଟ୍ରଙ୍କ ଘର ଓ ଛାତ୍ରାବାସର ତତ୍ତ୍ୱାବଧାରକଙ୍କ ଘର । ପଶ୍ଚିମରେ ଲରମ୍ବା ଗାଁର ଘରୋଇ ଡାକ୍ତରଖାନାର ଏଲ.ଏମ୍.ପି ଡାକ୍ତର ତଥା ସ୍କୁଲର ହାଇଜିନ୍/ଫିଜିଓଲଜି ମାଷ୍ଟ୍ରେଙ୍କ ଘର। ତାଙ୍କ ପାଖରେ ବିଜ୍ଞାନ ଶିକ୍ଷକଙ୍କ ଘର। ଛାତ୍ରାବାସ ଭିତରେ ଚାରି କଣରେ ଆଉ ଦୁଇଚାରିଜଣ ଶିକ୍ଷକଙ୍କ ରହିବା କୋଠରୀ। ସେମାନେ ଗଣିତ, ସାହିତ୍ୟ, ସଂସ୍କୃତ, ଇତିହାସ, ଭୂଗୋଳ ପଢ଼ାନ୍ତି । ପିଲାଙ୍କ ପାଇଁ ଚବିଶ ଘଣ୍ଟା ସବୁ ବିଷୟରେ ଶିକ୍ଷକମାନେ ମହଜୁଦ୍ ହୋଇ ରହିଥାନ୍ତି । ପିଲାମାନେ ସମସ୍ତଙ୍କୁ 'ମାଷ୍ଟ୍ରେ' ବୋଲି ଡାକନ୍ତି। ହେଡ଼ମାଷ୍ଟ୍ରଙ୍କ ଛଡ଼ା, ଆଉ ଜଣେ ହେଲେ ଦୁଇଟି ବିଷୟରେ ଏମ୍.ଏ. ପାସ କରିଥିବା ହଷ୍ଟେଲ ତତ୍ତ୍ୱାବଧାରକ/ଛ' ଫୁଟରୁ ବେଶୀ ଉଚ୍ଚ ବିରାଟ ବଡ଼ ନାକ ଓ କାନଥିବା ଚକ୍ରବର୍ତ୍ତୀ ମାଷ୍ଟ୍ରେ। ଇଂରାଜୀ, ଗଣିତ, ଏଲଜେବ୍ରା, ଟ୍ରିଗନୋମେଟ୍ରି ଓ

ସଂସ୍କୃତ ମଧ୍ୟ ପଢ଼େଇ ପାରନ୍ତି । ତାଙ୍କୁ ପ୍ରାୟ ସବୁଛାତ୍ର ଭୟ କରନ୍ତି, ଯଦିଓ ସେ କାହାକୁ ସେମିତି ଗାଳିଦିଅନ୍ତି ନାହିଁ । ପାଠ ନ ଆସିଲେ ତାଙ୍କ ବାର ଇଞ୍ଚିଆ ହାତପାପୁଲିର ପିଠିରେ ଗୋଟିଏ ଖୋଲା ଜାବୁଡ଼ାହିଁ ଯଥେଷ୍ଟ । ଡାକ୍ତର ମାଷ୍ଟ୍ରେ ଫିଜିଓଲଜି/ ହାଇଜିନ୍ କ୍ଲାସ ନେବା ଅପେକ୍ଷା ଡାକ୍ତରୀ କରିବାରେ ପ୍ରାୟ ସବୁବେଳେ ବ୍ୟସ୍ତ ଥାଆନ୍ତି । ସେପଟେ ଆଉ ଜଣେ ମେଳାପି ଶିକ୍ଷକ ହେଲେ ବିଜ୍ଞାନ ଶିକ୍ଷକ ସରକାର ମାଷ୍ଟ୍ରେ । ଏ ଚାରିଜଣଯାକ ଶିକ୍ଷକ ସମସ୍ତେ ବଙ୍ଗବାସୀ, କିନ୍ତୁ ସପରିବାର ସ୍କୁଲ ଯୋଗେଇଥିବା ମାଟିଘର, ଖପରଛାତ, ବାଡିବଗିଚା କରିବା ସୁବିଧା ଥିବା ଘରେ ସ୍ୱଚ୍ଛନ୍ଦରେ ରହୁଥିଲେ । ଛାତ୍ରାବାସର ଉପର ବ୍ଲକରେ ପ୍ରାୟ ଦଶଟି କୋଠରୀ ଓ ତଳବ୍ଲକ୍‌ରେ ପ୍ରାୟ ଦଶଟି କୋଠରୀରେ ପ୍ରାୟ ଅଢ଼େଇଶହରୁ ତିନିଶହ ଛାତ୍ର ରହିବାର ବନ୍ଦୋବସ୍ତ ଥାଏ । ସ୍କୁଲ ହତା ସାମନାରେ ଛ'ଫୁଟିଆ ଇଟା କାନ୍ଥର ପାଚେରୀ । ମଝିରେ କାଠ ଓ ଲୁହା ରେଲିଂ ଦିଆ ଗେଟ୍ । ଗେଟ୍‌ରୁ ଶ୍ରେଣୀ ଗୃହକୁ ଯିବା ରାସ୍ତା । ଦୁଇ ପାଖରେ ଦୁଇଟି ଚାରି କୋଣିଆ ଫୁଲବଗିଚ଼ା । ସେ ବଗିଚ଼ାର ଚାରିକଡ଼ରେ କନିଅର, ଟଗର, ଯୁଇ, ଜାଇ, ମଲ୍ଲୀପରି ବାରମାସିଆ ଗଛ । ଶୀତଦିନରେ ଗେଣ୍ଡୁଗଛ ଲଗାଯାଏ । ଫୁଲର ଅଭାବ ନଥାଏ । ସ୍କୁଲ ପରିବେଶରେ ଫୁଲର ବାସ୍ନା ମହକୁ ଥାଏ । ଏ ଗୃହର ମିସ୍ତ୍ରୀ, ମେସନ୍, ବଢ଼େଇ, କମାର, କୁମ୍ଭାର, ମାଟି ଓ ଚୂନ ଧଉଳା ଲୋକ ସେଇ ଗାଁର ବାସିନ୍ଦା ।

ଛାତ୍ରାବାସର ଏ ବିରାଟ ଘରର ଆକାର ଇଂରାଜି ଅକ୍ଷର "ଏଚ୍" ପରି । ମଝିର ବାଡ଼ିଟା ହିଁ ଉଚ୍ଚ ଇଂରାଜୀ ବିଦ୍ୟାଳୟର ଶ୍ରେଣୀଗୃହ, ଅଫିସ୍‌ଗୃହ, ବିଜ୍ଞାନାଗାର, ଲାଇବ୍ରେରୀ, ସରଞ୍ଜାମ ରହିବା କୋଠରୀ ଓ ଦୁଇଜଣ ଶିକ୍ଷକଙ୍କ ରହିବାପାଇଁ ଦୁଇମୁଣ୍ଡରେ ଦୁଇଟି କୋଠରୀ । ସବୁମିଶି ପ୍ରାୟ ବାରଟି କୋଠରୀ । ଏହାହିଁ ଉପର ବ୍ଲକ୍ । ଏହା ସାମନାରେ ଆଠଫୁଟ ଚଉଡାର ବିରାଟ ବାରଣ୍ଡା । ପ୍ରାର୍ଥନାର ଜାଗା । ତଳବ୍ଲକ୍‌ରେ ଠିକ୍ ଅନୁରୂପ ଛାତ୍ରାବାସର ଦୁଇଟି ମେସ୍‌ର ରୋଷଘର, ଭଣ୍ଡାର ଘର ଓ ଦୁଇଟି ଲମ୍ବା ଲମ୍ବା ଖାଇବା ଘର । ତଳ ବ୍ଲକ୍‌ର କୋଣରେ ସେମିତି ଛୋଟ କୋଠରୀରେ ଦୁଇଜଣ ଶିକ୍ଷକ ରହିବାର ବ୍ୟବସ୍ଥା ଥିଲା । ଛାତ୍ରାବାସ ଭିତରେ ରହୁଥିବା ଶିକ୍ଷକମାନେ କେବଳ ଛୁଟିଦିନରେ ପାଖ ଗାଁରେ ଥିବା ନିଜ ଘରକୁ ଯାଉଥିଲେ । ଅନ୍ୟ ସବୁଦିନ ସେମାନେ ପାଠପଢ଼ାଇବା ସହିତ ପିଲାମାନଙ୍କର ଆଚ଼ାର, ବ୍ୟବହାର, ପାଠପଢ଼ାର ଅସୁବିଧା, ସ୍ୱାସ୍ଥ୍ୟ ଓ ଶୃଙ୍ଖଳା ଉପରେ କଡ଼ା ନଜର ରଖୁଥିଲେ । ଏମାନେ ହେଲେ ସାହିତ୍ୟ ଶିକ୍ଷକ ମିତ୍ରଭାନୁ ମାଷ୍ଟ୍ରେ, ଶରୀର ଚର୍ଚ୍ଚା ଓ ଗଣିତ ଶିକ୍ଷକ ମଦନମାଷ୍ଟ୍ରେ ଓ ପାତ୍ର ମାଷ୍ଟ୍ରେ ।

ତଳବ୍ଲକ୍‌ରେ ଉପର ବ୍ଲକ୍‌ର ଫୁଲବଗିଚ଼ା ପରି ଯେଉଁ ଖୋଲା ଜାଗାଥିଲା, ସେଠି ପରିବାଚ଼ାଷ ହେଉଥିଲା । ଦୁଇଟି ରୋଷେଇ ଘରର ମଝିରେ ଏକ ଚବିଶ ଫୁଟିଆ ଚାନ୍ଦିନୀ

ଥିବା କୂଅ । ଏଠିକାର ପାଣି ଏତେ ମଧୁର ଓ ସ୍ୱଚ୍ଛ ଥିଲା ଯେ ପାଖଆଖ ଗାଁର ଲୋକେ ପିଇବା ପାଣି ପାଇଁ ଖରାଦିନରେ ହେଡ଼ମାଷ୍ଟରଙ୍କ ଅନୁମତିରେ ଭାର ସାହାଯ୍ୟରେ ବୋହି ନେଉଥିଲେ । ଖରାଦିନରେ ମଧ୍ୟ ଏ କୂଅର ପାଣି ଶୁଖୁନଥିଲା । ଏଠି ଟେଣ୍ଡା ସାହାଯ୍ୟରେ ପାଣି ଉଠା ଯାଉଥିଲା । ଖରାଦିନ ଓ ଶୀତ ଦିନରେ କୋବି, ବାଇଗଣ, ବିଲାତି ବାଇଗଣ ବଗିଚା ପାଇଁ "ପର୍‌ସିଏନ୍ ହ୍ୱିଲ୍" ସାହାଯ୍ୟରେ ସକାଳ ଓ ସନ୍ଧ୍ୟାରେ ପରିବାବଗିଚ଼ାରେ ପାଣିମଡ଼ା ଯାଉଥିଲା । ଦୁଇଟି ମେସ୍‌ରେ କାମ କରୁଥିବା ପୂଝାରି, ବାସନ ମାଜିବା, ଘର ଝାଡୁ କରିବା, ହଷ୍ଟେଲ ପରିଷ୍କାର ରଖିବା ଓ ଚାଷବାସ ପାଇଁ ଚାରି ପାଞ୍ଚଜଣ କର୍ମଚ଼ାରୀ ଛାତ୍ରାବାସରେ ରହୁଥିଲେ । ଏମାନଙ୍କ ବ୍ୟତୀତ ଗାଁରୁ ସଂସ୍କୃତ ପଣ୍ଡିତେ, କ୍ଲାର୍କ ମାଷ୍ଟ୍ରେ ଓ ସ୍କୁଲର ପିଅନ ଚ଼ାକିରୀ କରୁଥିବା ଲୋକେ ଦଶଟା ସମୟରେ ଆସି ପାଞ୍ଚଟା ସମୟରେ ଗାଁକୁ ଫେରି ଯାଉଥିଲେ । ପିଲାମାନଙ୍କ ତତ୍ତ୍ୱାବଧାନରେ ଏଠି ମେସ୍ ହେଉଥିଲା ।

ଏମାନେ ସମସ୍ତେ ନୀତିନିଷ୍ଠ ଥିଲେ । ବହୁ ବିଷୟରେ ବା ଗୋଟିଏ ବିଷୟରେ ଏମାନଙ୍କ ଜ୍ଞାନ ଓ ପାଣ୍ଡିତ୍ୟଥିଲା । ସମସ୍ତେ ତତ୍‌ପର, କର୍ମଠ ଓ ନିଷ୍ଠାବାନ । ଅବିଭକ୍ତ ସମ୍ବଲପୁର ଜିଲ୍ଲାର ତୃତୀୟ ହାଇସ୍କୁଲ ଭାବରେ ଓ ପ୍ରଥମ ବେସରକାରୀ ଆବାସିକ ଉଚ୍ଚ ଇଂରାଜୀ ବିଦ୍ୟାଳୟର ଗ୍ରାମ୍ୟ ପରିବେଶ ଓ ଶୃଙ୍ଖଳା ପଶ୍ଚିମ ଓଡ଼ିଶାର ପ୍ରତ୍ୟେକ ଶିକ୍ଷିତଙ୍କ ମନରେ ଗର୍ବ ଆଣି ଦେଉଥିଲା ।

(୨)

ନିପଟ ମଫସଲି ପାଣିପବନ ଭିତରେ ପାଠପଢ଼ାଟା ଯେ ଏତେ ନିଷ୍ଠାପର ଭାବରେ କରାଯାଇପାରେ ଅନେକେ କଳ୍ପନା କରି ପାରୁନଥିଲେ । ଏସବୁ ପଛରେ ଥିଲା ଲରମ୍ଭା ନିବାସୀ କେବଳ ଜଣଙ୍କର ଐକାନ୍ତିକ ଉତ୍ସାହ ଓ ଉଦ୍ୟମ । ଅଫୁରନ୍ତ କଳ୍ପନା ବିଳାସ ଓ ଦୂରଦୃଷ୍ଟି । ସେଥିଲେ- କୃଷିବିତ୍, ଶିକ୍ଷାବିତ୍, କବି, ଶିଳ୍ପୀ ଓ କୃଷ୍ଣଭକ୍ତ ବ୍ରଜମୋହନ ପଣ୍ଡା । ଅଠର ଖଣ୍ଡ ଗ୍ରାମରେ ତାଙ୍କର ଚାଷଜମି ଥିଲା । କଲିକତା ପ୍ରେସିଡେନ୍‌ସି କଲେଜରୁ ବି.ଏ.ଏଲ.ଏଲ.ବି. ଡିଗ୍ରୀଧାରୀ ସମ୍ବଲପୁର ଅଞ୍ଚଳର ବିହାର ଓଡ଼ିଶା ଏସେମ୍ବ୍ଲିକୁ ନିର୍ବାଚିତ ପ୍ରଥମ ଏମ୍.ଏଲ୍.ସି । ସେ ଥିଲେ ଯୋଗଜନ୍ମା ।

ବେସରକାରୀ ସ୍ତରରେ ନିଜ ହାତ ପାଣ୍ଠିରୁ ୧୯୦୨ ମସିହାରେ ପ୍ରାଥମିକ ସ୍କୁଲ ପ୍ରତିଷ୍ଠା ଠାରୁ ପରେ ଏମ.ଭି. ସ୍କୁଲ, ଏମ.ଇ. ସ୍କୁଲ ଓ ପରେ ୧୯୩୯ ମସିହାରେ ଆବାସିକ ହାଇସ୍କୁଲଟି ତାଙ୍କରି ଉଦ୍ୟମ, କଳ୍ପନା ଓ ପ୍ରେରଣା ବଳରେ ପ୍ରତିଷ୍ଠିତ ହୋଇଥିଲା ଲରମ୍ଭାପରି ଏକ ଛୋଟ ଗ୍ରାମରେ । ସେ ଥିଲେ ଏ ସମସ୍ତ ଶିକ୍ଷାନୁଷ୍ଠାନର ପରିଚାଳକ । ଷାଠିଏ ବର୍ଷ ତଳର କଥା । ସେହି ସମୟରୁ ସେ କଳ୍ପନା କରିଥିଲେ ଲରମ୍ଭାରେ ଏକ କୃଷିଭିତ୍ତିକ ବିଜ୍ଞାନ କଲେଜ ପ୍ରତିଷ୍ଠା କରିବେ । ଲୋକେ ତାଙ୍କ କଥା ଶୁଣି ହସୁଥିଲେ । ତାଙ୍କ

ସ୍ୱପ୍ନକୁ ସାକାର କରିବା ପାଇଁ, ସେହିପରି ନିଷ୍ଠାପର କେତେଜଣ ଶିକ୍ଷକ ତାଙ୍କୁ ପଶ୍ଚିମ ଓଡ଼ିଶାରେ ମିଳିନଥିଲେ। ତେଣୁ କଲିକତାର ହୋଟେଲରେ ରହି ଇଂରାଜୀ ଖବରକାଗଜରେ ବିଜ୍ଞାପନ ଦେଇ ସେ ବାଛି ନେଇଥିଲେ ନିଃସ୍ୱାର୍ଥପର, ସାହସୀ, ଆଦର୍ଶବାଦୀ, ଚରିତ୍ରବାନ କେତେ ଜଣ ଶିକ୍ଷକଙ୍କୁ । ସେମାନେ ହେଲେ ସେନଗୁପ୍ତ ମାଷ୍ଟ୍ରେ, ଚକ୍ରବର୍ତ୍ତୀ ମାଷ୍ଟ୍ରେ, ସରକାର ମାଷ୍ଟ୍ରେ ଓ ଡାକ୍ତର ମାଷ୍ଟ୍ରେ।

ଏ ବିଦ୍ୟାଳୟର ପ୍ରଥମ ମନୋନୀତ ସ୍ୱୟଂ ସଂପୂର୍ଣ୍ଣ ହେଡ୍‌ମାଷ୍ଟ୍ରେ ହେଉଛନ୍ତି ଶ୍ରୀ ଖଗେନ୍ଦ୍ରନାଥ ସେନଗୁପ୍ତ। ସୁଦୂର ଢାକାବାସୀ। ଇତିହାସର କ୍ରୁରଚକ୍ରରେ ଭିଟାମାଟିରୁ ବିସ୍ଥାପିତ ହୋଇ ଦ୍ୱିତୀୟ ମହାସମର ବେଳକୁ କଲିକତା ଡ଼ାଇମଣ୍ଡ ହାର୍ବର ପାଖ ମାଟିଆବୁରୁଜ ହାଇସ୍କୁଲର ଶିକ୍ଷକ। ହଠାତ୍ ଜାପାନୀ ବୋମାମାଡ଼ ଭୟରେ ଏ ହାଇସ୍କୁଲଟି ବନ୍ଦକରି ଦିଆଗଲା। ସେନଗୁପ୍ତ ବାବୁ ଚାକିରୀ ସନ୍ଧାନରେ କଲିକତାରେ ରହିଗଲେ। ବ୍ରଜମୋହନ ବାବୁ ଖବରକାଗଜ ବିଜ୍ଞାପନ କରିଆରେ କଥୋପକଥନ କରି ତାଙ୍କୁ ନିମନ୍ତ୍ରଣ କରି ଆଣିଥିଲେ ଲରମ୍ବା ଗାଁକୁ। ସାଧାରଣ ମୋଟା ମିଲ୍‌କନା ବା ଖଦଡ଼ କନାରେ ଧୋତି ଓ ପଞ୍ଜାବୀଟିଏ ଗଳେଇ ଦେଇ ସେ ସବୁଠିକୁ ପାଦରେ ଚାଲି ଯାଉଥିଲେ। କେତେବେଳେ କେମିତି ଗାଁର ମୋଚି ତିଆରି କରିଥିବା ଚପଲ ପିନ୍ଧି ବା କେତେବେଳେ ଖାଲି ପାଦରେ। ଲରମ୍ବାରେ ସପରିବାର ପହଞ୍ଚିବା ସାଂଗେ ସାଂଗେ ଆରମ୍ଭ ହେଲା ଓଡ଼ିଆ ଭାଷା ଓ ସାହିତ୍ୟ ଶିକ୍ଷା। ଓଡ଼ିଆ ସଂସ୍କୃତିର ଶିକ୍ଷା।

ସେନଗୁପ୍ତ ଆଜ୍ଞାଥିଲେ ପାଞ୍ଚଫୁଟ ସାତଇଞ୍ଚ ଉଚ୍ଚତାର ଦୁର୍ବଳ ଲୋକଟିଏ। କିନ୍ତୁ ଅସାଧାରଣ ମାନସିକ ଶକ୍ତି ଓ ସାହସଥିଲା ତାଙ୍କର ସେ କ୍ଷୀଣ ଶରୀରରେ। ମୁଣ୍ଡରେ ପ୍ରାୟ ଫୁରୁଫୁରୁ ଉଡୁଥିବା ବାଳ ଭଣ୍ଡାରୀର ଖୁର ଦୁଇତିନି ମାସରେ ଥରେ ଭେଟୁଥିଲା। କିନ୍ତୁ ସବୁଦିନ ସକାଳେ ସୋରିଷ ତେଲ କାନ ଓ ନାକରେ ପକେଇ, ମୁଣ୍ଡରେ ଘସି, ନାକ ଓ କାନ ହାତରେ ଚାପି ପୋଖରୀ ପାଣିରେ ଦଶବାର ଥର ବୁଡ଼ବକି ମାରି ଗାଧୋଇଥିଲେ। ଦେହ ମୁଣ୍ଡ ପାଦ ଗାମୁଛାରେ ଘସି ସଫା କରିବାଥିଲା ତାଙ୍କର ଦୁଇ ଓଳିର ମୁଖ୍ୟ କାର୍ଯ୍ୟ। ବେଳେବେଳେ ଅନେକ ସମୟଯାଏ ତାଙ୍କ ମୁଣ୍ଡରୁ ପାଣି ଶୁଖୁନଥିଲା।

ସେଥିଲେ ଅର୍ଥନୀତିର ଏମ୍.ଏ. ଓ ବି.ଟି. ଡିଗ୍ରୀଧାରୀ, କିନ୍ତୁ ଇଂରାଜି, ଇତିହାସ, ଗଣିତ ପଢ଼େଇବାରେ ଯଥେଷ୍ଟ ଦକ୍ଷତା ଥିଲା ତାଙ୍କର। ସରଳ, ନିଷ୍କପଟ, ସମୟ ସଚେତନ, ନ୍ୟାୟି, ସ୍ପଷ୍ଟବାଦୀ ଓ ନିର୍ଭୀକ ଥିଲେ ସେ। ଅନ୍ତରରେ ଗାନ୍ଧୀବାଦର ବିଶ୍ୱାସୀ କିନ୍ତୁ ରାଜନୀତିଠାରୁ ବହୁଦୂରରେ ଥିଲେ ସେ। କାହାକୁ 'ତୁ' ସମ୍ବୋଧନ କରିବା ସେ ଶିଖିନଥିଲେ। ଆମର ଦଶମ ଓ ଏକାଦଶ ଶ୍ରେଣୀ ସମୟରେ ସେ ବେଳେବେଳେ ଓଡ଼ିଆ ସାହିତ୍ୟ ପଢ଼ାଇବାକୁ କ୍ଲାସକୁ ଆସୁଥିଲେ। ଉଚ୍ଚାରଣରେ ତ୍ରୁଟିଥିବା ସତ୍ତ୍ୱେ ସାହିତ୍ୟିକ

ମୂଲ୍ୟାୟନରେ ତାଙ୍କର କିଞ୍ଚିତ୍‌ମାତ୍ରାରେ ତ୍ରୁଟି ନଥିଲା। ସେଥିପାଇଁ ଆମେ ତାଙ୍କର ଛାତ୍ରମାନେ ଅଜାଣତରେ ବଙ୍ଗଳା ସାହିତ୍ୟ ପ୍ରତି ଆକୃଷ୍ଟ ହୋଇଯାଉଥିଲୁ।

ଲରମ୍ବା ଅଞ୍ଚଳର ଲୋକେ ତାଙ୍କ ନାଁ ଉଚ୍ଚାରଣ କରିବା ପରିବର୍ତ୍ତେ 'ହେଡ଼ମାଷ୍ଟ୍ରେ' ନାଁଟି ଦେଇଥିଲେ ମୂଳରୁ। ଖୁବ୍ କମ୍ ଶିକ୍ଷିତ ଲୋକେ ତାଙ୍କୁ 'ଖଗେନ ବାବୁ' ବା 'ସେନଗୁପ୍ତ ବାବୁ' ଓ 'ସେନଗୁପ୍ତ ଆଜ୍ଞା' ବୋଲି କହୁଥିଲେ। ତାଙ୍କ ଲରମ୍ବା ରହଣିର ସାତ/ଆଠ ବର୍ଷ ପରେ ସମ୍ବଲପୁର ଅଞ୍ଚଳର ଅଧିକାଂଶ ଲୋକେ ତାଙ୍କୁ ଲରମ୍ବାର ହେଡ଼ମାଷ୍ଟ୍ରେ ଭାବରେ ଜାଣୁଥିଲେ। ଅଧିକାଂଶ ଲୋକେ ତାଙ୍କ ନାଁ ମଧ୍ୟ ଜାଣନ୍ତି ନାହିଁ। ଗ୍ରାମ୍ୟ ପରିବେଶରେ ଚାଷୀ ଓ ଦରିଦ୍ର ଲୋକଙ୍କ ସହିତ ମିଶି ସେ ନିଜେ ଗୋ'ସେବା ଓ ପରିବା ବଗିଚା କରିବାରେ ତାଙ୍କ ସମୟ ବିତାଉଥିଲେ। ଦୀର୍ଘ ଛବିଶବର୍ଷ ସେ ଲରମ୍ବାରେ ଥିଲେ।

ଗ୍ରାମ୍ୟ ରାସ୍ତାର ଡାହାଣପଟେ ଅବସ୍ଥିତ ବିଦ୍ୟାଳୟ ଓ ଛାତ୍ରାବାସ ସମ୍ମୁଖରେ ରାସ୍ତାର ବାମ ପାଖରେ ଗୋଟିଏ ଛୋଟ ମୁଣ୍ଡିଆ (ଉଚ୍ଚ ଜାଗା) ପଥର ଭରା।, ତା' ଚାରିପାଖରେ ଖେଳପଡ଼ିଆ କେବଳ ସମତଳ ୭/୮ ଏକର ଜାଗା। ସେଠି ଫୁଟବଲ୍, ଭଲିବଲ୍ ଓ କବାଡ଼ି ଖେଳ ହୁଏ ବର୍ଷର ସବୁ ସମୟରେ। ବିଦ୍ୟାଳୟର କାର୍ଯ୍ୟକ୍ରମ ମଧ୍ୟରେ ଏହା ଅନ୍ତର୍ଭୁକ୍ତ ହେଉଥିଲା। ହେଡ଼ମାଷ୍ଟ୍ରେଙ୍କ ଠାରୁ ମଦନ ମାଷ୍ଟ୍ରେଙ୍କ ପର୍ଯ୍ୟନ୍ତ ସମସ୍ତେ ପ୍ରତ୍ୟେକ ପିଲାକୁ ଖେଳ ପଡ଼ିଆ ଭିତରକୁ ଟାଣିନେଉଥିଲେ। ପ୍ରତ୍ୟେକ ମାସର ଶେଷ ଶନିବାର ରାତ୍ରିରେ ପାଠପଢ଼ା ବନ୍ଦ ରହୁଥିଲା। ସମସ୍ତ ଅନ୍ତେବାସୀ ଉପର ବ୍ଲକ ଓ ତଳ ବ୍ଲକରେ ବିଭକ୍ତ ହୋଇ ପଦ୍ୟାନ୍ତ ଓ ଫାର୍ସ ପ୍ରତିଯୋଗୀତାରେ ଭାଗ ନେବାକୁ ବାଧ୍ୟ ହେଉଥିଲେ। କାହାକୁ ଦୁଇଧାଡ଼ି ଗୀତ ବୋଲିବାକୁ ଓ କିଛି ଅଭିନୟ କରିବାକୁ ଉତ୍ସାହିତ କରିବା ଶିକ୍ଷକମାନଙ୍କ ଥିଲା ଏକମାତ୍ର ଲକ୍ଷ୍ୟ। ସମସ୍ତ ଛାତ୍ରଙ୍କ ଆଗରେ ଲଣ୍ଠନ ଓ ପେଟ୍ରୋମେକ୍ସ ଲାଇଟ ଆଗରେ ଏ ବିଦ୍ୟାଳୟର ଛାତ୍ରମାନେ ସୁଯୋଗ ପାଉଥିଲେ ଲେଖକ, କବି, ନାଟ୍ୟକାର, ଖେଳୁଆଡ଼, ବକ୍ତା ଓ ଅଭିନେତା ହେବାପାଇଁ। ଶିକ୍ଷକ, ଅଧ୍ୟାପକ, ଡାକ୍ତର, ଇଂଜିନିୟର, ପ୍ରଶାସକ, ଚାଷୀ, ସମାଜସେବୀ ହେବାର ଆଦର୍ଶ ଥିଲା ଦୂରର କଥା। ସେପାଖରେ ଭାଲୁକଣ୍ଟା ବିରାଟ ଜଳାଶୟ। ତା'ପାଖକୁ ଲାଗି ଦୁଇଟି ପୋଖରୀ- ଜୋକବନ୍ଧ ଓ ଖଲିଆ ବନ୍ଧ। ଏ ସମସ୍ତର ଭୋଗଦଖଲକାରୀ ଥିଲେ ବିଦ୍ୟାଳୟର ଶିକ୍ଷକ ପରିବାର ଓ ବିଦ୍ୟାଳୟର ସମସ୍ତ ଛାତ୍ର। ଗାଁ ଲୋକେ ଏ ଅଞ୍ଚଳକୁ ଆସିବାକୁ ସଙ୍କୋଚ କରୁଥିଲେ। ରାତିଦିନ ସବୁସମୟରେ ଛାତ୍ରାବାସର ତିନିଶହ ଛାତ୍ର-ଆଠଜଣ ଶିକ୍ଷକ ସିଧାସଳଖ ହେପାଜତରେ ପାଠ ପଢୁଥିଲେ, ବୁଲୁଥିଲେ ଓ ଖେଳୁଥିଲେ। ସମୟାନୁବର୍ତ୍ତୀତା ଓ ନିୟମ ଅନେକ। ନିୟମର ବ୍ୟତିକ୍ରମ ହେଲେ କାହାର ରକ୍ଷା ନାହିଁ। ଦଣ୍ଡ ଓ ଭର୍ତ୍ସନା ନିଶ୍ଚୟ ମିଳିବ। ସେଥିରୁ କାହାରି ମୁକ୍ତିନାହିଁ। ଏ ଦଣ୍ଡ ଭୋଗିବାକୁ ହେଉଥିଲା ସମସ୍ତଙ୍କ ସମ୍ମୁଖରେ। ପୁରାପୁରି ଗଣତାନ୍ତ୍ରିକ ପଦ୍ଧତିରେ।

(୩)

ଏ ବିଦ୍ୟାଳୟର ଅଧିକାଂଶ ଛାତ୍ରଥିଲେ ଦରିଦ୍ର, ମଧ୍ୟବିତ୍ତ ପରିବାର ଗ୍ରାମୀଣ ସଂସ୍କୃତି ଦ୍ୱାରା ପ୍ରଭାବିତ। ପଶ୍ଚିମ ଓଡ଼ିଶାର କଳାହାଣ୍ଡି, ବଲାଙ୍ଗୀର, ସୁନ୍ଦରଗଡ, ସମ୍ବଲପୁର ବ୍ୟତୀତ ରାୟଗଡ଼, ବସନା ଅଞ୍ଚଳର ଓଡିଆ ପିଲା ଏଠି ଆସି ପଢୁଥିଲେ। ଏମାନେ ପ୍ରାୟ ପରିବାରର ପ୍ରଥମ ପୁରୁଷ ପାଠ ପଢୁଆ। ଅଧିକାଂଶ ପିଲା ଧୋତି କୁରୁତା ପିନ୍ଧୁଥିଲେ। ହାଫ୍‌ପେଣ୍ଟ୍ କେବଳ ସହରୀ ପିଲା ପିନ୍ଧୁଥିଲେ। ଏପରି ଏକ ଆବାସିକ ବିଦ୍ୟାଳୟର ଛାତ୍ର ମଧ୍ୟରେ ଦୁଇ ପ୍ରକାରର ଛାତ୍ର ବାରି ହେଉଥିଲେ। ପ୍ରଥମ ପ୍ରକାରର ହେଲେ ଡରୁଆ, ସରଳ, ଅଳ୍ପ ଖର୍ଚ୍ଚରେ କଷ୍ଟେମଷ୍ଟେ ଚଳିବା ସାଧାରଣ ଛାତ୍ର। ଏମାନେ ସମସ୍ତେ ଗାଁ ପରିବେଶର ପିଲା। କେତେକଣ କୌଣସି ସହର କେବେ ଦେଖିବାର ସୁଯୋଗ ମଧ୍ୟ ପାଇନଥିଲେ। ଅନ୍ୟପ୍ରକାରର ଛାତ୍ରଥିଲେ ଉଦଣ୍ଡ, ଚାଲାକ, ପାଠପ୍ରତି ବେଖାତିର କରିଥିବା ଭଲଘରର ଅବାଧ୍ୟ ଛାତ୍ର। ଏମାନେ ସପ୍ତମଶ୍ରେଣୀ ପହଞ୍ଚିବା ପୂର୍ବରୁ ଥରେ ଦୁଇଥର ଝୁଣ୍ଟିବା ପରେ, ଘରଲୋକଙ୍କ ଭର୍ତ୍ସନାର ପାତ୍ରହୋଇ ବିତାଡିତ ହୋଇ ଏ ଜେଲଖାନା ସଦୃଶ ଆବାସିକ ବିଦ୍ୟାଳୟର ଛାତ୍ରହେବାର ସୌଭାଗ୍ୟ ପାଇଥିଲେ। ଏମାନେ ପ୍ରାୟ ସମସ୍ତେ ସହରୀ ପିଲା। ବାହାର ଦୁନିଆର ବହୁ ହାଲଚାଲ ଦେଖିଥିବା ପିଲା। ଏମାନେ ସମସ୍ତେ ଗ୍ରାମୀଣ ପିଲାଙ୍କର ଜଣେ ଜଣେ ଆଶ୍ଚର୍ଯ୍ୟ ଓ ଅଦ୍ଭୁତ ମଣିଷ। ମାଷ୍ଟ୍ରମାନଙ୍କର ଅଜାଣତରେ ଗ୍ରାମିଣ ପିଲାମାନେ ବେଳେବେଳେ ସହରିଆ ପିଲାଙ୍କ ବୋଲକରା ହେଉଥିଲେ। ସହରିଆ ପିଲା ପ୍ରାୟ ଉଚ୍ଚ ଜାତିର ପିଲା। ଗ୍ରାମୀଣ ପିଲା କିନ୍ତୁ ହରିଜନ, ଆଦିବାସୀ, କୁଲିତା, ତୁମାଳ, ରଜପୁତ୍ର, ଗଉଡ, ତେଲି, ତେଲେଙ୍ଗା, ଗୁଡିଆ, ଭଣ୍ଡାରୀ, ଖଜରିଆ, କେଉଟ ଇତ୍ୟାଦି ଚାଷୀ ପରିବାରର ଛାତ୍ର। ସେମାନେ ଓ ତାଙ୍କ ପରିବାର ଟଙ୍କା ପଇସାର କାରବାର ନକରି ଚାଉଳ ଓ ଧାନ ଦେଇ ସବୁ କିଣାବିକା କରୁଥିଲେ। ତେଣୁ ସ୍କୁଲରେ ଦୁଇପ୍ରକାରର ଫିଜ୍ ଦେବାର ବନ୍ଦୋବସ୍ତ ଥିଲା। ଯେଉଁମାନେ ପଇସାଦେଇ ମାସିକ ଫିଜ୍ ପଇଠ କରୁଥିଲେ, ତାହା କ୍ଲାର୍କ୍ ମାଷ୍ଟ୍ରେଙ୍କ ଜରିଆରେ ସ୍କୁଲ ଅଫିସ୍‌ରେ ଦିଆ ଯାଉଥିଲା। କିନ୍ତୁ ମେସ୍ ଓ ହଷ୍ଟେଲ୍ ଖର୍ଚ୍ଚ ପାଇଁ ଗ୍ରାମୀଣ ପିଲାମାନେ ନିଧାର୍ଯ୍ୟ ଓଜନର ଚାଉଳ, ଡାଲି, କଖାରୁ, ଆଳୁ ଓ ବାଇଗଣ ମେସ୍‌ର ମେନେଜରଙ୍କ ପାଖରେ ଜମାଦେଇ ନାମକୁ ମାତ୍ର ସ୍କୁଲ୍ ଫିଜ୍ ଦେଇ ପାଠ ପଢୁଥିଲେ। ସହରର ପିଲାମାନେ ପ୍ରାୟ ଟଙ୍କା ଆକାରରେ ସମସ୍ତ ଫିଜ ଦେଉଥିଲେ। ମୋ ବାପା ମାସକୁ ମାସ ମନିଅର୍ଡର କରି ସେ ଟଙ୍କା ହେଡ଼ମାଷ୍ଟର୍‌ଙ୍କ ପାଖକୁ ପଠେଇ ଦେଉଥିଲେ। ହେଡ଼ମାଷ୍ଟ୍ରେ ସେଥିରୁ କିଛି ମୋର ହାତଖର୍ଚ୍ଚ ବାବଦରେ ଦେଉଥିଲେ ବାପାଙ୍କ ନିର୍ଦ୍ଦେଶରେ। ସ୍କୁଲର ସବୁ ଶ୍ରେଣୀରେ ସମ୍ବଲପୁର ପରି ବଡ଼ ସହରର ପିଲାମାନେ ପଢୁଥିଲେ। ହଷ୍ଟେଲ୍‌ରେ ରହିବା ପାଇଁ ଗୋଟିଏ ଗୋଟିଏ ଲମ୍ବା କୋଠରୀ (ଡ଼ର୍ମିଟେରି)ରେ ଦଶରୁ ବାରଜଣ ପିଲା ରହୁଥିଲେ। ଘରୁ ଏମାନେ କେବଳ ଗୋଟିଏ ସାଧାରଣ ପଶ୍ଚିମାଞ୍ଚଳର ଦଉଡିଆ ଖଟ,

ଗୋଟିଏ କାଠ ବା ଟିଣ ବହି ଓ ଲୁଗା ରଖିବା ବାକ୍ସ ଓ କନ୍ଥା, ଚାଦର, ସାଲ, ତକିଆ ଗୁଡ଼ା ହୋଇଥିବା ବେଡିଂଟିଏ ଆଣି କୋଠରୀର ନିର୍ଦ୍ଦିଷ୍ଟ ସ୍ଥାନରେ ଆଠ ଫୁଟ ଲମ୍ବା ଓ ଚାରିଫୁଟ ଓସାର ଜାଗାରେ ନିକର ଅବସ୍ଥାନ ଜମାଉଥିଲେ। ଘରୁ ଲଣ୍ଠନ ବା ଲ୍ୟାମ୍ପଟିଏ ସଂଗରେ ନେଇ ଆସିବାର ନିୟମ ଥିଲା। ସପ ବା ଚଟେଇଟିଏ ମଧ୍ୟ ବେଡିଂ ସାଥୀରେ ଗୁଡ଼େଇ ଆଣିବାକୁ ପଡୁଥିଲା। ପ୍ରତ୍ୟେକ ଅନ୍ତେବାସୀ ନିଜ ନାମାଙ୍କିତ ଗୋଟିଏ କଂସା ଥାଳିଆ, ଡାଟିଆ ଓ ଗ୍ଲାସ୍ ମେସରେ ଜମାଦେବାର ନିୟମ। ସେଇ ବାସନରେ ନିଜେ ଭାତ ବାଡ଼ିବା ସମୟରେ ସେ ଭାତ ଡ଼ାଲି ତରକାରୀ ସଂଗ୍ରହ କରୁଥିଲା। ବାସନ ମାଜିବା କାମପାଇଁ ସ୍ୱତନ୍ତ୍ର ଲୋକ ମେସ୍ ମେନେଜର ନିୟୋଗ କରୁଥିଲେ।

ସକାଳୁ ଛାତ୍ରାବାସର ଘଣ୍ଟି ଛ'ଟା ବେଳେ ବାଜୁଥିଲା। ଘଣ୍ଟାଏ ସମୟ ମଧ୍ୟରେ ଶଯ୍ୟାତ୍ୟାଗ କରି ଦାନ୍ତଘସି ନିତ୍ୟକର୍ମ ସାରି ନିଜନିଜ ଜାଗାରେ ବା ଖଟ ଉପରେ ବସି ପଢ଼ା କାମଆରମ୍ଭ କରି ଦେଉଥିଲେ। ୭ଟା ବେଳେ ବିଧିବଦ୍ଧ ଘଣ୍ଟିବାଜି ପଢ଼ିବା ସମୟ ଘୋଷଣା କରାଯାଉଥିଲା। ସାରା ଛାତ୍ରାବାସର ଅଢ଼େଇଶହ ଛାତ୍ର ପିଲା ଶାନ୍ତ ହୋଇ ଯାଉଥିଲେ। କୌଣସି ଜାଗାରେ ସେମାନଙ୍କର ଚଳପ୍ରଚ଼ଳ ଦେଖାଯାଉନଥିଲା କିମ୍ବା କଥାବାର୍ତ୍ତା ମଧ୍ୟ ଶୁଣାଯାଉନଥିଲା। ୭.୩୦ ରୁ ୮.୩୦ ମଧ୍ୟରେ ପାଖ ଗ୍ରାମର ଜଣେ କେଉଟ ମୁଢ଼ି, ଚିନାବାଦାମ ଓ କନ୍ଦମୂଳସିଝା ସକାଳର ଜଳଖିଆ ଭାବରେ ଆଣି ପହଞ୍ଚିଲେ, ଖାଇବା ଘଣ୍ଟି ପନ୍ଦର ମିନିଟ ସକାଶେ ବାଜୁଥିଲା। ପୁଣି ୯.୩୦ ପର୍ଯ୍ୟନ୍ତ ଛାତ୍ରାବାସଟି ଶାନ୍ତ ରହୁଥିଲା। ୯.୩୦ ର ଘଣ୍ଟି ବାଜିବା ସଙ୍ଗେ ସଙ୍ଗେ ପିଲାଏ ହଷ୍ଟେଲରୁ ତେଲ ଲଗାଇ ଲୁଗାପଟା ଧରି ଜଳାଶୟ ଆଡ଼କୁ ଯାଉଥିଲେ। ଅଧଘଣ୍ଟି ମଧ୍ୟରେ କାର୍ଯ୍ୟ ସମାପନ କରି ସିଧା ମେସ୍‌ଘର ପାଖ ଖାଇବା ଘର ବାସନଧରି ଧାଡ଼ି ଧାଡ଼ି ହୋଇ ବସି ଯାଉଥିଲେ। ଦଶଟା ପନ୍ଦରରେ ଘଣ୍ଟି ବାଜୁଥିଲା ଓ ଖାଇବା ସାରି ଶ୍ରେଣୀକୁ ଯିବାର ସଚେ଼ତନ ଘଣ୍ଟି ଭାବରେ ଜଣା ଯାଉଥିଲା। ସାଢ଼େ ଦଶଟା ସମୟରେ ସ୍କୁଲ୍‌ର ପ୍ରଥମ ପିରିଅଡ୍‌ର ଘଣ୍ଟି ବାଜି, ଦଶମିନିଟ ପାଇଁ ଯେ ଯାହାର ଶ୍ରେଣୀଗୃହ ସାମ୍‌ନାରେ ଧାଡ଼ିରେ ଛିଡ଼ାହୋଇ ଯାଉଥିଲେ। ପ୍ରାର୍ଥନା ଘଣ୍ଟି ବାଜିବା ସଂଗେ ସଂଗେ ଜଣେ ସଂସ୍କୃତ ଉଚ୍ଚାରଣ କରିପାରୁଥିଲା ପିଲା ସହିତ ସଂସ୍କୃତ ପଣ୍ଡିତ ଏକ ପ୍ରାର୍ଥନା ବୋଲୁଥିଲେ। ପିଲାମାନେ ତାହାର ପ୍ରତ୍ୟେକ ଧାଡ଼ି ବଡ଼ ପାଟିରେ ଉଚ୍ଚାରଣ କରୁଥିଲେ। ସେ ଶ୍ଳୋକର ଶେଷ ଧାଡ଼ି କେତୋଟି ହେଲା- ତ୍ୱମେବ ମାତା ଚ଼ପିତା ତ୍ୱମେବ, ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ, ବନ୍ଧୁ ଷ୍ଟସଖା ତ୍ୱମେତ, ତ୍ୱମେବ ସର୍ବଂ ମମ ଦେବଦେବ। ସାଢ଼େ ଚାରିଟାରେ ସ୍କୁଲ ଛୁଟି ହେବାପରେ ସନ୍ଧ୍ୟା ଛ'ଟା ପର୍ଯ୍ୟନ୍ତ ଖେଳିବା ଓ ବୁଲିବା ପାଇଁ ସମୟ ଦିଆଯାଉଥିଲା। ଛ'ଟାରୁ ନଅଟା ପର୍ଯ୍ୟନ୍ତ ପୁଣିଥରେ ପାଠପଢ଼ାର ସମୟ। ଚଳପ୍ରଚଳ ରହିତ ସଂପୂର୍ଣ୍ଣ ନିସ୍ତବ୍ଧ ବାତାବରଣ।

ରୋଷଘରେ ସବୁ ଖାଦ୍ୟ ପ୍ରସ୍ତୁତ ହେବାଯାଏ ନଟା ବାଜି ସାରିଥିଲେ ଯାଇ ଘଣ୍ଟ ବାଜେ ରାତ୍ରଭୋଜନ ପାଇଁ। ଦଶଟା ସୁଦ୍ଧା ଶୋଇପଡ଼ିବାର ନିର୍ଦ୍ଦେଶ ଦିଆଯାଏ ଘଣ୍ଟରେ। ଅନେକ କୋଠରୀର ଆଲୋକ ସଂପୂର୍ଣ୍ଣ ଅନ୍ଧକାରରେ ଭରିଯାଏ। ଏ କାର୍ଯ୍ୟକ୍ରମ ମଧ୍ୟରେ ଶନିବାର ସକାଳ ପଢ଼ା। ଶନିବାର ସନ୍ଧ୍ୟାରେ ପଦ୍ୟାନ୍ତ ଓ ଅଭିନୟ ପ୍ରତିଯୋଗିତା ଓ ବୁଧବାରଦିନ ଉପରଓଳି ୩ଟା ରୁ ୬ଟା ପର୍ଯ୍ୟନ୍ତ ଦୁଇ ମାଇଲ ଦୂରର କାଦୋବାହାଲ ହାଟକୁ ଯିବାର ସୁଯୋଗ ସବୁ ଅନ୍ତେବାସୀ ପାଇ ପାରୁଥିଲେ। ଏହାହିଁ ଥିଲା ସମସ୍ତ ଅନ୍ତେବାସୀଙ୍କ ପାଇଁ ମୁକ୍ତିର ସ୍ୱାଦ।

(୪)

ମୋ ପୈତୃକ ଘର ସମ୍ବଲପୁର ସହର। ମାତୁଳାଳୟ, ଲରମ୍ବା ଗ୍ରାମର ଏଗାର ମାଇଲ ଦୂରରେ ଥିବା ମାନପୁର ଗ୍ରାମ। ଆମ ସହରର ଚାରି ପାଞ୍ଚଜଣ ଛାତ୍ର ଘରୁ ଓ ସହରରୁ ବିତାଡ଼ିତ ହୋଇ ମୋ ଶ୍ରେଣୀରେ ଏ ବିଦ୍ୟାଳୟର ଛାତ୍ରଥିଲେ। ସେମାନେ ବେଶ ବୁଦ୍ଧିମାନ, କିନ୍ତୁ ପାଠପଢ଼ା ପ୍ରତି ତାଙ୍କର ପିଲାଦିନରୁ ଖାତିର ନାହିଁ। ସେମାନଙ୍କ ମଧ୍ୟରେ ଆମ ସାହିର ଧୀରେନ୍ଦ୍ର ନାଥ ପାଢ଼ୀ ମୋର ଚତୁର୍ଥ ଶ୍ରେଣୀ ବେଲୁ-ସାହିବସ୍ତିର ଲଙ୍ଗୋଟିଆ ସାଥୀ। ଏକ ସଙ୍ଗରେ ସାହିର ଜଗନ୍ନାଥ ମନ୍ଦିର, ହନୁମାନ ମନ୍ଦିର ପ୍ରାଙ୍ଗଣରେ ବିଭିନ୍ନ ଖେଳ ଖେଳିବା, ମହାନଦୀ ବାଲିରେ ଖେଳିବା, ସାନଧାର ଓ ବଡ଼ଧାର ପଥର ଖୋଲରୁ ଚିଙ୍ଗୁଡ଼ି ଧରିବା, ପାଣିରେ ଡ଼ାଇଭ ମାରିବା, ପହଁରିବା ପରି ଦୁଃସାହସିକ କାମର ମାର୍ଗ ଦ୍ରଷ୍ଟା ଭାବରେ ଓ ଘରୁ ପଇସା ଲୁଚାଇ ନେଇ, ସମ୍ବଲପୁର ଝାରସୁଗୁଡ଼ା ରେଳରେ ଝାରସୁଗୁଡ଼ାକୁ ବିନାଟିକଟରେ ଯାଇ ହିନ୍ଦି ସିନେମା ଦେଖି ହୋଟେଲରେ ଖାଇ ଷ୍ଟେସନରେ ରାତି ବିତାଇବା ପରି ଦୁର୍ଦ୍ଧର୍ଷ କର୍ମକରି ସାହିରେ ଚର୍ଚ୍ଚିତ ହେବା ଜଣେ ବନ୍ଧୁଥିଲେ। ସେ ଲରମ୍ବାରେ ୧୯୪୫ରେ ଅଷ୍ଟମ ଶ୍ରେଣୀରେ ନାମ ଲେଖିବା ସମୟରେ ମୁଁ କୋରାପୁଟର ମୋ ବାପାଙ୍କ ନିର୍ଦ୍ଦେଶରେ ଆସି ଏ ବିଦ୍ୟାଳୟରେ ଯୋଗଦେଲି। କହିବା ବାହୁଲ୍ୟ ଅଳ୍ପଦିନ ଭିତରେ ଆମେ ଦୁଇଜଣ ଅନ୍ତରଂଗ ବନ୍ଧୁ ଭାବରେ ମାଷ୍ଟମାନଙ୍କ ଓ ଛାତ୍ରମାନଙ୍କୁ ଦୃଷ୍ଟିକୁ ଆସିଥିଲୁ। ମୁଁ ଥିଲି ସରଳ, ଶାନ୍ତ ଓ ଦୁର୍ବଳ। ସେ ଥିଲା ଜିଦ୍‌ଖୋର ଓ କର୍କଶ।

ବେଳେ ବେଳେ ଭାବୁଥିଲି, ମୋ ବାପ ମା' ମୋତେ ବଡ଼ପୁଅ ଭାବରେ ଘରେ ନରଖି ଏତେ ଦୂରକୁ ଗୋଟିଏ ଆବାସିକ ଗ୍ରାମ୍ୟ ସ୍କୁଲକୁ ପଠେଇବାର କାରଣ କଣ ? ବନ୍ଧୁ ଧୀରେନ୍ଦ୍ର ସପ୍ତମ ଶ୍ରେଣୀରେ ଦୁଇଥର ଫେଲ ହୋଇଥିବାରୁ ତାଙ୍କ ବାପା ତାଙ୍କୁ ଏଠିକୁ ପଠାଇଥିବାର ଯଥାର୍ଥତା ଅଛି। ମୁଁ କଣ ମୋର ଆଉ ପାଞ୍ଚ ଛଅ ଜଣ ଛୋଟ ଭାଇଭଉଣୀଙ୍କ ପରି ବାପା ମା'ଙ୍କ ନିଜ ପୁଅ ନୁହେଁ ? ମୋ ପ୍ରତି ଏତେ ଅବିଚାର କାହିଁକି ? ବାପା ମା'ଙ୍କ ଆଗରେ କିନ୍ତୁ ମୋର ସବୁ ଭାବନା ଉଭେଇ ଯାଏ। ବାପା କହୁଥିଲେ "ଗେହ୍ଲା ପୁଅହେଇ ବଢ଼ିଲେ

ଦୁନିଆରେ ବହୁତ କଥା ଶିଖି ହୁଏ ନାହିଁ । ତୋତେ କଷ୍ଟ କଣ, ଦୁଃଖ କଣ ଜାଣିବାକୁ ପଡ଼ିବ । ନିଜେ ଭୋଗିବାକୁ ପଡ଼ିବ । ନହେଲେ ତୁ ଉଚିତ୍ ଅନୁଚିତ କଥା ଜାଣିପାରିବୁ ନାହିଁ । ସାମାଜିକ ନ୍ୟାୟ କଣ ଜାଣିପାରିବୁ ନାହିଁ ।" କଥାଗୁଡ଼ାକ ପିତା ଲାଗୁଥିଲା । ଆଖି ଆଗରେ ପରିବାର ଭିତରେ ବାପା କହିବାଭଳି ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ, ଜନ୍ମରୁ ମୂକବଧିର ଯାବତ ବଡ଼ଭାଇଙ୍କୁ ଅତି ନିକଟରୁ ଦେଖିବାପରେ ନୀରବ ହୋଇ ଯାଉଥିଲି । ଲରମ୍ବାର ହେଡ଼ମାଷ୍ଟ୍ରଙ୍କ ବ୍ୟକ୍ତିତ୍ୱ ଓ ପ୍ରଶାସନିକ ଦକ୍ଷତା ମୋତେ ଯେପରି ଶିଖାଇଛି । ତାଙ୍କରି ଦୃଷ୍ଟାନ୍ତ ଯୋଗୁ ମୁଁ ବାଟ ଚାଲିଛି । ମୋ ବାପା ୧୯୫୭ ମସିହାରେ ଚାଲିଯିବାପରେ, ତାଙ୍କ କଥା, କାମ ଓ ଆଦର୍ଶ ମୋ ପାଖରେ ସ୍ପଷ୍ଟତର ହୋଇଯାଇଛି ।

ବନ୍ଧୁ ଧୀରେନ୍ଦ୍ର ଥିଲେ ଏକ ଅଦ୍ଭୁତ ବାଳକ । ମଧ୍ୟବିତ୍ତ କର୍ମନିଷ୍ଠ ବ୍ରାହ୍ମଣ ପରିବାରର ଦ୍ୱିତୀୟ ପୁତ୍ର । ଘରେ ଖାଇବା ଛଡ଼ା ତାଙ୍କ ମନ ଘରେ କେବେ ରହୁନଥିଲା । ତେଣୁ ତାଙ୍କ ଭବଘୁରା ମନ ଅଳ୍ପବୟସରୁ ତାଙ୍କୁ ସମସ୍ତ ଅନୀତି ଓ ଅନୈତିକ ଆଚରଣ କରିବାପାଇଁ ଶିଖାଇଥିଲା । ସେ ଥିଲେ କିଦ୍‌ଖୋର । ବିଡ଼ି, ଗଞ୍ଜେଇ, ମାଛ, ମାଂସ, ଗେଣ୍ଡା, କୁକୁଡ଼ା ଖାଇବାରେ ଧୁରନ୍ଧର । ହରିଜନ ସାହିରେ ବହୁ ବୟସ୍କ ବ୍ୟକ୍ତିଥିଲେ ତାଙ୍କର ବନ୍ଧୁ । ବାପାଙ୍କ ଲୁଗାଦୋକାନ ବାକ୍ସରୁ ପଇସା ଚୋରାଇ ସେ ମନଇଚ୍ଛା ଝାରସୁଗୁଡ଼ା ଓ ରାୟପୁର ପରି ସହରକୁ ରେଳରେ ବିନା ଟିକଟରେ ପରିଭ୍ରମଣରେ ଯିବାଥିଲା ଏକ ଅଦ୍ଭୂତ ସଉକି । ସେ ଦୁର୍ଘଟଣା ଓ ଦଣ୍ଡକୁ ଭୟ କରୁନଥିଲେ । ତାଙ୍କର ସବୁବେଳେ ଦରକାରଥିଲେ କେତେକଣ ସମଭାବାପନ୍ନ ସ୍ତାବକ । ସକାଳୁ ଦାନ୍ତ ନଘଷି, ମୁହଁ ନଧୋଇ, ଖଟରେ ବସି ସେ ନିର୍ବିକାର ଭାବରେ ମୁଢ଼ି, ପିଆଜ ଓ ଲଙ୍କା ଜଳଖିଆ କରିପାରୁଥିଲେ । ଅଷ୍ଟମ ଶ୍ରେଣୀର ତେର/ ଚଉଦ ବର୍ଷର ଜଣେ ବାଳକ କୋଠରୀର ସମସ୍ତ ସହପାଠୀଙ୍କୁ ସେ ତାଙ୍କର ଆଜ୍ଞାବହ କରି ରଖୁଥିଲେ । ବଳିଷ୍ଠ ଶରୀର ଓ ତାଙ୍କର ଆଚାର ବ୍ୟବହାର ଗ୍ରାମୀଣ ସହପାଠୀମାନଙ୍କ ପାଖରେ ଥିଲା ସପ୍ତମ ଆଶ୍ଚର୍ଯ୍ୟ । ଛାତ୍ରାବାସର କଡ଼ା ନିୟମ ଓ ସମୟ ନିର୍ଘଣ୍ଟ ପ୍ରତି ତାଙ୍କର ସାମାନ୍ୟତମ ଖାତିରି ନଥିଲା । ସବୁ ସହପାଠୀ ସକାଳ ୬ଟାରେ ନିତ୍ୟକର୍ମସାରି ଯେ ଯାହା ସ୍ଥାନରେ ପଠନରତ ଥିବା ସମୟରେ ନିଜ ଖଟରେ ଚଦର ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଘୋଡ଼ାଇ ଶୋଇ ରହୁଥିଲେ । ଛାତ୍ରାବାସର କର୍ମଚାରୀ ତାଙ୍କୁ ଉଠାଇ ତାଗିଦ୍ କରିବାକୁ ସାହସ କରୁନଥିଲେ । ସିଧା ହେଡ଼ମାଷ୍ଟ୍ରଙ୍କ ପାଖରେ ନାଲିସ ପହଞ୍ଚୁଥିଲା । ହେଡ଼ମାଷ୍ଟ୍ରେ ହାତରେ ଦୁଇଟି ମୋଟା କନିଅର ଡାଙ୍ଗ ନେଇ କୋଠରୀରେ ପହଞ୍ଚି ଧୀରେନ୍ଦ୍ରଙ୍କ ନିଦ୍ରାଭଙ୍ଗ କରୁଥିଲେ । ଆଶ୍ଚର୍ଯ୍ୟ ହୋଇ କହୁଥିଲେ, "ଧୀରେନ୍ଦ୍ର ପାଢ଼ୀ, ତୁମେ ହଷ୍ଟେଲର ନିୟମ ଭାଙ୍ଗି ଆମକୁ ଅବମାନନା କରୁଛ । ଆମେ ତମକୁ ଦଣ୍ଡ ଦେବୁ ।" ଧୀରେନ୍ଦ୍ର ଖଟରୁ ଉଠିପଡ଼ି ହେଡ଼ମାଷ୍ଟ୍ରଙ୍କ ଆଗରେ ସମ୍ମାନର ସହିତ ଛିଡ଼ାହୋଇ ରହୁଥିଲେ । ଉତ୍ତର ଦେଉନଥିଲେ ।

ଦଣ୍ଡଦେବା କଥା ଶୁଣିବା ସାଙ୍ଗେ ସାଙ୍ଗେ ତାଙ୍କର ହାତ ପାପୁଲି ଦୁଇଟି ସେ ହେଡ଼ମାଷ୍ଟ୍ରଙ୍କ ଆଡ଼କୁ ବଢ଼ାଇ ଦେଉଥିଲେ । ହେଡ଼ମାଷ୍ଟ୍ରେ ସମସ୍ତ ଶକ୍ତିଲଗାଇ ଦଶବାର ଛାଟ ତାଙ୍କ ଦୁଇ ପାପୁଲିରେ ବସେଇବା ବେଳେ ମୁହଁରେ ସାମାନ୍ୟ କଷ୍ଟର ସୂଚନା ଦେଖାଇବା ଛଡ଼ା ଛଟପଟ ବା ହଲଚଲ ହେଉନଥିଲେ । ହେଡ଼ମାଷ୍ଟ୍ରେ ହାଲିଆ ହେଇ ଯାଉଥିଲେ । ଧଇଁସଇଁ ହୋଇ କେବଳ ଏତିକି କହୁଥିଲେ, "ମୁହଁ ଧୋଇ ପଢ଼ିବାକୁ ବସ । ତୁମେ ତୁମ ସାଙ୍ଗମାନଙ୍କ ଆଗରେ ଏ କି ଆଦର୍ଶ ଦେଖାଉଛ ? ତୁମ ବାପା କଣ ତୁମକୁ ସେଥିପାଇଁ ଆମ ଏଠିକୁ ପଠାଇଛନ୍ତି ?" ହେଡ଼ମାଷ୍ଟ୍ରଙ୍କ ଆଜ୍ଞା ପାଳନ କରିବାକୁ ଧୀରେନ୍ଦ୍ର ତିଳେ ମାତ୍ର ଦ୍ୱିଧା ଦେଖାଉ ନଥିଲେ । ମାଷ୍ଟ୍ରଙ୍କ ଉପସ୍ଥିତିରେ ଖଟରେ ବସିପଢ଼ି ପଠନରତ ହେଉଥିଲେ । ହେଡ଼ମାଷ୍ଟ୍ରେ ଚାଲିଯିବାପରେ କିନ୍ତୁ ନିର୍ବିକାର ଭାବରେ ପୁଣିସେଇ ଚଦର ଘୋଡ଼ି ଶୋଇଯାଉଥିଲେ । ଗାଧୋଇବା ଘଣ୍ଟା ବାଜିବା ସଂଗେ ସଂଗେ ସେ ଖଟରୁ ଉଠୁଥିଲେ । ତାଙ୍କ ସ୍ତାବକମାନେ ତେଲ ଶିଶି ଓ ଗାମୁଛା ତାଙ୍କୁ ବଢ଼ାଇ ଦେଉଥିଲେ । ହାଫପେଣ୍ଟ ପିନ୍ଧା ତୈଳାକ୍ତ ଧୀରେନ୍ଦ୍ର କାହାକୁ କିଛି ନକହି ସିଧା ଦଉଡ଼ୁଥିଲେ ଖଲିଆ ବନ୍ଧକୁ । ଅଣ୍ଟରେ ଗାମୁଛାଟିକୁ ଚାଦର ପରି ମୁଣ୍ଡରୁ ଗୋଡ଼ ପର୍ଯ୍ୟନ୍ତ ଘୋଡ଼ାଇ ନିଷ୍ଚଳହୋଇ ପାଣିରେ ଶୋଇବା ଢଙ୍ଗରେ ଭାସୁଥିଲେ ଅଧଘଣ୍ଟା ଯାଏ । ଏ ଦୃଶ୍ୟ ଦେଖୁଥିବା ସମସ୍ତ ଅନ୍ତେବାସୀ ଯେତେ ଆଶ୍ଚର୍ଯ୍ୟ ହେଉଥିଲେ ମଧ୍ୟ, ଆମୋଦିତ ହେଉଥିଲେ ତା'ଠାରୁ ବେଶୀ । କେହି ଅଭିଯୋଗ କରୁନଥିଲେ ଶିକ୍ଷକମାନଙ୍କ ଆଗରେ । ସମସ୍ତ ଅନ୍ତେବାସୀ ଛାତ୍ରଗଣ ମେସ୍‌ରେ ଖାଇସାରିବା ପରେ ସ୍କୁଲର ପ୍ରାର୍ଥନାରେ ଯୋଗ ଦେବାବେଳେ ଧୀରେନ୍ଦ୍ର ନିର୍ବିକାର ଭାବରେ ଗାଧୋଇସାରି ମୁଖ୍ୟଫାଟକ ଦେଇ ବିଦ୍ୟାଳୟ ହତାରେ ପ୍ରବେଶ କରୁଥିଲେ । ସମସ୍ତ ଶିକ୍ଷକ ଓ ଛାତ୍ର ଧୀରେନ୍ଦ୍ରଙ୍କ ଏ କ୍ରିୟାକଳାପ ଦେଖିଲେ ମଧ୍ୟ ଧୀରେନ୍ଦ୍ର କିଛି ପ୍ରତିକ୍ରିୟା ଦେଖାଉନଥିଲେ । ପ୍ରାର୍ଥନା ପରେ ସବୁଶ୍ରେଣୀରେ ପାଠପଢ଼ା ଆରମ୍ଭ ହେଉଥିଲା । ହେଡ଼ମାଷ୍ଟ୍ରେ ପିଅନ ପଠାଇ ଧୀରେନ୍ଦ୍ରଙ୍କୁ ତାଙ୍କ କୋଠରୀରୁ ଅଫିସକୁ ଡକାଇ ପୁଣି ଭର୍ତ୍ସନା ଓ ବେତ୍ରାଘାତ ଦଣ୍ଡ ଦେଉଥିଲେ । ନିର୍ଦ୍ଦେଶ ଦେଉଥିଲେ କ୍ଲାସରେ ଯାଇ ବସିବାପାଇଁ । ଧୀରେନ୍ଦ୍ର ଆଜ୍ଞାପାଳନ କରୁଥିଲେ । ମେସ୍‌ରେ ରୋଷଘରେ ତାଙ୍କର ଖାଇବା ତେଣେ ସଯତ୍ନରେ ଥାଳିରେ ବଢାଯାଇ ପୂଝାରୀମାନଙ୍କ ମାରଫତ୍‌ରେ ଜମା ହୋଇ ରହୁଥିଲା । ମଧ୍ୟାନ୍ତର ଖାଇବା ଛୁଟି ସମୟରେ ସେ ମେସ୍‌ରେ ପହଞ୍ଚିବା ସଂଗେ ସଂଗେ ତାଙ୍କ ଖାଦ୍ୟ ସାମନାରେ ପରସି ଦିଆ ଯାଉଥିଲା । ଅଷ୍ଟମ ଶ୍ରେଣୀର ଏ ଛାତ୍ରଟି ପ୍ରତି ଉପର ଶ୍ରେଣୀର ମେଧାବୀ ଓ ବିଜ୍ଞ ଛାତ୍ରମାନେ କେବଳ ଦୟା ମନୋଭାବ ରଖୁଥିଲେ । କୌଣସି ଉପଦେଶ ବା ଆକ୍ଷେପ କରୁନଥିଲେ । ଏକ ପ୍ରକାର ଭୟ ଓ ସମ୍ମାନର ଝଲକ ଥିଲା ସେମାନଙ୍କ ବ୍ୟବହାରରେ । ଠିକ୍ କହିବାକୁ ଗଲେ, ଧୀରେନ୍ଦ୍ରଙ୍କର କେହି ବନ୍ଧୁ ନଥିଲେ । କେତୋଟି ସ୍ତାବକ ଓ ଆଶ୍ଚର୍ଯ୍ୟଚକିତ ଲୋକଙ୍କ ଗହଣରେ ସେ ରହୁଥିଲେ । ମୁଁ ମୋ ମାମୁଁଙ୍କ ସହିତ ଅନ୍ୟ ଏକ କୋଠରୀରେ ରହୁଥିଲି ।

ତେଣୁ ମୁଁ ହିଁ ତାଙ୍କର ଏକମାତ୍ର ସମାଲୋଚକ ଓ ହିତୈଷୀ ବନ୍ଧୁଥିଲି- ଲରମ୍ବା ରହଣି ସମୟରେ। ତାଙ୍କର କୌଣସି ଗୁଣ ଓ ଦୋଷର ପ୍ରଶଂସକ ବା ସ୍ତାବକ ମୁଁ ନଥିଲି। ମୁଁ ଥିଲି ତାଙ୍କର ସମାଲୋଚକ ଓ ସେ ଥିଲେ ମୋର ସମାଲୋଚକ।

(୫)

ଦୁର୍ବଳ ଶରୀର ଓ କୋରାପୁଟରୁ ପାଳିଜ୍ୱର ଧରି ଆସିଥିବା ଯୋଗୁ ଅଷ୍ଟମ ଶ୍ରେଣୀରେ ମୁଁ ଧୀରେନ୍ଦ୍ରଙ୍କ ସହିତ ବେଶୀ ବୁଲାବୁଲି କରିପାରୁ ନଥିଲି। ସ୍କୁଲ ଛୁଟି ପରେ ସନ୍ଧ୍ୟାରେ ଦୁଇଚାରି ଘଣ୍ଟା ବୁଲିବାବେଳେ ମୁଁ ତାଙ୍କୁ ପଚାରୁଥିଲି ହେଡ଼ମାଷ୍ଟ୍ରେଙ୍କ ମାଡ଼କଥା ଓ ତାଙ୍କର ଅମଣିଷ ପଣିଆ କଥା। ନଭେମ୍ବର ମାସରେ ଦଶହରା ଛୁଟିରେ ମୁଁ ପୁଣି କୋରାପୁଟର ବାପାଙ୍କ ପାଖକୁ ଫେରିଗଲି। ବାପା ସେତେବେଳେ ନବରଙ୍ଗପୁର ସବ୍‌ଡିଭିଜନର ଏସ୍.ଡ଼ି.ଓ। ମୋର ରୋଗା ଶରୀର ଓ ଜ୍ୱର ପାଇଁ ସେ ମୋତେ ନବରଙ୍ଗପୁର ବୋର୍ଡ ହାଇସ୍କୁଲରେ ପଢ଼ିବା ପାଇଁ ସୁଯୋଗ ଦେଲେ। ଘରକୁ ଲାଗି ବୋର୍ଡ୍ ହାଇସ୍କୁଲ। ମୋର ମେଲେରିଆର ଚିକିତ୍ସା ମଧ୍ୟ ଚାଲିଲା। ଏ ହାଇସ୍କୁଲରେ ନବମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେବା ବେଳକୁ ଭାରତ ସ୍ୱାଧୀନ ହେଲା। ବାପାଙ୍କର ପୁଣି ବଦଳି ହେଲା ଏ.ଡ଼ି.ଏମ୍ ପାଟ୍ଣାରେ। ମୋତେ ଲରମ୍ବା ଆବାସିକ ଉଚ୍ଚ ଇଂରାଜି ବିଦ୍ୟାଳୟକୁ ଫେରି ଆସିବାକୁ ପଡ଼ିଲା ଦଶହରାରେ ୧୯୪୭ ମସିହାର ଅକ୍ଟୋବର ମାସରେ। ମୁଁ ସେତେବେଳେ ଅନେକ ସୁସ୍ଥ ହୋଇଯାଇଥିଲି। ଛାତ୍ରାବାସରେ ପହଞ୍ଚିବା କ୍ଷଣି ହେଡ଼ମାଷ୍ଟ୍ରେ, ବନ୍ଧୁ ଧୀରେନ୍ଦ୍ର ପାଢ଼ୀଙ୍କୁ ଡ଼କାଇ ପଠେଇଲେ ମୋତେ କୌଣସି ଗୋଟିଏ କୋଠରୀରେ ରହିବାର ସ୍ଥାନ ଦେବାପାଇଁ। ନିଜର ଛୋଟ କୋଠରୀରେ ଆଉ ଛ/ସାତ ଜଣ ପିଲାଙ୍କ ସହିତ ସେ ମୋର ରହିବାର ବନ୍ଦୋବସ୍ତ କରିଦେଲେ। ଆଶ୍ଚର୍ଯ୍ୟହେଲି ବନ୍ଧୁ ଧୀରେନ୍ଦ୍ରଙ୍କୁ ଦେଖି। ସଂପୂର୍ଣ୍ଣ ନୂତନ ମଣିଷଟିଏ। ଛାତ୍ରାବାସର ଉପର ବ୍ଲକର ମନିଟର୍। ଇଂରାଜୀ ଓ ଗଣିତରେ ଅଷ୍ଟମଶ୍ରେଣୀରେ ସବୁଠାରୁ ଅଧିକ ନମ୍ବର ରଖିଥିବା ସମୟାନୁବର୍ତ୍ତୀ ଛାତ୍ର। ସକାଳୁ ସ୍ନାନସାରି ଗୀତାପାଠ, ଯୋଗାସନ କରୁଥିବା, ବିଡି ଓ ଗଞ୍ଜେଇଠାରୁ ବହୁ ଦୂରରେ ନିରାମିଷାହାରୀ ଜଣେ ବ୍ରହ୍ମଚାରୀ ! ବନ୍ଧୁଙ୍କୁ ପଚାରିଲି କେମିତି ଏ ପରିବର୍ତ୍ତନ ହେଲା ? ତାଙ୍କର ଉତ୍ତର, "ହେଡ଼ମାଷ୍ଟର୍‌ଙ୍କ ନିଷ୍ଠା ଯୋଗୁଁ ଏ ପରିବର୍ତ୍ତନ ମୋ ଭିତରେ ହୋଇଛି।" "ଗୋଟିଏ ଲୋକ ମାସମାସ ଧରି, ମୋତେ ଛାତ୍ରାବାସର ନିୟମ ଭଙ୍ଗ କରୁଥିବା ଦୋଷରେ ଦଣ୍ଡ ଦେବାରେ ଯେଉଁ କଷ୍ଟ ସ୍ୱୀକାର କରୁଥିଲେ-ସେଥିପାଇଁ ଏ ପରିବର୍ତ୍ତନ !" ମୁଁ ସ୍ତମ୍ଭୀଭୂତ ହୋଇଯାଇଥିଲି। ସ୍କୁଲର ସମସ୍ତ ଛାତ୍ର ବର୍ତ୍ତମାନ ଧୀରେନ୍ଦ୍ର ନାଥ ପାଢ଼ୀଙ୍କୁ ଦୟା ବା ଅବଜ୍ଞା ଦେଖାଉନାହାନ୍ତି। କେବଳ ସମ୍ମାନ ଦେଖାଉଛନ୍ତି। ବିଦ୍ୟାଳୟର ପ୍ରତ୍ୟେକ ଛାତ୍ରମାନଙ୍କ କାର୍ଯ୍ୟରେ ସେ ନିର୍ଦ୍ୱନ୍ଦରେ ନେତା ଭାବରେ ନିର୍ବାଚିତ ହେଉଛନ୍ତି। ନିରପେକ୍ଷ, ନ୍ୟାୟ,

ସାହସୀ, ଟିକିନିଖି ପଇସାର ହିସାବ ରଖୁଥିବା, ବିଦ୍ୟାଳୟର ସମସ୍ତ ନିୟମ ମାନୁଥିବା ମେଧାବୀ ଛାତ୍ର। ଦିନରାତି ସବୁ ସମୟରେ ପାଠନବୁଝି ପାରୁଥିବା ପିଲାଙ୍କୁ ସାହାଯ୍ୟ କରୁଥିବା ବ୍ଲକ୍ ମନିଟର୍ ! ସମସ୍ତ ଶିକ୍ଷକ ଓ ଗ୍ରାମର ବୟୋଜ୍ୟେଷ୍ଠ ଲୋକଙ୍କ ଆଗ୍ରହ ଓ ସମ୍ମାନର ପାତ୍ର। ଦଶମ ଓ ଏକାଦଶ ଶ୍ରେଣୀରେ ତେଣୁ ତିନିଶହ ଛାତ୍ରଙ୍କ ଜେନେରାଲ ମନିଟର୍ ଥିଲେ ସେ।

ଦଶମ ଓ ଏକାଦଶ ଶ୍ରେଣୀରେ ବନ୍ଧୁ ଧୀରେନ୍ଦ୍ର ଓ ମୁଁ ସେଇ ଗୋଟିଏ କୋଠରୀରେ ପାଖାପାଖି ଖଟ ଉପରେ ବସି ପାଠପଢ଼ିଛୁ। କିଏ କାହାଦ୍ୱାରା ପ୍ରଭାବିତ ହେଉଥିଲୁ ଜାଣିନାହିଁ। କିନ୍ତୁ ତାଙ୍କର ଇଂରାଜୀ ଓ ଗଣିତ ବୁଝିବାର କ୍ଷମତା ମୋଠାରୁ ଯଥେଷ୍ଟ ବେଶୀ ଥିଲା। ମୋର ଓଡ଼ିଆ ସାହିତ୍ୟ, ଚିତ୍ର, ହସ୍ତାକ୍ଷର, ଶାନ୍ତସ୍ୱଭାବ, ବିଜ୍ଞାନଶିକ୍ଷା ପ୍ରତି ଶ୍ରଦ୍ଧା ଓ କେରିକେଚ଼ର କରିବା ଗୁଣ ଯୋଗୁ ମୋତେ ଶିକ୍ଷକ, ଛାତ୍ରଙ୍କ ଛଡ଼ା ବାହାର ଲୋକେ ମଧ୍ୟ ପ୍ରଶଂସା କରୁଥିଲେ। ମୁଁ ସବୁବେଳେ ଶୃଙ୍ଖଳା ଭିତରେ ରହିବାକୁ ଭଲ ପାଉଥିଲି। ବନ୍ଧୁ ଧୀରେନ୍ଦ୍ର ବୋଧହୁଏ ସେଥିପାଇଁ ଅନ୍ତରଂଗ ମନେକରୁଥିଲେ। ଏକାଦଶ ଶ୍ରେଣୀବେଳେ ଖ୍ରୀଷ୍ଟମାସ ଛୁଟିରେ ଆମେ ଘରକୁ ନଯାଇ ମାଟ୍ରିକ ପରୀକ୍ଷାର କୋର୍ସକୁ ରିଭିଜନ୍ କରୁଥିଲୁ। ଏହା ସ୍କୁଲର ଏକ ନିୟମ। ମୋଟେ ୩୦/୩୫ ଜଣ ଛାତ୍ର ଏତେବଡ଼ ହଷ୍ଟେଲର ବିଭିନ୍ନ କୋଣର ସକାଳେ ଓ ସନ୍ଧ୍ୟାରେ ପଢ଼ିବାପାଇଁ ନିରୋଳା ଜାଗା ବାଛି ନେଉଥିଲୁ। ଆମେ ଶ୍ରେଣୀରେ ଦୁଇତିନିଜଣ ବିବାହିତ ୨୦/୨୧ ବର୍ଷର ପିଲାମଧ୍ୟ ପଢୁଥିଲେ। ସମାନେ କେଉଟ, ତେଲେଙ୍ଗୀ, ଖଜୁରିଆ ଜାତିର ଲୋକ। ଗ୍ରାମୀଣ ସମାଜରେ ନିଜ ଜାତି ଭିତରେ କେତେକ ଅଭ୍ୟାସ ସହିତ ଜଡ଼ିତ ଥିଲେ। ଯଥା : ପାରା, ମୂଷା ଓ ପୋଖରୀର ପକ୍ଷୀଙ୍କୁ ମାରି ପୋଡ଼ି ଖାଇବା। ତାଡି ଓ ମହୁଲ ପରି ଜିନିଷ ପିଇବା ଇତ୍ୟାଦି। ଛାତ୍ରାବାସ ପିଲାଙ୍କ ପାଇଁ ଏ ସମସ୍ତ ପୁରାପୁରି ଏକ ଅନୈତିକ, ଅଭଦ୍ର ଓ ଦୋଷାବହ କାର୍ଯ୍ୟ ଭାବରେ ଗଣାଯାଉଥିଲା। ବନ୍ଧୁ ଧୀରେନ୍ଦ୍ର ଓ ମୁଁ କୌଣସି ନିଶାସକ୍ତ ନଥିଲୁ। ପାନମଧ୍ୟ ଖାଉନଥିଲୁ। କିନ୍ତୁ ଗ୍ରାମୀଣ ବନ୍ଧୁମାନେ କିଛି ନିରୋଳା ସମୟରେ ଏହିପରି ମୂଷା ଓ ପାରା ମାଂସ ତଥା ଖଜୁରି ଗଛର ତାଡ଼ି ବିଷୟରେ ଖବରଅନ୍ତର ରଖୁଥିଲେ। ରାତ୍ରିର ଅନ୍ଧକାରରେ ଏ ପୋଡ଼ା ମାଂସ ଓ ତାଡି ଛାତ୍ରାବାସ ଭିତରକୁ ଆସୁଥିଲା। କେତେ ଜଣ ଅନ୍ତେବାସୀ ଆଖାପାଖ ଗାଁର ଏମିତି କେଉଟ, ଖଜୁରିଆ ମାନଙ୍କ ସହିତ ଯୋଗାଯୋଗ ରଖିଥିଲେ। ଏହି ସମୟରେ ମୋର ଦୁଇଜଣ ବୟସ୍କ ସହପାଠୀ ତଳ ବ୍ଲକର ଡ଼ାଇନିଂ ହଲ୍‌ରେ ସନ୍ଧ୍ୟାରୁ ଦୁଇଟି ଚଟେଇ, ଦୁଇଟି ଲଣ୍ଠନ ନେଇ ବିରାଟ ହଲର ଗୋଟିଏ କବାଟ ପାଖରେ ମୁହାଁମୁହିଁ ବସି ବିଦ୍ୟାଭ୍ୟାସ କରୁଥିଲେ। ସେଦିନ ମୋତେ ସାହିତ୍ୟ ବୁଝେଇଦେବା ପାଇଁ ସେମାନେ ନିମନ୍ତ୍ରଣ କଲେ। ଛାତ୍ରାବାସର ଏ ଥିଲା ନିୟମ।

ସନ୍ଧ୍ୟା ଛ'ଟା ସମୟରେ ମୁଁ ସେଠି ଉପସ୍ଥିତ ହେଲି । ସେଠି କେବଳ ଗୌରବ ଥିଲେ କିନ୍ତୁ ସନ୍ୟାସୀ ନଥିଲେ । ଗୌରବ ଜାତିରେ ଖଜୁରିଆ । ସେ ମୋତେ କବିତା ବହି ଖୋଲି ଭାବାର୍ଥ ବୁଝେଇ ଦେବକୁ ଅନୁରୋଧ କଲେ । ସେ କାର୍ଯ୍ୟ ପ୍ରାୟ ଘଣ୍ଟାଏ ମଧ୍ୟରେ ସମାପ୍ତ ହେବାପରେ ସନ୍ୟାସୀ ଉପସ୍ଥିତ ହେଲେ । ସେ ଜାତିରେ କେଉଟ । ପରସ୍ପରର ମୁହଁକୁ ଅନେଇ ଇଙ୍ଗିତରେ ଖୁସିବ୍ୟକ୍ତ କଲେ । ମୁଁ ସେମାନଙ୍କର ହାବଭାବରୁ ଜାଣିଲି ସନ୍ୟାସୀ କୌଣସି ଏକ ପଦାର୍ଥ ନେବାକୁ ଛାତ୍ରାବାସ ବାହାରକୁ ଯାଇଥିଲେ । ଗୌରବ ପଚାରିଲେ "କଣ ମିଳିଲା ?" ସନ୍ୟାସୀଙ୍କ ଉତ୍ତର "ହଁ, ଦୁଇଟା ।" ଗୌରବ ଖୁସିହୋଇ କହିଲେ "ତାହେଲେ ଡେରି କାହିଁକି ? ଦି'ଟା ତାଟିଆ ନେଇ ଆସ ।" ସନ୍ୟାସୀ ମୋ ଆଡ଼କୁ ଅନେଇ ଟିକିଏ ହସିଲେ । ଗୌରବ ମଧ୍ୟ ହସିଲେ । ମୁଁ ସନ୍ଦେହରେ ପଡ଼ି ପଚାରିଲି, "କଣ ହେଲା, କଣ ଆଣିଛ ?" ସନ୍ୟାସୀ ପକେଟରୁ ଦୁଇଟି 'ହେମୋଗ୍ଲୋବିନ' ପରି ଔଷଧ ଟନିକ୍ ବୋତଲ କାଢ଼ି ଗୌରବଙ୍କୁ ଦେଲେ । ମତେ ଦେଖି ହସିଲେ । ମୋର ପ୍ରଶ୍ନ ହେଲା, "ଏଇଟା କଣ ?" ଦୁହେଁ ସମସ୍ୱରରେ ଖୁସିରେ କହିଲେ "ତାଡି" । ମୋର ହଂସା ଉଡିଗଲା । ମୁଁ ସେତେଦିନଯାଏ ପଢ଼ାପଢ଼ିରୁ ଜାଣିଥିଲି ତାଡ଼ି କଣ ? କେବେ ଦେଖିନଥିଲି ବା ଶୁଙ୍ଘି ନଥିଲି । ଗୌରବ ଗୋଟିଏ ବୋତଲର ଠିପି ଖୋଲି ନିଜେ ଶୁଙ୍ଘିଲେ । ମୋତେ ଟିକିଏ ଶୁଙ୍ଘେଇ ଦେଲେ । ଆମ୍ବିଳି ତୋରାଣିର ଉତ୍କଟ ବାସ୍ନାରେ ମୋର ବାନ୍ତି ଉଠି ଆସିଲା । ଗୌରବ ଓ ସନ୍ୟାସୀ ଦୁଇଜଣ ମୋ ସାମନାରେ ବସି, ତାଟିଆରେ ତାଡି ଢାଳି ପକେଟରୁ ଲୁଣ ଲଙ୍କା ପରି ମସଲା ପୁଡିଆଟିଏ ଖୋଲି ପୁନର୍ବାର ମୋତେ ଅନୁରୋଧ କଲେ ପିଇବାକୁ । ମୁଁ କୌତୁହଳ ବଶତଃ ବୋତଲର ଠିପିରୁ ଦୁଇତିନି ଟୋପା ପାପୁଲିରେ ଢାଳି ଶୁଙ୍ଘିଲି । ଜିଭ ଲଗେଇ ଚାଖିଲି । କହିଲି, "ମୋତେ ଏଇଟା ପୋଷେଇବ ନାହିଁ ।" ଏତିକି କହି ମୁଁ ଉପର ବ୍ଲକ୍‌ର ମୋ କୋଠରୀକୁ ଚାଲି ଆସିଲି ।

(୬)

ସେଦିନ ରାତ୍ରଭୋଜନ ପରେ, ରାତିରେ ଖଟରେ ଶୋଇରହି ମୁଁ ବନ୍ଧୁ ଧୀରେନ୍ଦ୍ରଙ୍କୁ ମୋର ସନ୍ଧ୍ୟାର ପ୍ରଥମ ଅନୁଭୂତିର ସମସ୍ତ ବିଷୟ ବର୍ଣ୍ଣନା କରିଥିଲି । ବନ୍ଧୁ ଧୀରେନ୍ଦ୍ର ନିଦୁଆ ଢଙ୍ଗରେ ଚୁପ୍‌ଚାପ୍ ଶୋଇ ମୋ କଥା ଶୁଣିସାରିବା ପରେ ହଠାତ୍ ଖଡ଼ବଡ଼ ହୋଇ ନିଜଖଟରେ ବସିଲେ । କହିଲେ, "ୟୁ ଇଡିଅଟ୍, ମୂର୍ଖ । ତୁ ତାଡ଼ି ପିଉଛୁ । ପୁଣି ହଷ୍ଟେଲ ଭିତରେ । ତୋଠାରୁ ୫/୬ ବର୍ଷର ବଡ଼ ପିଲାଙ୍କ ସଂଗରେ ମିଶି, ତୁ ଯାହା ଇଚ୍ଛା ତା' କରିବୁ ? ଖବରଦାର, ଏସବୁ ମୁଁ ହେଡମାଷ୍ଟରଙ୍କୁ ରିପୋର୍ଟ କରିବି ।" ମୁଁ ଯୁକ୍ତି କଲି, "ଆରେ, ସେମାନେ ମୋତେ ପାଠ ବୁଝେଇଦେବା ପାଇଁ ତାଙ୍କ ଜାଗାକୁ ଡାକିଲେ । ମୁଁ ତ ହଷ୍ଟେଲ ବାହାରକୁ ଯାଇନାହିଁ । ତା'ପରେ ସେମାନେ କେଉଁଠାରୁ ତାଡ଼ି ଆଣିଲେ ମୁଁ ଜାଣିନାହିଁ । ମୋ

ଆଗରେ ଠିପି ଖୋଲିବାରୁ ମୁଁ ଶୁଙ୍ଘିଲି । ପାପୁଲିରେ ଆଣି ଟିକିଏ ଚାଖିଲି । ମୁଁ ତ ତାଡ଼ି ପିଇନାହିଁ ।'' ଜେନେରାଲ ମନିଟର ଧୀରେନ୍ଦ୍ର ରାଗିଯାଇ କହିଲେ, ''ଖବରଦାର, ଆଉ ଦିନେ କାହାଠାରୁ ବା ତୋର ସେ ସାଙ୍ଗମାନଙ୍କ ପାଖରୁ ତୋ ତାଡ଼ି ପିଇବାକଥା ଶୁଣିଲେ ସିଧା ହେଡ଼ମାଷ୍ଟ୍ରେଙ୍କୁ ରିପୋର୍ଟ୍ କରିଦେବି ।'' ମୁଁ ରାଗିଯାଇ କହିଲି, ''ଭାରି ରିପୋର୍ଟ କରିବା ବାଲା । ଆରେ ମୁଁ କଣ ହେଡ଼ମାଷ୍ଟ୍ରଙ୍କୁ କହିପାରିବିନି ମୋ ଅଭିଜ୍ଞତା ବିଷୟରେ । ମୁଁ କେବେ ତାଡ଼ି ଦେଖିନଥିଲି । ତାଡ଼ିରେ କେତେ ଆଲ୍‌କହଲ କଣ୍ଟେଣ୍ଟ ଅଛି ଜାଣିବାପାଇଁ କେବଳ ଜିଭ ଅଗରେ ଲଗେଇ ଚାଖିଛି ମାତ୍ର । ଆରେ, ତମର ଏଠି ତ ସାଏନ୍‌ସ ଲ୍ୟାବ ନାହିଁ । ତମେ କଣ ଜାଣିବ ଆଲକ୍‌ହଲ କଣ ? ଆରେ, ବଡ଼ବଡ଼ ସ୍କୁଲରେ ସାର୍‌ମାନେ ଛାତ୍ରମାନଙ୍କୁ ଆଲକ୍‌ହଲ କ୍ଲାସରେ ଚାଖିବାକୁ ଦିଅନ୍ତି ।'' ଧୀରେନ୍ଦ୍ର ଆଉ ସମ୍ଭାଳି ପାରିଲେ ନାହିଁ । ବସିବା ଜାଗାରୁ ଉଠିପଡ଼ି କହିଲେ, ''ଶଳା - ମୋତେ ଶୁଣୋଉଚୁ ତୋର ବଡ଼ବଡ଼ ସ୍କୁଲ କଥା । ଦେଖ୍, ମୁଁ କଣ କରୁଛି ।'' ସେ ଦିନରାତିରେ ସେତିକିରେ ଯବନିକା ପତନ ହେଲା । ତା' ପରଦିନ ସକାଳୁ ଆମେ ସେସବୁ କଥା ଭୁଲିଯାଇଥିଲୁ । କଥାଟା ତା'ର ଓ ମୋ ଭିତରେ ଗୁପ୍ତ ରହିଲା ।

ଗ୍ରୀଷ୍ମମାସ ଛୁଟିପରେ ବିଦ୍ୟାଳୟ ଖୋଲିଲା । ନୂଆବର୍ଷରେ ଅନ୍ତେବାସୀ ସମସ୍ତ ପିଲା ପହଞ୍ଚିଗଲେ । ପ୍ରାୟ ଦିନେ ଦୁଇଦିନ ପରେ, ପ୍ରତିଷ୍ଠାତା ବ୍ରଜମୋହନ ପଣ୍ଡା ସ୍କୁଲ ଚାଲିଥିବା ସମୟରେ ଚାଲିଚାଲି ସ୍କୁଲ ଗେଟରେ ଭିତରକୁ ପଶିଲେ । କ୍ୱଚିତ୍ ସେ ସ୍କୁଲ ପରିଦର୍ଶନରେ ଆସନ୍ତି । ପିଲାମାନେ ସ୍କୁଲରେ ତାଙ୍କର ଉପସ୍ଥିତିବେଳେ ସଂପୂର୍ଣ୍ଣ ନୀରବତା ପାଳନ କରିଥାନ୍ତି । ସେ ସିଧା ହେଡ଼ମାଷ୍ଟ୍ରଙ୍କ କୋଠରୀକୁ ପଶିଗଲେ । କିଛି ସମୟପରେ ଜେନେରାଲ ମନିଟର ଧୀରେନ୍ଦ୍ରନାଥ ପାଡ଼ୀଙ୍କୁ ତଲବ କରାଗଲା । ପ୍ରାୟ ଅଧଘଣ୍ଟା ଯାଏ ପୁଣି ସଂପୂର୍ଣ୍ଣ ନୀରବତା । ଘଣ୍ଟାଏ ପରେ ପ୍ରତିଷ୍ଠାତା ବ୍ରଜମୋହନ ବାବୁ ପ୍ରଥମେ ଏକା ହେଡ଼ମାଷ୍ଟ୍ରଙ୍କ କୋଠରୀରୁ ବାହାରି ଚାଲିଚାଲି, ଗେଟ ପାରିହୋଇ ଗାଁ ରାସ୍ତା ଧରିଲେ । ସ୍କୁଲର ଛୁଟିଘଣ୍ଟି ବାଜିବା ଯାଏ କିନ୍ତୁ ଜେନେରାଲ ମନିଟର ହେଡ଼ମାଷ୍ଟ୍ରଙ୍କ ସହିତ ମନ୍ତ୍ରଣା କରୁଥିଲେ । ସ୍କୁଲ ଛୁଟିପରେ ସବୁପିଲାଙ୍କ ଗହଳି ଭିତରେ, ମୁଁ ବନ୍ଧୁ ଧୀରେନ୍ଦ୍ରଙ୍କ ଅପେକ୍ଷାରେ ଆମ କୋଠରୀରେ ବସି ରହିଲି । କିଛି ସମୟପରେ ସେ ଆସିଲେ । ମୋତେ ଦେଖି ଟିକିଏ ତାଚ୍ଛଲ୍ୟହସ ହସିଲେ । ତା'ପରେ ଛାତ୍ରାବାସ ବାହାରକୁ ଆମେ ବୁଲିବାକୁ ଚାଲିଗଲୁ । ବାଟରେ ମୁଢ଼ି ଓ ଚିନାବାଦାମ କିଣି ଖାଇଖାଇ ଖେଳପଡ଼ିଆ ଆଡ଼କୁ ଗଲୁ । ସେ ବେଶୀ କଥାବାର୍ତ୍ତା କରୁନଥିଲେ । ବେଳେବେଳେ ଏକ ସୂକ୍ଷ୍ମ ହାସ୍ୟରେଖା ତାଙ୍କ ମୁହଁରେ ପ୍ରତିଫଳିତ ହେଉଥିଲା । ମୁଁ ଏହାର ରହସ୍ୟ ଉଦ୍‌ଘାଟନ କରିବାକୁ ଚାହିଁଲେ ମଧ୍ୟ ସେ କିଛି କହିଲେ ନାହିଁ । ସେଦିନ ସନ୍ଧ୍ୟାରେ ମୁଁ ଏକା କୋଠରୀରେ ରହିଲି । ସେ ତାଙ୍କର ମନିଟରିଂ କାର୍ଯ୍ୟପାଇଁ ରାତ୍ରଭୋଜନ ସମୟଯାଏ କୋଠରୀକୁ ଫେରିଲେ ନାହିଁ । ରାତିରେ ଲଣ୍ଠନ

ଲିଭେଇ ସାରି ଶୋଇବାବେଳେ ସେ କହିଲେ, "ଆଜି ବ୍ରଜମୋହନ ବାବୁ କାହିଁକି ଆସିଥିଲେ ଜାଣିଛୁ ?" ମୁଁ କହିଲି, "ମୋର କଣ ଦରକାର ?" ତାଙ୍କର ତାଚ୍ଛଲ୍ୟପୂର୍ଣ୍ଣ ଉତ୍ତର ହେଲା, "ଦରକାର । ତୋର ଜାଣିବା ଦରକାର । ସେ ଅଭିଯୋଗ ନେଇ ଆସିଥିଲେ । ଛାତ୍ରାବାସର ବହୁତ ପିଲା ତାଡ଼ି ପିଇବାରେ ଅଭ୍ୟସ୍ତ ଅଛନ୍ତି । ସେମାନେ ସବୁ କିଏ, ତାହାର ତଦନ୍ତ କରିବାକୁ ସେ ହେଡ଼ମାଷ୍ଟରଙ୍କୁ କହିବାକୁ ଆସିଥିଲେ। ଆଉ ସେ ଦାୟିତ୍ୱ ମୋତେ ଦିଆଯାଇଛି । ମୁଁ ଦିନେ ଦୁଇଦିନ ଭିତରେ ସବୁ ଅନ୍ତେବାସୀ ପିଲାଙ୍କ ନାଁ ଯୋଗାଡ଼ କରି ସାର୍‌ଙ୍କୁ ଦେବି ।" ମୁଁ ଚୁପ୍ ହୋଇ ରହିଲି । କିଛି ସମୟ ପରେ ସେ କହିଲେ, "ଏଯାଏଁ, ମୁଁ କେବଳ ତୋ ମୁହଁରୁ କନଫେସନ୍ ଶୁଣିଛି । ବାକି ସମସ୍ତଙ୍କର ଇନଭଲଭ୍‌ମେଣ୍ଟ ଜାଣିବା ପରେ ନାମ ତାଲିକା ତିଆରି କରିବି ।" ମୁଁ ପୁଣିଥରେ ଯୋଡ଼ହାତ କହିଲି, "ସେଟା ମୋର କନଫେସନ୍ ନୁହେଁ।" "ତୋର କନଫେସନ୍ ନହେଲେ କଣ ହେବ ? ଆମ କ୍ଲାସର ଆଠଜଣ ଏଥିରେ ଇନ୍‌ଭଲଭ୍‌ଡ । ଗୌରବ ଓ ସନ୍ୟାସୀ ମୋତେ ସେମାନଙ୍କ ନାଁ ଦେଇ ସାରିଛନ୍ତି । ପ୍ରାୟ ମାସେ ହେବ ବିଭିନ୍ନ ସମୟରେ ଅଷ୍ଟମ, ନବମ, ଦଶମ ଶ୍ରେଣୀର ପିଲା ମଧ୍ୟ ତାଡି ପିଆରେ ସଂପୃକ୍ତ । କାଲି ସନ୍ଧ୍ୟାସୁଦ୍ଧା ମୋତେ ସମସ୍ତଙ୍କ ନାଁ ମିଳିଯିବ ।" ମୋ ମୁଣ୍ଡରୁ ପିଠିଦେଇ ଅଣ୍ଟାଯାଏ ଗୋଟାଏ ଶୀତଳ ଶିହରଣ ଖେଳିଗଲା । ମୁଁ ଖଟରେ ଉଠିବସିଲି । ମୁଁ କହଲି, "ଦେଖ, ମୋତେ ତୁ ସେମାନଙ୍କ ଭିତରେ ପୁରାନା । ମୁଁ ସଂପୂର୍ଣ୍ଣ ନିର୍ଦ୍ଦୋଷ ।" ଜେନେରାଲ ମନିଟିର ଗୋଟାଏ କ୍ରୁର ହସ ହସି କହିଲେ, "ହେଡମାଷ୍ଟରଙ୍କ ଆଗରେ ତୁ ତୋର ନିର୍ଦ୍ଦୋଷପଣର ପ୍ରମାଣ ଦେବୁ ।" ମୁଁ ଚୁପ୍ ରହିଲି ।

ତହିଁ ଆରଦିନ ଦିନ ଦଶଟା ସୁଦ୍ଧା, ଧୀରେ ଧୀରେ ଛାତ୍ରାବାସର ପ୍ରତ୍ୟେକ କୋଠରୀରେ ଗୋଟିଏ ଚାପା ଗୁଞ୍ଜରଣ । ଜେନେରାଲ ମନିଟର ବୁଲିବୁଲି ପ୍ରତ୍ୟେକ ଶ୍ରେଣୀର ପିଲାଙ୍କ ନାଁକୁ ଓ ସେମାନଙ୍କ ଗତିବିଧି ସବୁକୁ କନଫର୍ମ୍ କରିନେଲା ସାଢ଼େଦଶଟା ବେଳେ ଆମ ଏକାଦଶ ଶ୍ରେଣୀରେ ମୁଁ ବସିଥିବା ଜାଗାରେ ଆସି ଗୋଟିଏ ଚାଳିଶ ଜଣିଆ ନାମ ତାଲିକା ମୋ ଆଗରେ ଆଣି ଦେଖାଇଲେ । କହିଲେ "ତୋ ନାଁଟା ଏଥିରେ ଲେଖିନାହିଁ । ତୁ ପରା କହୁଛୁ ତୁ ନିର୍ଦ୍ଦୋଷ । ତେବେ ଗୌରବ ଓ ସନ୍ୟାସୀ ତୋ ନାଁ କହିଲେ କାହିଁକି ?" ମୋର ସେଇ ଏକାକିଦ୍, "ମୁଁ ତାଡ଼ି ପିଇନାହିଁ । ଜିଭରେ ଟିକିଏ ଚାଖିଛି କେବଳ ।" ଜେନେରାଲ ମନିଟର କହିଲେ, "ତା' ମାନେ ତୋ ନାଁଟା ଦେଲେ ତୁ ହେଡ଼ମାଷ୍ଟରଙ୍କୁ ବୁଝେଇ ପାରିବୁ ? ମୁଁ ଜିଦ୍‌ରେ କହିଲି- ହଁ ! ବନ୍ଧୁ ଧୀରେନ୍ଦ୍ର ତା'ପରେ ମୋ ପାଖକୁ ଆସିଲେ ନାହିଁ । କ୍ଲାସ ଚାଲିଥାଏ । ସ୍କୁଲ ଛୁଟି ହେବା ପୂର୍ବରୁ ସେ ମୋତେ ପ୍ରାୟ ଚାଳିଶଜଣ ଅନ୍ତେବାସୀଙ୍କ ଶ୍ରେଣୀଓ୍ୱାରି ନାଁ ଲେଖା କାଗଜ ଖଣ୍ଡେ ଦେଖାଇଲେ। ସବାଶେଷରେ ଏକାଦଶ ଶ୍ରେଣୀର ନାମ ତାଲିକାରେ ମୋ ନାଁଟି ଲେଖିଲେ। ତାଲିକାଟି ହେଡ଼ମାଷ୍ଟରଙ୍କ ଅଫିସରେ ଦାଖଲ

ହେଲା । ଏ ବିଷୟ ବୋଧହୁଏ ବନ୍ଧୁ ଧୀରେନ୍ଦ୍ର ଓ ମୋ ବ୍ୟତୀତ ସ୍କୁଲର ଅନ୍ୟ କୌଣସି ଛାତ୍ର ଜାଣିନଥିଲେ । ତହିଁ ଆରଦିନ ଶନିବାର । ସକାଳ ପଢ଼ା । ପ୍ରାର୍ଥନା ପରେ ସବୁ ପିଲା ଯେ ଯାହାର ଶ୍ରେଣୀ ଭିତରେ ବସି ରହିଲେ । ଶିକ୍ଷକମାନେ ଆସି ପଢାଇବା କାର୍ଯ୍ୟ ଆରମ୍ଭ କଲେ । ପ୍ରାୟ ନଅଟା ବେଳେ ସ୍କୁଲ ପିଅନ ନୋଟିସ୍ ଖାତାଧରି ସବୁ ଶ୍ରେଣୀରେ ଶିକ୍ଷକମାନଙ୍କ ଜରିଆରେ ସମସ୍ତ ପିଲାମାନଙ୍କୁ କେତେକ ଅନ୍ତେବାସୀ କିପରି ସ୍କୁଲ ଓ ଛାତ୍ରାବାସର ନିୟମ ଭଙ୍ଗକରି, ଦଳଗଠନ କରି, ଆଖପାଖ ଗାଁରୁ ନିଶାଦ୍ରବ୍ୟ ଆଣି ବିଦ୍ୟାଳୟର ସମ୍ମାନରେ ଆଞ୍ଚ ଆଣିଛନ୍ତି ତାହାର ବର୍ଣ୍ଣନା ଥିଲା । ଶେଷରେ ଏ ଅନ୍ୟାୟ ଓ ଅଶିକ୍ଷିତ ବ୍ୟବହାର ସେମାନଙ୍କୁ ସମସ୍ତଙ୍କୁ ଦୋଷୀ ସାବ୍ୟସ୍ତ କରୁଛି । ତେଣୁ ସେମାନେ ଦଣ୍ଡ ପାଇବାପାଇଁ ଉପଯୁକ୍ତ । ଏ ଦଣ୍ଡ ହେଡ଼ମାଷ୍ଟ୍ରେ ନିଜେ ପ୍ରତ୍ୟେକ ପିଲାଙ୍କୁ ନିଜନିଜ କ୍ଲାସରେ ଦେବେ । ସେଥିପାଇଁ ଶନିବାର ଦିନ ବାରଟା ପର୍ଯ୍ୟନ୍ତ ପ୍ରତ୍ୟେକ ଛାତ୍ର ଯେ ଯାହାର ଶ୍ରେଣୀରେ ବସିରହିବେ । ସେମାନଙ୍କୁ ବାହାରକୁ ଆସିବାକୁ ଦିଆଯିବ ନାହିଁ । ପ୍ରତ୍ୟେକ ପିରିଅଡ଼ ଘଣ୍ଟା ବାଜୁଥିବ । ସମସ୍ତ ପିଲା ଦଣ୍ଡଭୋଗ କରି ନସାରିବା ପର୍ଯ୍ୟନ୍ତ ସ୍କୁଲର ଛୁଟିଘଣ୍ଟା ବାଜିବ ନାହିଁ । ପ୍ରତ୍ୟେକ ଶିକ୍ଷକ ସବୁସମୟରେ କ୍ଲାସରେ ଉପସ୍ଥିତ ରହିବେ । ଏହାର ଏକକିତା ନକଲ ବିଦ୍ୟାଳୟର ମୁଖ୍ୟ ନୋଟିସ୍ ବୋର୍ଡରେ ମାରି ଦିଆଗଲା ।

(୭)

ନଅଟାରୁ ଦଶଟା ପର୍ଯ୍ୟନ୍ତ ସ୍କୁଲରେ ନୀରବତା ଘୋଟିଗଲା । ଶିକ୍ଷକମାନେ ଧୀର ଗଳାରେ ପଢ଼ାଉଥାଆନ୍ତି । ପ୍ରାୟ ଦଶଟା ସମୟରେ ପିଅନ ହାତରେ ପ୍ରାୟ ପନ୍ଦର/କୋଡ଼ିଏଟି କନିଅର ଛାଟ । ହେଡ଼ମାଷ୍ଟ୍ରଙ୍କ ଅଫିସ ଆଗରୁ ପିଅନ କନିଅର ଡାଳକାଟି ଛାଞ୍ଚି କୋଳରେ ଛୋଟଛୁଆଙ୍କୁ ଧରିଲାପରି ଧରି ସାରଙ୍କ ପଛେ ପଛେ ଚାଲିଲେ । ହେଡ଼ମାଷ୍ଟ୍ରେ ପ୍ରଥମେ ଅଷ୍ଟମ ଶ୍ରେଣୀରେ ପଶିଲେ । ସେଠି ପ୍ରାୟ ଆଠଜଣ ଛାତ୍ର ଦୋଷୀ ଥିଲେ । ନବମ ଶ୍ରେଣୀରେ ଏଗାର ଜଣ । ଦଶମରେ ତେରଜଣ ଓ ଏକାଦଶରେ ନଅଜଣ । ଗୋଟିଏ ଗୋଟିଏ ପିଲାଙ୍କ ନାମ ଶ୍ରେଣୀ ଶିକ୍ଷକ ଉଚ୍ଚାରଣ କରିବା ସଂଗେ ସଂଗେ ଛାତ୍ରଙ୍କୁ ପଛ କବାଟ ବାଟେ ଶିକ୍ଷକ ପଶିବା କବାଟ ଦେଇ ଶ୍ରେଣୀଗୃହର ଟେବୁଲ ପାଖକୁ ଯିବାକୁ ପଡୁଥିଲା । ଦୁଇଚାରିଧାଡ଼ି ଭର୍ତ୍ସନା ପରେ ହାତରେ ଧରିଥିବା ଛାଟରେ ତଳଗୋଡ଼ରୁ ପିଠିପର୍ଯ୍ୟନ୍ତ କ୍ଷିପ୍ରଗତିରେ ହେଡ଼ମାଷ୍ଟ୍ରେ ତାଙ୍କର ସମସ୍ତ ଶକ୍ତି ଲଗାଇ ପିଟିଦେଇ ଯାଉଥିଲେ । ପିଲାଙ୍କ କାକୁତି ମିନତି, ଛଟପଟ ହେବାର କୌଣସି ପ୍ରଭାବ ତାଙ୍କ ଉପରେ ପଡୁନଥିଲା । ଶ୍ରେଣୀର ସମସ୍ତଛାତ୍ର ଯେ ଯାହା ସ୍ଥାନରେ ବସି ଏ ଦୃଶ୍ୟ ଦେଖୁଥିଲେ । ସବୁ ପିଲା ଦଣ୍ଡଭୋଗ କରିସାରିଲା ପରେ, ସଂପୂର୍ଣ୍ଣ ହାଲିଆ ହୋଇ ପଡିଥିବା ହେଡ଼ମାଷ୍ଟ୍ରଙ୍କ ଆଶୀଷବାଣୀ ଥିଲା, ‘ଆମେ ନକହିବା ପର୍ଯ୍ୟନ୍ତ କେହି କ୍ଲାସରୁ ବାହାରକୁ ଯିବେ ନାହିଁ । ଆମେ ତାଙ୍କ

ମାଡ଼ଜନିତ କ୍ଷତର ଚିକିତ୍ସା କରାଇବୁ ।'' ଅଷ୍ଟମ ପରେ ନବମ । ସ୍ପଷ୍ଟ ଭାବରେ ନହେଲେ ମଧ୍ୟ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଏ ବିକଳ ପ୍ରାର୍ଥନା, ଆର୍ତ୍ତନାଦ ଓ ବେତ୍ରାଘାତର ଶବ୍ଦ ପହଞ୍ଚିପାରୁଥିଲା । ଆମେ ଶ୍ରେଣୀ ଭିତରେ କେବଳ ଚୁପହୋଇ ବସି ରହିଥିଲୁ । ସଂସ୍କୃତ ସାର କାଳିଦାସଙ୍କ ଶ୍ଳୋକ ବୁଝାଉଥିଲେ । ମୋ ମନଭିତରେ ମୁଁ କଳ୍ପନା କରୁଥିଲି, ମୁଁ କିପରି କବାଟପାଖରୁ ମୋର ନିର୍ଦ୍ଦୋଷପଣ ବିଷୟରେ ହେଡ଼ମାଷ୍ଟରଙ୍କୁ କହିବି । କନଅର ଛାଟର ମାଡ଼ଶବ୍ଦ ନିକଟତର ହେଉଥାଏ । ଚିତ୍କାର, ବିକଳପ୍ରାର୍ଥନାର ପ୍ରକାର କମ ବୟସର ଛାତ୍ର ଓ ବୟସ୍କ ଛାତ୍ରଙ୍କ ମଧ୍ୟରେ ପାର୍ଥକ୍ୟ ଜଣାପଡୁଥିଲା । ବଡ଼ମାନେ ପ୍ରାୟ କିଛି ଉଚ୍ଚାରଣ କରୁନଥିଲେ । ଛୋଟମାନେ ବେଶୀ ଚିତ୍କାର କରୁଥିଲେ । କିନ୍ତୁ ସବୁଠାରୁ ବେଶୀ ଜଣାପଡୁଥିଲା ହେଡ଼ମାଷ୍ଟ୍ରେ ସେନଗୁପ୍ତ ବାବୁଙ୍କର ଅନ୍ତରର କୋହ ଓ କାଠୁରିଆ କାଠହାଣିବା ବେଳେ ଯେଉଁ ଅସ୍ପଷ୍ଟ 'ସିଃ' ଓ 'ହୁଃ' ଶବ୍ଦ । ସେ ସଂପୂର୍ଣ୍ଣ ହାଲିଆ ହୋଇ ସାରିଥିଲେ । ଆମେ ତାଙ୍କୁ ଦେଖି ପାରୁନଥିଲୁ । ମୁଁ ମୁଣ୍ଡପୋତି ଘଣ୍ଟାଏ କାଳ କ୍ଲାସର ଶେଷ ଧାଡ଼ିରେ ମୋ ଡ଼େସ୍କ୍‌ରେ ବସିରହିଲି ।

ଆମ ଶ୍ରେଣୀକୁ ସାର୍ ପଶିବା ବେଳେ ଜଣା ପଡୁଥିଲେ ସଂପୂର୍ଣ୍ଣ କ୍ଳାନ୍ତ ଓ ନିଷ୍ପ୍ରଭ । ମୁଣ୍ଡର ବାଳ, ମୁଣ୍ଡ, ଦେହ, କପାଳ, ଧଳାପଞ୍ଜାବି ସବୁ ଝାଳରେ ବୁଡ଼ି ଓଦା ହେଇଯାଇଛି । ହାତର କନିଅର ଛାଟ ଖଣ୍ଡଖଣ୍ଡ ହୋଇ ଫାଟିଗଲେ ସେ ବାରଣ୍ଡାତଳକୁ ଫୋପାଡ଼ି ଦେଇ ନୂଆଛାଟ ପାଇଁ ଗୋବିନ୍ଦଙ୍କ ଆଡ଼କୁ ହାତ ବଢ଼ାଇ ଦେଉଥିଲେ । ତାଙ୍କ ମୁଣ୍ଡଟେକି ରଖିବାର ଶକ୍ତି ନଥିଲା । କିନ୍ତୁ ଶ୍ରେଣୀ ଶିକ୍ଷକ ପିଲାର ନାଁଟି ପଢିବା ପରେ ତାଙ୍କ ଆଖିରେ ଜଳିଉଠୁଥିଲା ଗୋଟିଏ ଜ୍ୟୋତି । ଅତି ତୀକ୍ଷ୍ଣ ଭାବରେ ସେ ପିଲାକୁ ଦେଖୁଥିଲେ । ତାକୁ ଏକ ମର୍ମଭେଦୀ ଭର୍ତ୍ସନାର ଦୁଇଚାରି ଧାଡ଼ି କଥା କହିବା ସଂଗେ ସଂଗେ ଦୁଇହାତରେ ମୁଠେଇ ଧରିଥିବା ଛାଟଟିକୁ ସେ କୁରାଢୀ ସଦୃଶ ପ୍ରହାର କରୁଥିଲେ ପିଲାର ପିଠିପଟେ ଓ ପଛପଟେ । ଯେ ହାତ ବଢ଼େଇ ମାଡ଼ରୁ ବଞ୍ଚିବାକୁ ଚାହୁଁଥିଲା ତା'ର ବେଶୀ କ୍ଷତି ହେଉଥିଲା । ଆମ ଶ୍ରେଣୀର ଆଠଜଣଙ୍କ ମାଡ଼ରେ ଅନେକ ପ୍ରଭେଦ ଥିଲା । ବୟସ୍କ ବିବାହିତ ଛାତ୍ରଙ୍କୁ ତିରିଶ ଚାଳିଶ ଛାଟ ପଡ଼ିବା ତୁଳନାରେ ଅନ୍ୟମାନଙ୍କୁ ଆଠ/ଦଶ ଛାଟ ମିଳୁଥିଲା । ସାରଙ୍କ ଭର୍ତ୍ସନା ଅନେକ ପ୍ରକାରର । ପିଲାର ମୁହଁକୁ ଦେଖିବା ସଂଗେ କାହାକୁ କହୁଥିଲେ- ''ତୁମେ ପରା ବାହାହେଇ ବାପ ହେଲଣି ।'' ''ତୁମେ ପରା ବେଷ୍ଟ୍ ଫୁଟବଲ ପ୍ଲେୟାର୍ ।'' ''ତୁମ ବାପା କଣ ଏଥିପାଇଁ ଲରମ୍ବା ସ୍କୁଲରେ ନାଁ ଲେଖାଇଛନ୍ତି ।'' ''ତୁମେ ପରା ଘରର ବଡ଼ପୁଅ ।'' ''ତମର ଚାରିଟା ଭଉଣୀ, ତମେ ଗୋଟିଏ ଭାଇ ।'' ଇତ୍ୟାଦି । ଏ ପ୍ରଶ୍ନମାନଙ୍କର ଉତ୍ତର ଦେବା ପୂର୍ବରୁ ସେ ହାତ ଚଲାଇ ଦେଉଥିଲେ । ସାତଜଣ ସହପାଠୀଙ୍କ ମାଡ଼ ପରେ, ମୋର ନାମ ଉଚ୍ଚାରଣ ହେଲା । ମୁଁ ପଛକବାଟର ସାମନା କବାଟ ପାଖରେ ପହଞ୍ଚିବା କ୍ଷଣି, ମୋ

ପାଇଁ ପ୍ରଶ୍ନ ଥିଲା, "ତୁମେ ପରା ବ୍ରାହ୍ମଣ ପିଲା ? ଏପରି ଚଣ୍ଡାଳପରି କାମ କଲ କାହିଁକି ?" ତା'ପରେ ଛାଟର ଶବ୍ଦ। ବୋଧହୁଏ ଆଠଥର ସେ ମୋ ଗୋଡ଼ ଓ ପିଠିକୁ ଲକ୍ଷ୍ୟକରି ଦୁଇହାତରେ ଛାଟଚାଳନା କରିଛନ୍ତି।" ତା'ପରେ ଝଡ଼ର ଅବସାନ।

କ୍ଳାନ୍ତ, ଦୁଃଖିତ ହେଡ୍‌ମାଷ୍ଟ୍ରେ ଆମର ଶ୍ରେଣୀ ଟେବୁଲ ଉପରେ ଦୁଇହାତ ରଖି ଥକା ମାରିଲେ। ଦୁଇହାତରେ ମୁଣ୍ଡବାଳକୁ ସାଉଁଳି ନେଲେ। ହାତର ବାଡ଼ିଟିକୁ ଫୋପାଡ଼ିଦେଇ ପିଅନକୁ ଚାଲିଯିବାକୁ କହିଲେ। ତା'ପରେ କହିଲେ, "ଆମକୁ ବହୁତ ଲଜ୍ଜା ଲାଗୁଛି। ଆମ ସ୍କୁଲର ପିଲାମାନେ ଏତେ ତଳକୁ ଖସିଯିବେ, ଆମର ଧାରଣା ନଥିଲା। ସେ ଯାହାହେଉ, ଯେଉଁମାନେ ଦଣ୍ଡପାଇଁ ଖଣ୍ଡିଆ ଖାବରା ହେଇଛନ୍ତି, ପିଠି ଫାଟିଯାଇ ରକ୍ତ ବାହାରୁଛି, ସେମାନେ ଆମ ଦାଣ୍ଡଘରକୁ ଚାଲନ୍ତୁ। ଆମେ ସେମାନଙ୍କୁ ଗରମ ପାଣି ସେକ ଦେଇ, ଟିଙ୍କଚର୍ ଆଓଡ଼ିନ୍ ଲଗେଇ ଦେବୁ। ମନେ ରଖ, ଏମିତି ଅନ୍ୟାୟ କାମ ଆଉ କେବେ କରିବ ନାହିଁ। ନିଜର ସମ୍ମାନ ହରାଇବ ନାହିଁ। ବାପାମା'ଙ୍କ ମନରେ କଷ୍ଟଦେବ ନାହିଁ।" ଏତିକି କହି ସେ ଧୀରେ ଧୀରେ ଆମ ଶ୍ରେଣୀରୁ ବାହାରିଗଲେ। ପ୍ରାୟ ଦଶମିନିଟ୍ ପରେ ସ୍କୁଲର ଛୁଟି ଘଣ୍ଟ ବାଜିଲା। କ୍ଲାସର ସାର୍‌ମାନେ ଚାଲିଗଲେ। ମାଡ଼ଖିଆ ପିଲାଙ୍କୁ ଶ୍ରେଣୀର ପିଲାମାନେ ଘେରିଯାଇ କେଉଁଠି କେମିତି ଆଘାତ ଲାଗିଛି, ସେ ବିଷୟ ସମବେଦନା ଜଣାଇଲେ। ମୁଁ କିନ୍ତୁ ଗମ୍ଭୀର ହୋଇ ଶ୍ରେଣୀରୁ ବାହାରିଯାଇ ମୋ କୋଠରୀରେ ବସି ରହିଲି। ବନ୍ଧୁ ଧୀରେନ୍ଦ୍ର ଆସି ମୋ ପାଖରେ ବସିଲେ। ଆଶ୍ଚର୍ଯ୍ୟର କଥା ମୋତେ ତାଙ୍କ ଉପରେ ରାଗ ଲାଗିଲା ନାହିଁ। ମୋର ଏକମାତ୍ର ଦୁଃଖ ଥିଲା ଲରମ୍ବା ସ୍କୁଲରେ ଚାରିବର୍ଷ ରହିବା ସମୟ ଭିତରେ ମୋର ଏକାଦଶ ଶ୍ରେଣୀର ଶେଷଭାଗରେ ଏ ପ୍ରଥମ ଓ ଶେଷ ଦଣ୍ଡଭୋଗ କରିବାକୁ ମୋତେ ପଡ଼ିଲା। ଏହା ସତେ କଣ ଗୋଟାଏ ଦଣ୍ଡ ଥିଲା- ନା ଶିକ୍ଷା !

ଅନେକ ମାଡ଼ଖିଆ ପିଲା, ହେଡ୍‌ମାଷ୍ଟ୍ରଙ୍କ ଦାଣ୍ଡଘରେ ଯାଇ ପିଠି, ହାତ, ଗୋଡ଼ ଫାଟିଯାଇ ରକ୍ତବୋହିବାର ଚିକିତ୍ସା ହେଡ୍‌ମାଷ୍ଟ୍ରେ ଓ ତାଙ୍କର ଧର୍ମପତ୍ନୀଙ୍କ ହାତରେ କରାଇ ନେଲେ। ମୁଁ ସେମିତି କ୍ଷତାକ୍ତ ରକ୍ତାକ୍ତ ହୋଇନଥିଲି। ଅନେକ ସମୟପରେ ବନ୍ଧୁ ଧୀରେନ୍ଦ୍ର ପଚାରିଲେ, "ତୁ ମୋତେ ତୋ ନାଁ ଦେବାପାଇଁ ବାଧ୍ୟ କାହିଁକି କଲୁ ?" ମୋର ଉତ୍ତର ଥିଲା, "ମୁଁ ଏବେବି ପ୍ରଥମରୁ ଯାହା କହିଥିଲି, ତାହାହିଁ କହିବି। ମୁଁ ତାଡ଼ି ପିଇନାହିଁ। ତୋ ତୋର କର୍ତ୍ତବ୍ୟ କଲୁ। ମୁଁ ମୋର କର୍ତ୍ତବ୍ୟ କଲି। ହେଡ୍‌ମାଷ୍ଟ୍ରେ ମଧ୍ୟ ତାଙ୍କର କର୍ତ୍ତବ୍ୟ କଲେ।" ଏକଥା ମୋର ସାରାଜୀବନର ଗତିପଥକୁ ବଦଳାଇ ଦେଲା। ଚାରିମାସପରେ ଆମେ ସମସ୍ତେ ଲରମ୍ବା ସ୍କୁଲର ଛାତ୍ରାବାସରୁ ବିଦାୟ ନେଲୁ। ଯେ ଯାହାର ଭାଗ୍ୟକୁ ଆଦରି ପାଠ ପଢ଼ିଲୁ, ଚାକିରୀ କଲୁ, ବେଉସା କଲୁ। ସମସ୍ତ ଛାତ୍ରଙ୍କ ଭିତରୁ ବୋଧହୁଏ ମୋ ଜୀବନରେ ସବୁଠାରୁ ବେଶୀ ବିଡ଼ମ୍ବନା ଲେଖାଥିଲା। ଆଜିକୁ ପ୍ରାୟ ଷାଠିଏ ବର୍ଷର ମୋର ବ୍ୟକ୍ତିଗତ

ସଂଘର୍ଷମୟ ଜୀବନ ଭିତରେ ମୁଁ ସାର୍‌ଙ୍କଠାରୁ ଯେଉଁ କର୍ତ୍ତବ୍ୟକୁ ଆପଣେଇନେବା ଶିଖିଲି ତାହାହିଁ ମୋତେ ସମାଜରେ ପ୍ରତିଷ୍ଠା ଦେଇଛି । ମୁଁ ସାରଙ୍କ ପରି କେବେ ହୋଇପାରିବି ନାହିଁ । କିନ୍ତୁ ମୋର ଲରମ୍ବାର ଅଧ୍ୟକ୍ଷତା କେବଳ ସାର୍‌ଙ୍କ ଦାନ ।

ଜୀବନର ଗତି ପଥରେ ଅନେକ ଆହ୍ୱାନ ଭେଟିଛି । ସବୁକୁ ସାମନା କରିଛି । ନିଜର ବିବେକ ଅନୁସାରେ ତା'ର ସମାଧାନ କରିଛି । କେବେ ନିଜର ସ୍ୱାଭିମାନ ହରାଇ ନାହିଁ ।

ଆନନ୍ଦର କଥା, ୧୯୬୮ ମସିହାର ଲରମ୍ବା ସ୍କୁଲର ହେଡ଼ମାଷ୍ଟ୍ରେ ଓ ଲରମ୍ବା କଲେଜର ପ୍ରଥମ ଅଧ୍ୟକ୍ଷ ଖଗେନ୍ଦ୍ର ନାଥ ସେନଗୁପ୍ତ ତାଙ୍କର ହଜାର ହଜାର ପ୍ରିୟ ମେଧାବୀ ଛାତ୍ରମାନଙ୍କ ମଧ୍ୟରୁ ମୋତେହିଁ ବାଛିଲେ ଲରମ୍ବା କଲେଜର ଅଧ୍ୟକ୍ଷ ଦାୟିତ୍ୱ ନେବାପାଇଁ । ଏ ସମ୍ବାଦ ମୋତେ ଅତାବିରା ବ୍ଲକ୍ ଚେୟାରମେନ୍ ଓ ବ୍ୟବସାୟୀ ଧୀରେନ୍ଦ୍ରନାଥ ପାଢ଼ୀଙ୍କ କରିଆରେ ମିଳିଥିଲା । ଏହାକୁ ମୁଁ ଗ୍ରହଣ କରିଛି ଦୀର୍ଘ ଚବିଶବର୍ଷ ପର୍ଯ୍ୟନ୍ତ । ସାର୍ ୧୯୮୭ ମସିହାରେ ଦେହତ୍ୟାଗ କଲେ । ପ୍ରିୟବନ୍ଧୁ ଧୀରେନ୍ଦ୍ର ୧୯୯୪ରେ ଅକସ୍ମାତ ଦେଖାନଦେଇ ଚାଲିଗଲେ । କିନ୍ତୁ ଦୀର୍ଘ ପଚାଶବର୍ଷର ଘଟଣା ପ୍ରବାହରେ ଗୋଟିଏ କଥା ସ୍ପଷ୍ଟ ଭାବରେ ମୋତେ ଦେଖାଯାଉଛି ଯେ, ଲରମ୍ବା ସ୍କୁଲର ହେଡ଼ମାଷ୍ଟ୍ରେ-ସେନଗୁପ୍ତ ଆଜ୍ଞା ଏବେବି ମୋ ଭିତରେ ଓ ତାଙ୍କର ଅସଂଖ୍ୟ ଛାତ୍ରମାନଙ୍କ ଭିତରେ ବଞ୍ଚିରହିଛନ୍ତି । ସମସ୍ତ ଯୁଗ ପରିବର୍ତ୍ତନ ସତ୍ତ୍ୱେ ସେ ବଞ୍ଚିରହିବେ ମୋର ପୁଅ, ନାତି, ନାତୁଣୀମାନଙ୍କ ଭିତରେ ।

ମୋ ଦୃଷ୍ଟିରେ ଏହା ଏକ ଆଦର୍ଶ ଶିକ୍ଷକର ପରିଚୟ !



# ତୁମକୁ ମିଛ, ଆମକୁ ସତ

(ଲାଲକିଲ୍ଲାର ଦାରାଶିକୋହା ସଂଗ୍ରହାଳୟର ବହୁଦିନଯାଏ କାର୍ଯ୍ୟରତ ଜନୈକ ମୁସଲମାନ ବୃଦ୍ଧ ଜଗୁଆଳୀଙ୍କ ପର୍ଯ୍ୟଟକଙ୍କ ପ୍ରତି ସମ୍ଭାଷଣ ଥିଲା-

"ରହନେ ଦୋ ସାହାବ, ତାରିଖ୍‌କୋ ଅନ୍ଧେରେମେହିଁ ରହନେ ଦୋ-
ଉଜାଲା ମିଲଗୟେ ତୋ, ଇସ୍ ଜମାନେକି ଲୋଗୋକୌଁ ସର୍ମିନ୍ଦଗୀ ହୋଗି ।")

ଗୋଟିଏ ବିରାଟ ବଡ଼ ପରିବାରରେ ଆମ୍ଭର ଜନ୍ମ । ଖୁବ ଅଳ୍ପ ବୟସରୁ ସ୍ଥାନ, କାଳ, ପାତ୍ର ବିଷୟରେ ସଚେତନ ହେବାର ସୌଭାଗ୍ୟ ଆମ୍ଭଙ୍କୁ ମିଳିଛି । ତିରିଶ ବର୍ଷରୁ ଉର୍ଦ୍ଧ୍ୱ ଶିକ୍ଷକତା କରିବା ପରେ ଆମ୍ଭେ କହିବାକୁ ଓ ଲେଖିବାକୁ ସାହସ କରିପାରୁଛୁଁ । ଏ ଦୁଇଟି କାର୍ଯ୍ୟ ଆମ ସମାଜରେ ସମସ୍ତେ କରନ୍ତି । ଆମ୍ଭ ପାଇଁ ଏହାର ପରିପ୍ରକାଶ ସଂପୂର୍ଣ୍ଣ ଗତାନୁଗତିକ ଯେପରି ନହେବ, ତାହାହିଁ ଆମ୍ଭେ କରି ଆସିଛୁଁ- ଆଜିଯାଏ ।

ଯେଉଁମାନେ କଥାକୁହା ରାଜନୀତି କରିବାକୁ ଓହ୍ଲାଇ ଆସନ୍ତି, ବା ରାଜନୀତିକୁ ପେଷା ଭାବରେ ଗ୍ରହଣ କରନ୍ତି, ସେମାନେ ସବୁ କଳ୍ପନାଜଳ୍ପନାକୁ ନେଇ, ବେଶ ସୁବିଧା ସୁଯୋଗ ଓ ହାସ୍ୟରସ ସୃଷ୍ଟିକରି ନୀରିହ ଲୋକଟିଏ ପରି ନିଜକୁ ପ୍ରକାଶ କରନ୍ତି ।

"ସର୍ବସାଧାରଣ ଲୋକ" ବା "ପବ୍ଲିକ ମ୍ୟାନ୍" ଭାବରେ ଚଳଚ୍ଚିତ୍ରସଂପୃକ୍ତ ବ୍ୟକ୍ତିଗଣ ଆମ ସମାଜରେ ଏହିପରି ଏକ କାଳ୍ପନିକ ପରିଚିତିକୁ ନେଇ ବଞ୍ଚିଥାଆନ୍ତି । ସଦାସର୍ବଦା ଏହା ଆମ୍ଭଙ୍କୁ ଏକ ଆତ୍ମପ୍ରବଞ୍ଚନା ଭାବରେ ଦେଖାଯାଇଛି । ସେମାନଙ୍କ ପାଇଁ ସବା ଶେଷରେ ସାମାଜିକ ପ୍ରତିବଦ୍ଧତା ବୋଲି କିଛି ନଥାଏ । ନିଜ ବିଷୟରେ ଲୋକଙ୍କ ଧାରଣା କଣ ଜାଣିବାକୁ ଆମ୍ଭେ ସବୁବେଳେ ଚେଷ୍ଟିତ ହୋଇନାହୁଁ । କିନ୍ତୁ ପ୍ରଚାର/ ଅପପ୍ରଚାରର ମାତ୍ରା ଯେତେବେଳେ ସୀମା ଲଂଘନ କରେ ଆମ୍ଭ ପ୍ରଦେଶର ଗଣତାନ୍ତ୍ରିକ ପଦ୍ଧତିର ଆଳ ଦେଖାଇ, ସମାଜର ଏକ ଗ୍ରହଣୀୟ ଆଧୁନିକତା ଆଳରେ ଆମ୍ଭର ମାନବିକ ଅଧିକାର ଓ ସ୍ୱାଭିମାନକୁ ଯେତେବେଳେ ଆହ୍ୱାନ କରାଯାଏ ସେତେବେଳେ ଆମ୍ଭେ ସ୍ୱର ଉତ୍ତୋଳନ କରୁ । ଆମ୍ଭେ ସତ୍ୟ ପ୍ରକାଶ କରୁଁ । ସେମିତି ତ ସାରାଜୀବନ ଲାଭକ୍ଷତିର ନିକିତି ତଉଲ ଭିତରେ ଆମ୍ଭେ ଜୀବନ ବିତାଇବାର ସୁଯୋଗ ପାଇନାହୁଁ । ସେଥିପାଇଁ ଆଜି ଆମ୍ଭର ଏ ସତକଥା । ଆମ୍ଭର ଅନୁଭୂତିର କାହାଣୀ । ଉଦ୍ଦେଶ୍ୟ, ଆପଣଙ୍କର ଆତ୍ମିକ ଚିତ୍ତବିନୋଦନ ।

୧୯୫୪ ମସିହାର କଥା । ଏକ ନମ୍ବର କେଣ୍ଟନମେଣ୍ଟ୍ ରୋଡ଼ରୁ ବକ୍ସିବଜାର କେତେ ବା ଦୂର । ପିନ୍‌ପିନ୍ ସାଇକେଲ ମାରି ବିଲିମୋରିଆ ଦୋକାନରୁ ଷ୍ଟେଟ୍‌ସମ୍ୟାନ୍ ଖବରକାଗଜ, ଚକଲେଟ୍ କେକ୍, କଦଳୀ, କଲିକତାରୁ ଆସିଥିବା ରଂଗ ବାକ୍ସ, ଖାନ୍

ଦୋକାନର କବାବ୍, ଧଡି ମିଆଁ ଦୋକାନର ଗୁରୁଦା ଚାଁପ ଓ ପରଠା, କ୍ୟାପିଟେଲ ସିନେମାର ପିଆଜି ଖାଇ ମେଟିନି ସୋ ଦେଖିବା, ପ୍ରଭାତ ସିନେମା ଗଳିର ସରବତ ଲସି ପିଇବା ଇତ୍ୟାଦି କଲେଜ ଛାତ୍ରଟିର ସ୍ୱପ୍ନିଳ ଅନୁଭୂତି ଭିତରେ । ଆମ୍ଭ ପୈତୃକ ସମ୍ବଲପୁର ସହରର ଝାଡୁଆପଡାର ସେ ବୟୋବୃଦ୍ଧ ଗୁରୁଜନ ଲୋକଙ୍କର କଦର୍ଯ୍ୟ ମନ୍ତବ୍ୟ ଆମ୍ଭଙ୍କୁ ଏବେବି ଶୂଳବିଦ୍ଧ କରେ । ହଲପ୍ କରି କହୁଛୁଁ ଏହା ଏକ ସତ୍ୟ କଥା ! କାରଣ ଆମ୍ଭର ଏ ସମସ୍ତ ଅଭିରୁଚିର ଉନ୍ମାଦନା । ଆମ୍ଭର ଉଦାର ବାପାଙ୍କ ଅନୁମୋଦନରେ ହିଁ ସମ୍ଭବ ହେଉଥିଲା ।

ଆମ୍ଭ ବାପା ସଚ୍ଚିଦାନନ୍ଦ ପୂଜାରୀ ୧୯୨୦ ମସିହାରୁ ରେଭିନ୍ୟୁ ଇନ୍‌ସପେକ୍ଟର ଚାକିରୀରୁ ଉଠିଉଠି ୧୯୫୪ ମସିହାରେ ଆଇ.ଏ.ଏସ୍. ପାହ୍ୟାରେ କୃଷିବିଭାଗ ନିର୍ଦ୍ଦେଶକ ଭାବରେ କଟକରେ ଅବସ୍ଥାପିତ ହୋଇଥିଲେ । ଆମ୍ଭେ ତାଙ୍କର ଜ୍ୟେଷ୍ଠପୁତ୍ର ଭାବରେ ରେଭେନ୍‌ସା ମହାବିଦ୍ୟାଳୟର ବି.ଏ. ଶ୍ରେଣୀର ଛାତ୍ର ତଥା ନାଟ୍ୟ ସଂପାଦକ ଭାବରେ ନିର୍ବାଚିତ ହୋଇସାରିଥିଲୁଁ ।

ଆମ୍ଭ ସାହିର ଏ ପ୍ରତିଷ୍ଠିତ ଗୁରୁଜନଟି ଆମ୍ଭଙ୍କୁ ସାଇକଲ ଚଢ଼ି ବକ୍ସିବଜାର ଛକରେ ଗଲାବେଳେ ଦେଖିନେଲେ । ନିଜେ ହାତକଟା ଧଳା ଫତେଇ ଓ ଧୋତି ପିନ୍ଧି, ସାଇକେଲ ରିକ୍ସାର ହୁଡ଼ଖୋଲି, ଥନ୍ତଲ ପେଟକୁ ଦେଖେଇ ଯାଉଯାଉ ଆମ୍ଭେ ତାଙ୍କୁ କୁଆଡ଼େ "ଲୋଫର' ପରି ଦେଖାଗଲୁ । ଆମ୍ଭ ବାପାଙ୍କଠାରୁ ସାହିର ଏ ଗୁରୁଜନଟି ଦଶବାର ବର୍ଷ ବଡ଼ ହେବେ । ଆମ୍ଭ ବାପା ପଚାଶ ହେଲେ, ତାଙ୍କ ବୟସ ପଞ୍ଚଷଠି । ଧନ, ମାନ, ସମ୍ପତ୍ତି ଓ ପ୍ରତିପତ୍ତିରେ ସେ ଆମ୍ଭବାପାଙ୍କଠାରୁ ଯଥେଷ୍ଟ ବଡ଼ ବୋଲି ତାଙ୍କର ଏକ ଅହମିକା ଥିଲା । ଆମ୍ଭ ବାପା ଯୁବାବସ୍ଥାରୁ କଲେଜ ପାଠ ସରିବା ଯାଏ ଫୁଟବଲ ଖେଳରେ କଟକ, ଖୋର୍ଦ୍ଧା, ଝାରସୁଗୁଡ଼ା, ରାୟପୁର, ୱାଲଟିୟର, କାମସେଦପୁର ପରି ସ୍ଥାନରେ ସମଲେଶ୍ୱରୀ ଟିମ୍ ଓ ରେଭେନ୍‌ସା କଲେଜର ଷ୍ଟାର ଫରୱାର୍ଡ ଭାବରେ ନାଁ କରିଥିବା ସତ୍ତ୍ୱେ ଏ ଗୁରୁଜନଙ୍କ ପାଞ୍ଜିରେ ୧୯୨୦ ମସିହାବେଳୁ ଆମ୍ଭ ବାପାଙ୍କ ଭବିଷ୍ୟତ ଅନ୍ଧକାର ବୋଲି ଲେଖା ହୋଇ ସାରିଥିଲା । କାଳ ବିଳମ୍ବ ନକରି, ଆମ୍ଭ ବାପାଙ୍କ କ୍ୱାଟର୍ସ ଖୋଜି ଦ୍ୱିପ୍ରହର ସମୟରେ ପହଞ୍ଚିଗଲେ । ଆମ୍ଭ ଉପସ୍ଥିତିରେ ବାପାଙ୍କୁ ପଚାରିଲେ, "ଏ ପିଲା କଣ କରୁଛି ? କାଲି ବକ୍ସିବଜାରରେ "ଲୋଫର" ପରି ବୁଲୁଥିବାର ମୁଁ ଦେଖିଲି ।" ବାପା ସୂକ୍ଷ୍ମରେ ଖାଲି କହିଲେ, "ବି.ଏ. ପଢୁଛି ।" ପଚାଶ ବର୍ଷ ତଳର କଥା ।

ଫୁଟବଲ୍ ଖେଳିବା ଓ ନାଟକ କରିବା ଜନ୍ମଗତ ଗୁଣ । ରକ୍ତରେ ଗୁଣ ନଥିଲେ କେହି ସଉକି କରେ ନାହିଁ । ଏଇଟା ଓଡ଼ିଶାରେ ଆଜିଯାଏ ଗୁରୁଜନଙ୍କ ପାଞ୍ଜିରେ କେହି ଦରଜ କରି ନାହାଁନ୍ତି । ତଥାପି, ଆମ୍ଭେ ଉତ୍କୃଷ୍ଟ କଳାର ଦେଶରେ ସତୁରି ବର୍ଷ ବିତେଇ ଦେଲୁଣି । ଆମ ସି.ସି.ଆର୍ କେମିତି ଲେଖାହେଉଛି, ଦେଖୁଛୁ !

ସେ ଯାହାହେଉ, ନିୟତି ନିର୍ଦ୍ଦେଶରେ ମୋଟେ ଚାରିବର୍ଷ ପରେ ଆମ୍ଭର କୌଣସି ଲକ୍ଷ୍ୟ ଓ ଉଦ୍ଦେଶ୍ୟ ନଥାଇ ଆମ୍ଭେ ଓଡ଼ିଆ ଚଳଚ୍ଚିତ୍ରରେ ଅଭିନୟ କରିବାକୁ ବାଧ୍ୟ ହେଲୁଁ। ବୟସ ଆମ୍ଭର ଚବିଶ ହୋଇଥିଲେ ମଧ୍ୟ ଆମ୍ଭେ ଜଣେ ଷୋଡ଼ଷୀଙ୍କ ପାଣିଗ୍ରହଣ ପୂର୍ବକ ଏକ କନ୍ୟାରତ୍ନର ପିତା ହେବାର ସୌଭାଗ୍ୟ ପ୍ରାପ୍ତ ହୋଇଥିଲୁ। ଏମ୍.ଏ. ଅର୍ଥଶାସ୍ତ୍ର ଓ ଭାରତୀୟ ଚିତ୍ରକଳାରେ ଡିପ୍ଲୋମା ପାଠ ୧୯୫୬ ମସିହାରେ ଏଲାହାବାଦ ବିଶ୍ୱବିଦ୍ୟାଳୟରୁ ପାଇସାରି, ସେଠାରେ ଆଇନ ବିଭାଗର ଛାତ୍ରଥିବା ସମୟରେ ୧୯୫୬ ମସିହା ଡିସେମ୍ବର ୨ ତାରିଖରେ ଆମ୍ଭ ବାପାଙ୍କର ଅକାଳରେ ହୃଦରୋଗରେ ଦେହାନ୍ତ ହେଲା। ସମସ୍ତ ଆଶା, ଭରସା ଭବିଷ୍ୟତ ଆଖି ପିଛୁଳାକେ ଆମ୍ଭ ଭାଗ୍ୟଆକାଶରୁ ନିଶ୍ଚିହ୍ନ ହୋଇଗଲା।

ମାନସିକ ଅଶାନ୍ତି, ଆର୍ଥିକ ଅସ୍ୱଚ୍ଛଳତା, ସ୍ନାୟବିକ ଦୁର୍ବଳତା, ବନ୍ଧୁବାନ୍ଧବଙ୍କ ପାଖରୁ ସାହାଯ୍ୟ ନପାଇବାର ସଂଶୟ ଇତ୍ୟାଦି ହତୋତ୍ସାହ ଓ ଆତଙ୍କ ଆମ୍ଭର ସାମାଜିକ ସ୍ଥିତିକୁ ଅସ୍ଥିର କରି ପକାଇଲା। ଶେଷ ସମୟରେ ଆମ୍ଭେ ଚାକିରୀ ଆଶାୟୀହୋଇ କଟକ ନଗର ଓ ଭୁବନେଶ୍ୱର ରାଜଧାନୀର ପ୍ରତିଷ୍ଠିତ ଲୋକମାନଙ୍କ ପାଖରେ ଆବେଦନ ନିବେଦନ କରିବାକୁ ଯାଇଥିଲୁ। ମୃତ୍ୟୁର ଦାରୁଣ ସଂବାଦପାଇ ସମ୍ବଲପୁର ଝାଡୁଆପଡ଼ା ପୈତୃକ ଘରେ ପହଞ୍ଚିଲା ବେଳକୁ ସବୁ ଆଲୋକ ନିର୍ବାପିତ ହୋଇ ଚାରିଆଡ଼େ ଅନ୍ଧକାର ଘୋଟି ସାରିଥିଲା। ସବୁ ଶୂନ୍ୟ। ମହାଶୂନ୍ୟ।

ସାତଟି ଛୋଟ ଭାଇ ଓ ଗୋଟିଏ ଛୋଟ ଭଉଣୀ ସ୍କୁଲ କଲେଜରେ ପଢୁଥିଲେ। ବିଧବା ମାତା, ନିଜର ବିବାହିତ ନୀରିହା ପତ୍ନୀ ଓ ଝିଅଟିକୁ ଖାଇବାକୁ ଦେବାପାଇଁ ଭାତମୁଠେ ରୋଜଗାର କରିବାର ଆମ୍ଭର କ୍ଷମତା ନଥିଲା। ବାପାଙ୍କର ସେମିତି କିଛି ଭୂସମ୍ପତ୍ତି ନଥିଲା। ଦଶ ମାଇଲ ଦୂରରେ ଗୋଟିଏ ଗାଁରେ ବାପାଙ୍କ ଭାଇ ଭାଗରେ ପାଇଥିବା ପାଞ୍ଚ ଏକର ଏକଫସଲି ଚାଷ ଜମି, ସମ୍ବଲପୁର ସହରରେ ୧୯୩୬ ମସିହାରେ ବାପା ନିଜଚେଷ୍ଟାରେ ତିଆରି କରିଥିବା ତିନିମହଲା "କମଳ ନିବାସ" କୋଠାଘର ହିଁ ଥିଲା ଆମ୍ଭ ପରିବାରର ସମ୍ବଳ। ଆମ୍ଭ ମାତୁଳାଳୟ ମାନପୁର ଗ୍ରାମରେ, ମାତାମହୀଙ୍କ ତତ୍ତ୍ୱାବଧାନରେ ମା'ଙ୍କ ନାଁରେ ଥିବା ଦଶ ଏକରୁ ଭାଗଚାଷରେ ପାଉଥିବା ଅରୁଆ/ ଉଷୁନା ଦଶବାର ବସ୍ତା ଚାଉଳହିଁ ଥିଲା ଆମ୍ଭର ବର୍ଷ ଯାକର ଖାଦ୍ୟ। ବାପାଙ୍କ ଜୀବନବୀମା, ଜି.ପି.ଏଫ୍, ଗ୍ରାଚ୍ୟୁଟି କମ୍ୟୁଟ କରି, ବାପାଙ୍କ ନିଜ ଘରକୁ ବନ୍ଧାପକାଇ ଗୋଟିଏ ଫର୍ଗୁସନ ଟ୍ରାକ୍ଟର କିଣି ୧୯୫୬ ମସିହା ବେଳକୁ ଗାଁରେ ଚାଷ ଆରମ୍ଭ କରି ଦେଇଥିଲେ। ମୃତ୍ୟୁବେଳକୁ ମା'ଙ୍କ ନାଁରେ କୌଣସି ବ୍ୟାଙ୍କ ବାଲାନ୍ସ ନଥିଲା। ୧୯୫୬ ବେଳକୁ ଆଇ.ଏ.ଏସ୍ ଅଫିସରଙ୍କ ସ୍ତ୍ରୀମାନଙ୍କୁ ପରିବାର ପେନସନ୍ ଦେବାର ଯୋଜନା ଭାରତ ସରକାର ଆରମ୍ଭ କରି ନଥିଲେ। ଆମ୍ଭଙ୍କୁ ଘରେ ଗୋଟିଏ ମୁହୂର୍ତ୍ତମଧ୍ୟ ରହିବାକୁ ଇଚ୍ଛା ହେଉନଥିଲା। ତେଣୁ,

ଆମ୍ଭର ସମସ୍ତ ମାନସିକ, ଶାରିରୀକ ଓ ଆଧ୍ୟାତ୍ମିକ ଦୁର୍ବଳତା ସତ୍ତ୍ୱେ, ଆମ୍ଭେ ବିବେକାନନ୍ଦଙ୍କ "ଉତ୍ତିଷ୍ଠିତ, ଜାଗ୍ରତ"... ବାଣୀ ସର୍ବଦା ଦୋହରାଇବାକୁ ବାଧ୍ୟ ହେଉଥିଲୁଁ। ଆମ୍ଭେ ୧୯୫୮ ମସିହା ଏପ୍ରିଲ ମାସରେ ଗୃହତ୍ୟାଗୀ ହେଲୁଁ। କଟକ ନଗରକୁ ପ୍ରତ୍ୟାବର୍ତ୍ତନ କରି, ଚାନ୍ଦନୀଚୌକ ଡଗରପଡ଼ାସ୍ଥିତ ଆମ୍ଭର ଏକମାତ୍ର ବଡ଼ଭଉଣୀ ଓ ଭିଣୋଇଙ୍କ ଭଡ଼ାଘରେ ରହି ଆମ୍ଭର ଭାଗ୍ୟ ଅନ୍ୱେଷଣ କରିବାକୁ ମନସ୍ଥ କଲୁଁ।

ସମ୍ବଲପୁରରେ ଗୃହଲକ୍ଷ୍ମୀଙ୍କୁ ଛାଡ଼ି, ଲକ୍ଷ୍ମୀଙ୍କ ଅନ୍ୱେଷଣରେ କଟକ ଭୁବନେଶ୍ୱରର ଗଳି କନ୍ଦିରେ ଘୁରି ବୁଲିଲୁଁ। ଆମ୍ଭ ପକେଟରେ ସେତେବେଳେ ଦିନକୁ ଦି ଅଣିଟିଏ ମଧ୍ୟ ଜୁଟୁ ନଥିଲା। ଆମ୍ଭ ନାନୀ ବେଳେବେଳେ ଆମ୍ଭଙ୍କୁ ନଜଣାଇ ଆଠଅଣା, ଟଙ୍କାଟିଏ ଆମ୍ଭ ପକେଟରେ ରଖି ଦେଉଥିଲେ। ସକାଳୁ ଉଠି ଚପଲ ଘୋଷାରି ଚାଲିଚାଲି କଟକରୁ ଭୁବନେଶ୍ୱର ପର୍ଯ୍ୟନ୍ତ ଯିବାର ଆସ୍ପର୍ଦ୍ଧା ମଧ୍ୟ ବେଳେବେଳେ ଆମ୍ଭେ କରି ପାରୁଥିଲୁଁ। କଟକଚଣ୍ଡୀ, ଗଡଗଡ଼ିଆ ମହାଦେବ, ଜଗନ୍ନାଥ ଓ ଲିଙ୍ଗରାଜଙ୍କ ପରି ବହୁ ଦେବାଦେବୀଙ୍କୁ ସ୍ମରଣକରି ପ୍ରତି ମୁହୂର୍ତ୍ତ ବିତାଉଥିଲୁଁ। ବହୁ ପରିଚିତ ପ୍ରତିଷ୍ଠିତ ଲୋକଙ୍କ ପାଖରୁ ଆମ୍ଭର ବାପାଙ୍କର ସଦ୍‌ଗୁଣ ବିଷୟରେ ବହୁ ଭାଷଣ ଶୁଣିବାକୁ ଆମ୍ଭର ସୌଭାଗ୍ୟ ହେଉଥିଲା। ସେଥିରେ ଆମ୍ଭର ଛାତି ଓ ମୁଣ୍ଡ ପୁରି ଯାଉଥିଲା। ହେଲେ ଆମ୍ଭ ପାପୀ ପେଟର କ୍ଷୁଧା ଓ ଆମ୍ଭ ପରିବାରର ବଞ୍ଚିବାର ଅଧିକାର ଉପରେ କୌଣସି ବିଜ୍ଞ ଓ ବିଦ୍ୱାନବ୍ୟକ୍ତି ବିଚାର କରି ଆମ୍ଭଙ୍କୁ ମାସିକିଆ ଚାକିରୀଟିଏ ଦେବାର ଉପକ୍ରମ କରୁନଥିଲେ। ସେମାନଙ୍କ ଦୃଷ୍ଟିରେ ଆମ୍ଭେ "ଓଭର କ୍ୱାଲିଫାଏଡ" ଥିଲୁ। ସେତେବେଳର କଟକ ଭୁବନେଶ୍ୱରର କୌଣସି ସରକାରୀ ଚାକିରୀ ପାଇଁ ଆମ୍ଭେ ଉପଯୁକ୍ତ ବିବେଚିତ ହୋଇ ପାରିନଥିଲୁ। ଆକାଶବାଣୀ, କଟକ ଓ ଭୁବନେଶ୍ୱର ଓ.ୟୁ.ଏ.ଟି ପରିସଂସ୍ଥାରେ ଇଣ୍ଟରଭ୍ୟୁ ଦେବାର ସୌଭାଗ୍ୟ ମଧ୍ୟ ଆମ୍ଭର ହୋଇଥିଲା। ହେଲେ, ଆମ୍ଭର ପୈତୃକ ସାଙ୍ଗ ଓ ସ୍ଥାୟୀ ଠିକଣାଟି ଦରଖାସ୍ତଟିକୁ "ପ୍ରସେସ୍ ଅଫ୍ ଏଲିମିନେସନ୍"ରେ ଅଳିଆଗଦାକୁ ପକାଇ ଦେଉଥିଲା।

ଏହିପରି ଏକ ସମୟରେ ସୁଦୂର ଆସ୍କା ସହରର ଉତ୍କଳ ଆୟୁର୍ବେଦିକ ଫାର୍ମାସୀର ପ୍ରତିଷ୍ଠାତା କବିରାଜ ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ ଶର୍ମାଙ୍କର ଦ୍ୱିତୀୟ ମାନସପୁତ୍ର ଉତ୍କଳ ଚଳଚ୍ଚିତ୍ର ସମବାୟ ପ୍ରତିଷ୍ଠାନ ତାଙ୍କର ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର ଅବଦାନ "ଶ୍ରୀଶ୍ରୀ ମହାଲକ୍ଷ୍ମୀ ପୂଜା"ର ଘୋଷଣା କଲେ। ଓଡ଼ିଶା ସାରା ଅଭିନେତା ଅଭିନେତ୍ରୀ ଖୋଜି ବାହାର କରିବାକୁ ଏ ଅନୁଷ୍ଠାନର ପ୍ରଚେଷ୍ଟା ସଂପୂର୍ଣ୍ଣ ଅଭିନବ ଥିଲା। ଆମ୍ଭେ କିନ୍ତୁ ଚାକିରୀଟିଏ ପାଇଁ / ଲିଖିତ ପରୀକ୍ଷାରେ ଭାଗ ନେବାପାଇଁ / ଓ.ପି.ଏସ.ସି ପରୀକ୍ଷା ଦେବାପାଇଁ, ରେଭେନ୍‌ସା କଲେଜ ପାଖର, ଆମ୍ଭର କଲେଜ ସାଥୀ ସୁବୀର ସିହ୍ନାଙ୍କ "ସିହ୍ନା ଲଜ୍"ରେ ରହି ପଢ଼ାପଢ଼ି କରୁଥିଲୁ। ରେଭେନ୍‌ସା କଲେଜ ଲାଇବ୍ରେରୀର ସାହାଯ୍ୟ ନେବାପାଇଁ, କଲେଜ ଛକରୁ

ରାଣୀହାଟ ଯାଏ ଦିନକୁ ଚାରି ପାଞ୍ଚଥର ପିନ୍‌ପିନ୍ ସାଇକେଲରେ ଚକ୍କର କାଟୁଥିଲୁଁ। ଯାହାହେଲେ- ଲୋଫର୍‌ଟାଏ ତ- ।। ଓଡ଼ିଶାରେ ଏପରି ଆକ୍ଷେପ ସବୁସ୍ତରରେ ଶୁଣିଶୁଣି ଏହାକୁ ଆମ୍ଭେ ଆମ୍ଭର "ଜାତୀୟ ଚରିତ୍ର" କହିଲେ କିଛି ଭୁଲ ହେବନାହିଁ।

ଗଞ୍ଜାମ ଜିଲ୍ଲାର ଆସ୍କା ସହରରେ, ସେପଟେ ସାରା ଓଡ଼ିଶାର ୪୦୦ ଜଣ ଲୀଳା, ନାଟ, ଯାତ୍ରା, ପାଲା, ଦଣ୍ଡନାଟ, ଦାସକାଠିଆ, ଥିଏଟର ଓ ପୁରୁଣା ଓଡ଼ିଆ ଚଳଚ୍ଚିତ୍ରର କଳାକାର ମାନଙ୍କୁ ନିମନ୍ତ୍ରଣ କରି ତିନିଚାରିଦିନ ଯାଏ ସେମାନଙ୍କର ପରୀକ୍ଷା ନିଆଯାଇଥିଲା ଶ୍ରୀଶ୍ରୀ ମହାଲକ୍ଷ୍ମୀ ପୂଜାର ପ୍ରାୟ ତିରିଶ ଚାଳିଶଟି ଛୋଟବଡ଼ ଚରିତ୍ର ପାଇଁ। ପରୀକ୍ଷା କରୁଥିବା କଳାକୁଶଳୀମାନେ ସମସ୍ତେ କଲିକତା ଓ ଚେନ୍ନାଇର ପ୍ରତିଷ୍ଠିତ ବ୍ୟକ୍ତିଭାବରେ, ଚଳଚ୍ଚିତ୍ରର ମୁଖ୍ୟ କେତୋଟି ଚରିତ୍ରପାଇଁ କାହାକୁ ମନୋନୟନ କରି ପାରିନଥିଲେ। ସେ ଚରିତ୍ରଗୁଡ଼ିକ ହେଲା ଲକ୍ଷ୍ମୀ, ଶ୍ରୀୟା, ଜଗନ୍ନାଥ, ବଳଭଦ୍ର ଓ ନାରଦ। ଉପଦେଷ୍ଟା କମିଟିର ସଭ୍ୟମାନେ ଏ ଚରିତ୍ରଗୁଡ଼ିକ ପାଇଁ ସଂପୂର୍ଣ୍ଣ ନୂତନ, ଅଥବା ଶିକ୍ଷିତ କଳାକାର ବା ଅଭିଜ୍ଞତାସମ୍ପନ୍ନ କଳାକାର ଚୟନ କରିବାକୁ କଟକରେ ରେଭେନ୍‌ସା କଲେଜ, ପାଖ 'କଟକ' ହୋଟେଲରେ ଡେରା ପକେଇଲେ। ଏ ଦଳ ଭିତରେ ଶ୍ରୀଶ୍ରୀ ମହାଲକ୍ଷ୍ମୀ ପୂଜାର ନିର୍ଦ୍ଦେଶକ, ସହ ନିର୍ଦ୍ଦେଶକ, ଚିତ୍ରଉତ୍ତୋଳକ, ଶବ୍ଦଗ୍ରହଣକାରୀ ଇଂଜିନିୟର ଓ ସଂଳାପ ଓ ଚିତ୍ରନାଟ୍ୟ ଲେଖକ ଶ୍ରୀ ସତ୍ୟନାରାୟଣ ପଣ୍ଡା ଓ ପ୍ରତିଷ୍ଠାନର କର୍ମକର୍ତ୍ତାମାନେ ପ୍ରାୟ ଦଶବାର ଜଣ ଥିଲେ। ଶ୍ରୀ ଧୀରେନ୍ଦ୍ର ନାଥ ବିଶ୍ୱାଳ ଆସ୍କାର କଳାକାର ମେଳାରେ ଉପସ୍ଥିତ ରହି, ନିଜତରଫରୁ ଶ୍ରୀୟା ଚଣ୍ଡାଳୁଣୀର ଶଶୁର ଚରିତ୍ରରେ ଅଭିନୟ ପାଇଁ ନିଜକୁ ମନୋନୀତ କରାଇ ସାରିଥିଲେ। ରାଣୀହାଟର ହିନ୍ଦ୍ ସିନେମା ପଛପଟକୁ ଲାଗିଥିବା କଟକ ବଡ଼ ଡାକ୍ତରଖାନା ପାଚେରୀକୁ ଲାଗି ମୋର କଲେଜ ଓ ବିଶ୍ୱବିଦ୍ୟାଳୟ ପଢୁଆ ସାଥୀ ସୁବୀର ସିହ୍ନାଙ୍କ 'ସିହ୍ନା ଲଜ'ରେ ମୁଁ ସେତେବେଳେ ପରୀକ୍ଷା ପାଇଁ ପଢ଼ାପଢ଼ି କରୁଥାଏ। ରେଭେନ୍‌ସା କଲେଜର ଲାଇବ୍ରେରୀକୁ ପ୍ରତିଦିନ ସିହ୍ନା ଲଜରୁ ଆସିବାବେଳେ କଟକ ହୋଟେଲର ବାଲକନି ତଳ ଦେଇ ଆସିବାକୁ ଚାରିପାଞ୍ଚଥର ପଡୁଥିଲା। ସେଇ ସମୟରେ ଏ ଦଳର ଦୃଷ୍ଟି ମୋ ଉପରେ ପଡ଼ିଲା। ସେମାନଙ୍କ ଅନୁରୋଧରେ ଧୀର ବିଶ୍ୱାଳ ମୋତେ, ଶ୍ରୀକାନ୍ତ ମିତ୍ର ଓ ନରେନ୍ଦ୍ର ମହାନ୍ତିଙ୍କୁ ଡାକିନେଇ ଏମାନଙ୍କ ସହିତ ଭେଟାଇ ଦେଇଥିଲେ। ମୁଁ ସେଠାରେ ଉପସ୍ଥିତ ରହି ମୋର ଦୟନୀୟ ପାରିବାରିକ, ଆର୍ଥିକ ଓ ମାନସିକ ଅବସ୍ଥା ବର୍ଣ୍ଣନା କରିଥିଲି। ସେମାନେ ଆମକୁ ସେପ୍‌ଟେମ୍ବର ୧୯୫୮ରେ କଲିକତା ଡକାଇ ଆମର ସ୍କ୍ରିନ୍‌ଟେଷ୍ଟ୍ ନେଇ ଶ୍ରୀକାନ୍ତ ମିତ୍ରଙ୍କୁ ବଳଭଦ୍ର, ନରେନ୍ଦ୍ର ମହାନ୍ତିଙ୍କୁ ନାରଦ ଓ ମତେ ଜଗନ୍ନାଥ ଚରିତ୍ରପାଇଁ ମନୋନୀତ କଲେ।

ଟଲିଗଞ୍ଜର ଏକ ନମ୍ବର ନିଉ ଥିଏଟର୍ସ ଷ୍ଟୁଡ଼ିଓ ସାମନାରେ ପ୍ରାୟ ଶହେଫୁଟର ଏକ

ବର୍ଗାକାର ସନ୍ତସନ୍ତିଆ ଜମିଉପରେ ଗୋଟିଏ ଏକ ମହଲା ଭଡ଼ାଘରକୁ ଓଡ଼ିଶାର କଳାକାର ଓ ପ୍ରତିଷ୍ଠାନର ପ୍ରଯୋଜକ ଗୋଷ୍ଠୀର ସମସ୍ତ କର୍ମକର୍ତ୍ତା ଓଡ଼ିଶାରୁ ଯିବାଆସିବା କରି ପ୍ରାୟ ପାଞ୍ଚମାସ ଯାଏ ଆଶ୍ରୟସ୍ଥଳ କରିଥିଲେ । ଓଡ଼ିଶାର ରୋଷେୟା ଓ ସେମାନଙ୍କର ସହଯୋଗୀଗଣ ଜଳଖିଆ, ଭାତ ଇତ୍ୟାଦି ରନ୍ଧାରନ୍ଧି କରୁଥିଲେ । ଗୋଟିଏ ଛୋଟ କୋଠରୀରେ ଗୋଟିଏ ଦୁଇଟି ନୀରିହା ନୂଆ ଚେହେରାର ଅଭିନେତ୍ରୀ ଆସି ରହୁଥିଲେ । ଯାହା ମନେପଡ଼େ ଅଭିନେତ୍ରୀ କୃଷ୍ଣା ଓ ଗାୟିକା ନୀରଜନଳିନୀ ଏ କୋଠରୀରେ ରହି ମହାଲକ୍ଷ୍ମୀ ପୂଜାର ଦୁଇଟି ଛୋଟ ଚରିତ୍ରରେ ଅଭିନୟ କରିଥିଲେ । ଏ କୋଠରୀକୁ ଲାଗି ପ୍ରତିଷ୍ଠାନର କର୍ମକର୍ତ୍ତାମାନଙ୍କର ରହିବାଶୋଇବା କୋଠରୀ । ତାହାକୁ ଲାଗି ଯେଉଁ ବଡ଼ କୋଠରୀଟି ଥିଲା ସେଠି ଏକସଂଗରେ ଆଠଦଶଜଣ କଳାକାରଙ୍କର ଶୋଇବାଘର ଥିଲା । ଦିନବେଳେ ରାତି ଦଶଟାଯାଏ ଏ ସ୍ଥାନ ରୋଷଘରକୁ ଲାଗିଥିବାରୁ "ଡାଇନିଂ ହଲ" ଭାବରେ ବ୍ୟବହୃତ ହେଉଥିଲା । ସନ୍ତସନ୍ତିଆ ଛୋଟ ସରୁ ଗଳି ଦେଇ ଏ କୋଠାରେ ପଶିବାବେଳେ ଯେଉଁ ଦାଣ୍ଡଘରଟି ଥିଲା, ତାହା ଆମ୍ଭେ ଚାରିଜଣ କଲେଜ ଶିକ୍ଷିତ, ଅପେକ୍ଷାଦାର କଳାକାର ଆମ୍ଭର ବେଡିଂ ଓ ମଶାରୀ ପକାଇ ଜବରଦସ୍ତ ପାଞ୍ଚ ଛ'ମାସ ଯାଏ ଦଖଲ କରି ନେଇଥିଲୁ । ଆମ୍ଭେ ବୋଇଲେ କ୍ରମାନ୍ୱୟରେ ଧୀର ବିଶ୍ୱାଳ, ଶ୍ରୀକାନ୍ତ ମିତ୍ର, ନରେନ୍ଦ୍ର ମହନ୍ତି ଓ ଶରତ୍ ପୂଜାରୀ । ଅର୍ଦ୍ଧରାତ୍ରରେ ବେଡିଂ ଖୋଲି ମଶାରୀ ଟାଙ୍ଗି ଦେବା ପରେ ଏ କୋଠରୀରେ ଚଳପ୍ରଚଳ ହେବା ସମ୍ଭବ ହେଉନଥିଲା । ତଥାପି ଏହାକୁ ଆମ୍ଭେ ଦେହସୁହାକରି ଏକ ନୂତନ ସଂସ୍କୃତିସଂପନ୍ନ ଓଡ଼ିଆ ଚଳଚ୍ଚିତ୍ର ପାଇଁ ଆମ୍ଭର ହାତ ଲଗେଇଥିଲୁ । ପ୍ରାତଃକାଳରରୁ ଉଠି ଏକମାତ୍ର ଶୌଚାଳୟ ଆଗରେ ତିରିଶ ଜଣ ଧାଡ଼ିବାନ୍ଧିବା ସମୟରେ ଆମ୍ଭମାନଙ୍କ ମଧ୍ୟରେ ଯଥେଷ୍ଟ ପ୍ରତିଯୋଗିତା ହେଉଥିଲା । ଏ ପ୍ରତିଯୋଗୀତାରେ ସବୁବେଳେ ଧୀର ବିଶ୍ୱାଳ ହିଁ ପ୍ରଥମସ୍ଥାନ ଅଧିକାର କରୁଥିଲେ । ସେ ନିର୍ଘାତ ଖାଉଥିଲେ, ନିର୍ଘାତ ଶୋଉଥିଲେ, ନିର୍ଘାତ ଘୁଙ୍ଗୁଡ଼ି ମାରୁଥିଲେ ଓ ସର୍ବପ୍ରଥମେ ଉଚ୍ଚସ୍ୱରରେ ନିଦ୍ରାଭଙ୍ଗ କରି "ବୁଲଡୋଜର" ପ୍ରାୟ ଲୁଙ୍ଗି ଉପରକୁ ଟେକା ଶରୀରଟିକୁ ଶୌଚାଳୟ ଆଡ଼କୁ ଆଖି ମୁଦ୍ରିତ କରି ଚଳାଇ ନେଉଥିଲେ । ଏହାକୁ ପ୍ରତିରୋଧ କରିବାର କାହାର କ୍ଷମତା ନଥିଲା । ସକାଳ ପାଇବା ମାତ୍ରେ ବେଡିଂ ଖୋଲା ହେଉଥିଲା ଓ ସେ କୋଠରୀରେ ଘଡ଼ିଏ ଦିନବେଳେ ବିଶ୍ରାମ ନେବା ସମ୍ଭବ ହେଉନଥିଲା । ଅଗତ୍ୟା ଟାଲିଗଞ୍ଜ ଟ୍ରାମ ଡିପୋଠାରୁ ଚୌରଙ୍ଗୀ ପର୍ଯ୍ୟନ୍ତ କେତେକ ଛକ, ଜଳଖିଆ , ପାନ ଦୋକାନ ଓ ବହି ଦୋକାନ ଆମ୍ଭର ଛୋଟବଡ଼ ଖଟି ଥିଲା । ସକାଳୁ ସନ୍ଧ୍ୟାଯାଏ କାର୍ଯ୍ୟନଥିଲେ ଏପରି ଭାବରେ ବିଚରଣ କରୁଥିଲୁଁ । ଅତିକ୍ରାନ୍ତ ସନ୍ଧ୍ୟାରେ ଆମ୍ଭେ ବସାକୁ ଫେରି ଭାତମାଛ ଯାହା ମିଳିଲା ଖାଇଦେଇ ନିଦ୍ରା ଯାଉଥିଲୁଁ । ଏ ପରିବେଶରେ ଆମ୍ଭେ କଦାଚିତ ଆମ୍ଭର ଜାତି,

ଗୋତ୍ର, ବିଦ୍ୟା, ପ୍ରତିପତ୍ତି, ସାମାଜିକ ମାନ ଓ ପରିବାର ବିଷୟରେ ଆଲୋଚନା କରୁନଥିଲୁ । ବେଳେବେଳେ ଆମ୍ଭର "ପଇତା" ଦେଖି ବନ୍ଧୁ ଧୀର ବିଶ୍ୱାଳ କ୍ଷତ୍ରିୟ ଭାବରେ ଚିତ୍କାର କରୁଥିଲେ, 'କିଏରେ ଶଳା ବ୍ରାହ୍ମଣ ?'

ଅକ୍ଟୋବର ୧୯୫୮ ମସିହାରୁ ମାର୍ଚ୍ଚ ୧୯୫୯ ମସିହା ପର୍ଯ୍ୟନ୍ତ ପୁରୀର ବିଭିନ୍ନ ସ୍ଥାନ ଓ ଚିଲିକାର ବରକୁଳ ଡାକବଙ୍ଗଳା ପାଖରେ ବାହ୍ୟଦୃଶ୍ୟ ଓ କଲିକତାର ଷ୍ଟୁଡ଼ିଓମାନଙ୍କରେ ଅନ୍ତର୍ଦୃଶ୍ୟ ସବୁ ଧୀର ମନ୍ଥରଗତିରେ ଉଠାଯାଉଥିଲା । ବାପାଙ୍କ ଦେହାନ୍ତ ପରେ ମୋର ମାନସିକ ଓ ଶାରୀରିକ ଅବସ୍ଥା ସେତେ ଭଲନଥିବା ବିଷୟର ୟୁନିଟ୍‌ର ସମସ୍ତେ ଜାଣିଥିଲେ । ସେଥିପାଇଁ ମୋ ଉପରେ ସମସ୍ତଙ୍କର ବିଶେଷ ଦୃଷ୍ଟି ପଡ଼ୁଥିଲା । ଏପରିକି ଶ୍ରୀୟା ଚ଼ଣ୍ଡାଳୁଣୀ ଭୂମିକାରେ ଅଭିନୟ କରୁଥିବା ବଙ୍ଗଳାର ପ୍ରତିଷ୍ଠିତ ଅଭିନେତ୍ରୀ ଶ୍ରୀମତୀ ଅନୁଭା ଗୁପ୍ତା, ଆମ୍ଭେ ସଦ୍ୟ ପାଠଛାଡିଥିବା/ବଙ୍ଗଳା ଭାଷା କହିପାରୁଥିବା ଓଡ଼ିଆଟିଏ ବୋଲି ବିଶେଷ ସମ୍ମାନ ପ୍ରଦର୍ଶନ କରୁଥିଲେ । ସେ ଆମ୍ଭପ୍ରତି ଭଦ୍ରତା ଦୃଷ୍ଟିରୁ ଯେତେବେଳେ ନିକପାଖରେ ବସାଇ ଗଳ୍ପ କରୁଥିଲେ, ତାହା ଆମ୍ଭର ଉତ୍କଳୀୟ କଳାକାରମାନଙ୍କ ମଧ୍ୟରେ ଇର୍ଷାକାତ କରୁଥିଲା । ସେଥିପାଇଁ କଲିକତା ଓ କଟକରେ ଅନେକ ଗୁଲିଗପ ପ୍ରଚ଼ାରକଗଣ, ଆମ୍ଭ ନାଁରେ ଏହିପରି "ପ୍ରେମ ଓ ପ୍ରତାରଣା", "ମୁଭି ମେକିକ୍/ମୁଭି ମେକିକ" ଓ "ବୋବାଲ" ଆଜିଯାଏ ନିରବଚ୍ଛିନ୍ନ ଭାବରେ ସୃଷ୍ଟି କରିଥାଆନ୍ତି ।

ଆମ୍ଭେ କିନ୍ତୁ "ଅଭିନୟ" ଅପେକ୍ଷା ଚଳଚ୍ଚିତ୍ରର କଳାକୁଶଳୀ ବିଭାଗର ତଥ୍ୟଗତ ଓ ବୈଜ୍ଞାନିକ ଚିନ୍ତାଧାରା ଉପରେ ବେଶୀ ଆଗ୍ରହ ଦେଖାଉଥିଲୁଁ । ସେଥିପାଇଁ ୧୯୬୮ ମସିହାଯାଏ "ଚଳଚ୍ଚିତ୍ରର ଦର୍ଶକଙ୍କ ଉପରେ ପ୍ରଭାବ" ବିଷୟରେ କଲିକତା ରହଣି ସମୟରେ ଆମ୍ଭର ଗବେଷଣାର ଏକ ପ୍ରଧାନ ଉଦ୍ଦେଶ୍ୟ ଥିଲା ।

ହଁ, ଏତେବେଳଯାଏ ଆମ୍ଭେ ଆମ୍ଭର ପ୍ରଥମ ଦିନର ସୁଟିଂର ଅଭିଜ୍ଞତା ବିଷୟରେ କିଛି କଣାଇ ନାହୁଁ । ଏ ଅନୁଭୂତି ଆମ୍ଭପାଇଁ ବେଶ୍ ଆନନ୍ଦଦାୟକ ଓ ସ୍ମରଣୀୟ ହୋଇ ରହିଛି । ଶ୍ରୀଶ୍ରୀ ମହାଲକ୍ଷ୍ମୀ ପୂଜା ଗଳ୍ପ ଓଡ଼ିଶାର ଘରେ ଘରେ ଲୋକେ ଜାଣନ୍ତି । ଜଗନ୍ନାଥ ଧର୍ମର ଏକ ବିଶେଷ ଅଙ୍ଗକୁ ନେଇ ଏ କାହାଣୀ ଛୁଆଁ ଅଛୁଆଁ ଅନ୍ଧବିଶ୍ୱାସ ଉପରେ ପର୍ଯ୍ୟବସିତ । ଶ୍ରୀୟା ଚଣ୍ଡାଳୁଣୀ ଓ ମାର୍ଗଶୀର ମାସର ମାଣବସା ଗୁରୁବାର ଓଷା ଓ କାହାଣୀକୁ ନେଇ ନାଟ୍ୟକାର ସତ୍ୟନାରାୟଣ ପଣ୍ଡା ଚିତ୍ରନାଟ୍ୟ ଲେଖିଥିଲେ । ମହାଲକ୍ଷ୍ମୀ ଚରିତ୍ରରେ ଓଡ଼ିଆ ନିର୍ଦ୍ଦେଶକ ଶ୍ରୀ ଭଗବାନ ନାୟକଙ୍କ ସ୍ତ୍ରୀ ଶୋଫାଳୀ ନାୟକ ଅଭିନୟ କରିଥିଲେ । ଭଗବାନ ନାୟକ କିଶୋର ବୟସରେ କଲିକତା ପଳାଇଯାଇ ପ୍ରଥମେ ଚଳଚ୍ଚିତ୍ରର ସଂପାଦନା ବିଭାଗରେ ଜଣେ ସହକାରୀ ଭାବରେ କାର୍ଯ୍ୟରତ ହେଲେ । ପରେ ନିଜେ ସଂପାଦକ ଭାବରେ "ତାସେର ଘର" ଚଳଚ୍ଚିତ୍ରର ମୁଖ୍ୟ ସଂପାଦକ ଭାବରେ ପଶ୍ଚିମ ବଙ୍ଗଳା

ଚଳଚ୍ଚିତ୍ର ଶିଳ୍ପର ସର୍ବଶ୍ରେଷ୍ଠ ପୁରସ୍କାର ପାଇଥିଲେ। ସେ ସଂପାଦନା ସହିତ ନିର୍ଦ୍ଦେଶନା ମଧ୍ୟ ଦେଉଥିଲେ। ମହାଲକ୍ଷ୍ମୀ ପୂଜାର ନିର୍ଦ୍ଦେଶକ ହେବାବେଳକୁ ସେ ଜଣେ ବଙ୍ଗାଳୀ ଅଭିନେତ୍ରୀଙ୍କୁ ବିବାହ କରିସାରିଥିଲେ। ଦୁଇଟି କନ୍ୟାର ଜନକ ମଧ୍ୟ ହେଇ ସାରିଥିଲେ। ଶେଫାଳୀ ମୋ ଠାରୁ ଦଶବର୍ଷର ବଡ଼ ଥିଲେ। ସାମାନ୍ୟ ମୋଟା ଶରୀର। ତାଙ୍କ ସହିତ ପ୍ରଥମ ଦିନର ସୁଟିଂ ସେଟ୍‌ରେ ପରିଚ୍ୟ ହେଲା। ଆମ୍ଭେ ବଙ୍ଗଳା କହିପାରୁଥିବାରୁ ସେ ଖୁସିହେଲେ। ପ୍ରଥମ ଦୃଶ୍ୟଟି ଥିଲା ମନ୍ଦିର ବାଟିକାର ଏକ ଚଉତରାରେ ବସି ଶ୍ରୀଜଗନ୍ନାଥ ଓ ଶ୍ରୀଶ୍ରୀ ମହାଲକ୍ଷ୍ମୀ ପ୍ରକୃତିର ଶୋଭା ଉପଭୋଗ କରୁଥିବା ସମୟରେ ଲକ୍ଷ୍ମୀ ଠାକୁରାଣୀ ସ୍ୱାମୀଙ୍କ ଠାରୁ ଗୁରୁବାର ଦିନ ତାଙ୍କର ପୂଜା ଭକ୍ତମାନେ କିପରି ପାଳନ କରୁଛନ୍ତି ମନ୍ଦିର ବାହାରକୁ ଯାଇ ତାହା ଦେଖି ଆସିବାକୁ ଅନୁମତି ମାଗୁଛନ୍ତି। ଜଗନ୍ନାଥ ସବୁକଥା ଆଗରୁ ବୁଝି ସନ୍ଧ୍ୟା ପୂର୍ବରୁ ମନ୍ଦିରକୁ ଫେରି ଆସିବାକୁ ମହଲକ୍ଷ୍ମୀଙ୍କୁ ଅନୁରୋଧ କରିଛନ୍ତି। କାରଣ ବଡ଼ଭାଇନା ବଳଭଦ୍ର ଚଣ୍ଡାଳବିଟାଳ ହେବାଟାକୁ ପସନ୍ଦ କରନ୍ତି ନାହିଁ।

ଏ ଦୃଶ୍ୟଟି ଚିତ୍ରଉତ୍ତୋଳନ ହେବା ସମୟରେ ଜଗନ୍ନାଥ ଓ ଲକ୍ଷ୍ମୀ, ସ୍ୱାମୀ ଓ ସ୍ତ୍ରୀ ଭାବରେ ଆନ୍ତରିକତାର ସହ ହାତଧରି ସଂଳାପ କହିବାକୁ ନିର୍ଦ୍ଦେଶକ ମୋତେ କହିଲେ। ଲକ୍ଷ୍ମୀଙ୍କ ହାତପାପୁଲିଟିକୁ ମୁଁ ହାତରେ ତୋଳିଧରି ନିଜ ଦୁଇହାତର ପାପୁଲି ମଧ୍ୟରେ ରଖି ସଂଳାପ କହି ତାଙ୍କ ମୁହଁକୁ ଅନାଇରହି ସ୍ମିତହାସ୍ୟ ଦେଲି। ସେ ମଧ୍ୟ ଧନ୍ୟବାଦ ସୂଚକ ଏକ ଚ୍ାହାଣୀଦେଇ ତାଙ୍କ ମୁହଁକୁ ଅନେଇ ରହିବାକୁ ବାଧ୍ୟ କରିଥିଲେ। ନିର୍ଦ୍ଦେଶକ "କଟ୍" କହିବା ସଂଗେ ସଂଗେ ତାଳି ଓ O.K. ଶବ୍ଦରେ ପରିବେଶ ସରଗରମ ହୋଇଗଲା। ଶେଫାଳୀ ମୋ ପାଖକୁ ଟିକିଏ ଲାଗି ଆସି ଚୁପି ଚୁପି କହିଲେ, "ଆପନିତୋ ଖୁବ୍ ସ୍ମାର୍ଟ। ଆମି ଏକବାରେ ନାର୍ଭାସହୋୟେ ଗେଲାମ୍। ଦେଖଚେନ୍ ନାଁ ଆମାର ହାତ୍‌ଟା କେମନ୍ କାଁପଛେ।" ମୁଁ ମଧ୍ୟ ଚୁପିଚୁପି କହିଲି, "ଆମାର ଏଇ ହାଁସିର ପେଁଛୋନେ ଏମନି ନାରାଭାସ୍‌ନେସ୍ ଆଛେ। କ୍ୟାମେରା ଆମାର ଡାନ୍ ପାସେ ଛଇଲୋ। ଆମାର ବାଁଦିକେର ଗାଲ୍‌ଟା-କେମନ୍ ଠକ୍‌ଠକ୍ କୋରେ କାଁପ୍‌ଛେ-ଦେଖଛେନ୍ ନାଁ—"। ଶେଫାଳୀ ଯୋର୍‌ରେ ଠୋଠୋ ହସିବାରେ ଲାଗିଲେ। ମୁଁ କିଛି ନଜାଣିଲା ପରି ତାଙ୍କୁ ଅନାଇ ରହିଲି। ସେ ଦିନର ରହସ୍ୟ ଆମେ କାହାକୁ କହିନଥିଲୁ।

କଲିକତାରେ ଏ ଚଳଚ୍ଚିତ୍ର ସୁଟିଂ ସମୟରେ ତେଲମସଲା ଦିଆ ଖାଦ୍ୟ ଯୋଗୁଁ ଓ ମାନସିକ ଅଶାନ୍ତି ଯୋଗୁଁ ମୋର ପେଟ ଗଣ୍ଡଗୋଳ ହେବାରୁ ମୁଁ ଅନେକ ସମୟରେ ଅଭୁକ୍ତ ରହୁଥିଲି। ଏହାର ସୂଚନା ପାଇବାପରେ ଅନୁଭା ଦେବୀଥରେ ଦୁଇଥର ସନ୍ଧ୍ୟା ସୁଟିଂପରେ ମୋତେ ନିଜଗାଡ଼ିରେ ବସେଇ ତାଙ୍କ ଘରକୁ ନେଇ ଯାଉଥିଲେ। ଘରେ ନିଜେ ବରାଦଦେଇ ଖାଦ୍ୟ ରନ୍ଧାଇ ମୋତେ ଖୁଆଉଥିଲେ। ରାତି ଦଶଟା ସମୟରେ ତାଙ୍କ ଡ୍ରାଇଭର ମୋତେ

ଟାଲିଗଞ୍ଜ ବସାରେ ଛାଡ଼ିଯାଉଥିଲା । ମୋ'ଠାରୁ ଦଶବାର ବର୍ଷ ବୟସରେ ବଡ଼, ଜଣେ ନିଃସନ୍ତାନ ବିବାହିତା ମହିଳାଙ୍କର ଏତାଦୃଶ ସଂପର୍କକୁ ମୁଁ ଆଜିଯାଏ ପ୍ରେମର କୌଣସି ପର୍ଯ୍ୟାୟରେ ପକାଇ ପାରିନାହିଁ । ତାଙ୍କର କଥୋପକଥନର ମୁଖ୍ୟ ବିଷୟ ଥିଲା ମୋର ବଂଗଳା ଓ ହିନ୍ଦି ଚଳଚ୍ଚିତ୍ର ଜଗତରେ ଅଭିନେତା ଭାବରେ କେରିଅର । ସେ ସେଥିପାଇଁ ସବୁବେଳେ ମୋର ସଂଳାପ ଉଚ୍ଚାରଣ, ଗଳାସାଧନା, ଭାବାତ୍ମକ ଅଭିନୟରେ ଚକ୍ଷୁ, ଓଷ୍ଠ ଓ ଗଳାର ବ୍ୟବହାର ବିଷୟରେ ନିଜେ ଅଭିନୟ କରି ଶିଖାଉଥିଲେ । ତାଙ୍କର ଇଚ୍ଛାଥିଲା ମୁଁ ବଙ୍ଗଳା ଚଳଚ୍ଚିତ୍ରରେ ଅଭିନୟ କରେ । ଆଜିଯାଏ ମୋର ଚଳଚ୍ଚିତ୍ର ଅଭିନୟର ପ୍ରଥମ ଗୁରୁଭାବେ ମୁଁ ତାଙ୍କୁ ପ୍ରଣାମ ଜଣାଇ ଆସିଛି ।

ଚିରାଚରିତ ଭାବରେ ଶ୍ରୀଶ୍ରୀ ମହାଲକ୍ଷ୍ମୀ ପୂଜା ମୁକ୍ତିଲାଭ ପରେ ମୁଁ ପ୍ରାୟ ଦେଢ଼ବର୍ଷଯାଏ କଲିକତା ଯାଇନାହିଁ । ତା'ପରେ, କ୍ୱଚିତ୍ ଶ୍ରୀମତୀ ଅନୁଭା ଗୁପ୍ତା ସହିତ ଦେଖା କରିବାର ସୁଯୋଗ ପାଇଛି । ଯେତେବେଳେ ଦେଖାହେଲେ ଦୂରରୁ "କେମିତି ଅଛ ?" ଓ "ଭଲ" ଛଡ଼ା ଆଉ କିଛି ବାକ୍ୟ ବିନିମୟ କରିବାର ସୁଯୋଗ ମିଳୁନଥିଲା । ପ୍ରାୟ ଦଶବର୍ଷପରେ ସେ ତାଙ୍କର ପ୍ରଥମ ପତିଙ୍କୁ ପରିତ୍ୟାଗକରି, ତାଙ୍କଠାରୁ ବୟସରେ ସାନ, ହାସ ଅଭିନେତା ରବି ଘୋଷଙ୍କୁ ବିବାହ କରିଥିଲେ । ସାମାନ୍ୟ କିଛିବର୍ଷ ପରେ, ରହସ୍ୟମୟ ପରିସ୍ଥିତିରେ ସେ ମୃତ୍ୟୁବରଣ କରିଥିଲେ । ଉତ୍କଳୀୟ ପରଂପରାରେ କିନ୍ତୁ ଆମ୍ଭେ ଜଣେ କଳଙ୍କିତ ନାୟକର ସଂଜ୍ଞାନେଇ ଆଜିଯାଏ ପରିଚୟ ପାଇ ଆସୁଛୁଁ । ଆମ୍ଭର ପ୍ରଥମ ଚଳଚ୍ଚିତ୍ର ସମୟରୁ "ଏଇ କଳା ମୋର କଳଙ୍କ" ଗୀତଗାଇ, ନିଜକୁ ଜଣେ ପ୍ରଖ୍ୟାତ ପ୍ରେମିକ ବୋଲଇ "ହତାଶିଆ କଳାକାର" ହେବାର ଗର୍ବ ଓ ଗୌରବକୁ ଆମ୍ଭେ ଗ୍ରହଣ କରିନାହୁଁ । ତଥାପି ଆମ୍ଭର ସି.ସି.ଆର୍. ଭାଷ୍ୟକାରଗଣ ଏହାକୁ ଆଜିଯାଏ ଉଜ୍ଜୀବିତ ରଖିଛନ୍ତି ।

ବଙ୍ଗଳା ଚଳଚ୍ଚିତ୍ରରେ କଳାକାରମାନଙ୍କୁ ଯଥେଷ୍ଟ ସମ୍ମାନ ଦେବାର ପରଂପରା ଆଜି ଯାଏ ଅଛି । ଅବଶ୍ୟ, ଚଳଚ୍ଚିତ୍ର ଜଗତରେ ଯେତେଜଣ ଲୋକ ବ୍ୟସ୍ତ, ବିବ୍ରତ ହୋଇ ବୁଲୁଥିବାର ଦେଖାଯାଏ ସେମାନେ ଏକପ୍ରକାରର ନୁହଁନ୍ତି । ପ୍ରଥମରେ, ଚଳଚ୍ଚିତ୍ରର ଗ୍ଲାମର ପାଇଁ ଲୋକେ ଚଳଚ୍ଚିତ୍ର ପ୍ରତି ଆକୃଷ୍ଟ ହୋଇଥାଆନ୍ତି । ଦ୍ୱିତୀୟରେ, ସହଜ ଉପାୟରେ କିଛି ରୋଜଗାର । ଖାଟିଣି ନଖଟି ବସିବସି, ବିଡ଼ି ଫୁଙ୍କି ସନ୍ଧ୍ୟାବେଳକୁ ପକେଟରେ ପଚାଶ/ ଶହେଟଙ୍କା ନେଇ ଘରକୁ ଫେରିବାର ଗୌରବ ଚଳଚ୍ଚିତ୍ରର ଅଭିନେତାକୁ ହିଁ ମିଳିଥାଏ । ତୃତୀୟରେ, ବହୁବର୍ଣ୍ଣା ନାରୀମାନଙ୍କର ସଙ୍ଗସୁଖ ଓ ସାହଚର୍ଯ୍ୟ । ଚତୁର୍ଥରେ, ପ୍ରତ୍ୟେକ ପଦାର୍ଥ ଓ ବ୍ୟକ୍ତିକୁ ନେଇ ଚଳଚ୍ଚିତ୍ର ଜଗତରେ "ଦଲାଲି" କରିବାର ଏକ ଗୁପ୍ତଗଙ୍ଗା ସବୁବେଳେ ପ୍ରବାହିତ ହେଉଥାଏ । ଏ ସ୍ରୋତରେ ବହୁ ପ୍ରଯୋଜକ, ନିର୍ଦ୍ଦେଶକ, ବିତରକ,

ଲେଖକ, ସଂଗୀତଜ୍ଞ ଓ ଦଲାଲ ଭାସି ଚାଲିଥାଆନ୍ତି । ପଞ୍ଚମରେ, ଖୋଲାଖୋଲି ମଞ୍ଚରେ, ଚଳଚ୍ଚିତ୍ରର ଶୁଭଚିନ୍ତକ, ପ୍ରେମିକ, ପ୍ରଚାରକ, ସାଂବାଦିକର ପରିଚୟ ଦେଉଥିବା ଲୋକେ ବେଳେବେଳେ ଜଣେଜଣେ ଶୋଷକ ପାଲଟି ଯାଇଥାଆନ୍ତି । ସେଥିପାଇଁ ପୃଥିବୀର ସବୁ ଚଳଚ୍ଚିତ୍ର ଶିଳ୍ପରେ ଅତିବିଚକ୍ଷଣ ଓ ଅଦ୍ଭୁତ ଚରିତ୍ରର ଲୋକଙ୍କ ସମାବେଶ ହୋଇଥାଏ । ଓଡ଼ିଆ ଚଳଚ୍ଚିତ୍ର ଶିଳ୍ପ ମଧ୍ୟ ସେହି ଢ଼ାଞ୍ଚାରେ ଗଢ଼ି ଉଠିଛି । ଏଠାରେ ପେଷାଦାର ମନୋଭାବର ସଂଜ୍ଞା ବୁଝେଇବାର ଲୋକ ଦେଖିବାକୁ ମିଳିବେ ନାହିଁ । କୌଣସି ସମୟରେ କଳାକାରର ଉଚିତ୍ ପ୍ରାପ୍ୟ, କାର୍ଯ୍ୟ ଆରମ୍ଭରୁ, ଅଗ୍ରୀମ ଭାବରେ ବା ବେଳେବେଳେ ଘନଘନ ଫୋନ୍ ନକଲେ ମିଳିବାର ସମ୍ଭାବନା ନଥାଏ । ସେଦୃଷ୍ଟିରୁ ଆମ୍ଭେ ପ୍ରଥମରୁ ନିଜକୁ ଜଣେ ଚଳଚ୍ଚିତ୍ରସଂପୃକ୍ତ ବ୍ୟକ୍ତି ଭାବରେ ପରିଚୟ ଦେବାକୁ ସଂକୋଚ କରୁ । କାରଣ, ଆଜିଯାଏ ଓଡ଼ିଶାରେ ସବୁ ମହଲରେ ଚଳଚ୍ଚିତ୍ରସଂପୃକ୍ତ ବ୍ୟକ୍ତିଙ୍କୁ ଏକ ଭିନ୍ନ ମାନର ଜୀବ ଭାବରେ ଗ୍ରହଣ କରାଯାଏ । ଏମାନଙ୍କୁ "ପ୍ରଫେସନାଲ" କୁହାଯାଏ ।  ଆମ୍ଭେ ଅଠଚାଳିଶ ବର୍ଷ ହେଲା ଏ ପାହ୍ୟାରେ ପହଞ୍ଚିପାରିନାହୁଁ ।

ଦୀର୍ଘ ଛ'ମାସ ମହାଲକ୍ଷ୍ମୀ ପୂଜା ଚଳଚ୍ଚିତ୍ର କାର୍ଯ୍ୟରତ ହେବାପରେ, ଆମ୍ଭର ଆର୍ଥିକ ଅବସ୍ଥାର ସେପରି କୌଣସି ଉନ୍ନତି ହୋଇନଥିଲା । ପରିବାର ଲୋକଙ୍କୁ କେବଳ ଆର୍ଥିକ ସାହାଯ୍ୟ ଦେବାର ଆତ୍ମବିଶ୍ୱାସଟି ପାଇପାରିଥିଲୁ । ଶ୍ରୀଶ୍ରୀ ମହାଲକ୍ଷ୍ମୀ ପୂଜାର ମୁକ୍ତି ଦିବସରେ ହିନ୍ଦ୍ ସିନେମା ପ୍ରେକ୍ଷାଳୟରେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ଆଶୀର୍ବାଦ ପାଇବା ପରେ, ଆମ୍ଭ ନିଜଉପରେ ସାମାନ୍ୟ ବିଶ୍ୱାସ ଆସିଥିଲା । ଖୁବ୍ ଅଳ୍ପଦିନ ଭିତରେ ସାରା ଓଡ଼ିଶାରେ ଆମ୍ଭେଜଣେ ଚଳଚ୍ଚିତ୍ର ଅଭିନେତା ଭାବରେ ଗ୍ରହଣୀୟ ହୋଇଯାଇଥିଲୁ । ଧର୍ମବିଶ୍ୱାସୀ ମହିଳାମାନେ ପଇସା, ନଡ଼ିଆ ଧରି ମହାଲକ୍ଷ୍ମୀ ପୂଜା ଚଳଚ୍ଚିତ୍ର ଦେଖିବାକୁ ଆସୁଥିଲେ ଓ ଶ୍ରୀ ଜଗନ୍ନାଥଙ୍କୁ ପରଦାରେ ଦେଖିବା ସାଂଗେ ସାଂଗେ ହୁଳହୁଳି ଦେଇ, ନଡ଼ିଆ ଓ ପଇସା ପରଦା ଉପରକୁ ଫୋପାଡୁଥିଲେ । ଏସମସ୍ତ ଆକର୍ଷଣ କିନ୍ତୁ ଆମ୍ଭଙ୍କୁ ପ୍ରଭାବିତ କରିପାରି ନଥିଲା । ତେଣୁ ଶ୍ରୀଶ୍ରୀ ମହାଲକ୍ଷ୍ମୀ ପୂଜା ମୁକ୍ତି ଲାଭକରିବାର ଛ'ମାସପରେ ଆମ୍ଭେ ନିଷ୍ପତ୍ତି ନେଇଥିଲୁ, ଯେ କୌଣସି ସ୍ଥାୟୀ ଚାକିରୀ ନକରିବାଯାଏ ଚଳଚ୍ଚିତ୍ରରେ ଅଭିନୟ କରିବୁ ନାହିଁ । ଚଳଚ୍ଚିତ୍ରରେ ଅଭିନୟ ପାଇଁ କାହା ଆଗରେ ହାତ ପତାଇବୁ ନାହିଁ । ତାହାହିଁ ଆମ୍ଭେ କରି ଚାଲିଛୁଁ ଆଜିଯାଏ । ସେଥିପାଇଁ ଅଠଚାଳିଶ ବର୍ଷରେ ଗାଏ ମୋଟ ୪୬ ସିନେମା ଓ ଦଶଟି ଟେଲିଭିଜନ କାମ ।

କଟକରେ ରହି ବିଭିନ୍ନ ସଂସ୍ଥାକୁ ଚାକିରୀ ପାଇଁ ଦରଖାସ୍ତ ପଠାଇବା କାର୍ଯ୍ୟଟି ଚାଲୁ ରଖିଲୁ । ଏ ସମୟରେ ଶ୍ରୀ ଗୋପାଳ ଘୋଷ ଓ ଶ୍ରୀ ସୌମେନ୍ଦ୍ର ମିଶ୍ର ଆମ୍ଭଙ୍କୁ "ଶ୍ରୀଲୋକନାଥ" ଓ "ସୂର୍ଯ୍ୟମୁଖୀ" ଚଳଚ୍ଚିତ୍ରରେ ଅଭିନୟ କରିବାକୁ ଅନୁରୋଧ

କରିଥିଲେ । ଆଗରୁ ନିଷ୍ପତ୍ତି ନେଇଥିବାରୁ ଆମ୍ଭେ ଏ ଅନୁରୋଧ ରକ୍ଷା କରିନଥିଲୁ । ମୋର ଜଣେ ଶିକ୍ଷାଗୁରୁ ପ୍ରଫେସର ଜୟକୃଷ୍ଣ ମିଶ୍ର ଓ ସହପାଠୀ ଶ୍ରୀ ସୁବୀର ସିହ୍ନାଙ୍କ ଚେଷ୍ଟାରେ କଟକ କେଣ୍ଟନ୍‌ମେଣ୍ଟସ୍ଥିତ ସେକ୍ରେଟେରୀଏଟରେ ଗୋଟିଏ ଅସ୍ଥାୟୀ କିରାଣୀ ଚାକିରୀର ଇଣ୍ଟରଭ୍ୟୁ ଦେବାବେଳେ ପ୍ରୋଜେକ୍ଟ ଲିଡ଼ର ମିଶ୍ର କହିଥିଲେ, "ହେ ଭଗବାନ, ଜଣେ କଳାକାରଙ୍କର ଅତ୍ୟାଚାର ପରେ, ଆଉ ଜଣେ ସେମିତି କଳାକାର ମୋ ଭାଗ୍ୟରେ ଜୁଟିଯାଉଛନ୍ତି ।" ମୁଁ ତାଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଇଥିଲି, "ସାର୍, ଅଫିସ୍ କାମ ସମୟରେ ମୁଁ କେବେ ଆପଣଙ୍କୁ ଠିକିବି ନାହିଁ ।" ମୋ ପୂର୍ବରୁ ସେହି ପୋଷ୍ଟରେ ଜଣେ କଟକର ପ୍ରତିଷ୍ଠିତ ଗାୟକ ଏ ସ୍ଥାୟୀ ଚାକିରୀଟି କରୁଥିଲେ । ସେ ଧାରାବାହିକ ଭାବରେ ଅଫିସରେ ଅନୁପସ୍ଥିତ ରହି ଆକାଶବାଣୀର ସିଧାପ୍ରସାରଣ କରିବାକୁ ପଳେଇ ଆସୁଥିଲେ । ମୋର ତିନିମାସର ଅସ୍ଥାୟୀ ଚାକିରୀ ସ୍ଥାୟୀ ହେବାବେଳକୁ ସମ୍ବଲପୁର୍ ଜିଲ୍ଲାର୍ ବରଗଡ଼ ସହରରେ କିଲ୍ଲାର ଦ୍ୱିତୀୟ କଲେଜ ପ୍ରତିଷ୍ଠିତ ହେଲା । ମୋର ଅଧ୍ୟାପକର ସ୍ଥାୟୀ ଚାକିରୀଟିର ନିଯୁକ୍ତିପତ୍ର ମୋ ପାଖକୁ ଡ଼ାକରେ ପହଞ୍ଚିଗଲା । ମୁଁ କଟକରୁ ବିଦାୟ ନେଇ ୧୯୬୦ ମସିହା ଜୁଲାଇ ସାତ ତାରିଖରେ ପଞ୍ଚାୟତ କଲେଜର ପ୍ରଥମ ଅର୍ଥନୀତି ଅଧ୍ୟାପକ ଭାବରେ ଯୋଗ ଦେଲି ।

ନୟାଗଡ଼ ସହରରେ ଜନ୍ମଗ୍ରହଣ କରିଥିବା ପଶ୍ଚିମାଞ୍ଚଳର ଜଣେ ଶିଶୁ ଖୋର୍ଦ୍ଧା ସହରରୁ ପାଠ ଆରମ୍ଭ କରି ପୁରୀ ବାଲିସାହି ଏମ.ଇ. ସ୍କୁଲରେ ଦ୍ୱିତୀୟ, ତୃତୀୟ ଶ୍ରେଣୀ ପାସ୍‌କରି ଚତୁର୍ଥ, ପଞ୍ଚମ, ଷଷ୍ଠ ଶ୍ରେଣୀ ବେଳକୁ କଟକର ବିଖ୍ୟାତ ପି.ଏମ୍. ଏକାଡ଼େମୀର ଛାତ୍ର ହେବାର ସୌଭାଗ୍ୟ ପାଇଥିଲା । ସେ ସମୟ ଥିଲା ଦ୍ୱିତୀୟ ମହାସମରର ଆତଙ୍କର ସମୟ, ଗାନ୍ଧୀ, ସୁଭାଷଚନ୍ଦ୍ରଙ୍କ ଜାତୀୟ ଆନ୍ଦୋଳନର ସମୟ । ୧୯୩୮ ରୁ ୧୯୪୫ ପର୍ଯ୍ୟନ୍ତ ଉପକୂଳ ଓଡ଼ିଶାର ସମସ୍ତ ସଂସ୍କୃତି ସହିତ ଓତପ୍ରୋତ ଭାବରେ ଜଡ଼ିତ ରହି, ସେ ହଠାତ୍ ଦକ୍ଷିଣ ଓଡ଼ିଶାର ଘାଟିରାସ୍ତା ଡେଇଁ ଭୂସ୍ୱର୍ଗ କୋରାପୁଟ ଜିଲ୍ଲାରେ ପ୍ରବେଶ କରିଥିଲା ସପ୍ତମ ଶ୍ରେଣୀର ପାଠ ପଢ଼ିବା ପାଇଁ । ସେଇ କିଲ୍ଲାରେ କୋରାପୁଟ ଓ ନରବଂଗପୁର ସହରରେ ୧୯୪୭ ମସିହାଯାଏ ସେ ବୋର୍ଡ ସ୍କୁଲର ଛାତ୍ରଥିଲା । ୧୯୪୮ ମସିହାବେଳକୁ ସେ ନିକର ପୈତୃକ କିଲ୍ଲା ସମ୍ବଲପୁରର ଲରମ୍ଭା ଗ୍ରାମର ଆବାସିକ ହାଇସ୍କୁଲର ଛାତ୍ରଭାବରେ ୧୯୪୯ ମସିହାରେ ମେଟ୍ରିକ ପାସ୍ କରିଥିଲା, ଷୋହଳବର୍ଷ ବୟସରେ । ଦୁଇବର୍ଷ ଗଙ୍ଗାଧର ମେହେର କଲେଜରୁ ଆଇ.ଏସ୍.ସି. ପାଠପଢ଼ି, ୫୨-୫୪ ମସିହାରେ କଟକର ରେଭେନ୍‌ସା କଲେଜରୁ ବି.ଏ. ପାସ୍ କରି ସେ ପ୍ରୟାଗ ବିଶ୍ୱବିଦ୍ୟାଳୟକୁ ଯାଇଥିଲା ଅର୍ଥଶାସ୍ତ୍ରରେ ଏମ୍.ଏ. ପଢ଼ିବାପାଇଁ । ୧୯୫୭ ମସିହାରେ ପିତାଙ୍କ ମୃତ୍ୟୁପରେ ଅସହାୟ ଭାବରେ ସେ ଚାକିରୀ ଖୋଜୁଖୋଜୁ, ଚଳଚ୍ଚିତ୍ର ଅଭିନେତା ହୋଇଯାଇଥିଲା । ଲୋକେ ତାକୁ ଗ୍ରହଣ କରିଥିଲେ । ତେଣୁ ୧୯୬୦ ମସିହାରେ ସେ ବରଗଡ଼ କଲେଜର

ଅଧ୍ୟାପକ ଥାଇସୁଦ୍ଧା ଆସ୍କାର କବିରାଜ କୃଷ୍ଣଚନ୍ଦ୍ରଙ୍କ ଅନୁରୋଧରେ "ଦସ୍ୟୁ ରତ୍ନାକର" ଚଳଚ୍ଚିତ୍ରରେ ବାଲ୍ମିକୀ ଚରିତ୍ରରେ, କଟକର ଧୀର ବିଶ୍ୱାଳଙ୍କର ପଞ୍ଚସଖା ପିକ୍‌ଚର୍ସର ନୂଆବୋଉର "ଯୁବ ଡାକ୍ତର", ତାପଙ୍ଗ ନରଣଗଡ଼ର ଶ୍ରୀନିବାସ ପାଇକରାୟଙ୍କର "ଜୀବନସାଥୀ"ର ନାୟକ, ସମ୍ବଲପୁରର ପ୍ରଥମ ଚଳଚ୍ଚିତ୍ର ମୋ ନିଜର ପ୍ରଯୋଜିତ "ସାଧନା"ର ନାୟକ, ପଞ୍ଚସଖାର ଅକ୍ଷୟ ମହାନ୍ତି ଓ ଝରଣା ଯୋଡ଼ି ନାୟକ ନାୟିକା "ନବଜନ୍ମ" ଚଳଚ୍ଚିତ୍ରରେ ପାର୍ଶ୍ୱନାୟକ, କଟକର ବାବୁଲାଲ ଦୋଷୀ ପ୍ରଯୋଜିତ "ମାଟିର ମଣିଷ"ର ବରଜୁ ଚରିତ୍ର, ଭୁବନେଶ୍ୱରର ଧୀରେନ୍ ପଟ୍ଟନାୟକ ପ୍ରଯୋଜିତ ନୃତ୍ୟ ଆଧାରିତ ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର "ଅରୁନ୍ଧତୀ"ର ପାର୍ଶ୍ୱନାୟକ, ଓ ପଞ୍ଚସଖାର ଶେଷ ଚଳଚ୍ଚିତ୍ର ପୁରା ମସଲଭାରା ବ୍ୟବସାୟିକ/ପାରିବାରିକ/ସଂଗୀତମୟ ଚଳଚ୍ଚିତ୍ର "କିଏ କାହାର"ର ନାୟକ ହେବାର ସୌଭାଗ୍ୟ ପାଇଥିଲା। ସେ କାହାକୁ ଅଭିନୟ ପାଇଁ ଅନୁରୋଧ କରିନଥିଲା, ଅଥଚ ୧୯୬୮ ମସିହାରେ ଓଡ଼ିଆ ଚଳଚ୍ଚିତ୍ର ସମାଲୋଚକମାନେ ଲେଖିଲେ, ଓଡ଼ିଶାର ଦର୍ଶକ ଆଉ କେତେଦିନ ସେଇ ଗୋଟାଏ ମୁହଁ ଦେଖିବେ ? ଆମ୍ଭେ ପଶ୍ଚିମାଞ୍ଚଳକୁ ବାଦଦେଇ ଚଳଚ୍ଚିତ୍ର ଜଗତକୁ ଦକ୍ଷିଣ ଅଞ୍ଚଳରୁ ଜଣେ ନୂତନ ଅଭିନେତାଙ୍କୁ ପ୍ରବେଶ କରାଇବାରେ ସାହାଯ୍ୟ କଲୁ ୧୯୭୨ ମସିହାରେ। ଆମ୍ଭର ଦରଜା ସମାଲୋଚକଙ୍କ ଯୋଗୁଁ ବଡ଼ଭାଇ ଓ ମୂକ ପାର୍ଶ୍ୱଚରିତ୍ରକୁ ଖସି ଆସିଲା। ଏହି ସମୟରୁ ଆରମ୍ଭ ହେଲା ହିରୋ ହିରୋଇନ୍ ଯୋଡିକୁ ନେଇ ଚଳଚ୍ଚିତ୍ର ପ୍ରଯୋଜନା ଓ ପ୍ରଚାର। ଏହା ଆଜି ଓଡ଼ିଆ ଚଳଚ୍ଚିତ୍ରକୁ ତା'ର ନିଜ ଭାଷା, ସାହିତ୍ୟ, ସଂସ୍କୃତି, ସଂସ୍କାର ଓ ପରଂପରାର ବହୁ ଉପରକୁ ନେଇଯାଇଛି। ଓଡ଼ିଆ ଚଳଚ୍ଚିତ୍ରରେ ଏବେ ଆଉ ଓଡ଼ିଶାର/ଓଡ଼ିଆର କାହାଣୀ ନାହିଁ। ସବୁ ଜଗତୀକରଣ କାହାଣୀ, ବେଶ ପୋଷାକ, ସଂଗୀତନୃତ୍ୟ, ପୂଜା ପାର୍ବଣ, ମାନସିକ, ସଂପର୍କ ସବୁଥିରେ ଅନୁକରଣ। କୌଣସିଠାରେ ନୂତନତ୍ୱ ବା କିଛି ସୃଜନଶୀଳ କରିବାର ଇଚ୍ଛା ଆଉ ଓଡ଼ିଆ ଚଳଚ୍ଚିତ୍ରରେ ଦେଖାଯାଉ ନାହିଁ। ଏବେ ନାୟକରୁ ହିରୋ, ଭିଲିଏନ, ନିର୍ଦ୍ଦେଶକ, କମେଡ଼ି ଆର୍ଟିଷ୍ଟ, କେରେକ୍ଟର ଆକ୍ଟର ନାମକରଣ କରାଯାଉଛି। କିନ୍ତୁ କାହାଣୀ ନାହିଁ କିମ୍ବା ଚରିତ୍ର ମଧ୍ୟ ନାହିଁ। କେବଳ ଜଣେ ଅନୁକରଣପ୍ରିୟ (ନମ୍ବରୱାନ୍) କଳାକାରର ମେନେରିଜମ୍, ଇମେଜ, ସଂଳାପ କହିବା ଟ୍ରେଡ଼ ମାର୍କ ଓ ତାଙ୍କ ନାମ ଉଚ୍ଚାରଣ କରି ବେପାର ବଣିକ- ନିର୍ଦ୍ଧାରିତ ହେଉଛି "ମେନ୍ ଷ୍ଟ୍ରିମ" ସିନେମାରେ। ଏପରି ଏକ ଆଧୁନିକ ଯୁଗରେ, ଆମ୍ଭେ ଏବେବି ଅଭିନୟ କରିବାର ସୁଯୋଗ ପାଉଛୁଁ ଅଠଚାଳିଶ ବର୍ଷ ହେଲା। କିନ୍ତୁ ଆମ୍ଭର କୌଣସି ବେଶପୋଷାକ, ମେନେରିଜମ୍, ଷ୍ଟାଇଲ, ଡାଇଲଗ୍ ଡେଲିଭରି ଓ ଆମ୍ଭର ଯୋଡ଼ିଟିଏ ଯୋଗାଡ଼ ନକରି ଆମ୍ଭେ ଅଭିନୟ କରୁଛୁଁ। ଲୋକେ ଆମ୍ଭପାଖକୁ ନ ଆସିଲେ ଆମ୍ଭେ ତାଙ୍କ କଥା ଜାଣିବାକୁ, ଶୁଣିବାକୁ ବା ଅନୁରୋଧ କରିବାକୁ

ଉଚିତ ମନେକରୁନାହୁଁ । ଶୁଣାଯାଏ, ସବୁ ଚଳଚ୍ଚିତ୍ର ଏବେ ସୁପରଡୁପର ହିଟ୍ ହେଉଛି । ସେ କଳାଧଳା ଯୁଗରେ ସବୁଫ୍ଲପ୍ । ଏ ବିତର୍କକୁ ଯିବାକୁ ଚାହୁଁନାହୁଁ, କିନ୍ତୁ ଯେଉଁମାନେ ଆମ୍ଭଙ୍କୁ ଆଜକାଲି ଅଭିନୟ କରିବାକୁ ଅନୁରୋଧ କରନ୍ତି, ସେମାନେ କେବେହେଲେ ଆଗତୁରା ଆମ୍ଭର "ପ୍ରାପ୍ୟ କଣ" ବୋଲି ପଚାରନ୍ତି ନାହିଁ । ଆମ୍ଭଙ୍କୁ ସମାଲୋଚକଙ୍କ ଭାଷାରେ ବରିଷ୍ଠ କଳାକାର (ଚଳଚ୍ଚିତ୍ର ଅଭିନେତା) ଭାବରେ ସମ୍ବୋଧନ କରାଯାଏ । ଅଥଚ ଆମ୍ଭର ଚଉତିରିଶ ବର୍ଷର ଘରୋଇ କଲେଜ ଅଧ୍ୟାପକ ଚାକିରୀ କଥାଟା କେହି ମନେ ପକାନ୍ତି ନାହିଁ । ଗୋଟାଏ ଘରୋଇ କଲେଜ ମାଷ୍ଟର, କେବେ କଣ ଫିଲିମ୍ ଲାଇନରେ ଓଡ଼ିଶାରେ କିଛି କରିପାରିବ ? ସାରା ଜୀବନଟାଯାକ, ଓଡ଼ିଶାରେ କେହି କେବେ ପ୍ରଯୋଜକ, ନିର୍ଦ୍ଦେଶକ, ବିତରକ, ସଂଗୀତଜ୍ଞ, ଆର୍ଟ ଡିରେକ୍ଟର, ସଂଳାପ ଲେଖକ, ସାଂବାଦିକ, ପ୍ରଚାରିକ ହେଇ ରହିପାରି ନାହାଁନ୍ତି । କେବଳ ଅଭିନେତାଟିଏ ନିଜେ ଚାହିଁଲେ ଓ ଲୋକେ ଚାହିଁଲେ ସାରା ଜୀବନ ଅଭିନେତାଟିଏ ହୋଇ ରହିଯାଇପାରେ । ଆମ୍ଭେ ଦେଖିଛୁଁ, ଏତିକି ଆମର ଷ୍ଟାଟସ୍ ଓ କାଲିବର୍ । ଆଜିଯାଏ ଓଡ଼ିଶାର କେତେକଣ ଏମିତି ଷ୍ଟାଟସ୍ ମେନ୍‌ଟେନ୍ କରିଛନ୍ତି କି ? ଗାଦି ମାଡ଼ି ବସିଛନ୍ତି କି ? ୧୯୫୮ ରୁ ୨୦୦୬ ! ଅଚ଼ଳାଚ଼ଳ ସମ୍ପତ୍ତି !!

ଆମ କଲେଜ ପଢ଼ିବା ସମୟର ସେ ସାହି ଗୁରୁଜନଙ୍କ ମନ୍ତବ୍ୟକୁ ଆମ୍ଭେ ଏବେ ଉଚିତ ଓ ଯଥାର୍ଥ ମନେକରୁଛୁଁ । କାରଣ ସତୁରି ବର୍ଷହେଲା ଆମେ ଉପରକୁ ଉଠିବାକୁ କେବେ ଚେଷ୍ଟା କରିନାହୁଁ । ସେଇପ୍ରଥମରୁ ଓଡ଼ିଆ ଅଭିନେତା ହେଇ ଯେଉଁ ଲାଇନରେ ପଶିଲୁ ଯେ, ଆଜିଯାଏ ସେମିତି ଘିରିଘିରି ବୁଲୁଛୁଁ । ଯାହାକୁଇ ତ ଇଂରାଜିରେ "ଲୋଫର" କହନ୍ତି । ନିଷ୍କର୍ମାଟାଏ ।



# ମୋର ପ୍ରୋବେସନାରୀ ଟ୍ରେନିଂ

୧୯୬୦ ମସିହା ବେଳକୁ ମୋର "ଚରିତ୍ର ପଞ୍ଜିକା" ନିମ୍ନ ପ୍ରକାର ଥିଲା । ଏଥିରୁ କିଛି ଭାରତର ବିଭିନ୍ନ ଅନୁଷ୍ଠାନମାନଙ୍କୁ ମଧ୍ୟ ଆମ୍ଭେ ପ୍ରେରଣ କରିଥିଲୁଁ । ବରଗଡ଼ର ନୂତନ ବରଗଡ଼ ମହାବିଦ୍ୟାଳୟରେ ପରିଚାଳନା ସମିତିକୁ ମଧ୍ୟ ଏହା କଟକରୁ ପ୍ରେରିତ ହୋଇଥିଲା । ବୟସ : ଛବିଶ ବର୍ଷ / ଶିକ୍ଷାଗତ ଯୋଗ୍ୟତା : ଅର୍ଥନୀତିରେ ପ୍ରୟାଗ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଡିଗ୍ରୀ ସହିତ ଭାରତୀୟ ଚିତ୍ରକଳାରେ ଦୁଇବର୍ଷିଆ ଡିପ୍ଲୋମା । / ଅଭିଜ୍ଞତା : ବିବାହିତ । ଏକ ଶିଶୁକନ୍ୟାର ପିତା । / ଅତିରିକ୍ତ ଅଭିଜ୍ଞତା : ପିତା ଅବସର ନେବାର ଦଶମାସପରେ ସାତଟି ଛୋଟ ଭାଇ ଓ ଗୋଟିଏ ସାନ ଭଉଣୀର ସମସ୍ତ ଦାୟିତ୍ୱ ତାଙ୍କର ମୁଣ୍ଡ ଉପରେ ଲଦି ଆକସ୍ମିକ ଭାବରେ ହୃଦରୋଗରେ ସ୍ୱର୍ଗାରୋହଣ କରିଛନ୍ତି । ବିଧବା ମାତା ଚାହାଁନ୍ତି ଖୁବ୍ ଶୀଘ୍ର ଏ ଏକମାତ୍ର ଶିକ୍ଷିତ ଜ୍ୟେଷ୍ଠ ପୁତ୍ରଟି ଅର୍ଥ ଉପାର୍ଜନ କରି ଘରର ସମସ୍ତ ଦାୟିତ୍ୱ ତୁଲାନ୍ତୁ । ଘରର ସମସ୍ତ ସମସ୍ୟା ଦୂର କରନ୍ତୁ । ସମସ୍ତ ଭାଇଭଉଣୀଙ୍କୁ ପାଠ ପଢ଼େଇ ଯୋଗ୍ୟ କରାନ୍ତୁ । / ବିଶେଷ ଅଭିଜ୍ଞତା : ପିତାଙ୍କ ମୃତ୍ୟୁପରେ ତିନିବର୍ଷ ମଧ୍ୟରେ କଟକ ଓ କଲିକତା ପରି ସହରରେ ଛୋଟମୋଟ ଅନେକ କାର୍ଯ୍ୟ କରି ସାରିଥିଲୁଁ । ଯଥା : ବ୍ଲକ୍ ଡିଜାଇନିଂ, ଖରାତରାରେ ବୁଲିବୁଲି ଦୋକାନମାନଙ୍କର ଖବରକାଗଜରେ ବିଜ୍ଞାପନ ପ୍ରଚାର କରି କମିସନ୍ ପାଇବା, କଟକ ସେକ୍ରେଟେରୀଏଟ୍‌ରେ ସାମୟିକ କିରାଣୀ ଚାକିରୀ କରିବା, ନାଟକ ଓ ଓଡ଼ିଆ ଚଳଚ୍ଚିତ୍ରରେ ଅଭିନୟ କରିବା ଇତ୍ୟାଦି ।

ଏଇ ଶେଷ କାର୍ଯ୍ୟଟି ପାଇଁ ଓଡ଼ିଶାରେ ସର୍ବତ୍ର ତାହାଙ୍କୁ ଲୋକେ ଚିହ୍ନୁଥିଲେ । ନିକଟତର ହେଉଥିଲେ । ଉତ୍ସୁକାଉ ଥିଲେ । ଅନେକ କଥା ପଚାରୁଥିଲେ । ଥଟ୍ଟାମଜା କରୁଥିଲେ । ଚେରେଛେଇ ଅନଉଥିଲେ । ଭଲ ପାଉଥିଲେ । ତାଙ୍କ ମୁଣ୍ଡରେ ନଡ଼ିଆ 'ଡ଼ୋ' କରୁଥିଲେ ।

ପାଠକେ ପଚାରିବେ, "ଏମିତି କାହିଁକି ହେଲା ? ଆମେ କହିବୁ, ଭାଗ୍ୟଂ ଫଳତି ସର୍ବତ୍ର ନଚ଼ ବିଦ୍ୟା ନଚ଼ ପୌରୁଷଂ ।"

ଏସବୁକୁ ମୋର ଦୁର୍ଗୁଣର ଫଳବୋଲି ମଧ୍ୟ ଆପଣମାନେ କହିପାରନ୍ତି ! ଆମ୍ଭେ ସ୍ୱୀକାର କରୁଛୁଁ, ଆମର ପ୍ରଥମ ଦୁର୍ଗୁଣ ହେଲା :- ସାଧାରଣ ଭାବରେ ସମସ୍ତଙ୍କୁ ଏକାପରି ଭଲ ବ୍ୟବହାର ଦେଖାଇବା । ସମସ୍ତଙ୍କୁ ବିଶ୍ୱାସ କରିବା । ଫଳରେ ନିଜର ଲାଭନଥାଇ

ଅନ୍ୟକୁ ସାହାଯ୍ୟ କରିବାପାଇଁ ନିଜର ସମୟ ଓ ସମ୍ବଳ ବିନିଯୋଗ କରିବା । ଏଗୁଡ଼ାକ କଣ ଆଜିକାର ଆଧୁନିକ ଯୁଗପାଇଁ ଭଲ ଗୁଣ ? ପି.ସି. ନଥାଇ କେହି ଆଜିକାଲି ଭଲକାମ କରୁଛି କି, ଆଜ୍ଞା ?

ଆମର ଦ୍ୱିତୀୟ ଦୁର୍ଗୁଣଟି ହେଲା : ଆମେ କୌଣସି କାମ ହେଇପାରିବ ନାହିଁ ବୋଲି ଭାବି ପାରୁ ନଥିଲୁ । ସବୁ କାମର ଗୋଟାଏ ସରଳଧାରା ଖୋଜି ବାହାର କରିବାକୁ ଚେଷ୍ଟା କରୁଥିଲୁଁ । ତା' ଅର୍ଥ କୋଟିଏ ଟଙ୍କାର ଯୋଜନା କେମିତି କୋଡ଼ିଏ ଲକ୍ଷରେ ସମ୍ଭବ ହୋଇ ପାରିବ ବହୁଲୋକ ଏହାଶୁଣି ଆମ୍ଭଙ୍କୁ ତାଚ୍ଛଲ୍ୟ କରୁଥିଲେ ସେଥିରେ ଆମେ ହତୋତ୍ସାହିତ ବା ଦବି ଯାଉ ନଥିଲୁଁ । ସୁଯୋଗ ଖୋଜୁଥିଲୁ ନିଜର ଯୋଜନା କାର୍ଯ୍ୟକାରୀ କରି ସଫଳତା ପାଇବା ପାଇଁ । ସମୟକୁ ଅପେକ୍ଷା କରୁଥିଲୁଁ । ପି.ସି.ର ଚିନ୍ତା ମୋଟେ ମୁଣ୍ଡରେ ପୁରାଉ ନଥିଲୁଁ । ଏକନିଷ୍ଠ ଭାବରେ କାର୍ଯ୍ୟକରିବାକୁ ଭଲ ପାଉଥିଲି ।

ମୋର ତୃତୀୟ ଦୁର୍ଗୁଣଟି ହେଲା :- ଅନେକ ଗୁଡ଼ାଏ ଯୋଜନା ଓ ସୃଜନଶୀଳ କାମ କରିବାପାଇଁ, ଗୋଟିଏ ସମୟରେ ମୁଣ୍ଡ ଖେଳାଉଥିଲି । ସମୟ ନଷ୍ଟ କରିବାକୁ ମୋତେ ଭଲ ଲାଗୁନଥିଲା । ଏହା ମୋର ବଂଶଗତ ଗୁଣ ଭାବରେ, ଏ ବୃଦ୍ଧ ବୟସରେ ମୋର ଡାକ୍ତର ବନ୍ଧୁମାନେ ମୋତେ ସୂଚ଼ନା ଦେଉଛନ୍ତି । ଖେଳକୁଦ, ନାଟ ତାମସା, ନାଚ଼ଗୀତ, ସମାଜସେବା, ଲେଖାପଢ଼ା, ମଜାମଜଲିସ, ଭୋଜିଭାତ, ଗପସପରେ ମୋର ଭୀଷଣ ସଉକି ରହିଛି । ଏସବୁକୁ କଳ୍ପନାବିଳାସିତା ବା ସ୍ୱପ୍ନବିଳାସିତା ବୋଲି କେହି କେହି କହିଥାଆନ୍ତି ।

ଏମିତି ଜଣେ ସ୍ୱପ୍ନବିଳାସୀ ସମ୍ବଲପୁରିଆ ତା'ର ଗୋଲ ହସ୍ତାକ୍ଷର ଯୋଗୁଁ ଓ ସିନେମାର ଚେହେରା ଦେଖେଇ ବରଗଡ଼ (ପଞ୍ଚାୟତ) ମହାବିଦ୍ୟାଳୟର ପ୍ରଥମ ଅର୍ଥନୀତି ଅଧ୍ୟାପକର ଚାକିରୀଟା ହାସଲ କରି ନେଇଥିଲା ବୋଲି ଲୋକେ କହନ୍ତି । ବରଗଡ଼ ସହରଠାରୁ ତିନି କିଲୋମିଟର ଦୂର ରୁହୁଣିଆ ଗ୍ରାମର ପଚିଶ ଏକର ଆଁଟ୍ ଜମି ଉପରେ 'ଏଲ୍' ଆକାରର ନୂଆଁହେଇ ତିଆରି ହେଇଥିବା କୋଠାଘର ଉପରେ ଠିଆହୋଇ ଚାରିଆଡ଼କୁ ନିରେଖିବା/ଦୂର ଖେଳପଡିଆର ଏକମାତ୍ର ମୁକସାକ୍ଷୀ ପ୍ରାୟ ବୋଧିଦୃମର ସିରିସିରି ପତ୍ରର ସଂଗୀତ ଶୁଣିବା/ ତା' ମୂଳରେ ଚରୁଥିବା ଛେଳିପଲ ଆଉ ସେଇ ହରିଜନ ଝିଅର ନିରୋଳାପଣକୁ ଅନୁଭବିବା/ଅଥବା ବରଗଡ଼ ମହାବିଦ୍ୟାଳୟର ଏକମାତ୍ର ମୁଣ୍ଡିଆ ଉପରର ତାରାଭରା ରଂଗବେରଂଗ ଆକାଶକୁ ଦିନରାତି ଦେଖିଦେଖି ଅନେକ ସ୍ୱପ୍ନର ଜାଲ ବୁଣିବାକୁ ମୋତେ ବେଶ୍ ମଜା ଲାଗୁଥିଲା । ସେତେବେଳେ ମୁଁ ଜାଣିନଥିଲି, ମୋର ଏଇ ସ୍ୱପ୍ନଦେଖିବା, ମୋ ପାଇଁ ଭବିଷ୍ୟତରେ ସବୁ ଅନର୍ଥ ଓ ଦୁର୍ଯୋଗର ମୂଳ କାରଣ ହେବ ।

ବରଗଡ଼ ସବଡିଭିଜନର ୫୨ଟି ପଞ୍ଚାୟତର ଲୋକେ, ବରଗଡ଼ର ଓକିଲ ସଂଘ ବରଗଡ଼ର ବିଶିଷ୍ଟ ନାଗରିକ, ଶିକ୍ଷିତବର୍ଗ, ଅଫିସର ଓ ଖୋଦ ଏସ୍.ଡି.ଓଙ୍କ ଆନ୍ତରିକ ସହଯୋଗରେ ବରଗଡ଼ ମହାବିଦ୍ୟାଳୟର ମୂଳଦୁଆ ପଡ଼ିଥିଲା । ପରିଚାଳନା ସମିତିରେ ସବୁବର୍ଗର ଲୋକେ ପ୍ରତିନିଧିତ୍ୱ କରୁଥିଲେ । ନିଜେ ସମ୍ବଲପୁରର ଜିଲ୍ଲାପାଳ ବରଗଡ଼ ମହାବିଦ୍ୟାଳୟର ସଭାପତି ଥିଲେ । ସମ୍ବଲପୁର ଜିଲ୍ଲାର ସର୍ବପ୍ରଥମ ବେସରକାରୀ କଲେଜରେ ଓଡ଼ିଶାର ସବୁ ଅଞ୍ଚଳର, ଆନ୍ଧ୍ର, ଉତ୍ତରପ୍ରଦେଶ, ବଙ୍ଗଳା ଓ କେରଳର ଅଧ୍ୟାପକମାନେ ଏଠି ତାଙ୍କର ଚାକିରୀ ଜୀବନ ଆରମ୍ଭ କରିଥିଲେ । ପ୍ରଥମ ତିନିବର୍ଷ ପରିଚାଳନା ସମିତି ଓଡ଼ିଶା ସରକାରଙ୍କଠାରୁ ପ୍ରାୟ ତିନିଲକ୍ଷ ଟଙ୍କା ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ପାଇଥିଲେ । କଲେଜ ହତା ଭିତରେ ଶହେଜଣ ଛାତ୍ରଙ୍କ ପାଇଁ ଛାତ୍ରାବାସଟିଏ ତିଆରି ହୋଇ ଯାଇଥିଲା । ପ୍ରିନ୍ସିପାଲ ଓ ଛାତ୍ରାବାସର ତତ୍ତ୍ୱାବଧାରକ ପାଇଁ କ୍ୱାଟର୍ସ ମଧ୍ୟ ତିଆରି ହୋଇଥିଲା । କିନ୍ତୁ ପାଖରେ ହାଟବଜାର ଓ ବିଜୁଳୀ ପାଣିର ସରବରାହ ନଥିବାରୁ ଅଧ୍ୟାପକ ଅଧ୍ୟାପିକାମାନେ ବରଗଡ଼ ସହରରେ ଭଡ଼ାଘରେ ରହିବାକୁ ପସନ୍ଦ କରୁଥିଲେ । କଲେଜ ପ୍ରଥମ ଓ ଦ୍ୱିତୀୟ ବିଧିବଦ୍ଧ ଅଧ୍ୟକ୍ଷ ମଧ୍ୟ ୧୯୬୩ ମସିହାଯାଏଁ ବରଗଡ଼ ସହରରେ ପରିଚାଳନା ସମିତି ଭଡ଼ାରେ ଯୋଗାଇ ଦେଇଥିବା କ୍ୱାଟର୍ସରେ ରହୁଥିଲେ । ଅଧ୍ୟାପକମାନେ ସମସ୍ତେ ସାଇକେଲରେ ଓ ପାଦରେ ଚାଲି କଲେଜ ଯାଉଥିଲେ । କଳା, ବିଜ୍ଞାନ ଓ ବାଣିଜ୍ୟ ବିଭାଗର ପ୍ରାୟ ତିରିଶଜଣ ଅଧ୍ୟାପକଙ୍କ ଭିତରୁ କେବଳ ତିନିଚାରିଜଣ କଲେଜର ଖାଲିପଡ଼ିଥିବା କ୍ୱାଟର୍ସରେ ରହୁଥିଲେ । ଏମାନେ ସମସ୍ତେ ଅବିବାହିତ ଥିଲେ । ଓଡ଼ିଶା ବାହାରର ଅଧ୍ୟାପକ ଥିଲେ ।

ମୁଁ ସମ୍ବଲପୁର ଜିଲ୍ଲାବାସୀ ହୋଇଥିବାରୁ ବରଗଡ଼ ସହରର ଅନେକ ସ୍ଥାୟୀ ବାସିନ୍ଦାଙ୍କୁ ପିଲାବେଳୁ ଜାଣିଥିଲି । କେତେଜଣଙ୍କ ସହିତ ମୋର ପାରିବାରିକ ସମ୍ପର୍କ ଥିଲା । ଆଉ କେତେଜଣ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ସହିତ ମୋର ସ୍ୱର୍ଗୀୟ ପିତାଙ୍କ ସରକାରୀ ଚାକିରୀ ଯୋଗୁ ସମ୍ପର୍କ ଥିଲା । ସେମାନେ ହେଲେ ପଦ୍ମଶ୍ରୀ କୃତାର୍ଥ ଆଚାର୍ଯ୍ୟ, ଶ୍ରୀ ଦୟାଲାଲ ଯୋଷୀ, ଶ୍ରୀ ହରନାରାୟଣ ଅଗ୍ରୱାଲ ଓ ଶ୍ରୀ ବ୍ରଜମୋହନ ପଣ୍ଡା । ୧୯୨୯ ମସିହାରେ ମୋର ପିତା ବରଗଡ଼ ସବଡିଭିଜନର ତହସିଲଦାର ଭାବରେ ବେଶ୍ ଜଣାଶୁଣା ଥିଲେ । ତାଙ୍କ ପୁଅ ଭାବରେ ମୋତେ 'ଶରତ୍ ପୂଜାରୀ' ନାଁରେ ପୁରାତନ ଲୋକେ ଜାଣୁଥିଲେ ।

ତେଣୁ ପ୍ରଥମରୁ ବରଗଡ଼ରେ ପହଞ୍ଚି କିଛିଦିନ ପାଇଁ ଜର୍ଜ ହାଇସ୍କୁଲ ସାମନାରେ ଥିବା ଶ୍ରୀ ବ୍ରଜମୋହନ ପଣ୍ଡାଙ୍କ ଘରେ ରହୁଥିଲି । ସେତେବେଳେ ମୋପରି ସ୍ୱଳ୍ପବେତନଭୋଗୀ ଚାକିରିଆଙ୍କ ପାଇଁ ବରଗଡ଼ରେ କୌଣସି କ୍ଲବ୍, ଖଟି ବା କଫିହାଉସ ନଥିବାରୁ ମୁଁ ହାଇସ୍କୁଲ ପାଖ ଶ୍ରୀଦୟାଲାଲ ଯୋଶୀଙ୍କ ଘର ଓ ଶାନ୍ତି ପ୍ରିଣ୍ଟିଂପ୍ରେସ୍ ସାମନା ଫୁଲ ବଗିଚାରେ

ସନ୍ଧ୍ୟାବେଳେ ଯାଇ ବସୁଥିଲି । ପ୍ରେସ୍ ପାଇଁ ଓ ଶ୍ରୀ ଯୋଶୀଙ୍କ ଲୋକପ୍ରିୟତା ଯୋଗୁଁ ଏଠିକୁ ବରଗଡ଼ର ପ୍ରାୟ ସବୁ ପେଷା, ବେଉସାର ଧନୀ ନିର୍ଧନ ଲୋକେ ଆସୁଥିଲେ । ଏହିଠାରେ ହିଁ ମୁଁ ସମସ୍ତଙ୍କ ସହିତ ପରିଚିତ ହେଉଥିଲି । ମୁଖ୍ୟତଃ ଓକିଲ, ଡାକ୍ତର, ଶିକ୍ଷକ, ବ୍ୟବସାୟୀ ଓ ରାଜନୈତିକ କର୍ମୀ ଏଠିକୁ ଆସୁଥିଲେ । ସାହିତ୍ୟ, ସଂସ୍କୃତି, ଶିକ୍ଷା, ନାଟକ, ଚଳଚ୍ଚିତ୍ରରେ ମୋର ରୁଚିଥିବାରୁ ଓ ବରଗଡ଼ିଆ ଭାଙ୍ଗଦିଆ ପାନ ତଥା କଡ଼ା ଚାହା ପିଇ ଆଲୋଚନାକୁ ସରଗରମ କରିବାକୁ ମୋତେ ଏଠାରେ ଯଥେଷ୍ଟ ସୁଯୋଗ ଦେଉଥିଲେ ଶ୍ରୀ ଯୋଶୀ । କିଛିଦିନ ପରେ ଗାନ୍ଧୀ ପାର୍କ୍ ପାଖ ନଟବର ମହାନ୍ତିଙ୍କ ଭଡ଼ାଘର କଲୋନୀକୁ ଉଠି ଆସିଥିଲି । ସେଠାରୁ ଲେଙ୍ଗୁମିଶ୍ରଙ୍କ ବାପାଙ୍କ ଘରପଛପଟେ କିଛିଦିନ ରହିଲି । ଏଠି ଶ୍ରୀମତୀ ଲେଙ୍ଗୁ ମିଶ୍ରଙ୍କ ମଉସା/ମାଉସୀ ସମ୍ବୋଧନ ଯୋଗୁଁ, ଅନେକଦିନ ଯାଏ ମୁଁ ସେ ପରିବାରର ଆତ୍ମୀୟ ହୋଇଗଲି । ଲେଙ୍ଗୁମିଶ୍ରଙ୍କୁ କଡ଼ାକରି ପଦେଅଧେ କହିବାର ଯୋଗ୍ୟତା ପାଉଥିଲି । ୧୯୬୩ ମସିହାରେ ମୁଁ ବରଗଡ଼ କଲେଜ ଛାତ୍ରାବାସର ତତ୍ତ୍ୱାବଧାରକ ହେଲି ଓ ବରଗଡ଼ କଲେଜ ହଷ୍ଟେଲର କ୍ୱାଟର୍ସ୍‌ରେ ଯାଇ ରହିଲି । ଏହା ପୂର୍ବରୁ ବରଗଡ଼ରେ ଅଳ୍ପଦିନ ପାଇଁ, ବର୍ତ୍ତମାନର ବରଗଡ଼ ମହିଳା କଲେଜ ଚାଲିଥିବା ଜାଗାରେ ଗୋଟିଏ ସରକାରୀ ଚିନାମାଟି କାରଖାନା ଚାଲୁଥିଲା । କାରଖାନା ପଛପଟେ ଜଣେ ଶିକ୍ଷକଙ୍କ (ମେହେର ଆଜ୍ଞା) ଘରେ ଭଡ଼ାରେ ରହୁଥିଲି । ସେଠି ମୋର ବଡ଼ପୁଅ ଜନ୍ମଗ୍ରହଣ କରିଥିଲା । ଏହାପୂର୍ବରୁ ୧୯୫୭ ରେ ଓ ୧୯୬୧ରେ ଦୁଇଟି ଝିଅ ଜନ୍ମଗ୍ରହଣ କରିଥିଲେ । ମୋ ସହିତ ମୋର ଦୁଇଟି ସାନ ଭାଇ ଓ ସାନଭଉଣୀ ଆସି ବରଗଡ଼ କଲେଜରେ ନାଁ ଲେଖାଇଲେ । ମୋ ଘରେ ତେଣୁ ସବୁବେଳେ ଚାରିପାଞ୍ଚ ପ୍ରାଣୀ ଓ ଗୋଟିଏ ଦୁଇଟି କୁକୁରଙ୍କ ପାଇଁ ଭୋଜନ ପ୍ରସ୍ତୁତ ହେଉଥିଲା । ତେଣୁ ମୁଁ ନିଜକୁ କେବେ ଦରିଦ୍ର ବୋଲି ଭାବିପାରେ ନାହିଁ ।

ସରକାରୀ ଅଧ୍ୟକ୍ଷ ପ୍ରଫେସର ବ୍ରହ୍ମ ୧୯୬୩ ମସିହାରେ ହିଁ ବଦଳି ହୋଇଗଲେ । ତାଙ୍କ ଜାଗାରେ ଭାରପ୍ରାପ୍ତ ଅଧ୍ୟକ୍ଷ ଭାବରେ ମୁଁ ଯୋଗ ଦେଲି ଓ କଲେଜ ହତାରେ ଥିବା କ୍ୱାଟର୍ସରେ ଯାଇ ରହିଲି । ହଷ୍ଟେଲର ତତ୍ତ୍ୱାବଧାରକ ଥିବା ସମୟରେ ବରଗଡ଼ ଟାଉନ୍ ହଲରେ "ଲୁହା ଶିକୁଳି" ନାଟକ ଓ ହଷ୍ଟେଲର ବାର୍ଷିକ ଉତ୍ସବ ସମୟରେ ହଷ୍ଟେଲକୁ ଲାଗି ମୁଣ୍ଡିଆ ଉପରେ "ଚଣ୍ଡାଶୋକ" ଏକାଙ୍କିକା ମୋ ନିର୍ଦ୍ଦେଶନାରେ ସଫଳତାର ସହିତ ପ୍ରଦର୍ଶିତ ହୋଇଥିଲା । "ଲୁହା ଶିକୁଳି"ର ଟିକଟଲବ୍ଧ ଧନରୁ ଟ୧୦୦୦/-ଙ୍କା ସରକାରଙ୍କ ଯୁଦ୍ଧ ପାଣ୍ଠିକୁ ଦାନ କରାଯାଇଥିଲା । ବିନା ବିଜୁଳିବତୀ ସଂଯୋଗରେ "ଚଣ୍ଡାଶୋକ" ଓଡିଶାର ସର୍ବପ୍ରଥମ "son-et-lumiere" (ଶବ୍ଦ ଓ ଆଲୋକ) ନାଟ୍ୟ ଉପସ୍ଥାପନା ବୋଲି ମୋର ଧାରଣା ।

ମୋର ଚଳଚ୍ଚିତ୍ରର ସଂପର୍କ ଯୋଗୁ ବରଗଡ଼ର ଲୋକେ, ନାଟକ ଓ ଚଳଚ୍ଚିତ୍ର

ବିଷୟରେ ଜାଣିବାପାଇଁ ମୋ ପାଖକୁ ଆସୁଥିଲେ । ମୋର ଛୁଟିଦିନରେ ପ୍ରତିବର୍ଷ ଗୋଟିଏ ଲେଖାଏଁ ଚଳଚ୍ଚିତ୍ରରେ ଅଭିନୟ କରିବା ବ୍ୟତୀତ, ବରଗଡ଼ ବ୍ୟବସାୟୀ ସଂଘର ହିନ୍ଦି ନାଟକ (ଦୋ' ରୋଟି) ଓ ଅଫିସରର୍ସ କ୍ଲବର ନାଟକ (ଉଠା ପାଚିରୀ) ତଥା ବୁର୍ଲା ଇଂଜିନିୟରିଂ କଲେଜର ନାଟକ ନିର୍ଦ୍ଦେଶନା ଦେବାପାଇଁ ନିମନ୍ତ୍ରଣ ପାଉଥିଲି । ସାଢ଼େ ପାଞ୍ଚବର୍ଷ ବରଗଡ଼ରେ ରହିବା ସମୟରେ ମୁଁ ବାରଟି ନାଟକର ନିର୍ଦ୍ଦେଶନା ଦେବାର ସୁଯୋଗ ପାଇଥିଲି । ପାଞ୍ଚଟି ଚଳଚ୍ଚିତ୍ରରେ ଅଭିନୟ କରିଛି । ଏଥିପାଇଁ ବରଗଡ଼ କଲେଜର ପରିଚାଳନା ସମିତି, ସାଧାରଣ ଜନତା ଓ ମୋର ଛାତ୍ରଛାତ୍ରୀ ତଥା ସହକର୍ମୀ ମାନଙ୍କୁ ମୋର କୃତଜ୍ଞତା ଜଣାଉଛି ।

ବ୍ୟବସାୟିକ ପେଣ୍ଠ ଭାବରେ ବରଗଡ଼ ସହରର ଯେତେ ପ୍ରଚ଼ାର ହେଲେ ମଧ୍ୟ ଏ ସହର ଗୋଟିଏ ନାଟ୍ୟପ୍ରିୟ ସହର । ଏଠି ଏକଦା ଗୋଟିଏ ପେଷାଦାର ନାଟକ ସଂସ୍ଥା ଗଢ଼ିଉଠିଥିଲା । ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ ଏଠିକୁ ପ୍ରତିବର୍ଷ ଧାରାବାହିକ ଭାବରେ ଆସି ମାସମାସ ଧରି ନାଟକ ପରିବେଷଣ କରୁଥିଲେ । ବରଗଡ଼, ଅମ୍ବାପାଲିର ବିରା ନଦୀକୁ ମଥୁରା କଟକ ଓ ଗୋପପୁର କଳ୍ପନା ଗ୍ରାମ୍ୟ ଯାତ୍ରାର ସୂତ୍ରପାତ ପ୍ରାୟ ଶହେ ବର୍ଷ ହେଲା ଚାଲି ଆସୁଛି । ଏସବୁଥିରେ ମୁଁ ମଧ୍ୟ ପ୍ରଭାବିତ ହୋଇଛି ବୋଲି ମୋର ଧାରଣା । ମୁଁ ବରଗଡ଼ରେ ଅଧ୍ୟାପକଥିବା ବେଳେ ଧନୁଯାତ୍ରା ସେତେବେଳେ କେବଳ ସମ୍ବଲପୁର ଜିଲ୍ଲାପାଇଁ ଆକର୍ଷଣ ରଖୁଥିଲା । ଓଡ଼ିଶାକୁ ଟେଲିଭିଜନ ଆସିବାପରେ ଏ 'ଧନୁଯାତ୍ରା' ସର୍ବ ଭାରତୀୟ ଆକର୍ଷଣ ସୃଷ୍ଟି କରିଛି । ଏ ସହରର ସାଧାରଣ ଲୋକଙ୍କ ଭିତରେ ବହୁ ପ୍ରତିଭାଧର ମାନେ ଅଛନ୍ତି ଓ ଥିଲେ । ସେମାନେ ଆଗରୁ ସୁଯୋଗ ପାଉନଥିଲେ । ଏବେ ଟିଭି ଯୋଗୁ ଏ କଳାକାରମାନେ ଲଗାମଛଡ଼ା ଭାବରେ ନିଜକୁ ପ୍ରକାଶ କରିବାକୁ ପଛାଉ ନାହାଁନ୍ତି । କଳାକାରଙ୍କ ଭିତରେ ସ୍ଥାନ/କାଳ/ପାତ୍ର ଭାବ ଓ ସଂଯମ ରହୁନାହିଁ ।

କଲେଜର ଭାରପ୍ରାପ୍ତ ଅଧ୍ୟକ୍ଷ ହେବା ସମୟରେ ମୁଁ ବରଗଡ଼ର ପ୍ରାୟ ସବୁ କଳାପ୍ରେମୀଙ୍କୁ ଜାଣି ପାରିଥିଲି । କଳାକାର, ଚିତ୍ରକର, ନାଟ୍ୟପ୍ରେମୀ, ସଂଗୀତଜ୍ଞ, ବାଦ୍ୟକାର ଓ ଅଭିନେତାଙ୍କ ସହିତ ବ୍ୟକ୍ତିଗତ ସଂପର୍କ ହୋଇଥିଲା । ଯେମିତି:- କଟକିଆ ଦୋକାନର ମାଲିକ, ଶ୍ରୀ ହରେକୃଷ୍ଣ ପୂଜାରୀ, ଶ୍ରୀ ଗୁଣନିଧି ଦାଶ ଓ ସହଯୋଗୀ ବାଦ୍ୟକାର ଓ ନୃତ୍ୟକଳାକାର ଗଣ । ଏ ପରିବେଷଣରେ ଓ ଏମାନଙ୍କର ସହଯୋଗରେ ଗୋଟିଏ ଓଡ଼ିଆ ଚଳଚ୍ଚିତ୍ର ପ୍ରଯୋଜନା କରିବାର ପ୍ରସ୍ତାବ ମୋ ପାଖରେ ପହଞ୍ଚିଥିଲା । ଯେଉଁମାନଙ୍କ ପାଖରୁ ଉତ୍ସାହ ଓ ଉଦ୍ଦୀପନା ପାଇଥିଲି ସେମାନେ ହେଲେ ଶ୍ରୀ ଦୟାଲାଲ ଯୋଶୀ, ବିଜେପୁରର ଜମିଦାର, ଚିତ୍ରକର ଓ ତବଲାବାଦକ ଶ୍ରୀ ତୁଳସୀ ପ୍ରସାଦ ଗଡ଼ତିୟା, ଓକିଲ ଓ ଆକାଶବାଣୀ, କଟକରେ ପ୍ରଥମ ସମ୍ବଲପୁରୀ ଗୀତର ଗାୟକ ଶ୍ରୀ ଗୁଣନିଧି

ଦାଣ । ୧୯୬୪ରେ ପ୍ରଯୋଜିତ ହେଲା 'ସାଧନା' ଚଳଚ୍ଚିତ୍ର । ଏ ଚଳଚ୍ଚିତ୍ର ପାଇଁ ଯଥେଷ୍ଟ ସମ୍ମାନ ଓ ସାର୍ଟିଫିକେଟ୍ ମିଳିଲା । କିନ୍ତୁ ବିତରଣ ଓ ପ୍ରଦର୍ଶନର ବିଫଳତା ଯୋଗୁ ଅର୍ଥ ଉପାର୍ଜନ କରିପାରିଲା ନାହିଁ ।

୧୯୬୪ ମସିହା ବେଳକୁ ମୋର ତିନିଜଣ ଛୋଟ ଭାଇ, ଜଣେ ସାନ ଭଉଣୀ କଲେଜ ଓ ସ୍କୁଲରେ ପଢ଼ିବା ପାଇଁ ବରଗଡ଼ରେ ମୋ ଘରେ ରହୁଥିଲେ । ମୋର ଜଣେ ମାମୁଁ ଝିଅ ଭଉଣୀ କୁମାରୀ ସୁହାସିନୀ ମିଶ୍ର ବଟାନି ଅଧ୍ୟାପିକା ଭାବରେ ପଞ୍ଚାୟତ କଲେଜରେ ଯୋଗ ଦେଲେ ଓ ମୋ ଘରେ ରହୁଥିଲେ । ମୋର ରହିବା ଘରର ଅସୁବିଧା ଯୋଗୁଁ ମୁଁ କଲେଜ ହତାର କ୍ବାଟର୍ସ ଛାଡ଼ି ଡାକ୍ତର ପାଢ଼ୀଙ୍କ ଘରକୁ ଲାଗିଥିବା ଖପରେଲି ଭଡ଼ାଘରକୁ ଉଠି ଆସିଲି ଓ ୧୯୬୬ ମସିହା ଯାଏ ଏଠି ରହିଲି । ଏଠି ମୋର ଦ୍ୱିତୀୟ ପୁଅ ସୌମେନ୍ଦ୍ର ଜନ୍ମ ହୋଇଥିଲା । ଏହାପରେ ମୋର ସମସ୍ତ ସନ୍ତାନ ସନ୍ତତି ଲରମ୍ବା କଲେଜର ପରିସର ଭିତରେ ତାଙ୍କର କୈଶୋର ଓ ଯୌବନ ବିତାଇଛନ୍ତି । ତେଣୁ ଲରମ୍ବା ଗ୍ରାମୀଣ ସଂସ୍କୃତିରେ ସେମାନେ ସଂପୂର୍ଣ୍ଣ ପ୍ରଭାବିତ ।

୧୯୬୪ ମସିହା ପର୍ଯ୍ୟନ୍ତ ପଞ୍ଚାୟତ କଲେଜର ପାଠପଢ଼ା ଓ ପରୀକ୍ଷା ଉଚ୍ଚମାନର ଥିଲା । ଯୁବ ଅଧ୍ୟାପକମାନଙ୍କ ମଧ୍ୟରେ ଉତ୍ସାହ ଓ ଉଦ୍ଦୀପନା ଭରି ରହିଥିଲା । କଲେଜରେ ଗୋଟିଏ ମଜବୁତିଆ ମୂଳଦୁଆ ପକେଇବା ପାଇଁ ଭାରପ୍ରାପ୍ତ ଅଧ୍ୟକ୍ଷଙ୍କ ମୁଣ୍ଡକୁ ଅନେକ ଚିନ୍ତା ଓ ଯୋଜନା ଗ୍ରାସ କଲା । ସହଯୋଗୀ ଅଧ୍ୟାପକ ମାନଙ୍କ ଭିତରୁ କେତେଜଣଙ୍କୁ ନେଇ ଏ ଯୋଜନା ଓ ଆଲୋଚନା କଲେଜର ସ୍ଥାବର/ଅସ୍ଥାବର ସମ୍ପଳର ହିସାବ ଜାଣିବାକୁ ମୁଁ ୧୯୬୩ ମସିହାରୁ ତତ୍ପର ହୋଇଥିଲି । ହଠାତ୍ ଆସିଗଲା ୧୯୬୪ ମସିହାର ସାରା ଓଡ଼ିଶାର ଛାତ୍ର ଆନ୍ଦୋଳନ । ଠିକ୍ ସେହି ସମୟରେ ବିଶ୍ୱବିଦ୍ୟାଳୟ ଅନୁଦାନ ନିଗମ ତାଙ୍କର ଉନ୍ନୟନ ଯୋଜନାର ଚିଠିସବୁ ଭାରତର ପ୍ରତ୍ୟେକ କଲେଜ ଅଧ୍ୟକ୍ଷମାନଙ୍କୁ ଧାରାବାହିକ ଭାବରେ ପଠାଇବାକୁ ଲାଗିଲେ । ଛାତ୍ର ଆନ୍ଦୋଳନ ବରଗଡ଼ରେ ଯେପରି ଆରମ୍ଭ ହେଲା, ମୁଁ ତା'ର ଘୋର ବିରୋଧୀ ଥିଲି । ଏହା ଅନେକଦିନ ଯାଏ କଲେଜର ଉନ୍ନୟନକୁ ପ୍ରଶାସନକୁ ଦୁର୍ବଳ କରିଦେଲାପରି ମୋତେ ଲାଗିଲା । କଟକର ରେଭେନ୍ସା କଲେଜର କେତେଜଣ ଛାତ୍ରଙ୍କ କଲେଜ ସମ୍ମୁଖରେ ଦୁର୍ଘଟଣାକୁ ଆଳକରି, ବିଜୁ ପଟ୍ଟନାୟକ ଓ ବିରେନ୍ ମିତ୍ରଙ୍କୁ ଗାଦିରୁ ହଟେଇବାପାଇଁ ବରଗଡ଼ କଲେଜର ଛାତ୍ରମାନେ କାହିଁକି ତାଙ୍କ ବହୁମୂଲ୍ୟ ସମୟ ନଷ୍ଟକରି, କଲେଜ ନଯାଇ, ଏସ୍.ଡ଼ି.ଓ ଅଫିସ୍ ଆଗରେ ଅସଭ୍ୟ ଭାଷାରେ ମାଇକ୍‌ରେ ସରକାରୀ ଅଫିସର ମାନଙ୍କୁ ଗାଳିଗୁଲଜ କରିବେ ଏହାର ଯଥାର୍ଥତା ବିଷୟରେ କେହି ମୋତେ ବୁଝେଇ ପାରି ନାହାଁନ୍ତି । ଜଣେ ଅଧ୍ୟକ୍ଷ ଭାବରେ, ଆଇନତଃ ଓ ନୀତିଗତ ଭାବରେ ମୋର ଯାହା କର୍ତ୍ତବ୍ୟ, ତାହା କରିବାକୁ ମୁଁ ନିଜେ ନିଷ୍ଠାପି

ନେଲି ଓ ତାହାକୁ କାର୍ଯ୍ୟକାରୀ କଲି । ଏହା ପରିଚ଼ାଳନା ସମିତି ଚାହୁଁ ନଥିଲେ । ତେଣୁ ମୋତେ ଛାତ୍ର ଆନ୍ଦୋଳନ ସମୟରୁ ପରିଚ଼ାଳନା ସମିତି ଏକଘରକିଆ କରି ରଖିଲେ ୧୯୬୫ ମସିହା ଶେଷଯାଏ । କଲେଜର ଦୈନନ୍ଦିନ ପରିଚାଳନା ପାଇଁ ଭାରପ୍ରାପ୍ତ ଅଧ୍ୟକ୍ଷ ପାଖରେ କୌଣସି ପାଣ୍ଠି ନଥାଏ । ବିତ୍ତୀୟ ସ୍ୱାଧୀନତା ନଥାଇ କୌଣସି ଅଧ୍ୟକ୍ଷ ଦିନକ ପାଇଁ ମଧ୍ୟ କାର୍ଯ୍ୟ କରିପାରେ ନାହିଁ । ମୋର ସମସ୍ତ ଆବେଦନ/ନିବେଦନ ଗ୍ରହଣୀୟ ନହେବାରୁ ମୁଁ ଚାକିରୀରୁ ଅବ୍ୟାହତି ଚାହିଁଲି ୧୯୬୫ ବର୍ଷର ଶେଷ ଭାଗରେ । ବ୍ୟକ୍ତିଗତ ଭାବରେ ମୁଁ କୌଣସି ସଂଘର୍ଷ କରିବାକୁ ଚାହିଁ ନଥିଲି । ଜାନୁୟାରୀ ୧୯୬୬ ମସିହାରେ ଏହା ପରିଚ଼ାଳନା ସମିତି ମଞ୍ଜୁର କରିଥିଲେ । ଖ୍ରୀଷ୍ଟ କଲେଜରୁ ପ୍ରାଧ୍ୟାପକ ଦରଜୀ ଆସି ମୋ'ଠାରୁ ଅଧ୍ୟକ୍ଷର ଭାର ନେଲେ ଓ ମୁଁ ପ୍ରାୟ ତିନିମାସ ଡାକ୍ତର ପାଢ଼ୀଙ୍କ ଭଡ଼ାଘରେ ସବୁଥିରୁ ମୁକ୍ତହୋଇ ନିଶ୍ଚିନ୍ତରେ ଶୋଇ ରହିଲି । ଡାକ୍ତର ପାଢ଼ୀ ମୋର ସେତେବେଳର ଘରୋଇ ଡାକ୍ତର ଥିଲେ । ମୋର ସହଧର୍ମିଣୀ, ଶ୍ରୀମତୀ ପାଢ଼ୀଙ୍କର 'ମକର' ହୋଇ ସାରିଥିଲେ । ଭାଗ୍ୟ ଭଲ ଖୋର୍ଦ୍ଧା ପାଖ ନରଣଗଡ଼ଠାରୁ "ତାପଙ୍ଗ ଲାଇଟ୍ ଫାଉଣ୍ଡ୍ରି"ରୁ ଓ୍ୱାର୍କ୍ସ ମେନେଜର ଭାବରେ ଯୋଗ ଦେବାର ନିମନ୍ତ୍ରଣ ଆସିଲା । ଏପ୍ରିଲ ମାସରେ ମୁଁ ସପରିବାର ବରଗଡ଼ ଛାଡ଼ିଲି । ମୋ ଭଉଣୀ ୧୯୬୫ରେ ବିବାହ କରିଥାଏ, ମୋର ଭାଇମାନେ ବରଗଡ଼ କଲେଜର ପାଠପଢ଼ା ସାରିଥାଆନ୍ତି । ମୋର ମାମୁଁ ଝିଅ ଭଉଣୀ ସରକାରୀ ଅଧ୍ୟାପିକା ହୋଇସାରିଥାଆନ୍ତି । ମାସିକ ତିନିଶହ ପଞ୍ଚସ୍ତରୀ ଟଙ୍କା ପାଉଥିବା ଦରମାରୁ ଜଣେ ଭାରପ୍ରାପ୍ତ ଅଧ୍ୟକ୍ଷ କଣ ବର୍ଷେଯାଏ ଗୋଟିଏ ସ୍ୱୟଂ ସମ୍ପୂର୍ଣ୍ଣ ଡିଗ୍ରୀ କଲେଜ ଚଲେଇ ପାରିବ ? ବଦଳି ମାଗିବ, ନହେଲେ ଛାଟିପିଟି ହେଇ ପଳେଇବ । ମୁଁ ତାହାହିଁ କଲି । ତେଣୁ ପି.ସି. ମୋ ଜାତକରେ ରହିଲା ନାହିଁ ।

ମୋପରି ଲୋକ ପାଖରେ ସ୍ୱାଭିମାନ ଥିଲା । ଦୁଇବର୍ଷରୁ ଅଧିକ କାଳ ଅଧ୍ୟକ୍ଷ ଚଉକିରେ ବସିବା ପରେ ମୁଁ ଅଧ୍ୟକ୍ଷର ପଦମର୍ଯ୍ୟାଦା ବିଷୟରେ ଭଲଭାବରେ ଅବଗତ ଥିଲି । ବରଗଡ଼ ପଞ୍ଚାୟତ କଲେଜକୁ ଛାତ୍ର ଅଶାନ୍ତିର ଏକ "ଗଡ଼" ଭାବରେ ତିଆରି କରିବା ମୋର ଅଭିପ୍ରାୟ ନଥିଲା । ତେଣୁ ମୋର ବତ୍ରିଶ ବର୍ଷ ବୟସରେ ମୁଁ ଚାକିରୀରୁ ଅବ୍ୟାହତି ନେଲି । ମୋର ଭବିଷ୍ୟତ ଅନ୍ଧକାର ହେଲା ବୋଲି କେବେ ଭାବି ନାହିଁ । ବରଗଡ଼ କଲେଜ ଚାଲିଲା । ପରିଚ଼ାଳନା ସମିତି ଅନେକ ଲକ୍ଷ୍ୟ ନେଇ ବେସରକାରୀ କଲେଜଟିଏ ଗଢ଼ିଥିଲେ, ହେଲେ ତାହା ମୁଁ ଚାଲିଯିବାର ଚାରିବର୍ଷପରେ ସରକାରୀ ହୋଇଗଲା । କଲେଜର ଯଥେଷ୍ଟ ଉନ୍ନତି ହେଲା । ମୋ ଭାଗ୍ୟରେ କିନ୍ତୁ ସେଇ ଅପାରଗ ପଣିଆର ଅପବାଦକୁ ବୋହିବାକୁ ପଡ଼ିଲା ଆହୁରି ଛବିଶ ବର୍ଷଯାଏ । ପ୍ରଥମେ ଘରୋଇ ଗ୍ରାମୀଣ ଲରମ୍ବା କଲେଜର ପରିଚାଳନା ସମିତି ଓ ତା'ପରେ ସଂସ୍କୃତି ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀଙ୍କ ଆଶୀର୍ବାଦ ଯୋଗୁଁ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗର ଏକମାତ୍ର ସଂଗୀତ ମହାବିଦ୍ୟାଳୟର ଏକମାତ୍ର ଘରୋଇ

କଲେଜ କାଡ଼ରର "ବର୍ଣ୍ଣ ପ୍ରିନ୍‌ସିପାଲ"- ଭାବରେ ଦୁଇବର୍ଷ ସରକାରୀ କଲେଜ ଅଧ୍ୟକ୍ଷ ଉପାଧି ଧରି ଡେପୁଟେସନ୍‌ରେ ଯାଇ ସେହିଠାରୁ ୧୯୯୪ ମସିହାରେ ଅବସର ଗ୍ରହଣ କଲି । ସଂପୂର୍ଣ୍ଣ ପେନସନ୍ ପ୍ରାପ୍ତି ପାଇଁ ମୋତେ ବାରବର୍ଷ ତପସ୍ୟା କରିବାକୁ ପଡ଼ିଛି ।

ଅବସର ନେବାର ବାରବର୍ଷ ହୋଇଗଲାଣି । ଜଣେ ଚଳଚ୍ଚିତ୍ର ଜଗତର ବରିଷ୍ଠ ଅଭିନେତା ଭାବରେ ମୋତେ ଯେତେ ମାନପତ୍ର, ପୁରସ୍କାର ଓ ସମ୍ମାନ ମିଳିଲେ ମଧ୍ୟ ମୁଁ ନିଜେ ଜଣେ ଘରୋଇ କଲେଜର ଅଧ୍ୟକ୍ଷ ଭାବରେ ପରିଚୟ ଦେବାକୁ ଗର୍ବ ଅନୁଭବ କରେ । ଓଡ଼ିଶାର ହଜାର ହଜାର ଛାତ୍ରଛାତ୍ରୀ ଯେଉଁମାନଙ୍କୁ ମୁଁ ଖୁବ୍ ନିକଟରୁ ପରଖିଛି, ପାଠ ପଢ଼େଇଛି, ଦଣ୍ଡ ଦେଇଛି, ସେମାନଙ୍କୁ ଶାସନ କରିଛି (ବା ସେମାନଙ୍କର "କେରିଅର ବରବାଦ" କରିଦେଇଛି ବୋଲି ଲୋକେ ଯାହା କହନ୍ତି !), ସେଇମାନଙ୍କର ସଶ୍ରଦ୍ଧ "ପୂଜାରୀ ଆଜ୍ଞା" ଓ "ଶରତ୍ ସାର୍" ପଦବୀ ଦୁଇଟିକୁ ମୋ ଜୀବନର ସବୁଠାରୁ ବଡ଼ ସଫଳତା ବୋଲି ମନେ କରେ ।

ବରଗଡ଼ ସହର ଓ ପଞ୍ଚାୟତ କଲେଜର ଷାଢ଼େ ପାଞ୍ଚବର୍ଷର ଚାକିରୀ କାଳକୁ ମୋର "ପ୍ରୋଫେସନାଲୀ ଟ୍ରେନିଂ" ସମୟ ଭାବରେ ଗ୍ରହଣ କରେ । ଏହା ମୋତେ, ମୋ ସମାଜକୁ, ମୋ ଦେଶର ଗଣତନ୍ତ୍ରକୁ ଜାଣିବାରେ ଅନେକ ମାର୍ଗ ଦର୍ଶନ କରାଇଛି । ସେଥିପାଇଁ, ମୁଁ ବରଗଡ଼ର ସ୍ଥାୟୀ ବାସିନ୍ଦା/ମୋର ଅସଂଖ୍ୟ ଛାତ୍ରଛାତ୍ରୀ ଓ ସହଯୋଗୀ ଅଧ୍ୟାପକ, ଅଧ୍ୟାପକ, ଅଧ୍ୟାପିକା ମାନଙ୍କ ପାଖରେ ଋଣୀ ହୋଇ ରହିଛି ।

ଏହାପରେ ମୋତେ ମୋ ଅଞ୍ଚଳର ମୂଳ ଗ୍ରାମ୍ୟ ଶିକ୍ଷାର ଅତି ଉଚ୍ଚସ୍ତରର ପରୀକ୍ଷା ନୀରିକ୍ଷା କରିବାକୁ ଲରମ୍ଭାର ଚବିଶ ବର୍ଷ ରହିବା ଭିତରେ ମିଳିଥିଲା । ଏହାହିଁ ମୋତେ ଜଣେ ଶିକ୍ଷକର ଗର୍ବ ଓ ଗୌରବ ଦେଇଛି । ରାଷ୍ଟ୍ରପତି କଲାମ ମୋତେ କହିଥିବା ଧାଡିଟିଏ ମୋର ଏବେବି ରୋମାଞ୍ଚ ସୃଷ୍ଟିକରେ- "ଏ ଟିଚ୍‌ର୍ ନେଭର ରିଟାଏର୍ସ ।"



# ଲରମ୍ବା ମହାବିଦ୍ୟାଳୟର ରଜତ ଜୟନ୍ତୀ ସମୟର ସଂପାଦକୀୟ

ସୁଧୀବୃନ୍ଦ,

କ୍ୱଚିତ ଲୋକଙ୍କ ଭାଗ୍ୟରେ କୌଣସି ଏକ ଅନୁଷ୍ଠାନର ଅଧ୍ୟକ୍ଷ ଓ ସଂପାଦକ ଭାବରେ କୋଡିଏ ବର୍ଷରୁ ଅଧିକ କାର୍ଯ୍ୟ କରିବାର ସୁଯୋଗ ମିଳିଥାଏ। ସେ ଦୃଷ୍ଟିରୁ ମୁଁ ନିଜକୁ ଭାଗ୍ୟବାନ ମନେକରେ।

୧୯୬୮ ମସିହାରେ ଲରମ୍ବା ମହାବିଦ୍ୟାଳୟରେ ଯୋଗଦେବା ସମୟରୁ ଆଜି ୨୩ ବର୍ଷ ବିତିଯାଇଛି। ୧୯୯୦ ମସିହାରେ ଏହାର ୨୫ ବର୍ଷ ପୂର୍ତ୍ତି ହୋଇ ସାରିଛି। ପ୍ରତିଷ୍ଠାତା ସ୍ୱର୍ଗୀୟ ବ୍ରଜମୋହନ ପଣ୍ଡାଙ୍କର ଶତବାର୍ଷିକୀ, ଲରମ୍ବା ଉଚ୍ଚ ବିଦ୍ୟାଳୟର ସୁବର୍ଣ୍ଣ ଜୟନ୍ତୀ ଯଥାକ୍ରମେ ୧୯୮୯ ଓ ୧୯୯୦ ମସିହାରେ ପାଳନ ହେବାପରେ ଲରମ୍ବା ମହାବିଦ୍ୟାଳୟ ତାର ରୌପ୍ୟ ଜୟନ୍ତୀ ଉତ୍ସବ ପାଳନ କରୁଛି। ଏ ଅବସରରେ ଆପଣମାନଙ୍କୁ ସମସ୍ତଙ୍କୁ ସ୍ୱାଗତ ଜଣାଉଛି।

ଲରମ୍ବା ପରି ଗ୍ରାମାଞ୍ଚଳରେ ଏକ ମହାବିଦ୍ୟାଳୟର ପରିକଳ୍ପନା ୧୯୨୦ ଦଶକରେ ଯେଉଁ ଯୁବକ ମନକୁ ଆସିଥିଲା, ତାହା ତାଙ୍କର ପ୍ରାପ୍ତ ବୟସରେ ୧୯୬୪ ମସିହାରେ ସାକାର ରୂପ ନେଲା। ସେତେବେଳେ ସେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି। ସେତେବେଳର ଡକ୍ଟର ପର୍ଶୁରାମ ମିଶ୍ରଙ୍କ ସଭାପତିତ୍ୱରେ ଓଡିଶା ଏଡୁକେଶନ ସୋସାଇଟି ଏ ମହାବିଦ୍ୟାଳୟ ପ୍ରତିଷ୍ଠା କରିବା ପାଇଁ ଯେଉଁ ସଫଳ ପଦକ୍ଷେପ ନେଇଥିଲେ, ତାହା ଅଭିନନ୍ଦନୀୟ। ମହାବିଦ୍ୟାଳୟର ଉତ୍ତରୋତ୍ତର ଉନ୍ନତି ବିଷୟରେ ପଦକ୍ଷେପ ନେବା ପୂର୍ବରୁ ଜନ୍ମଦାତାଙ୍କର ଦେହାନ୍ତ ହେଲା। ୧୯୬୫ ମସିହାଠାରୁ ୧୯୬୭ ମସିହା ପର୍ଯ୍ୟନ୍ତ ଏ ମହାବିଦ୍ୟାଳୟର ଭବିଷ୍ୟତ ବିଷୟରେ ଆଶଙ୍କା ଜାତ ହୋଇଥିଲା। ତତ୍କାଳୀନ ପରିଚାଳନା ସମିତିର ସଭ୍ୟବୃନ୍ଦ ତଥା ସଂପାଦକ ଶ୍ରୀ ପଦ୍ମଲୋଚନ ପଣ୍ଡାଙ୍କର ପ୍ରସ୍ତାବ ଓ ପ୍ରାକ୍ତନ ପ୍ରଥମ ଅଧ୍ୟକ୍ଷ ୰ ଖଗେନ୍ଦ୍ରନାଥ ସେନଗୁପ୍ତଙ୍କ ଅନୁମୋଦନ ଫଳରେ ମୁଁ କାର୍ଯ୍ୟଭାର ଗ୍ରହଣ କଲି ସେପ୍ଟେମ୍ବର ୧୯୬୮ ମସିହାରେ।

ଲରମ୍ବା ଉଚ୍ଚ ମାଧ୍ୟମିକ ବିଦ୍ୟାଳୟର ପରିଚାଳନା ସମିତିର ଦାନସୂତ୍ରରେ ପ୍ରାୟ ୧୫ ଏକର ଜମି, ପୁରାତନ ବିଦ୍ୟାଳୟର ହଷ୍ଟେଲ ଓ ଶ୍ରେଣୀଗୃହ, ଉଚ୍ଚ ମାଧ୍ୟମିକ ସ୍କୁଲର ମିଳନ ମଣ୍ଡପ ଓ ବିଜ୍ଞାନ ଗୃହକୁ ଆଧାର କରି ଲରମ୍ବା ମହାବିଦ୍ୟାଳୟର ପରିକଳ୍ପନା

ହୋଇଥିଲା । ରାସ୍ତାର ଦୁଇ ପାଖରେ ଅବସ୍ଥିତ ଜମିର ବାଡ଼ ଓ ତାହାର ଉନ୍ନୟନ ହୋଇ ପାରିନଥିଲା । ସାତଜଣ ଅଧ୍ୟାପକ ଓ ପ୍ରାୟ ୧୦ ଜଣ ଅଣଶିକ୍ଷକଙ୍କ ନିଧାର୍ଯ୍ୟ ଦରମା ମାସକୁ ମାସ ଦେବା ପାଇଁ ମହାବିଦ୍ୟାଳୟର କୌଣସି ପାଣ୍ଠି ନଥିଲା । ଏହା ସତ୍ତ୍ୱେ ବିଭିନ୍ନ ଆର୍ଥିକ ଅନାଟନ ମଧ୍ୟରେ ଗତ କୋଡିଏ ବର୍ଷ ଭିତରେ ଦୁଇଟି ଶ୍ରେଣୀଗୃହ, ସିନିୟର ସାଇନ୍ସ ଲାବୋରେଟରୀ ବିଲଡିଂ, ଅଧ୍ୟକ୍ଷଙ୍କ ବାସଗୃହ, ଏନ୍.ଆର୍.ଏସ୍.ସି ବିଲ୍ଡିଂ, ୬ଟି ଅଧ୍ୟାପକଙ୍କ ବାସଗୃହ, ୩୦କଣ ଛାତ୍ରଙ୍କ ପାଇଁ ନୂତନ ଖଣି ଛାତ୍ରାବାସ, ଛାତ୍ରୀ ନିବାସ, ଲାଇବ୍ରେରୀ ବିଲ୍ଡିଂ, ଛାତ୍ରାବାସର ଡାଇନିଂ ହଲ୍, ଶୌଚାଳୟ ଇତ୍ୟାଦି ତିଆରି କରିବା ପାଇଁ ସକ୍ଷମ ହୋଇଛୁ ।

ପଞ୍ଚାୟତ, ପଞ୍ଚାୟତ ସମିତି, ବା ଜିଲ୍ଲାର ଅନ୍ୟ କୌଣସି ସୂତ୍ରରୁ ଅନୁଦାନ ବା ଦାନ ପାଇବାର ଆଶା ଦେଖାଯାଉ ନଥିଲା । ୧୯୬୭ ମସିହାରେ ପ୍ରଥମ ଥର ପାଇଁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଅମଳରେ ପ୍ରଥମ ରେକରିଂ ଗ୍ରାଣ୍ଟ ଟ ୩୨,୦୦୦ ଅନୁମୋଦିତ ହେଲା । ଏହା ୧୯୬୮ ମସିହାରେ, ମୁଁ ମହାବିଦ୍ୟାଳୟ ଅଧ୍ୟକ୍ଷ ଭାବରେ ଯୋଗଦେବା ବେଳକୁ ମିଳିଲା । ୧୯୬୭ ମସିହାରେ ଲରମ୍ବା ମହାବିଦ୍ୟାଳୟ, ଉତ୍କଳ ବିଶ୍ୱବିଦ୍ୟାଳୟଠାରୁ ଅଲଗା ହୋଇ ନୂତନ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଅଧୀନକୁ ଆସିଲା । ୧୯୬୮-୬୯ ମସିହା ବେଳକୁ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଷ୍ଟାଟ୍ୟୁଟ୍ ଅନୁଯାୟୀ ଅଧ୍ୟକ୍ଷ ଓ ସଂପାଦକ ଭାବରେ ମୋତେ କାର୍ଯ୍ୟ କାର୍ଯ୍ୟ କରିବାକୁ ଅଧିକାର ମିଳିଲା । ଏହି ସୂତ୍ରରେ ଅଧ୍ୟକ୍ଷର ଦାୟିତ୍ୱ ସହିତ ମହାବିଦ୍ୟାଳୟର ଉନ୍ନତି ଓ ଉନ୍ନୟନ ବିଷୟରେ ମଧ୍ୟ ମୋତେ ସକ୍ରିୟ କାର୍ଯ୍ୟ କରିବାକୁ ପଡ଼ିଛି । ମୋର କାର୍ଯ୍ୟକାଳ ମଧ୍ୟରେ ଲରମ୍ବା, ଅତାବିରା, ଜକ୍ସାପଡା, କୁଲୁଣ୍ଡା, ସରଣ୍ଡା, ଲହଣ୍ଡା, ଗୋଡ଼ଭଗା, ଟାମିରସରା, କାଦୋବାହାଲ, ରକ୍ଷୁଡ଼ା, ମହୁଲପାଲି, ପାହାଡ଼ଶ୍ରୀଗିଡ଼ା ପଞ୍ଚାୟତ ମାନଙ୍କରୁ ବହୁ ସାହାଯ୍ୟ ସହଯୋଗ ପାଇଛି । ସେଠାକାର ସରପଞ୍ଚମାନଙ୍କ ପାଖରେ ଲରମ୍ବା ମହାବିଦ୍ୟାଳୟ ଋଣୀ ହୋଇ ରହିବ ।

ବେସରକାରୀ ମହାବିଦ୍ୟାଳୟର ବାର୍ଷିକ ଆୟ ଯଥେଷ୍ଟ ନ ହେଲେ ମହାବିଦ୍ୟାଳୟର ପରିଚାଳନାରେ ବ୍ୟାଘାତ ସୃଷ୍ଟି ହୋଇଥାଏ । ସେ ଦୃଷ୍ଟିରୁ ଲରମ୍ବା ମହାବିଦ୍ୟାଳୟର ଆୟବ୍ୟୟ ହିସାବ କଲେ ୧୯୬୯ ମସିହା ବେଳକୁ ହାରାହାରି ବର୍ଷକୁ ଟ ୫୦,୦୦୦ ଟଙ୍କାର ନିଅଣ୍ଟ ରହୁଥିଲା । ଏ ନିଅଣ୍ଟକୁ ଭରଣା କରିବା ପାଇଁ ପରିଚାଳନା ସମିତିର ସଭ୍ୟ ଓ ସଂପାଦକ ଭାବରେ ମୋତେ ୧୯୭୦ ରୁ ୧୯୭୬ ମସିହା ପର୍ଯ୍ୟନ୍ତ ବହୁ ଝଡ଼ ଝଞ୍ଜାର ସମ୍ମୁଖୀନ ହେବାକୁ ପଡିଛି । ଓଡିଶା ସରକାରଙ୍କ ତତ୍କାଳୀନ ଶିକ୍ଷାମନ୍ତ୍ରୀ ✓ ବନମାଳୀ ପଟ୍ଟନାୟକ, ଶିକ୍ଷାସଚିବ ଶ୍ରୀ ଏଚ୍.ଏନ୍.ଦାସ ମହାପାତ୍ର ଓ ଶିକ୍ଷା ନିର୍ଦ୍ଦେଶକ

ପ୍ରଫେସର ବିଧୁଭୂଷଣ ଦାସଙ୍କର ସହାନୁଭୂତି ଓ ସାହାଯ୍ୟ ବଳରେ ବହୁ ଅଭାବ ଦୂର ହୋଇଛି । ଏ ଅବସରରେ ମୁଁ ସେମାନଙ୍କୁ ମୋର କୃତଜ୍ଞତା ଜଣାଉଛି ।

ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ✓ ପ୍ରଫେସର ଆର୍. କପୁର, ✓ ଡକ୍ଟର କିଶୋର ଚନ୍ଦ୍ର ପଟ୍ଟନାୟକ ଓ ଇଂଜିନିୟର ପ୍ରଫେସର ଭୁବନେଶ୍ୱର ବେହେରାଙ୍କ ସଦୟ ସୁପାରିଶ, ଲରମ୍ବା ମହାବିଦ୍ୟାଳୟର ବହୁ ଅଭାବ ଭିତରେ ନିଜ ଗୋଡରେ ଠିଆ ହୋଇ କାମ କରିଯିବା ପାଇଁ ଉତ୍ସାହିତ କରିଛି । ବ୍ୟକ୍ତିଗତ ଭାବରେ ମୁଁ ଏ ତିନିଜଣ କୁଳପତିଙ୍କ ପାଖରେ ଋଣୀ ହୋଇ ରହିଛି ।

ଭାରତ ସରକାରଙ୍କର ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର କୃପା ଦୃଷ୍ଟି ପାଇବାରେ ଉଲ୍ଲିଖିତ ବ୍ୟକ୍ତିଗଣ ଆମକୁ ଯଥେଷ୍ଟ ସାହାଯ୍ୟ କରିଛନ୍ତି । ପ୍ରଫେସର ବିଧୁଭୂଷଣ ଦାସଙ୍କ ପରେ ପ୍ରଫେସର ଦେବେନ୍ଦ୍ର ମିଶ୍ର, ଡକ୍ଟର ମହେନ୍ଦ୍ର ରାଉତ, ପ୍ରଫେସର କ୍ଷେତ୍ରମୋହନ ପଟ୍ଟନାୟକ, ଡକ୍ଟର ଶ୍ରୀନିବାସ ସାହୁଙ୍କ ପରି ଶିକ୍ଷା ନିର୍ଦ୍ଦେଶକ ଓ କୁଳପତିଗଣ ଲରମ୍ବା ମହାବିଦ୍ୟାଳୟର ସ୍ନାତକ ଶ୍ରେଣୀ ଖୋଲିବା, ଗୃହ ନିର୍ମାଣ ଅନୁଦାନ, ଆସବାସପତ୍ର ଅନୁଦାନ ଓ ପାଠାଗାର ଅନୁଦାନ ପାଇବାରେ ବହୁବିଧ ଭାବରେ ସାହାଯ୍ୟ କରିଛନ୍ତି ।

ସମ୍ବଲପୁର ଜିଲ୍ଲାପାଳ ଭାବରେ ଶ୍ରୀ ସୁଧାଂଶୁ ପଟ୍ଟନାୟକ, ଶ୍ରୀ ଅଜିତ ତ୍ରିପାଠୀ, ଶ୍ରୀ ସୁଧାଂଶୁ ମୋହନ ମିଶ୍ର, ଶ୍ରୀ ପ୍ରତାପ ବନ୍ଦୋପାଧ୍ୟାୟ ଓ ବରଗଡ଼ ଉପଖଣ୍ଡ ପାଳ ଭାବରେ ଶ୍ରୀ ଗୌତମ ମୁଖାର୍ଜି, ଶ୍ରୀ ଏ.ସି.ଏସ୍.ରାଓ, ଶ୍ରୀ ସନ୍ତୋଷ କୁମାର, ଶ୍ରୀ ପୂର୍ଣ୍ଣଚନ୍ଦ୍ର ପଟ୍ଟନାୟକ, ଶ୍ରୀ ଗୋପୀନାଥ ମହାନ୍ତି ଏବଂ ଡି.ଆଇ.ଜି ଶ୍ରୀ ଦୁର୍ଗାମାଧବ ମିଶ୍ରଙ୍କ ସଦିଚ୍ଛା ଓ ସହଯୋଗ ପାଇଁ ଆମେ କୃତଜ୍ଞ ।

୧୯୭୬ ମସିହାରେ ବେସରକାରୀ କଲେଜର ଶିକ୍ଷକ ମାନଙ୍କର ସିଧାସଳଖ ଦରମା ଦେବା ପ୍ରବର୍ତ୍ତନ ହେବାପରେ ଲରମ୍ବା ମହାବିଦ୍ୟାଳୟର ପରିଚାଳନା ସମିତି ଆଶ୍ୱାସନାର ନିଶ୍ୱାସ ମାରିଲା । ବର୍ଷକୁ ହାରାହାରି ଦେଢ଼ ଲକ୍ଷ ଟଙ୍କା ଅନୁଦାନ ପରିବର୍ତ୍ତେ ଓଡ଼ିଶା ସରକାର ଲରମ୍ବା ମହାବିଦ୍ୟାଳୟକୁ ପ୍ରାୟ ୪ ଲକ୍ଷ ଟଙ୍କା କର୍ମଚାରୀ ଦରମା ବାବଦରେ ଦେଲେ । ସେଥି ସହିତ ଧାରାବାହିକ ଭାବରେ ନନ୍ ରେକରିଂ ଅନୁଦାନର ମାତ୍ରା କମିବାରେ ଲାଗିଲା । ଚତୁର୍ଥ ପଞ୍ଚବାର୍ଷିକ ଯୋଜନା ବେଳକୁ ବିଶ୍ୱବିଦ୍ୟାଳୟ ଅନୁଦାନ ନିଗମ ତାଙ୍କର ନୂତନ ନିୟମ ଅନୁସାରେ ଲରମ୍ବା ମହାବିଦ୍ୟାଳୟକୁ ଅନୁଦାନର ପର୍ଯ୍ୟାୟଭୁକ୍ତ କଲେ ନାହିଁ । ପଞ୍ଚମ ପଞ୍ଚବାର୍ଷିକ ଓ ଷଷ୍ଠ ପଞ୍ଚବାର୍ଷିକ ଯୋଜନା କାଳରେ ଲରମ୍ବା ମହାବିଦ୍ୟାଳୟକୁ ବିଧିବଦ୍ଧ ଭାବରେ ଗ୍ରାମ୍ୟାଞ୍ଚଳର ମହାବିଦ୍ୟାଳୟ ଭାବରେ ସ୍ୱୀକୃତି ମିଳିଲା । କିନ୍ତୁ ଏଥିପାଇଁ ଉଚ୍ଚ ଶିକ୍ଷାନିର୍ଦ୍ଦେଶକ, ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଓ ଓଡ଼ିଶା ସରକାରଙ୍କ ପାଖରେ ଲରମ୍ବା ମହାବିଦ୍ୟାଳୟର ପରିଚାଳନା ସମିତିକୁ

ବହୁ ଭାବରେ ଓଜର ଆପତ୍ତି କରିବାକୁ ପଡ଼ିଥିଲା । ଲରମ୍ବା ଗ୍ରାମ୍ୟାଞ୍ଚଳକୁ ପ୍ରକୃତ ଭାବରେ ଚିହ୍ନାଇବା ପାଇଁ ଶିକ୍ଷା ନିର୍ଦ୍ଦେଶକ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଗଣ ପଞ୍ଚମ ଓ ଷଷ୍ଠ ପଞ୍ଚବାର୍ଷିକ ଯୋଜନା କାଳରେ ସାହାଯ୍ୟ କରିଥିଲେ ।

୧୯୮୦ ମସିହା ବେଳକୁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ନୂତନ ଦରମାହାର ଓଡ଼ିଶାରେ ଲାଗୁ କରିବା ପାଇଁ ପ୍ରସ୍ତାବ ଆସିଲା । ସେଥି ସହିତ ସିଧାସଳଖ ଦରମା ପାଉଥିବା ଅଧ୍ୟାପକ ମାନଙ୍କର ବଦଳି ବ୍ୟବସ୍ଥା ଯୋଗୁ ଲରମ୍ବା ମହାବିଦ୍ୟାଳୟର ପରିଚାଳନାରେ ବାଧା ସୃଷ୍ଟିହେଲା ।

୧୯୮୩ ମସିହା ବେଳକୁ ଓଡ଼ିଶା ସରକାର ପୁନଶ୍ଚ ଶିକ୍ଷାକ୍ଷେତ୍ରରେ ଏକ ପରିବର୍ତ୍ତନ ଆଣିବାକୁ ପ୍ରସ୍ତାବ ନେଲେ । ତାହା ହେଲା +୨ ଶିକ୍ଷା ପ୍ରଣାଳୀ । ଏ ପ୍ରଣାଳୀ ପାଇଁ ଲରମ୍ବା ମହାବିଦ୍ୟାଳୟ ପରି କୋଡ଼ିଏ ବର୍ଷ ପୁରୁଣା ଗ୍ରାମାଞ୍ଚଳର କଲେଜ ପାଇଁ ବହୁ ସମସ୍ୟା ଦେଖା ଦେଇଛି । ନୂତନ ଅଧ୍ୟାପକ ଓ କର୍ମଚାରୀ ମାନଙ୍କର ପୋଷ୍ଟ କ୍ରିଏସନ ଓ ସେଙ୍କସନ୍ । ଅଧ୍ୟାପକମାନଙ୍କ ବଦଳି ସାଙ୍ଗକୁ ପୁରାତନ ଚାରୋଟି ଶ୍ରେଣୀ ପରିବର୍ତ୍ତେ, +୨ ଓ +୩ ଏହିପରି ପାଞ୍ଚଟି ଶ୍ରେଣୀର ଶିକ୍ଷା ପ୍ରଣାଳୀ ପାଇଁ ଶ୍ରେଣୀଗୃହ, ଆସବାବ ପତ୍ର ଅଧ୍ୟାପକ ଓ ଶିକ୍ଷାକର୍ମୀମାନଙ୍କର ଅଭାବ ୧୯୮୬ ମସିହାଠାରୁ ଗୁରୁତର ହେବାରେ ଲାଗିଛି ।

ଓଡ଼ିଶା ସରକାର ଓ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ସଂପୂର୍ଣ୍ଣ ସାହାଯ୍ୟ ପାଇବା ପାଇଁ ନିଜକୁ ପ୍ରସ୍ତୁତ କରୁଥିବାବେଳେ ଲରମ୍ବା ମହାବିଦ୍ୟାଳୟର ସିମୀତ ସମ୍ବଳ, ଶ୍ରେଣୀଗୃହ, ଆସବାସପତ୍ର, ଅଧ୍ୟାପକ ଓ ଶିକ୍ଷାକର୍ମୀଙ୍କୁ +୨ ଓ +୩ ମହାବିଦ୍ୟାଳୟ ଭାବରେ ଦୁଇଭାଗ କରିବା ମହାବିଦ୍ୟାଳୟର ଉନ୍ନତି ପାଇଁ ଏକ ପ୍ରତିବନ୍ଧକ ଭାବରେ ଦେଖାଦେଇଛି । ପ୍ରସ୍ତାବ କାଗଜ କଲମ ଉପରେ ହୋଇପାରେ କିନ୍ତୁ କାର୍ଯ୍ୟତଃ ଏହା ପ୍ରଶାସନିକ ଶୃଙ୍ଖଳା ଓ ପରିଚାଳନା ପାଇଁ ମୋଟେ ସ୍ୱାସ୍ଥ୍ୟକର ନୁହେଁ । କାରଣ ଲରମ୍ବା ମହାବିଦ୍ୟାଳୟ ବିଗତ ୨୫ ବର୍ଷ ହେଲା ନିଜକୁ ଏକ ସ୍ନାତକ ମହାବିଦ୍ୟାଳୟକୁ ଭାବରେ ଗଢ଼ି ତୋଳିବା ପାଇଁ ଚେଷ୍ଟିତ ଅଛି । ୧୬ ଏକର ଜମି ଓ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ପାଖରେ ଅନୁବନ୍ଧିତ ୨୫ ବର୍ଷର ସଂଚିତ ଆସବାସପତ୍ର, ପାଠାଗାର ଓ ଶ୍ରେଣୀ ଗୃହକୁ ଦୁଇଟି କଲେଜ ମଧ୍ୟରେ ଭାଗ କରିଦେବା ଯେ କେତେ କଷ୍ଟସାଧ୍ୟ, ତାହା ବୋଧହୁଏ ମୋ ପରି ଜଣେ ପୁରାତନ ଅଧ୍ୟକ୍ଷ ଓ ସଂପାଦକ ପାଖରେ ହିଁ କେବଳ ପ୍ରତିଭାତ ହେଉଛି ।

ଲରମ୍ବା ମହାବିଦ୍ୟାଳୟର ପ୍ରତିଷ୍ଠା ସମୟରେ ଓଡ଼ିଶାରେ ପ୍ରାୟ ୪୯ଟି ବେସରକାରୀ କଲେଜ ଓ ୨୫ଟି ସରକାରୀ କଲେଜ ଥିଲା । ଏହି ୧୯୯୧ ମସିହାରେ ସର୍ବମୋଟ ୪୬୫ରେ ଯାଇ ପହଞ୍ଚିଛି । ତେଣୁ ଓଡ଼ିଶା ସରକାରଙ୍କ ଅନୁଦାନ ପାଇବାରେ ଏ ମହାବିଦ୍ୟାଳୟ କେବେ ଅଗ୍ରଣୀ ହୋଇ ନପାରେ । ତାପରେ ୨୬ ଜଣ ଅଧ୍ୟାପକ ଓ ୨୬

ଜଣ ଶିକ୍ଷାକର୍ମୀଙ୍କ ଦରମା ବାବଦକୁ ଓଡ଼ିଶା ସରକାର ବର୍ଷକୁ ପ୍ରାୟ ୧୬ ଲକ୍ଷ ଟଙ୍କା ଦେଉଥିବା ବେଳେ ଉନ୍ନୟନ ଅନୁଦାନ ବା ନନ୍‌ରେକରିଂ ଗ୍ରାଣ୍ଟ ପାଇବାର ଆଶା କ୍ଷୀଣରୁ କ୍ଷୀଣତର ହେବାକୁ ଲାଗିଛି । ଏ ଦୃଷ୍ଟିରୁ କେବଳ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ସକ୍ରିୟ ସାହାଯ୍ୟ ବଳରେ ହିଁ ଏ ମହାବିଦ୍ୟାଳୟର ସମସ୍ୟା ସମାଧାନ ହୋଇ ପାରିବ । ସେହି କାରଣରୁ ହିଁ ପରିଚାଳନା ସମିତି ସପ୍ତମ ଯୋଜନା କାଳରେ ୫ ଲକ୍ଷ ଟଙ୍କା ଅନୁଦାନ ପାଇବା ପାଇଁ ସକ୍ଷମ ହୋଇଛନ୍ତି । ତାହାର ଏକ ମୁଖ୍ୟ ଅଂଶ ହେଉଛି, ଆଜି ଉଦ୍‌ଘାଟିତ ହୋଇଥିବା ଏଇ ଲାଇବ୍ରେରୀ ବିଲ୍‌ଡିଂ ।

ସମସ୍ତ ସରକାରୀ ଅନୁଦାନ ପାଇଁ 'ମେଚିଂ ସେୟାର' ବା ପରିଚାଳନା ସମିତିର ଭାଗ ଅନୁମୋଦିତ ହୋଇଥାଏ । ଏଥିପାଇଁ ବେଳେ ବେଳେ ବର୍ଷକୁ ଏକ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ପରିଚାଳନା ସମିତିକୁ ଖର୍ଚ୍ଚ କରିବାକୁ ବା ଯୋଗାଇବାକୁ ପଡ଼େ । ଏତଦ୍‌ବ୍ୟତୀତ ୩୫ଜଣ ଅଧ୍ୟାପକଙ୍କ ସ୍ଥାନରେ ୨୮ଜଣ, ୨୯ ଜଣ ଶିକ୍ଷାକର୍ମୀଙ୍କ ଜାଗାରେ ୨୩ ଜଣଙ୍କୁ ସିଧାସଳଖ ଦରମାରେ ଅନ୍ତର୍ଭୁକ୍ତ କରିବା ଯୋଗୁଁ ପରିଚାଳନା ସମିତି କେତେକଣ ଅଧ୍ୟାପକଙ୍କୁ ଓ ଶିକ୍ଷା କର୍ମଚାରୀଙ୍କୁ ସ୍ୱଳ୍ପକାଳୀନ ଭିତ୍ତିରେ ଚାକିରୀରେ ରଖିବାକୁ ପଡୁଛି । ଏମାନେ ବେଳେବେଳେ ସାତବର୍ଷରୁ ୯ ବର୍ଷ ପର୍ଯ୍ୟନ୍ତ ମହାବିଦ୍ୟାଳୟରେ ଚାକିରୀ କରିବା ସତ୍ତ୍ୱେ ଏମାନଙ୍କୁ ବୈଧିକରଣ କରିବାରେ ବିଳମ୍ବ ଘଟୁଛି । ସରକାର ଏଥିପ୍ରତି ଦୃଷ୍ଟି ନଦେଲେ ଲରମ୍ବା ମହାବିଦ୍ୟାଳୟ ପରି ଗ୍ରାମାଞ୍ଚଳ ଅନୁଷ୍ଠାନ କଦାପି ଉନ୍ନତି କରିପାରିବ ନାହିଁ । ଏଥିପାଇଁ ପରିଚାଳନା ସମିତି ମଧ୍ୟରେ ବେଳେ ବେଳେ ବହୁ ସମସ୍ୟା ଉପୁଜେ । ସୁଖର କଥା ଲରମ୍ବା ମହାବିଦ୍ୟାଳୟର ପରିଚାଳନା ସମିତି ଏ ବିଷୟରେ ୧୯୮୫ ମସିହାଠାରୁ ମହାବିଦ୍ୟାଳୟର ଉନ୍ନୟନ ପାଣ୍ଠିକୁ ସାହାଯ୍ୟ ଦେବା ପାଇଁ ଅଭିଭାବକ ମାନଙ୍କୁ ଅନୁରୋଧ କରିଥାନ୍ତି । ଆର୍ଥିକ ଅନାଟନ ଯୋଗୁଁ ୧୯୭୦ ମସିହା ଠାରୁ ଯେଉଁ ସର୍ବମୋଟ ୧୦ଟି ବିଷୟରେ ଶିକ୍ଷାଦାନ କରାଯାଉଛି, ତାଠାରୁ ଗୋଟିଏ ହେଲେ ନୂତନ ବିଷୟ ଖୋଲିବାର ସାହସ ପରିଚାଳନା ସମିତି କରିପାରିନାହିଁ । କିନ୍ତୁ ଏ ରୌପ୍ୟ ଜୟନ୍ତୀ ବର୍ଷରେ ଆଉ ୫ଟି ବିଷୟ ଯଥା ଶିକ୍ଷା, ଶାରୀରିକ ଶିକ୍ଷା, ସଂସ୍କୃତ, ମନୋବିଜ୍ଞାନ ଓ ସମାଜ ବିଜ୍ଞାନ ଖୋଲିବାର ପ୍ରସ୍ତାବ ସରକାର ଓ ବିଶ୍ୱବିଦ୍ୟାଳୟ କର୍ମକର୍ତ୍ତାଙ୍କ ପାଖକୁ ପଠା ଯାଇଅଛି । କିନ୍ତୁ ଏଥିପାଇଁ ଆସନ୍ତା ବର୍ଷ ଠାରୁ ମହାବିଦ୍ୟାଳୟର ଯେତେଗୁଡ଼ିଏ ଦରଗଡ଼ା କୋଠରୀ ଅଛି, ତାକୁ ସଂପୂର୍ଣ୍ଣ କରିବାକୁ ପଡ଼ିବ । ଏଥିପାଇଁ ଓଡ଼ିଶା ସରକାର ଓ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଉଦାର ସାହାଯ୍ୟ ଆମର ଆଶା ଓ ଆକାଂକ୍ଷା ।

ପ୍ରତିଷ୍ଠାତା ବ୍ରଜମୋହନଙ୍କ କହିବା ଅନୁସାରେ ପଖାଳ ଖାଇ ପାଠ ପଢ଼ିପାରିବା କଲେଜରେ, ପ୍ରକୃତରେ ଏବେ ବି ଦୁଇବେଳ ଖାଇବାକୁ ନପାଉଥିବା ପିଲା ପାଠ ପଢ଼ି ସ୍ନାତକ

ହୁଅନ୍ତି । ବହୁ ଛାତ୍ର ଛାତ୍ରୀ ଏଠି ପାଠ ପଢ଼ିବା ପରେ ନିଜେ ଓ ନିଜ ପରିବାରର ସଂପୂର୍ଣ୍ଣ ଭରଣପୋଷଣ କରି ପାରିଛନ୍ତି । ବହୁ ଛାତ୍ର ନିଜ ନିଜ କ୍ଷେତ୍ରରେ ଯଶସ୍ୱୀ ହୋଇଛନ୍ତି । ଉଚ୍ଚ ପଦରେ ଅଧିଷ୍ଠିତ ହୋଇଛନ୍ତି । ତେବେ ଏ ମହାବିଦ୍ୟାଳୟକୁ ଏକ ଦରିଦ୍ର ବା ଦାରିଦ୍ର୍ୟର ମହାବିଦ୍ୟାଳୟ ଭାବରେ ଚିତ୍ରଣ କରିବାର ଅଭିପ୍ରାୟ ପରିଚାଳନା ସମିତିର ନାହିଁ । ଗ୍ରାମାଞ୍ଚଳରେ ଦାରିଦ୍ର୍ୟ ଥାଇପାରେ କିନ୍ତୁ ମାନସିକ ସ୍ତରରେ ଏ ମହାବିଦ୍ୟାଳୟ କେବେହେଲେ ଦାରିଦ୍ର୍ୟକୁ ପ୍ରଶ୍ରୟ ଦିଏନାହିଁ । ତେଣୁ ଏ ମହାବିଦ୍ୟାଳୟକୁ ବହୁ ଦୂର ଦୂରାନ୍ତରୁ ଛାତ୍ର ଆସିଥାନ୍ତି । ୧୯୬୪ ମସିହାରୁ ଥିବା ପୁରାତନ ପୁରୁଷ ଛାତ୍ରାବାସ ଏବେ ମଧ୍ୟ ଅଛି । ଏ ଛାତ୍ରାବାସର ପରଂପରା ଏବେ ବି ମହାବିଦ୍ୟାଳୟର ପୁରାତନ ଛାତ୍ର ମାନଙ୍କ ପାଇଁ ମଧୁର ସ୍ମୃତି ହୋଇ ରହିଛି । ୧୯୭୯ ମସିହା ଠାରୁ ପୁରାତନ ପୁରୁଷ ଛାତ୍ରାବାସକୁ ଲାଗି ତିରିଶଜଣ ଛାତ୍ରଙ୍କ ପାଇଁ ଆଉ ଏକ ମେନ୍‌ସ୍ ହଷ୍ଟେଲ ଓ ୧୯୮୯ ମସିହା ଠାରୁ ୨୫ ଜଣ ଛାତ୍ରୀ ରହିବା ପାଇଁ ଏକ ଛାତ୍ରୀ ନିବାସ ଆଂଶିକ ଭାବରେ ଛାତ୍ର ଛାତ୍ରୀ ମାନଙ୍କୁ ଆବାସିକ ସୁବିଧା ଦେଉଛି ସଂପୂର୍ଣ୍ଣ ଛାତ୍ରଛାତ୍ରୀଙ୍କ ଆବାସିକ ସୁବିଧା ପାଇଁ ପରିଚାଳନା ସମିତି ଚେଷ୍ଟିତ । ଏଥିପାଇଁ ଓଡ଼ିଶା ସରକାରଙ୍କ ଖଣିବିଭାଗ ଓ ସମ୍ବଲପୁର ଜିଲ୍ଲାପାଳ ଶ୍ରୀ ଅଜିତ ତ୍ରିପାଠୀଙ୍କ ପାଖରେ ଆମେ ଚିର ଋଣୀ ।

ଶସ୍ୟକ୍ଷେତ୍ର, ଶ୍ୟାମଳ ସବୁଜିମା ଓ ଜଳାଧାର ପରିବେଷ୍ଟିତ ଲରମ୍ବା ମହିବିଦ୍ୟାଳୟର ଗ୍ରାମ୍ୟ ପରିବେଶହିଁ ଏ ମହାବିଦ୍ୟାଳୟର ବିଶେଷତ୍ୱ । ଶିକ୍ଷା ସହିତ ଆଧୁନିକତାର ଅନୁପ୍ରବେଶ ଭାରତୀୟ ସମାଜର ଏକ ବିରାଟ କଳଂକ । ବ୍ରିଟିଶ ଅମଳରୁ ଏହା ଭାରତୀୟତା ଓ ଜାତୀୟତାକୁ ବହୁ ଭାବରେ ଧ୍ୱଂସ କରିଛି । ଲରମ୍ବା ମହାବିଦ୍ୟାଳୟର ସମସ୍ତ ପାରଂପରିକ ଗ୍ରାମୀଣତା ସତ୍ତ୍ୱେ ଏଠାରେ ଆଧୁନିକ ଚିନ୍ତା ଚେତନାର ସ୍ପର୍ଶ ସବୁବେଳେ ଅଧ୍ୟାପକ ଓ ଛାତ୍ର ଛାତ୍ରୀଙ୍କ ପାଖରେ ପହଞ୍ଚାଇବାର ପ୍ରୟାସ ପରିଚାଳନା ସମିତି କରି ଆସଛି । କେବେହେଲେ ଉଗ୍ର ଆଧୁନିକତାର ଦୁହାଇ ଦେଇ ନିଜର ଅସହାୟତା ପ୍ରକାଶ କରୁଥିବା ମଣିଷଟିଏ ହୋଇଯିବାକୁ ଏ ମହାବିଦ୍ୟାଳୟ ପ୍ରଶ୍ରୟ ଦେଇନାହଁ । ଏ ପରିବେଶରେ ସମସ୍ତେ ମୁକ୍ତ କିନ୍ତୁ ଆତ୍ମିକ ଶୃଙ୍ଖଳା ମଧ୍ୟରେ ସମସ୍ତେ ଅନୁବନ୍ଧିତ । ସମସ୍ତଙ୍କ ପାଇଁ ନିଜର ଅନ୍ତର୍ନିହିତ ଶକ୍ତିର ବିକାଶ କରିବା ପାଇଁ ସୁଯୋଗ ଦେବାର ଚେଷ୍ଟା ଏ ବିଦ୍ୟାଳୟ କରି ଆସିଛି ।

ବିଗତ ୨୩ ବର୍ଷ ମଧ୍ୟରେ ବହୁ ଅଧ୍ୟାପକ ଅଧ୍ୟାପିକା ତାଙ୍କ ବଳିଷ୍ଠ ଚରିତ୍ର ଓ ଅଧ୍ୟାପନାର ଉତ୍କର୍ଷର ଛାପ ଏଠି ଛାଡ଼ି ଦେଇ ଯାଇଛନ୍ତି । ବହୁ ପରିଚାଳନା ସମିତିର ସଭ୍ୟ ତାଙ୍କର ସୁଚିନ୍ତିତ ମତାମତ ଦ୍ୱାରା ମୋର କାର୍ଯ୍ୟକୁ ସହଜ ଓ ସରଳ କରି ଦେଇଛନ୍ତି । ବହୁ ଛାତ୍ର ଛାତ୍ରୀଙ୍କ ଉତ୍ସାହ ଓ ଉନ୍ମାଦନା ଭିତରେ ମୋର ବୟସକୁ ବିତିବାକୁ ଦେଇ ନାହାନ୍ତି ।

ପ୍ରତିଷ୍ଠାତା ବ୍ରଜମୋହନଙ୍କ ସ୍ୱପ୍ନକୁ ସାକାର କରିବାରେ ମୋତେ ସାହାଯ୍ୟ କରିଛନ୍ତି । ଏମାନଙ୍କ ପାଖରେ ମୁଁ ସବୁବେଳେ କୃତଜ୍ଞ ରହିବି । ଯେଉଁମାନେ ତାଙ୍କର ଅମ୍ଳାନ ଚାରିତ୍ରିକ ବୈଶିଷ୍ଟ୍ୟ ପାଇଁ ମୋ ଜୀବନ ଓ ଜୀବିକା ଏଠି ମଧୁମୟ କରି ଦେଇଛନ୍ତି ସେମାନଙ୍କ ମଧ୍ୟରେ ✓ ହଜାରୁ ମାଷ୍ଟ୍ରେ, ✓ ମଣ୍ଟୁ ବୁଢ଼ା, ✓ ଫେସ୍‌କେଟ୍, ✓ ସୀତାରାମ, ✓ ମହାଦେବ ଓ ✓ ଦେବାର୍ଚ୍ଚନ, ଅନନ୍ୟ ଲକ୍ଷ୍ମୀଷ୍ଟୋରର ପଣ୍ଡା ବାବୁ, କାହ୍ନୁ, ଲୋକନାଥ, ନିରଞ୍ଜନ, ନୃପ, ଖତି, ମହମ୍ମଦ ମୁନ୍‌ସୀ ମିସ୍ତ୍ରୀ, ପାନି ବହିଦାର, ମାର୍କାବାବୁ, ଜଟାକମ୍ପ, ତଥା ବାଲ୍ୟବନ୍ଧୁ, ବରୁଣବାବୁ ଓ କମଳାକାନ୍ତ ପଣ୍ଡାଙ୍କର ଲରମ୍ବ୍ରା ମହାବିଦ୍ୟାଳୟ ପ୍ରତି ସାହାଯ୍ୟ, ସହଯୋଗ ଓ ଆତ୍ମୀୟତା ମୋତେ ଅଭିଭୂତ କରିଛି ।

ବାଲ୍ୟବନ୍ଧୁ ଧୀରେନ୍ଦ୍ର ନାଥ ପାଢ଼ୀ, ଭରତ କିଶୋର ଦାସ ଓ ପଦ୍ମଲୋଚନ ପଣ୍ଡାଙ୍କ ନିମନ୍ତ୍ରଣରେ ୧୯୬୮ ମସିହାରେ ଆସିଥିବା ଯୁବ ଅଧ୍ୟକ୍ଷ ଏବେ ପୌଢ଼ । ଅନେକ କିଛି କରିବାର କଳ୍ପନା କରିଥିଲି । ଅନେକ କିଛି କରିପାରି ନାହିଁ । ଅନେକ ଅଧାରେ ରହିଗଲା - କିନ୍ତୁ ଯାହାକିଛି ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ କରିଛି ବୋଲି ହିସାବ କରିବି, ତାହା ସମ୍ଭବ ହୋଇଛି ଏମାନଙ୍କ ସାହାଯ୍ୟ ସହଯୋଗ ଓ ସମାଲୋଚନାରେ । ସେଥିପାଇଁ ମୁଁ ଆପଣଙ୍କ ପାଖରେ ଏ ବିବରଣୀ ଉପସ୍ଥାପନ କରିବାର ସୁଯୋଗ ପାଇଛି । ବହୁ ଅନୁଷ୍ଠାନ ଓ ବ୍ୟକ୍ତି ବିଶେଷଙ୍କ ସାହାଯ୍ୟରେ ଆମର ଏ ରୌପ୍ୟ ଜୟନ୍ତୀ ଉତ୍ସବ । ସେମାନଙ୍କର ସମସ୍ତଙ୍କର ନାମୋଲ୍ଲେଖ କରିବା ସମ୍ଭବ ହେଉନାହିଁ ।

ସେମାନଙ୍କୁ/ଆପଣମାନଙ୍କୁ ସମସ୍ତଙ୍କୁ ମୋର ଆନ୍ତରିକ ଧନ୍ୟବାଦ ।



# ଓଲିଉଡ (ଓଡ଼ିଆ ଚଳଚ୍ଚିତ୍ର) ଜଗତରେ ଅପଳାପ (ସୋମେନ୍‌ସିପ୍)

"ମୁଝେ ଫିତରୋଁ ମେ, କବିଲୋମେ ତଫସିନ୍ ନକରୋ,
ମେଁ ଓ୍ୱହାଁତକ୍ ହୁଁ ଯାହାଁତକ ୟେ ଜମିନ୍ ଯାତିହେ ।"

୧୯୬୮ ମସିହାରେ "କିଏ କାହାର" ଚଳଚ୍ଚିତ୍ର ସଫଳ ହେବାପରେ କଟକର କୌଣସି ପ୍ରଯୋଜକ, ବିତରକ ବା ନିର୍ଦ୍ଦେଶକ ମୋତେ ଅଭିନୟ କରିବାକୁ ନିମନ୍ତ୍ରଣ କରିନଥିଲେ । ଲକ୍ଷ୍ୟ କରିବାର କଥା ହେଉଛି, ସେତେବେଳେ ଅନ୍ୟ ଜିଲ୍ଲାର କୌଣସି ପ୍ରଯୋଜକ/ ବିତରଣର ଅବ୍ୟବସ୍ଥା ଯୋଗୁଁ ଚଳଚ୍ଚିତ୍ର, ଶିଳ୍ପକୁ ପ୍ରବେଶ କରିବାକୁ ଇଚ୍ଛା କରୁନଥିଲେ । ହେଲେ ମୋତେ ବେଶୀଦିନ ଘିରିଘିରି ବୁଲିବାକୁ ପଡ଼ିଲା ନାହିଁ ।

୧୯୬୮ ବେଳକୁ ଲରମ୍ବା ମହାବିଦ୍ୟାଳୟର ପରିଚାଳନା ସମିତି ତାଙ୍କ ପକ୍ଷରୁ ଏକତରଫା ମୋ ପାଖକୁ, ୧୯୬୫ ମସିହାରେ ପ୍ରତିଷ୍ଠିତ କଲେଜର ଅଧ୍ୟକ୍ଷ ହେବା ପାଇଁ ଅନୁରୋଧ କଲେ । ଓଡ଼ିଶାର କେତେକ ପତ୍ରପତ୍ରିକାରେ ମୋ ବିରୁଦ୍ଧରେ ପ୍ରତିକୂଳ ମନ୍ତବ୍ୟ ଯୋଗୁଁ ଓ ମୋର ଲରମ୍ବା ଗାଁ ପ୍ରତି ଶ୍ରଦ୍ଧା ଯୋଗୁ ମୁଁ ଅଧ୍ୟକ୍ଷ ପଦବୀରେ ଯୋଗଦେବାକୁ ମନସ୍ଥ କଲି । ମୋର ସେତେବେଳେ କଟକରେ ଚଳଚ୍ଚିତ୍ରର ଅଭିନୟରୁ ମାସିକ ଆୟ ଟ.୫୦୦/-ଙ୍କାରୁ ହଜାରେ ପର୍ଯ୍ୟନ୍ତ ପ୍ରାପ୍ତି ହେଉଥିଲା । ମୁଁ ଜାଣେନା ସେତେବେଳେ କେଉଁ ଅଭିନେତା ଓ ଅଭିନେତ୍ରୀ ଗୋଟିଏ ଚଳଚ୍ଚିତ୍ରର ପାଞ୍ଚ ହଜାର ଟଙ୍କାଠାରୁ ବେଶୀ ପାଉଣା ପାଉଥିଲେ । କାରଣ, ମୁଁ କେବେ କୌଣସି ଚଳଚ୍ଚିତ୍ର ନିର୍ଦ୍ଦେଶକ, ପ୍ରଯୋଜକଙ୍କୁ ଆଗତୁରା ଚଳଚ୍ଚିତ୍ରରେ ଅଭିନୟ କରିବାକୁ ଅନୁରୋଧ କରୁନଥିଲି । ଧାରଉଧାର ନେବା ବା ଆର୍ଥିକ ସାହାଯ୍ୟ ଦେବାକୁ କାହାକୁ ଅନୁରୋଧ କରୁନଥିଲି ।

୧୯୬୮ ରୁ ୧୯୭୨ ପର୍ଯ୍ୟନ୍ତ ସମସ୍ତ ଓଡ଼ିଆ ଚଳଚ୍ଚିତ୍ରରେ ବହୁ ଶିକ୍ଷିତ ଯୁବକ ମୁଖ୍ୟତଃ 'ନାୟକ' ଭାବରେ ଅଭିନୟ କରିବାକୁ ଆଗେଇ ଆସିଥିଲେ । ସେମାନେ ମୋଠାରୁ କଟକର ପ୍ରଯୋଜକ ଓ ନିର୍ଦ୍ଦେଶକମାନଙ୍କ ସହିତ ବେଶୀ ଘନିଷ୍ଠ ଥିଲେ । ତଥାପି, ଉପକୂଳ ଅଞ୍ଚଳରୁ ବହୁଦୂରରେ ମୁଁ, ନବରଙ୍ଗପୁରର କଲେଜ ଛାତ୍ର ଶ୍ରୀରାମ ପଣ୍ଡାଙ୍କୁ ମଞ୍ଚ ନାଟକରେ ଦେଖି, ତାଙ୍କୁ ନାୟକ ଭାବରେ ଅଭିନୟ କରିବା ସୁଯୋଗ ଦେବାପାଇଁ ବନ୍ଧୁ ଧୀରେନ୍ଦ୍ର ବିଶ୍ୱାଳଙ୍କୁ ଅନୁରୋଧ କରିଥିଲି ।

ଲରମ୍ବା କଲେଜର ଅଧ୍ୟକ୍ଷ ଓ ସଂପାଦକ ପଦବୀ ପାଇଁ ମୋତେ ପରିଚାଳନା ସମିତିକୁ କେତୋଟି ପ୍ରତିଶ୍ରୁତି ଦେବାକୁ ପଡ଼ିଥିଲା । ପ୍ରଥମ କଥା- ତିନିବର୍ଷ ଯାଏ ମୁଁ ଚଳଚ୍ଚିତ୍ରରେ ଅଭିନୟ କରିବି ନାହିଁ । ଦ୍ୱିତୀୟ କଥା- କଲେଜର ସାମୁହିକ ଉନ୍ନତି ପାଇଁ ସାଧାରଣ ଜନତା ଓ ସରକାରଙ୍କ ଠାରୁ ପାଣ୍ଠି ସଂଗ୍ରହ । ତୃତୀୟ କଥା- ଅଧ୍ୟକ୍ଷ ଭାବରେ କଲେଜର ଶିକ୍ଷକ ଓ ଛାତ୍ରମାନଙ୍କ ପାଠ ପଢ଼ାଇବା କାର୍ଯ୍ୟଟି ସୂଚାରୁ ରୂପେ ଚଳେଇବା । ଏହାକୁ ମାନିନେବା ପରେ ମୋର ଗୋଟିଏ ଦୁଇଟି ଅଲିଖିତ ସର୍ତ୍ତ ପରିଚାଳନା ସମିତିଙ୍କ ପାଇଁ ମୁଁ ରଖିଥିଲି । ତାହାହେଲା ପ୍ରଥମ- ଶିକ୍ଷକ ବା ଛାତ୍ରଙ୍କ ବିଶୃଙ୍ଖଳିତ ଆଚରଣ ପାଇଁ ଅଧ୍ୟକ୍ଷ ଭାବରେ ଶେଷ ନିଷ୍ପତ୍ତି କେବଳ ମୁଁ ନେବି, ପରିଚାଳନା ସମିତିର ସଭ୍ୟ ଓ ବାହାର ଲୋକ ସେଥିରେ ହସ୍ତକ୍ଷେପ କରିବେ ନାହିଁ । ଦ୍ୱିତୀୟ- କଲେଜର ସମସ୍ତ ସ୍ଥାବର ଅସ୍ଥାବର ସମ୍ପତ୍ତିର ସରକାରୀ ଦସ୍ତାବିଜ୍ କଲେଜ ଅଫିସରେ ମୋ ଦାୟିତ୍ୱରେ ରହିବ । ମୋ ଅଜାଣତରେ ଏହାକୁ କେହି ହସ୍ତାନ୍ତର କରିପାରିବେ ନାହିଁ । କଲେଜର ପରିସୀମା ନିର୍ଦ୍ଧାରିତ ହେବାପରେ ସେଠାରେ ମୋ ନିଜସ୍ୱ ଯୋଜନା ଅନୁସାରେ ଉନ୍ନୟନ କାର୍ଯ୍ୟ ଚାଲିବ । ଏ ଅଲିଖିତ ସର୍ତ୍ତାବଳୀ ପାଇଁ ମୋର ପ୍ରଥମ ପାଞ୍ଚବର୍ଷର ବରଗଡ଼ କଲେଜର ଅଭିଜ୍ଞତା ମୁଖ୍ୟତଃ ଦାୟୀ । ଭଗବାନଙ୍କ ଆଶୀର୍ବାଦରୁ ପରିଚାଳନା ସମିତି ଓ ଅଧ୍ୟକ୍ଷ ଏସର୍ତ୍ତସବୁ ଚବିଶ ବର୍ଷଯାଏ ପାଳନ କରି ଚାଲିଥିଲେ । ଏହାର ସୁପ୍ରଭାବ ଏବେ ମଧ୍ୟ ଚର୍ଚ୍ଚାର ବିଷୟ ହୋଇ ରହିଛି ।

ଲରମ୍ବା ବିଜ୍ଞାନ ମହାବିଦ୍ୟାଳୟର ଅଧ୍ୟକ୍ଷ ଭାବରେ ନିଃଶୁଳ୍କ ଗୋଟିଏ ବଙ୍ଗଳା (ମାଟିକାନ୍ଥ, ତଳ ସିମେଣ୍ଟ, ଖପର ଛାତ ଘର) ମୋତେ ଯୋଗାଇ ଦିଆଯିବା ସହିତ, ପ୍ରାୟ ଅଠର ଏକର ସରକମିନ ସ୍କୁଲ କର୍ତ୍ତୃପକ୍ଷ କଲେଜକୁ ଦେଇଥିବା ଦାନପତ୍ର ମୋତେ ଦେଖାଇ ଦିଆଯାଇଥିଲା । କିନ୍ତୁ, କଲେଜ କର୍ତ୍ତୃପକ୍ଷଙ୍କ ପାଖରେ କିଛି ଆର୍ଥିକ ପାଣ୍ଠି ନଥିବାରୁ ମୋର ଅଧ୍ୟକ୍ଷ ଦରମା ବଦଳରେ ପ୍ରଥମ ତିନିବର୍ଷ କେବଳ ସର୍ବମୋଟ ଚାରିଶହ ଟଙ୍କା ମାସିକ ଦରମା ବାବଦକୁ ନେବାର ଅନୁମତି ମୋତେ କର୍ତ୍ତୃପକ୍ଷ ଦେଇଥିଲେ ।

୧୯୬୮ ମସିହାର ସେପ୍ଟେମ୍ବର ମାସରେ ମୁଁ ବିଧିବଦ୍ଧ ଭାବରେ ଅଧ୍ୟକ୍ଷର ସମସ୍ତ ଭାର ଗ୍ରହଣ କଲି । ସମ୍ବଲପୁର ସହରଠାରୁ ସରକାରୀ ରାସ୍ତାରେ ପ୍ରାୟ ୨୩ ମାଇଲ ଦୂରରେ ଅବସ୍ଥିତ ଛୋଟ ଗାଁଟିଏ-ଲରମ୍ବା । ଜନସଂଖ୍ୟା ପ୍ରାୟ ଦୁଇ ହଜାର । ନୂଆକରି ବିଜୁଳୀ ଲାଗିଛି ଗାଁରେ । କଲେଜ ପରିସର ମଧ୍ୟରେ ମୋ ବଙ୍ଗଳାକୁ ଲାଗି ସବଷ୍ଟେସନ । ଗାଁ ଲୋକେ ଜଣଜଣ କରି ଲାଇନ୍ ନେବା ଆରମ୍ଭ କରିଛନ୍ତି । କଲେଜର ପିଲା ୬୪ ଜଣ, ମାଷ୍ଟର (ଲେକଚ୍‌ରର) ଦଶ ଜଣ ଓ ଅନ୍ୟାନ୍ୟ କର୍ମଚାରୀ ଦଶଜଣ । ଅଧ୍ୟାପକମାନଙ୍କ ମଧ୍ୟରୁ କେବଳ ଦୁଇଜଣ ସ୍ଥାନୀୟ । ବାକି ସମସ୍ତେ ଦୂରଦୂରାନ୍ତରୁ ଆସିଥିବା ଲୋକ ।

ସେମାନଙ୍କ ପାଇଁ କଲେଜ କର୍ତ୍ତୃପକ୍ଷ ହଷ୍ଟେଲର କିଛି ଅଂଶକୁ ଷ୍ଟାଫ୍ କ୍ୱାର୍ଟର୍ସରେ ପରିଣତ କରି ଘର ଯୋଗାଇ ଦେଇଛନ୍ତି । ତେଣୁ ଚବିଶ ଘଣ୍ଟା ଅଧ୍ୟକ୍ଷଙ୍କ ଚାରିପାଖରେ ଅଧ୍ୟାପକ ମାନେ ଘେରି ରହିଥିଲେ। ଏଥିରେ ଛାତ୍ରମାନଙ୍କୁ ଶୃଙ୍ଖଳିତ କରିବାକୁ ଅଧ୍ୟକ୍ଷଙ୍କୁ ସେତେବେଶୀ କଷ୍ଟ କରିବାକୁ ପଡୁନଥିଲା ।

ମୁଁ ସମସ୍ତଙ୍କର ସହଯୋଗରେ ଉନ୍ନୟନ କାର୍ଯ୍ୟ ଓ ପାଠପଢ଼ାକୁ ଆଗେଇ ନେବା ପାଇଁ ଲାଗିପଡ଼ିଲି। ଚାରିବର୍ଷ ଭିତରେ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଓ ଶିକ୍ଷାବିଭାଗର ମୋର ସିଧାସଳଖ ଶିକ୍ଷକମାନେ ମୋତେ ଯଥେଷ୍ଟ ସାହାଯ୍ୟ କଲେ। ସରକାରୀ ରେକରିଂ ଓ ନନ୍‌ରେକରିଂ ଗ୍ରାଣ୍ଟ ବର୍ଷକୁ ବର୍ଷ ମିଳିବାକୁ ଲାଗିଲା । ଏ ସମୟ ଭିତରେ ଓଡ଼ିଆ ଚଳଚ୍ଚିତ୍ର କେତେ ଦୂର ଆଗେଇଲା ମୁଁ ଖବର ରଖିନାହିଁ ।

୧୯୭୨ ମସିହାରେ ଧୀର ବିଶ୍ୱାଳ ଶ୍ରୀରାମ ପଣ୍ଡାଙ୍କୁ ନୂତନ ନାୟକ ଭାବରେ ନେଇ "ଧରିତ୍ରୀ" ପ୍ରଯୋଜନା ଆରମ୍ଭ କଲେ ଓ ମୋତେ ଶ୍ରୀରାମଙ୍କ ବଡ଼ଭାଇ ଚରିତ୍ରରେ ଅଭିନୟ କରିବାକୁ ଅନୁରୋଧ କଲେ । ପ୍ରାୟ ପାଞ୍ଚଜଣ ନୂଆ ଓଡ଼ିଆ ଅଭିନେତ୍ରୀ ଓ ଶ୍ରୀରାମ ପଣ୍ଡା, ପ୍ରଶାନ୍ତ ନନ୍ଦ, ଗୋବିନ୍ଦ ତେଜ, ଭାନୁମତୀ ଏଥିରେ ଅଭିନୟ କରିଥିଲେ । ଖରା ଛୁଟିରେ ଏ ଚଳଚ୍ଚିତ୍ରରେ ଅଭିନୟ କରିବା ସମୟରେ ମୋତେ ଗୋପାଳ ଘୋଷ କଟକରେ ଦେଖି ତାଙ୍କ ଦାୟିତ୍ୱରେ ପ୍ରସ୍ତୁତ ହେଉଥିବା "ଘରସଂସାର"ର ମୁଖ୍ୟ ଚରିତ୍ରରେ ଅଭିନୟ କରିବାକୁ ଅନୁରୋଧ କଲେ। ମୋର ତିନିବର୍ଷର ଚଳଚ୍ଚିତ୍ରରେ ଅଭିନୟ ନକରିବାର ସର୍ତ୍ତ ସେତେବେଳକୁ ପୂରଣ ହୋଇଥିଲା । ମୁଁ କେବଳ ଛୁଟି ସମୟରେ ଯାଇ ଅଭିନୟ କରିବାର ମୌଖିକ ଅନୁମତି କର୍ତ୍ତୃପକ୍ଷଙ୍କଠାରୁ ପାଇଥିଲି। କଟକ ସହରର ଏ ଦୁଇ ପ୍ରଯୋଜକ ଖବରକାଗଜର ପ୍ରତିକୂଳ ମନ୍ତବ୍ୟ ସତ୍ତ୍ୱେ ମୋତେ କାହିଁକି "ମୋ ମୁହଁ ଦେଖେଇବାକୁ" ଅନୁରୋଧ କଲେ ମୁଁ ଆଜିଯାଏ ଜାଣିପାରି ନାହିଁ। ମୁଁ ମାହାଳିଆରେ ଏ ଚଳଚ୍ଚିତ୍ରରେ ଅଭିନୟ କରିନାହିଁ। ମୋର ୧୯୬୮ ମସିହାର ପ୍ରାପ୍ୟରୁ ଅନେକ ବେଶୀ ପାରିଶ୍ରମିକ ନେଇ ଏଥିରେ ମୁଁ ଅଭିନୟ କରିଛି ।

ଏଠାରେ ମୁଁ କହିରଖେ, ଯେ ଏ ସମୟରେ ମୁଁ ପ୍ରାୟ ଓଡ଼ିଶାର ସମସ୍ତ ପ୍ରତିଷ୍ଠିତ ନାଟକ, ସଂଗୀତ ଓ ନୃତ୍ୟ କଳାକାର ମାନଙ୍କୁ ଜାଣି ସାରିଥିଲି । ସେମାନଙ୍କ ସହିତ ଏକ ସଂଗରେ ଚଳଚ୍ଚିତ୍ରରେ ଅଭିନୟ କରିବାର ସୁଯୋଗ ପାଇଥିଲୁ । ମୋର ସଂପର୍କ ଏମାନଙ୍କ ସଂଗରେ ବନ୍ଧୁତ୍ୱପୂର୍ଣ୍ଣ ଥିଲା । ଅବଶ୍ୟ ସବୁ ସମାଲୋଚକ ଓ ପ୍ରଯୋଜକ/ ବିତରକ ମାନଙ୍କ ସହିତ ମୋର ତିନିଶହ କିଲୋମିଟର ଦୂର ଲରମ୍ଭା ଗ୍ରାମରୁ ଯୋଗାଯୋଗ ମୋଟେ ନଥିଲା କହିଲେ ଚଳେ ।

୧୯୭୨-୭୩ ମସିହାରେ ମୁଖ୍ୟତଃ ପୁରୀ/କଟକର ନାଟକ କଳାକାରମାନଙ୍କ

ସହିତ ଏକ ସଂଗରେ ରହି ମୁଁ ଅଧିକାଂଶ ବାହ୍ୟଦୃଶ୍ୟରେ କଟକର ଆଖପାଖର ଗ୍ରାମାଞ୍ଚଳରେ ବୁଲି ଅଭିନୟ କରିଥିଲି । ବହୁ ନୂତନ କଳାକାର ଯଥା : ସନ୍ଧ୍ୟା ଆଚାର୍ଯ୍ୟ, କଳ୍ପନା, ସୁଜାତା, ଭାନୁମତୀ, ଗୋବିନ୍ଦ ତେଜ, ଅନ୍ନପୂର୍ଣ୍ଣା 'ଏ' ଓ 'ବି' ଗ୍ରୁପର କଳାକାର ମାନଙ୍କ ଗହଣରେ ପୂର୍ଣ୍ଣ ସିଂହ, ଟିମା ବାବୁ, ପାଣ୍ଡେବାବୁଙ୍କ ସହିତ ଅନ୍ତରଂଗ ମୁହୂର୍ତ୍ତ ଗୁଡ଼ିକ ଏବେବି ମନେ ପଡ଼େ । ନିତାଇ ପାଲିତ ଓ ଭୀମ ସିଂହଙ୍କ ନିର୍ଦ୍ଦେଶନା ଓ ବ୍ୟୋମକେଶ ତ୍ରିପାଠୀ, ଗୋପାଳ ଘୋଷ ଓ ସାମୁଏଲ ସାହୁଙ୍କ (ତ୍ରିଧାରା) ନିର୍ଦ୍ଦେଶନାରେ 'ଧରିତ୍ରୀ' ଓ 'ଘର ସଂସାର' ଚଳଚ୍ଚିତ୍ରର କାମ ଏକ ସଂଗରେ ସରି, ଏକ ସମୟରେ ମୁକ୍ତି ମଧ୍ୟ ପାଇଥିଲା । ଦୁର୍ଭାଗ୍ୟକୁ "ଘର ସଂସାର" ଆଇନଗତ କାରଣରୁ ହଲରୁ ଉଠିଗଲା ଓ ଆଉ ଆଜିଯାଏ ପେଟିରେ ଭର୍ତ୍ତି ହୋଇ ରହିଗଲା । ସେହି ଚଳଚ୍ଚିତ୍ରରେ ହିଁ-ମୁଁ ଓ ସୁଜାତା ଆନନ୍ଦ ସ୍ୱାମୀ ସ୍ତ୍ରୀ ଭାବରେ ଅଭିନୟ କରି ଓଡ଼ିଶା ସରକାରଙ୍କ ଶ୍ରେଷ୍ଠ ନାୟକ ଓ ଶ୍ରେଷ୍ଠ ନାୟିକାର ପୁରସ୍କାର ପାଇଥିଲୁ । 'ଧରିତ୍ରୀ' ଶ୍ରୀରାମ ପଣ୍ଡାଙ୍କ ପାଇଁ, ଗଳ୍ପର ନୂତନତା ଯୋଗୁ ଭଲ ଚାଲିଲା । ଧରିତ୍ରୀର ଗୀତ ମଧ୍ୟ ଖୁବ୍ ପ୍ରଶଂସିତ ହୋଇଥିଲା । ମୁଁ ଲରମ୍ବା ଫେରି କଲେଜ କାମରେ ବ୍ୟସ୍ତ ରହିଲି ।

୧୯୭୪-୭୫ ମଧ୍ୟରେ ମୋତେ କେହି ଯୋଗାଯୋଗ କରିନାହାଁନ୍ତି । କିନ୍ତୁ କଟକରେ କେତେକ ଗୋଷ୍ଠୀ ମୁଖ୍ୟତଃ ସଂଗୀତ ନିର୍ଦ୍ଦେଶକ ମାନଙ୍କ ଜରିଆରେ କଲିକତା ଷ୍ଟୁଡ଼ିଓରୁ ଯାଇ ମାନ୍ଦ୍ରାଜ ଓ ବମ୍ବେ ଷ୍ଟୁଡ଼ିଓର "ମସଲା" ଯୋଗାଡ଼ କରିବାରେ ବ୍ୟସ୍ତ ରହିଲେ । 'ମମତା' ଚଳଚ୍ଚିତ୍ରର ସଫଳତା "ଶେଷ ଶ୍ରାବଣ"ର ରଂଗୀନ ପରିବେଷଣ ଓଡ଼ିଆ ଦର୍ଶକଙ୍କୁ ଭଲ ଲାଗିଲା । ସେଥିପାଇଁ ବ୍ୟୟବହୁଳ ଓଡ଼ିଆ ଚଳଚ୍ଚିତ୍ରର ସୂତ୍ରପାତ ହେଲା । କାରଣ ମସଲା ମାନେ ହିଁ ନାଚ, ଗୀତ, ଚାକଚକ୍ୟ ଭିତରେ କାହାଣୀ କହିବା । ଏ ଧାରା ଧରିବା ପରେ ଓଡ଼ିଆ ଗଳ୍ପ, ଉପନ୍ୟାସ, କାହାଣୀ, ଚଳଣୀ, ସାହିତ୍ୟ, ସଂସ୍କୃତି ପ୍ରତି ଓଡ଼ିଆ ପ୍ରଯୋଜକ ମାନେ ଦୃଷ୍ଟି ଦେଲେ ନାହିଁ । କେବଳ ମସଲା ଖୋଜିବାରେ "ଫାଷ୍ଟ ଟାଇମ୍ ଇନ୍ ଓଡ଼ିଶା"ର ମୋହର ମାରି ଓଡ଼ିଆ ଚଳଚ୍ଚିତ୍ର ପ୍ରସ୍ତୁତ ହେଲା ।

ନୂଆ ପ୍ରଯୋଜକ ଅପେକ୍ଷା କଟକରେ ଘର ଓ ବ୍ୟବସାୟ କରୁଥିବା ଲୋକ ଓଡ଼ିଆ ଚଳଚ୍ଚିତ୍ରର ସବୁ ଦିଗରୁ ଦିଗଦର୍ଶନ ଭାବରେ ପତ୍ରପତ୍ରିକାରେ ଆଲୋଚନା କରାଗଲା । ହଠାତ୍ କଳାଧଳା ଚଳଚ୍ଚିତ୍ରକୁ ଓଡ଼ିଆ ଚଳଚ୍ଚିତ୍ରରୁ ବାଦ୍ ଦିଆଯାଇ ଓଡ଼ିଆ ସାହିତ୍ୟର ଇତିହାସ ଲେଖାଗଲା । ବଙ୍ଗଳା ନିର୍ଦ୍ଦେଶକଙ୍କ ସହଯୋଗକୁ ବିଚାରକୁ ନନେଇ କେବଳ କଟକରେ ଜନ୍ମିତ ସ୍ଥାୟୀ ବାସିନ୍ଦାଙ୍କୁ (ସେମାନେ ବଙ୍ଗୀୟ ହେଲେ ମଧ୍ୟ) ଚଳଚ୍ଚିତ୍ରର ସର୍ବେସର୍ବା ବୋଲି ପ୍ରଚାର କରାଗଲା । ଏହାକୁ ମେନ୍‌ଷ୍ଟ୍ରିମ କୁହାଗଲା ।

୧୯୭୪-୭୫ ମସିହାରେ ପ୍ରାୟ ଏକ ସମୟରେ 'ଯାଯାବର' ଗଳ୍ପ ଲେଖିବା ପାଇଁ

ଅକ୍ଷୟ ମହାନ୍ତି, ହେମନ୍ତ ଦାସ ଓ ବିଜୟ ମିଶ୍ରଙ୍କୁ ଯୁବ ଓଡ଼ିଆ ବ୍ୟବସାୟୀ ଅନୁରୋଧ କଲେ। ଏମାନେ ତିନିଜଣ ମୋ ସହିତ ଯୋଗାଯୋଗ କରି ଏକ ସଂଗରେ ଚିତ୍ରନାଟ୍ୟ କିପରି ଲେଖାଯିବ କଟକର ଏକ ହୋଟେଲ କୋଠରୀରେ ବସି ଆଲୋଚନା କରିଥିଲେ। ସେହିଠାରେ ସମସ୍ତେ ମିଶି ନିର୍ଦ୍ଦେଶନା ଦେବା ଓ ଅଭିନୟ କରିବାର ଯୋଜନା ହୋଇଥିଲା। ସେ ଚଳଚ୍ଚିତ୍ରରେ ତିନୋଟି ହିରୋଇନ୍‌ଙ୍କୁ ଓ ଶ୍ରୀରାମ ପଣ୍ଡାଙ୍କୁ କିପରି ନିର୍ଦ୍ଦେଶନା ଦିଆଯିବ ଓ ସେଥିରେ କେତେ ମସଲା ପୁରାଯିବ ତାହାର ଦାୟିତ୍ୱ ଅକ୍ଷୟ ମହାନ୍ତି ଉପରେ ପଡ଼ି ନେବାରୁ ହେମନ୍ତ ଦାସ ଓ ବିଜୟ ମିଶ୍ର କ୍ଷୁବ୍ଧ ହୋଇଥିଲେ ଓ ଶେଷ ବେଳଯାଏ ପରସ୍ପର ସହିତ ମନାନ୍ତର ଓ ମାଡ଼ଗୋଳ କରିଥିଲେ। ଏହା ପଛରେ ଅକ୍ଷୟ ମହାନ୍ତିଙ୍କର "ଅହଂ" ଯୋଗୁ ମୁଁ ଚିତ୍ରନାଟ୍ୟ ଲେଖା ବେଳରୁ ନିଜକୁ ଦୂରେଇ ନେଇଥିଲି। ସେତେବେଳେ ସଂଗୀତ ନିର୍ଦ୍ଦେଶକ ହିଁ ଚଳଚ୍ଚିତ୍ରର ଚାବିକାଠି ବୋଲି ଅକ୍ଷୟ ମହାନ୍ତି ପ୍ରଚାର କରିବାରେ ଲାଗିଲେ। ତାହାର ପ୍ରଭାବ ଆଜିଯାଏ କଟକର ପ୍ରଯୋଜକ ମାନେ ମନେ କରନ୍ତି। କିନ୍ତୁ ଅକ୍ଷୟ ମହାନ୍ତିଙ୍କ ଏ ପ୍ରଚାର ବିରୁଦ୍ଧରେ ମୁଁ ମୋ "ଅଶାନ୍ତଗ୍ରହ" ଚିତ୍ରର ଗୀତ ସଂଖ୍ୟା ଛ'ରେ ରଖିବାକୁ କହିଲାରୁ ସେ ପ୍ରଯୋଜକଙ୍କୁ ଫୁସୁଲାଇ ନଅଟି ଗୀତ ମୋର ଅନୁପସ୍ଥିତିରେ କଲିକତାରେ ରେକର୍ଡ କରାଇ ନେଇଥିଲେ।

ଏହି ସମୟରେ କଲିକତାର ଫୁଟପାଥରୁ ଇଉରୋପର କିଛି ସଂଗୀତ ଓ ପୁରୁଣା ବଙ୍ଗାଳୀ ଲୋକଗୀତ, ରେକର୍ଡ ଗୀତ ତାଙ୍କର ଅନେକ ସଂଗୀତ ଓ ଗୀତରେ ମୋଟାମୋଟି ଉତାରି ଦେଇଛନ୍ତି। ଓଡ଼ିଶାର ଅନେକ ବରିଷ୍ଠ ଲୋକ ସଂଗୀତକାରଙ୍କ ସୁର ଓ ପ୍ରଥମ ଲାଇନ ନେଇ ନିଜର ରଚ଼ନା ବୋଲି ଆକାଶବାଣୀ ଓ ଚଳଚ୍ଚିତ୍ରରେ ପ୍ରଚାର କରିବାରେ ଲାଗିଲେ। ତାଙ୍କୁ କଟକ/ଭୁବନେଶ୍ୱରର ସମାଲୋଚକମାନେ କେବେ ଏବିଷୟରେ ଆହ୍ୱାନ କରିନାହାଁନ୍ତି। ମୋ ଜାଣିବାରେ "ଯାଯାବର"ର ମୁଖ୍ୟ ସଂଗୀତର ପୁରା ଅର୍କେଷ୍ଟ୍ରା ସେ ଏକ ଋଷିୟ କିଛି ଲଂଗପ୍ଲେଇଂ ରେକର୍ଡରୁ ଉତାରି ଦେଇଛନ୍ତି। ଭାରତୀୟ ବା ବଙ୍ଗଳାର ଯେ କୌଣସି ସଂଗୀତ ବିଶାରଦ ଏହା କହିପାରିବେ। ଏହି ସମୟରେ କଟକରେ ଏକ ଗୋଷ୍ଠୀ ଓଡ଼ିଆ ଚଳଚ୍ଚିତ୍ରର ସାରା ଓଡ଼ିଶାର ପରିବେଷଣର ଭାର ନିଜେ ନେବାର ଯୋଜନା କଲେ ଓ ସରକାରଙ୍କ ଅବହେଳାରୁ ଏଥିରେ ସଫଳ ହେଲେ। ସ୍ୱାଧୀନ ଭାବରେ ଓଡ଼ିଆ ଚଳଚ୍ଚିତ୍ରର ଉନ୍ନତି ପାଇଁ ଓ.ଏଫ.ଡି.ସି ସହିତ ସହଯୋଗ ନକରି ଏକ ରାଜନୈତିକ ଗୋଷ୍ଠୀ ଭାବରେ ପ୍ରତ୍ୟେକ କଥାରେ ବିରୋଧ ଓ ବିକ୍ଷୋଭ କରିବାକୁ ଲାଗିଲେ। ଶେଷରେ ଓ.ଏଫ.ଡି.ସି.ର ଜଣେ ସଭ୍ୟ ଭାବରେ ମୋତେ ସରକାରଙ୍କ ଚାମଚା ବୋଲି ପ୍ରଚାର କରାଗଲା। ତେଣୁ କଟକର କୌଣସି ପ୍ରଯୋଜକ ନିର୍ଦ୍ଦେଶକ ମୋତେ ନେଇ ଚଳଚ୍ଚିତ୍ର କରିବା ବିପଦଶଙ୍କୁଳ ମନେ କରୁଥିଲେ।

ତଥାପି, କଲିକତାର ଟିଟୋ ସିଂ ତାଙ୍କର ଡ଼ବଲ ଭରସନ "ମୁକ୍ତା" ଓଡ଼ିଆ ଚଳଚ୍ଚିତ୍ର ପାଇଁ ମୋତେ ୧୯୭୪-୭୫ ମସିହାରେ ଅମିତ ମୈତ୍ରଙ୍କ ନିର୍ଦ୍ଦେଶନାରେ ଅଭିନୟ କରିବାର ସୁଯୋଗ ଦେଲେ। ଏହାର ମୁଖ୍ୟ ପ୍ରଚାରକ ଓ ସଂଗୀତ ନିର୍ଦ୍ଦେଶକ ଥିଲେ ଅକ୍ଷୟ ମହାନ୍ତି। ସେ ପ୍ରଥମରୁ ୬/୭ଟି ଗୀତ ରେକର୍ଡିଂ କରି ନିଜ ପଇସାଟି ଉଠାଇ ଆଉ ଧରାଛୁଆଁ ଦେଲେ ନାହିଁ। ଅମିତାଭ ବଚନ, ଅନୀଲ ଚାଟାର୍ଜୀ ପରି ଅଭିନେତାଙ୍କ ସହିତ, ମୁଁ ଓ ସୌଦାମିନୀ ଏକ ଉଚ୍ଚକୋଟୀର ଚଳଚ୍ଚିତ୍ର ଶେଷ କରିପାରିଲୁ ନାହିଁ, କେବଳ ଅକ୍ଷୟ ମହାନ୍ତିଙ୍କ 'ଅହଂ' ଯୋଗୁ।

୧୯୭୬-୭୭ରେ ଗୋପାଳ ଘୋଷ ମୋତେ 'ଅମର ପ୍ରେମ'ର ବୟସ୍କ ପାଦ୍ରୀ ରୋଲ କରିବାକୁ କହିଲେ। ୧୯୭୭ ମସିହାରେ ମୟୂରଭଞ୍ଜର ପ୍ରଥମ ଚଳଚ୍ଚିତ୍ର ଗଣେଷ ଜୀଉଙ୍କ ଦ୍ୱାରା ପ୍ରଯୋଜିତ ହେଲା 'ଅଭିମାନ'-ସାଧୁ ମେହେରଙ୍କ ନିର୍ଦ୍ଦେଶନାରେ। ଉତ୍ତମ ମହାନ୍ତିଙ୍କର ଏହା ପ୍ରଥମ ଚଳଚ୍ଚିତ୍ର। ଏଥିରେ ବିଜୟ ମହାନ୍ତି ଓ ଅଜିତ ଦାସ ମଧ୍ୟ ଅଭିନୟ କରଥିଲେ। ଉଚ୍ଚକୋଟୀର ସଂଗୀତ ସଂଯୋଜନା ପାଇଁ ଓ ଅଭିନୟ ତଥା କାହାଣୀ ପାଇଁ ଏ ଚଳଚ୍ଚିତ୍ରଟି ସଫଳ ହେଲା। କିନ୍ତୁ କଟକର ଚଳଚ୍ଚିତ୍ର ଇତିହାସରେ ଏ ଚଳଚ୍ଚିତ୍ରକୁ କବର ଦେଇ ଦିଆଗଲା, କେବଳ କଟକର ଅକ୍ଷୟ ମହାନ୍ତିଙ୍କ ଗୋଟିଏ ଗୀତଛଡ଼ା ଆଉ କିଛି ଏଥିରେ ନାହିଁ। ଏହା ଆର୍କାଇଭରେ ଖୋଜିଲେ ମଧ୍ୟ ମିଳିବ ନାହିଁ। କାରଣ ସେଇ କଳାଧଳା ଯୁଗର ଚଳଚ୍ଚିତ୍ର। ଏହାର ଗୁପ୍ତ ସି.ଡି. ବା କ୍ୟାସେଟ ମିଳିବାର ସମ୍ଭାବନା ଅଛି। କିନ୍ତୁ ତାକୁ ଖୋଜୁଛି କିଏ ?

ମୁଁ ଲରମ୍ବା କଲେଜ କାମରେ ପ୍ରାୟ ଭୁବନେଶ୍ୱର ଡି.ପି.ଆଇ. ଅଫିସକୁ ଯିବା ଆସିବା କରିଥାଏ। ୧୯୭୭ ମସିହାର ଶେଷଭାଗରେ ଦିନେ ଅକ୍ଷୟ ମହାନ୍ତି, ବିଜୟ ମିଶ୍ର, ପ୍ରଯୋଜକ ସୁବୋଧ ସାମଲଙ୍କୁ ନେଇ ମୋ ଘରେ (ଭିଣୋଇଙ୍କ କ୍ୱାର୍ଟର୍ସରେ) ଆସି ପହଞ୍ଚିଲେ। ତାଙ୍କର ପ୍ରସ୍ତାବ ଥିଲା ଓଡ଼ିଆ କିମ୍ବଦନ୍ତୀ ମୂଳକ "ତଅପୋଇ" କାହାଣୀକୁ ନେଇ ଏକ ରଂଗୀନ ଚଳଚ୍ଚିତ୍ର ସାମନ୍ତରାୟ ପରିବାର କଳ୍ପନା କରିଛନ୍ତି। ଅକ୍ଷୟ ମହାନ୍ତି ତାହାର ସଂଗୀତ ନିର୍ଦ୍ଦେଶକ, ବିଜୟ ମିଶ୍ର ସଂଳାପ ଲେଖକ ଓ "ଗପ ହେଲେବି ସତ"ର ପ୍ରଯୋଜକ ବମ୍ବେର କ୍ୟାମେରାମେନ୍ ସୁରେନ୍ଦ୍ର ସାହୁ ଓ ଶବ୍ଦ ସଂଯୋଜକ ଶ୍ରୀ ମିଶ୍ର ଏହାର ଦାୟିତ୍ୱ ନେବାପାଇଁ ଚୁକ୍ତିବଦ୍ଧ ହୋଇଛନ୍ତି। ମୁଁ ଏ ଚଳଚ୍ଚିତ୍ରର ନିର୍ଦ୍ଦେଶକ ଓ ଚିତ୍ରନାଟ୍ୟ ଲେଖକ ଭାବରେ କାର୍ଯ୍ୟକରିବାକୁ ମୋତେ ଅନୁରୋଧ କରିବାକୁ ସେମାନେ ପ୍ରସ୍ତାବ ଦେଲେ। ପ୍ରଥମରୁ ତଅପୋଇ ଚଳଚ୍ଚିତ୍ରରେ ମୁଁ ଅଭିନୟ ନକରି କେବଳ ନିର୍ଦ୍ଦେଶନା ଦେବାପାଇଁ ସେମାନେ ମୋତେ ଅନୁରୋଧ କଲେ। ସେତେବେଳେ "ଶେଷଶ୍ରାବଣ" ଓ "ଗପ ହେଲେବି ସତ" ଓଡ଼ିଆ ରଂଗୀନ ଚିତ୍ର ଭାବରେ ବେଶ୍ ଆଦୃତ ହୋଇ ସାରିଥିଲା। କିନ୍ତୁ ମୋ

ଜାଣିବାରେ ଓଡ଼ିଶାର ବିତରଣ ଅବ୍ୟବସ୍ଥା ପାଇଁ ପ୍ରଯୋଜକ ତାଙ୍କର ପଇସା ଉଠାଇ ପାରୁନଥିଲେ ।

ମୁଁ ଆଗପଛ ବିଚାର କରି ସେମାନଙ୍କୁ ପ୍ରତିଶ୍ରୁତି ଦେଲି ଓ କହିଲି, ଯେହେତୁ 'ତଅପୋଇ' ଓଡ଼ିଆ ସଂସ୍କୃତିର ଏକ ପରିଚିତି, ଏହା ଉପରେ ଗବେଷଣା ନକରି ଚିତ୍ରନାଟ୍ୟ ଲେଖିବା ଉଚିତ୍ ହେବ ନାହିଁ । ମୁଁ କଟକ ଯାଇ ନିଜେ ଏ ବିଷୟରେ ସାମନ୍ତରାୟ ପରିବାରର ସଭ୍ୟମାନଙ୍କୁ ବୁଝାଇଥିଲି । ମୋ ଯୋଜନାରେ, ମୁଁ, ବିଜୟ ମିଶ୍ର, ଅସୀମ ବସୁ (ଦୁଇଜଣ ବାଲେଶ୍ୱରର ଲୋକ) ଓ ସୁରେନ୍ଦ୍ର ସାହୁ ଓଡ଼ିଶାର ବିଭିନ୍ନ ନଦୀ ମୁହାଣ ଓ ପୁରୁଣା ଘର ଓ ଜଙ୍ଗଲ ଲୋକେସନ ଖୋଜିବା ପାଇଁ ପ୍ରାୟ ଏକ ମାସ ସମୟ ନେଇଥିଲୁ । ଭୁବନେଶ୍ୱର ମ୍ୟୁଜିୟମରେ ପୁରୁଣା ପୋଥିପତ୍ର ଘାଣ୍ଟି ବାଲେଶ୍ୱରର ବଳରାମ ଗଡି ବନ୍ଦରକୁ ବାଛିଥିଲୁ । ବାଲେଶ୍ୱର ସହରର ସୁନହଟ ଗ୍ରାମାଞ୍ଚଳରେ ଅଧିକାଂଶ ସୁଟିଂ ଲୋକେସନ ନିର୍ଣ୍ଣୟ କରିବା ପରେ, ନୀଳଗିରିର ଜଙ୍ଗଲ ଅଞ୍ଚଳରେ ତଅପୋଇ ଛେଳି ଚରେଇବା ଦୃଶ୍ୟ ଓ ଅନ୍ୟାନ୍ୟ ବାହ୍ୟ ଦୃଶ୍ୟ ଓ ଅନ୍ତର୍ଦୃଶ୍ୟର ଟିକିନିଖି ଲୋକେସନର ଲିଷ୍ଟ କରିଥିଲୁ । ଆମର ଯୋଜନା ହେଲେ ଯେ ସଂପୂର୍ଣ୍ଣ ଚଳଚ୍ଚିତ୍ରଟି ପନ୍ଦର ମାଇଲ ଆକ୍ରାନ୍ତରେ ସୁଟିଂ ଗୋଟିଏ ଜାଗାରୁ ସମ୍ଭବ ହୋଇପାରିବ । ଏଥିପାଇଁ ଆମେ ବମ୍ବେ, ମାନ୍ଦ୍ରାଜ ବା କଲିକତା ଷ୍ଟୁଡ଼ିଓ ଉପରେ ଭରସା କରିବୁ ନାହିଁ । ସୁର ସାହୁ, ମୁଁ, ଅସୀମବାବୁ (କଳା ନିର୍ଦ୍ଦେଶକ) ଓ ଶବ୍ଦଯନ୍ତ୍ରୀ ଶ୍ରୀ ମିଶ୍ର ପ୍ରଯୋଜିକା ପୁଷ୍ପ ସାମଲଙ୍କ ସହିତ ଏ ବିଷୟରେ ଏକମତ ହେବା ପରେ ଆମର ଚିତ୍ରନାଟ୍ୟ ଲେଖିବା କାର୍ଯ୍ୟ ଆରମ୍ଭ କଲୁ କଟକ ରାଜାବଗିଚ଼ା ସ୍ଥିତ ସାମନ୍ତରାୟ ପରିବାରର ଜଣେ ଆତ୍ମୀୟଙ୍କ ଘରେ । ପ୍ରାୟ ପନ୍ଦର/କୋଡ଼ିଏ ଦିନ ମଧ୍ୟରେ ଯେଉଁ ଚିତ୍ରନାଟ୍ୟ ଲେଖାହେଲା ସେଠାରେ ମୁଁ ଓ ବିଜୟ ମିଶ୍ର ମୁଖ୍ୟତଃ ସବୁବେଳେ ଉପସ୍ଥିତ ଥିଲୁ । ପୁଷ୍ପା ସାମଲ, ସୁବୋଧ ସାମଲ, ଅକ୍ଷୟ ମହାନ୍ତି ବେଳେବେଳେ ଆମ ସହିତ ଆସି ଯୋଗ ଦେଉଥିଲେ । ତଅପୋଇ କାହାଣୀର ସଂପୂର୍ଣ୍ଣ ପରିକଳ୍ପନା ମୁଁ, ବିଜୟ ମିଶ୍ର, ସୁର ସାହୁ ଭଲଭାବରେ ଜାଣିଥିଲେ ମଧ୍ୟ ଅକ୍ଷୟ ମହାନ୍ତି ତାହା ଜାଣିନଥିଲେ ଓ ସେ କେବଳ ୮/୯ଟି ଗୀତ ନାଚ଼ର ସିକ୍ୱେନ୍ସକୁ ନେଇ ଗୀତ ଲେଖା ଓ ସୁର ଦେବାରେ ଲାଗି ଯାଇଥିଲେ । ଏଥିପାଇଁ ସେ ମୋ ସହିତ ଯୋଗାଯୋଗ ନକରି ପ୍ରଯୋଜିକାଙ୍କ ସହିତ ସିଧାସଳଖ ଯୋଗାଯୋଗ କରି ଆଗତୁରା ଗୀତ ରେକର୍ଡିଂ କରିବାକୁ ଚାହିଁଲେ । ଏହା ବିରୁଦ୍ଧରେ ମୁଁ ସିଧାସଳଖ କହିଲି ଯେ, ଚିତ୍ରନାଟ୍ୟ ଓ ଗୀତର ପ୍ଲାନିଂ ନ ସରିବା ଯାଏ ସେସବୁ ଗୀତ ରେକର୍ଡିଂ କରନ୍ତୁ ନାହିଁ ।

ସୁଟିଂ ବ୍ୟବସ୍ଥା, କାହାଣୀରେ ଅଭିନୟ କରିବା ପାଇଁ ପ୍ରାୟ ଚାଳିଶଜଣ ଅଭିନେତା, ଅଭିନେତ୍ରୀ ଚିହ୍ନଟ କରିବା, ସମୟର ସ୍ୱଳ୍ପତା, ପାଣିପାଗ, ନଦୀର ଜୁଆର ଭଟ୍ଟା, ବିଜୁଳି

ବିଭାଗର ସହଯୋଗ ଏବଂ ବାଲେଶ୍ୱର ସହରରେ ପ୍ରାୟ ୬୦/୭୦ ଜଣ ଲୋକଙ୍କର ରହିବା ଖାଇବା, ସେମାନଙ୍କୁ ନେବା ଆଣିବା ବିଷୟରେ ଅକ୍ଷୟ ମହାନ୍ତି କିଛି ନଜାଣି ଗୀତ ରେକର୍ଡିଂ କରାଇ ନେବାର ଏ ପଦ୍ଧତି ଉପରେ ମୁଁ ଆଜିଯାଏଁ ଏକମତ ହୋଇ ପାରିନାହିଁ। କିନ୍ତୁ କଟକର କେତେକ ସମାଲୋଚକ ଏହାହିଁ ଓଡ଼ିଆ ଚଳଚ୍ଚିତ୍ରର ବିଶେଷତ୍ୱ କହି ପ୍ରଚାର କରି ଚାଲିଛନ୍ତି। ତଅପୋଇ ପ୍ରଯୋଜନାର ମୂଳରୁ ମୁଁ ଓଡ଼ିଶାର ଚଳଚ୍ଚିତ୍ରର ବଜାରକୁ ଭଲ ଭାବରେ ଜାଣିଥିଲୁ। ସେଥିପାଇଁ ସୀମିତ ଖର୍ଚ୍ଚରେ କିପରି ଚଳଚ୍ଚିତ୍ରଟି ଶେଷ ହୋଇପାରିବ, ସେଥିପ୍ରତି ଦୃଷ୍ଟିଦେଲି। କିନ୍ତୁ କଟକର ସଂସ୍କୃତିରେ ଜର୍ଜରିତ ଅକ୍ଷୟ ମହାନ୍ତିଙ୍କ ପାଇଁ ମୁଁ ଗୋଟିଏ କଣ୍ଟା ଭାବରେ ଦେଖାଗଲି। ସେ ଚାହୁଁଥିଲେ ବ୍ୟୟବହୁଳ ହେଲେ ଚଳଚ୍ଚିତ୍ର ସଫଳ ହୁଏ।

ସେତେବେଳ ଯାଏ ଓଡ଼ିଆ ଚଳଚ୍ଚିତ୍ର ଶିଳ୍ପର ସ୍ୱରୂପ ଓ ତା'ର ତାତ୍ତ୍ୱିକ ଆଲୋଚନା କରିବାକୁ କେହି ଆଗଭର ହେଉନଥିଲେ। କେତେଜଣ ପ୍ରଯୋଜକ ହିନ୍ଦୀ ଚଳଚ୍ଚିତ୍ରର ଓଡ଼ିଶା ପାଇଁ ବିତରଣ ସଂପୂର୍ଣ୍ଣ ଅଧିକାର ଆଣି ନିଜକୁ ଓଡ଼ିଆ ଚଳଚ୍ଚିତ୍ରର ପ୍ରଯୋଜକ ବୋଲାଉ ଥିଲେ ଓ କେବଳ ଓଡ଼ିଆ ଚଳଚ୍ଚିତ୍ର ପ୍ରଯୋଜନା ପାଇଁ ସମସ୍ତ ଆର୍ଥିକ ସୁବିଧା ଓ ସବ୍‌ସିଡି ପାଇଁ ଦାବୀ ଜଣାଉଥିଲେ। ବ୍ୟକ୍ତିଗତ ସୁବିଧା ଛଡ଼ା, ଓଡ଼ିଆ ଚଳଚ୍ଚିତ୍ରର ଓଡ଼ିଶା ଭିତରେ ବିତରଣ ଓ ପରିବେଷଣର ସାମୁହିକ ଦାବୀ ସରକାରଙ୍କ ପାଖରେ ଜଣାଇ ନଥିଲେ। ହିନ୍ଦୀ ଚଳଚ୍ଚିତ୍ରର 'ମସଲା' ପୁରାଇ କେବଳ 'ଜଗନ୍ନାଥ'ଙ୍କ ନାଁରେ ନକଲ ଗଳ୍ପ ଲେଖି ଓଡ଼ିଆ ସଂସ୍କୃତିକୁ ବଞ୍ଚାଇ ରଖୁଛନ୍ତି ବୋଲି ପ୍ରଚାର କରୁଥିଲେ। ଏହା ବିରୁଦ୍ଧରେ ମୋର କେତୋଟି ଲେଖା ସେତେବେଳେ ଅକ୍ଷୟ ମହାନ୍ତିଙ୍କ ପରି ଗଳ୍ପଲେଖକ, ଗାୟକ, ସଂଗୀତଜ୍ଞ, ଗୀତ ଲେଖକ ଓ ଅଭିନେତାଙ୍କୁ ପାଗଳର ପ୍ରଳାପ ବୋଲି ମନେ ହେଉଥିଲା। ସେ ଏ ବିଷୟରେ ଓଡ଼ିଆ ଚଳଚ୍ଚିତ୍ରର ଗୌର ଘୋଷଙ୍କଠାରୁ ଉତ୍ତମ ମହାନ୍ତିଙ୍କ ପର୍ଯ୍ୟନ୍ତ ଓ ମୋତେ ମଧ୍ୟ 'ନାୟକ' ଆଖ୍ୟା ଦେଇ ଯେଉଁ ଚରିତ୍ର ସଂହାର କରିଥିଲେ ତାହା ଓଡ଼ିଆ ଚଳଚ୍ଚିତ୍ର ପତ୍ରିକା ମାନଙ୍କରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଛି। ସେଇ ସମୟରେ ଚଳଚ୍ଚିତ୍ର ବିଷୟରେ କଟକ/ଭୁବନେଶ୍ୱର ବହୁ ସଭାରେ ଓଡ଼ିଆ ଚଳଚ୍ଚିତ୍ରର ପ୍ରତିଷ୍ଠିତ ବ୍ୟକ୍ତିମାନେ ଖୋଲାଖୋଲି ଭାବରେ ଓଡ଼ିଆ ସାହିତ୍ୟରେ ଚଳଚ୍ଚିତ୍ର ପାଇଁ ଲିଖିତ ଗଳ୍ପଉପନ୍ୟାସରେ କିଛି ମସଲା ନାହିଁ ବୋଲି ଘୋଷଣା କରିଥିଲେ। ଆହୁରି ମଧ୍ୟ ପ୍ରତିଷ୍ଠିତ ନାଟ୍ୟକାରମାନଙ୍କୁ କେବଳ ସଂଳାପ ଲେଖାଇ ନକଲ ଓଡ଼ିଆ ଚିତ୍ରନାଟ୍ୟ ଲେଖାର ଏକ ପଦ୍ଧତିକୁ ନିଜର ସଂସ୍କୃତି କହିବାରେ ଲାଗିଲେ। ଯାହା ଆଜିଯାଏ କଟକର ପ୍ରଯୋଜକ, ବିତରକ ଓ ପରିବେଷଣ ସଂସ୍ଥା ନିଜର ଫର୍ମୁଲା ଓ ନିୟମ ଭାବରେ ଗ୍ରହଣ କରିଆସିଛନ୍ତି।

ଜଣେ ଅଭିନେତା ଭାବରେ ମୋର ଏ ବିଷୟରେ ଯେତେ ଜ୍ଞାନ ଥାଉ ବା ନଥାଉ ଜଣେ

ଶିକ୍ଷିତ ଓଡ଼ିଆ ଦର୍ଶକ ଭାବରେ, ବନ୍ଧୁ ଇଂରାଜି, ହିନ୍ଦୀ, ବଙ୍ଗଳା, ମାଲାୟଲମ, ତେଲୁଗୁ ଓ ଅନ୍ୟ ଭାଷାଭାଷୀ ଚଳଚ୍ଚିତ୍ରର ଉତ୍କୃଷ୍ଟ ପ୍ରଯୋଜନା ବିଷୟରେ ମୋର ଅଭିଜ୍ଞତା ନିଶ୍ଚୟ ମୋ ଠାରୁ ଦୁଇବର୍ଷରୁ ସାନ ଅକ୍ଷୟ ମହାନ୍ତିଙ୍କ ଠାରୁ ବେଶୀ ଥିଲା । ତେଣୁ, ମୁଁ ଏହାପ୍ରତି ଦୃଷ୍ଟି ଦିଏ ଓ ଲେଖେ । ଏସବୁର ଅଭିଜ୍ଞତା ପଛରେ ମୋର ଏକ ବିଶେଷ ସୁଯୋଗ ଥିଲା, ତା'ହେଲା ପନ୍ଦର ବର୍ଷଯାଏ ମୁଁ "ଓଡ଼ିଶା ଚଳଚ୍ଚିତ୍ର ନିଗମ"ର ଜଣେ ସକ୍ରିୟ ସଭ୍ୟ ଥିଲି । ସେହି ସମୟରେ ଷ୍ଟୁଡ଼ିଓ ଠାରୁ ଲାବରେଟରୀ ଓ ପ୍ରଯୋଜକଙ୍କ ସବ୍‌ସିଡି ପାଇବାର ଚିତ୍ରନାଟ୍ୟ ସବୁ ଭଲ ଭାବରେ ତନଖି କରିବାର ଦାୟିତ୍ୱ ମୋ ଉପରେ ପଡୁଥିଲା ।

"ତଅପୋଇ"ର ଗୀତ ରେକର୍ଡିଂ ସରିବାପରେ ଚଳଚ୍ଚିତ୍ର ରିଲିଜ ହେବା ପର୍ଯ୍ୟନ୍ତ ଅକ୍ଷୟ ମୋ ସହିତ ଯୋଗାଯୋଗ ରଖୁନଥିଲେ । କଟକର ଆଉଜଣେ ପ୍ରଯୋଜକଙ୍କ ପ୍ରଥମ ଚଳଚ୍ଚିତ୍ରରେ ମୋର "ସୁଟିଂ" ଘୁଞ୍ଚାଇ ଦେଇ ତାଙ୍କ ଚଳଚ୍ଚିତ୍ରରେ ଗୋଟିଏ ଛୋଟ ଚରିତ୍ରରେ ଅଭିନୟ କରିବା ପାଇଁ ଟେଲିଫୋନରେ ଧମକପୂର୍ଣ୍ଣ କଥାବାର୍ତ୍ତା, ମୋତେ ଆଜିଯାଏ କଷ୍ଟ ଦେଉଛି । ଚରିତ୍ର ସଂହାର କରିବା କଣ, ମୁଁ ଭଲ ଭାବରେ ଜାଣେ । ବୋଧହୁଏ ଆଜିଯାଏ ଓଡ଼ିଶାର କୌଣସି ଅଭିନେତାଙ୍କୁ ତାହା ସାମ୍‌ନା କରିବାକୁ ପଡ଼ିନଥିବ-ଯାହା ମୋତେ ମିଳିଛି ।

"ତଅପୋଇ" ଚଳଚ୍ଚିତ୍ରର ବିଶେଷତ୍ୱ ଉପରେ କେହି ଆଜିଯାଏ ଆଲୋଚନା କରନ୍ତି ନାହିଁ । ଏହାର ବିଶେଷତ୍ୱ ହେଉଛି କେବଳ ବାଲେଶ୍ୱର ସହରର କୋଡ଼ିଏ କିଲୋମିଟର ଭିତରେ ଏହାର ସମସ୍ତ ଅନ୍ତର୍ଦୃଶ୍ୟ ଓ ବହିର୍ଦୃଶ୍ୟ ଚାଳିଶଦିନ ମଧ୍ୟରେ ଶେଷ କରାଯାଇଛି । "ନାଗରା"ରେ ଯାହା ସୁଟିଂ ସମୟରେ ସଂଳାପ ରେକର୍ଡିଂ ହେଉଥିଲା ପ୍ରତ୍ୟେକ ସନ୍ଧ୍ୟା ୭ଟାରୁ ୯ଟା ମଧ୍ୟରେ ସୁନହଟ ଗାଁର ଆମେ ରହୁଥିବା ବିରାଟ ବଡ଼ ଘରର ବାରିପଟ ଖଳାରେ ଗୋଟିଏ ବଡ଼ ସାଉଣ୍ଡ ପ୍ରୁଫ୍ ଚାଳଘର ଭିତରେ ସେହି ସଂଳାପକୁ ପ୍ରତ୍ୟେକ କଳାକାର ନିଜେ ଶୁଣି ଠିକ୍ ସେମିତି ମଡ୍ୟୁଲେସନ୍ ଦେଇ କହୁଥିଲେ । ସେହି ଟେପ୍‌କୁ ନେଇ ବମ୍ବେର ଓଡ଼ିଆ ଶବ୍ଦ ଇଂଜିନିୟର ଏଡିଟିଂ ଟେବୁଲରେ ମେଚିଂ କରାଇ ନେଇଥିଲେ । କ୍ଷଣପ୍ରଭା ପରି ନୂତନ କଳାକାରଠାରୁ ସାମୁଏଲ ସାହୁଙ୍କ ପରି ପୋଖତ ୪୦/୪୫ ଜଣ କଳାକାର କେହି ବମ୍ବେ ଯିବାର ଦରକାର ପଡ଼ିନାହିଁ । ତେଣୁ ଏହା ଏକ ବ୍ୟୟବହୁଳ ରଂଗୀନ ଚଳଚ୍ଚିତ୍ର ନୁହେଁ- ଫାଷ୍ଟ ଟାଇମ୍ ଇନ୍ ଓଡ଼ିଶା କହିବାର ସୁଯୋଗ ମିଳିନାହିଁ । ଏହାହିଁ ଓଡ଼ିଆ କିମ୍ବଦନ୍ତୀ ଉପରେ ପ୍ରଥମ ଚିତ୍ର ।

ମୋର ମତାମତ ସହିତ ଅନେକ ଓଡ଼ିଆ ଦର୍ଶକ ଏକମତ ହୋଇପାରନ୍ତି ନାହିଁ । କିନ୍ତୁ ଓଡ଼ିଆ ଚଳଚ୍ଚିତ୍ର ଶିଳ୍ପ ଓ ଓଡ଼ିଆ ଚଳଚ୍ଚିତ୍ର କାହାକୁ କହିବା ତା'ର ପରିଚୟ ଦେବାକୁ ସବୁବେଳେ ମୁଁ ଚେଷ୍ଟା କରିଛି । ସେଇ ଚଳଚ୍ଚିତ୍ର ଗୁଡ଼ିକରୁ ଭଲ ଓ ମନ୍ଦର ବିଚାର ଆମେ

ଯେଉଁମାନେ ସଂପୃକ୍ତ ସେମାନେହିଁ ନିର୍ଦ୍ଧାରଣ କରିବା । ଲୋକଙ୍କ ଡିମାଣ୍ଡରେ ଚଳଚ୍ଚିତ୍ର ହେଲେ ତାହା ଯେକୌଣସି ଅବାନ୍ତର ଦୃଶ୍ୟଶ୍ରାବ୍ୟକୁ ଦେଖାଇ ପଇସା ରୋଜଗାର କରି ହେବ, କିନ୍ତୁ ତାକୁ ସୁପର ଡୁପର ଓଡ଼ିଆ ଚଳଚ୍ଚିତ୍ର କହିବା ଓ ପ୍ରଚାର କରିବା ଓଡ଼ିଆ ଜାତିକୁ ଶୋଭା ପାଇବ ନାହିଁ । ଓଡ଼ିଆ ଚଳଚ୍ଚିତ୍ରକୁ (ଓଲିଉଡ ଫିଲ୍ମ) ସର୍ବଭାରତୀୟ ପୁରସ୍କାର ନମିଳିବାର ମୁଖ୍ୟ କାରଣ ହେଉଛି ତାହା ।

୧୯୭୮ ମସିହାର ଶେଷ ଭାଗରେ କଳାହାଣ୍ଡିର ଭବାନୀପାଟଣାର କେତେଜଣ ଯୁବକ ପ୍ରଫୁଲ୍ଲ ରଥଙ୍କ ନାଟକ "ସମର୍ପଣ"କୁ ନେଇ ଜିଲ୍ଲାର ପ୍ରଥମ ଚଳଚ୍ଚିତ୍ର ପ୍ରଯୋଜନା ଆରମ୍ଭ କଲେ । ସେମାନେ ମୋ ସହିତ ଯୋଗାଯୋଗ କଲେ । ଏମାନେ ମୁଖ୍ୟତଃ ଚେନ୍ନାଇର କଳାକୁଶଳୀ ଓ ଷ୍ଟୁଡ଼ିଓ ସହି ଯୋଗାଯୋଗ ରଖିଥିଲେ । ନୂଆ ନାୟିକା ତନ୍ଦ୍ରାରାୟ, ବିଖ୍ୟାତ ମଞ୍ଚ ଅଭିନେତା ଦୁଃଖୀରାମ ସ୍ୱାଇଁଙ୍କ ସହିତ ମୁଁ ଓ କଳାହାଣ୍ଡିର ବହୁ ଯୁବ କଳାକାର ଏଥିରେ ଅଭିନୟ କରିଥିଲୁ । ଏ ଚଳଚ୍ଚିତ୍ରର ବିତରଣ ଓ ପରିବେଷଣ ବିଷୟରେ ତଥା ସେମାନଙ୍କର ସମସ୍ୟା ବିଷୟରେ କୌଣସି ସମାଲୋଚକ ଆଜିଯାଏ ଆଲୋଚନା କରନ୍ତି ନାହିଁ । କିନ୍ତୁ ଅଦୃଶ୍ୟ ଭାବରେ "ମୋ ମୁହଁ ଓଡ଼ିଶାର ଲୋକେ ଆଉ କେତେ ଦେଖିବେ ?" ଏଠାରେ କାର୍ଯ୍ୟ କଲା । ତାହାରି ଫଳରେ ଭବାନୀପାଟଣାର ଦ୍ୱିତୀୟ ଚଳଚ୍ଚିତ୍ରରେ ମୋତେ ନନେଇ ସେମାନେ ରଂଗୀନ ଚଳଚ୍ଚିତ୍ର ପ୍ରଯୋଜନା କଲେ "ପଳାତକ"। ଏହାର ବିତରଣ ଓ ପରିବେଷଣ କେତେ ସଫଳ ହେଲା, ତାହା ମୋତେ ଜଣାନାହିଁ । ପ୍ରଯୋଜକମାନେ କିନ୍ତୁ ତା'ପରେ ଅନ୍ୟ ପେଷା କରିବାକୁ ବାଧ୍ୟ ହେଲେ ।

ଏହି ସମୟରେ ଚେନ୍ନାଇର କେତେଜଣ ପ୍ରଯୋଜକ ଓଡ଼ିଆ ଚଳଚ୍ଚିତ୍ର ଶିଳ୍ପର ଦୟନୀୟତା ଦେଖି ଅଳ୍ପ ଖର୍ଚ୍ଚରେ ପୁରୁଣା ହିନ୍ଦୀ, ତେଲୁଗୁ ଓ ତାମିଲ ଚଳଚ୍ଚିତ୍ର ଚିତ୍ରନାଟ୍ୟକୁ କେବଳ ଓଡ଼ିଆ ସଂଳାପ ଦେଇ ବେଶୀ ଲାଭ ଆଶାରେ ଚଳଚ୍ଚିତ୍ର କରିବାକୁ ଆଗେଇ ଆସିଥିଲେ। ସେମାନେ ଖୁବ୍ କମ୍ଖର୍ଚ୍ଚରେ, ଅଳ୍ପଦିନରେ ଚଳଚ୍ଚିତ୍ରର ସୁଟିଂ ସାରି ଦେଉଥିଲେ । ଓଡ଼ିଶାର ସବୁ କଳାକାରଙ୍କୁ ଚରିତ୍ର ଓ ଗଳ୍ପର ଶ୍ରେଷ୍ଠତ୍ୱ ଦେଖାଇ ଯେଉଁ ନିମ୍ନମାନର ଚଳଚ୍ଚିତ୍ର କଲେ, ତାହାର ଭୁକ୍ତଭୋଗୀ ହେଲି ମୁଁ ଦୁଇଟି ଚଳଚ୍ଚିତ୍ରରେ । ପ୍ରଥମଟି "ପତିପତ୍ନୀ" ଓ ଦ୍ୱିତୀୟଟି ହେଲା "ଜନ୍ମଦାତା"। ଓଡ଼ିଶାର କଳାକାର ମାନଙ୍କ ପ୍ରତି ହେୟ ଜ୍ଞାନ ମୋତେ ଏଠାରେ ବଡ଼ ବାଧିଲା । ଏଥିପାଇଁ ମୁଁ ସବୁ ଓଡ଼ିଆ କଳାକାରଙ୍କ ଆଗରେ ମୋର କ୍ଷୋଭ ଜଣାଇଥିଲି ସୁଟିଂ ସେଟ୍‌ରେ । କିନ୍ତୁ ଚେନ୍ନାଇ ପ୍ରଯୋଜନା ସଂସ୍ଥାର ଶୃଙ୍ଖଳା, ସମୟାନୁବର୍ତ୍ତିତା ମୋତେ କଲିକତା ଓ ବମ୍ବେଠାରୁ ମଧ୍ୟ ଭଲ ଲାଗିଥିଲା । ଏଠାରେ ପ୍ରସାଦ ପ୍ରଡ଼କସନ୍‌ସର କୁଶଳୀ କାରିଗର ମାନଙ୍କ ସହିତ ମୋର ପରିଚୟ ହୋଇଥିଲା । ପରବର୍ତ୍ତୀ ଓଡ଼ିଶା ଚଳଚ୍ଚିତ୍ର ଉନ୍ନୟନ ନିଗମର ସଭ୍ୟ ଭାବରେ ଏମାନେ ଓଡ଼ିଶାର ଷ୍ଟୁଡିଓର ମୂଳଦୁଆ

ପକାଇବା ବିଷୟରେ ମୋର ସହମତି ଜଣାଇଥିଲି । ଏବେବି ଓଡ଼ିଶା ପାଇଁ ଓ ଶିଳ୍ପ ପାଇଁ ସେମାନଙ୍କର ସହଯୋଗ ଆଦର୍ଶସ୍ଥାନୀୟ । ଠିକ୍ ଏହି ସମୟରେ ସମ୍ବଲପୁର ସହରର ଦୁଇଟି ପ୍ରଯୋଜନା ସଂସ୍ଥା ମୋତେ "ଅଶାନ୍ତଗ୍ରହ" ଓ "ଅସ୍ତରାଗ" ଚଳଚ୍ଚିତ୍ରରେ ଅଭିନୟ ଓ ନିର୍ଦ୍ଦେଶନା ଦେବାପାଇଁ ଦାୟିତ୍ୱ ଦେଲେ । "ଅଶାନ୍ତଗ୍ରହ"ର ପ୍ରଯୋଜକ ଜଣେ ବ୍ୟକ୍ତି ଓ "ଅସ୍ତରାଗ"ର ପ୍ରଯୋଜକ ଗୋଟିଏ ତିରିଶ ଜଣିଆ ସମବାୟ ସମିତି । ଦୁଇଟି ଯାକ ପ୍ରଯୋଜକଙ୍କ ଚିନ୍ତାଧାରା ସଂପୂର୍ଣ୍ଣ ଅଲଗା ଅଲଗା । "ଅଶାନ୍ତ ଗ୍ରହ"ର ଗଳ୍ପ ଓଡ଼ିଶାର ବିଖ୍ୟାତ ନାଟ୍ୟକାର ବିଜୟ ମିଶ୍ରଙ୍କ ନାଟକ ଉପରେ ଆଧାରିତ । କିନ୍ତୁ "ଅସ୍ତରାଗ"ର ଗଳ୍ପ ଶୈଳେଶ ପଟ୍ଟନାୟକ, ଶରତ ନାରାୟଣ ବେହେରା ଓ ମୋର ସହଯୋଗରେ ଏକ ଚିତ୍ରନାଟ୍ୟର ପ୍ରସ୍ତୁତି । ଅଶାନ୍ତଗ୍ରହ ପାଇଁ ଓଡ଼ିଶାର ଯେଉଁ କଳାକାରଙ୍କୁ ମୁଁ ଯୋଗାଯୋଗ କରିଥିଲି, ସେମାନଙ୍କ ମଧ୍ୟରୁ ମହାଶ୍ୱେତା "ଅସ୍ତରାଗ" ଚଳଚ୍ଚିତ୍ରରେ ବ୍ୟସ୍ତତା ଯୋଗୁ ଅଭିନୟ କରିପାରିବେ ନାହିଁ ବୋଲି ଜଣାଇ ଦେଲେ । ମୋତେ ଏଥିପାଇଁ ନୂତନ ମୁଖ୍ୟ ଅଭିନେତ୍ରୀ ଖୋଜିବାକୁ ପଡ଼ିଥିଲା । ତେଣୁ 'ଅଶାନ୍ତଗ୍ରହ' କଳାଧଳା ଚଳଚ୍ଚିତ୍ରର ସୁଟିଂ ଯେତେ ଆଗେଇଗଲା, 'ଅସ୍ତରାଗ'ର କାର୍ଯ୍ୟ ସେତେ ଆଗେଇ ପାରିଲା ନାହିଁ । କଲେଜରୁ ଛୁଟିନେଇ ଆସିବାରେ ମୋତେ ଅନେକ ସମସ୍ୟା ଦେଖାଦେଲା । ଏ ଦୁଇଟି ପ୍ରଯୋଜକଙ୍କୁ ମୁଁ ସ୍ପଷ୍ଟ ଭାବରେ କହିଦେଇଥିଲି ଯେ ଚଳଚ୍ଚିତ୍ରର ଅଧିକାଂଶ ବାହ୍ୟଦୃଶ୍ୟ ପ୍ରକୃତ ଲୋକେସନ ସମ୍ବଲପୁର ଆଖପାଖରେ ସାରିବି ଓ ଖୁବ କମ୍ ଦୃଶ୍ୟ ମାନ୍ଦ୍ରାଜର ଷ୍ଟୁଡ଼ିଓ ମାନଙ୍କରେ କରିବି । 'ଅଶାନ୍ତଗ୍ରହ' କଳାଧଳା ଓ 'ଅସ୍ତରାଗ' ରଂଗୀନ୍ ଚଳଚ୍ଚିତ୍ର । ତେଣୁ ବାହ୍ୟଦୃଶ୍ୟ ପାଇଁ ଗଛପତ୍ର, ଫୁଲଫଳ ଆଦି 'ଅସ୍ତରାଗ' ଯେତେ ସମୟ ଦରକାର କରୁଥିଲା; 'ଅଶାନ୍ତଗ୍ରହ' ପାଇଁ ସେତେ ଦରକାର କରୁନଥିଲା । ଅଶାନ୍ତଗ୍ରହର ଚର୍ଚ୍ଚ ଦୃଶ୍ୟପାଇଁ ମୋତେ ସୁନ୍ଦରଗଡ଼ ଜିଲ୍ଲା ଭିତରକୁ ଯିବାକୁ ପଡ଼ିଥିଲା । ଏସବୁ ବିଷୟରେ ମୁଁ ଯେତେବେଳେ କଟକର ପ୍ରଯୋଜକ ମାନଙ୍କ ସହିତ ଯୋଗାଯୋଗ ରଖିନଥିଲି ।

ବହୁ ଅଳ୍ପ ଲୋକେ ମୋର ଚଳଚ୍ଚିତ୍ରର ସୁଟିଂ ପ୍ଲାନ ବିଷୟରେ ଅବଗତ ଥିଲେ । ମୁଁ ଚେନ୍ନାଇର ଦୁଇଟି ଅଲଗା ଅଲଗା ୟୁନିଟକୁ ନେଇ ମାନ୍ଦ୍ରାଜର ଭିନ୍ନ ଭିନ୍ନ ଷ୍ଟୁଡ଼ିଓରେ ସୁଟିଂ କାର୍ଯ୍ୟ କରୁଥିଲି । 'ଅଶାନ୍ତଗ୍ରହ'ର ପ୍ରଯୋଜକ କଳାଧଳା ଚଳଚ୍ଚିତ୍ର ପାଇଁ ମଧ୍ୟମ ଧରଣ ଖର୍ଚ୍ଚ ବ୍ୟବସ୍ଥାରେ ଚଳିବାକୁ ଚାହିଁବା ବେଳେ, 'ଅସ୍ତରାଗ'ର ପ୍ରଯୋଜକମାନେ ରଂଗୀନ ଓ ଚାକଚକ୍ୟ ଉପରେ ବେଶୀ ଜୋର ଦେଉଥିଲେ । କିନ୍ତୁ ଦୁଇଟିଯାକ ପ୍ରଯୋଜନାରେ ଠିକ୍ ସମୟରେ ଅର୍ଥ ଯୋଗାଇବା ସମ୍ଭବପର ହେଉନଥିଲା । ତା'ପରେ ପୁଣି, ଜଣେ ଜଣକୁ ଅପେକ୍ଷା କରି, ଚଳଚ୍ଚିତ୍ର ସୁଟିଂ ସାରି ରିଲିଜ କରିବା ଆଗରୁ ବିତରଣର ପରିବେଷଣକୁ ସମୟ ଦେଉନଥିଲେ । ଓଡ଼ିଆ ଚଳଚ୍ଚିତ୍ରର ଏ ଲଢ଼େଇ ପାଇଁ ବହୁ ପ୍ରଯୋଜକ ବଳି ପଡ଼ନ୍ତି,

କିନ୍ତୁ କଟକରେ ଏହାକୁ ଏକ ବିଶେଷତ୍ୱ ବା ବୁନିୟାଦି ବୋଲି ଖୋଲାଖୋଲି ଚର୍ଚ୍ଚା କରାଯାଏ। ଶେଷରେ, ଗୋଟିଏ ସମୟରେ 'ଅଶାନ୍ତଗ୍ରହ' ଓ 'ଅସ୍ତରାଗ'ର ଶେଷ ଇନ୍‌ଡୋର ଓ ଆଉଟ୍‌ଡୋର ପେଚ୍ ୱାର୍କ ପାଇଁ ମୋତେ ମାନ୍ଦ୍ରାଜରେ ରହି ମୁଣ୍ଡିମାରିବାକୁ ପଡ଼ିଲା। ମୋର ସହ ନିର୍ଦ୍ଦେଶକ ଶ୍ରୀ ସବ୍ୟସାଚୀ ମହାପାତ୍ରଙ୍କ ଜରିଆରେ ଫାଇନାଲ ପ୍ରିଣ୍ଟ୍ ବାହାର କରିବାର ଯୋଜନା କରି ମୁଁ କଲେଜ କାମପାଇଁ ଚାଲି ଆସିଲି। ସମ୍ବଲପୁର ସହରରେ 'ଅଶାନ୍ତଗ୍ରହ' ଓ କଟକ ସହରରେ 'ଅସ୍ତରାଗ' ଚଳଚ୍ଚିତ୍ର ମୁକ୍ତି କରାଇ ଚଳାଇବାର ବିତରଣ ବ୍ୟବସ୍ଥା ପ୍ରଯୋଜକ ମାନେ କଟକର ସଂସ୍ଥାମାନଙ୍କୁ ନେଇ ଆରମ୍ଭ କଲେ। ମୁଁ ଏଥିରେ ପୂର୍ବ ଅନୁଭୂତି ଯୋଗୁ ହସ୍ତକ୍ଷେପ କରିନଥିଲି। ଆଗରୁ ମୁଁ ସୂଚନା ଦେଇଥିଲି ଯେ, ମୋତେ ବିତରଣ ଓ ପରିବେଷଣରେ ସଂଶ୍ଳିଷ୍ଟ ନକଲେ ପ୍ରଯୋଜକ ମାନେ ବେଶୀ ସୁବିଧା ପାଇବେ। କାରଣ କଟକରେ ମୋର ମୁହଁ ଦେଖିବାକୁ ଅନେକ ଲୋକ ଚାହାଁନ୍ତି ନାହିଁ। ନିର୍ଦ୍ଦେଶକର କର୍ତ୍ତବ୍ୟ ହେଲା ଚଳଚ୍ଚିତ୍ରଟିକୁ ଶେଷ କରିବା। ପରିବେଷଣ ଓ ବିତରଣ ସଂପୂର୍ଣ୍ଣ ଅନ୍ୟମାନଙ୍କର ଦାୟିତ୍ୱ। ତାହାହିଁ କଲି। ବୋଧହୁଏ ମୁଁ ଗୋଟିଏ ନିର୍ଦ୍ଦେଶକ ଯେ ତାହାର ଚଳଚ୍ଚିତ୍ରର "ମୁକ୍ତି ଦିବସ"ରେ ହଲ୍ ମଧ୍ୟରେ ଉପସ୍ଥିତ ନଥିଲା। ଆଶ୍ଚର୍ଯ୍ୟର ବିଷୟ 'ଅସ୍ତରାଗ'ର ବିତରକ କଟକରେ ମୋତେ ନିମନ୍ତ୍ରଣ କାର୍ଡଟିଏ ମଧ୍ୟ ପଠାଇ ନଥିଲେ ବା ବ୍ୟକ୍ତିଗତ ଭାବରେ ଦେଖା ମଧ୍ୟ କରି ନଥିଲେ। ଏସବୁ 'ଅହଂ' ବା 'ହାମବଡା' ନୀତି ଯୋଗୁ ଯେତେ ଉନ୍ନତମାନର ଚଳଚ୍ଚିତ୍ର ପ୍ରଯୋଜିତ ହେବା କଥା ତାହା ହୋଇପାରୁ ନାହିଁ ଯାହା ମୁଁ ବାରଂବାର ୧୯୬୦ ଦଶକରୁ କହିଆସିଛି।

ମହାଶ୍ୱେତାଙ୍କ ପରେ, ମୋ ପାଇଁ ଆଉ ଜଣେ ଅଭିନେତ୍ରୀଙ୍କୁ ଖୋଜିବା ଜରୁରି ଥିଲା। ସୁଜାତା, ଅନୀତା, ନିହାରିକା, ଗୀତା, ନମ୍ରତାଙ୍କ ଭିତରେ ମୁଁ ସଂପୂର୍ଣ୍ଣ ନାୟିକା ହେବାର ସମ୍ଭାବନା ଦେଖିବାକୁ ନପାଇବାରୁ ମନେମନେ ଖୋଜୁଥିଲି। 'ଅସ୍ତରାଗ'ର ପ୍ରଯୋଜକ-ମାନଙ୍କୁ ଏ ବିଷୟରେ ବୁଝାଇ କହିଲି ଯେ ଆମେ ଜଣେ ନୂଆ ଅଭିନେତ୍ରୀଙ୍କୁ ସୁଯୋଗ ଦେବା। ଯେତେଦୂର ସମ୍ଭବ ସେ ସମ୍ବଲପୁର ଅଞ୍ଚଳର ହେବା ଉଚିତ୍। କାରଣ ତାଙ୍କ ସହିତ ଆମର ଯୋଗାଯୋଗ ସବୁବେଳେ ବେଶୀ ସମୟପାଇଁ ହେବା ଦରକାର। ସେ ଆମ ସହିତ ଭଲ ମିଶିପାରୁଥିବେ। ଅଳ୍ପଦିନ ଭିତରେ 'ଅପରାଜିତା'ଙ୍କ ଖବର ମିଳିଥିଲା। ଉପକୂଳ ଅଞ୍ଚଳ ସହିତ ସଂପୃକ୍ତ ଗୋଟିଏ ଶିକ୍ଷିତ ଓ ସଂଭ୍ରାନ୍ତ ପରିବାରର ଝିଅ। ମା' ଜୁଲୋଜିର ପ୍ରଫେସର ଓ ବାପା ଡେପୁଟି ମାଜିଷ୍ଟ୍ରେଟ। ପ୍ରଯୋଜକ ଦଳର କେତେଜଣ ମୋତେ ଅପରାଜିତା ଅଭିନୟ କରୁଥିବା ଗୋଟିଏ ସୌଖୀନ ନାଟକ ଦେଖିବାକୁ ଡାକିନେଲେ। ମୁଁ ନାଟକଟି ମୂଳରୁ ଶେଷ ପର୍ଯ୍ୟନ୍ତ ଦେଖିବା ପରେ ସଂପୂର୍ଣ୍ଣ ସନ୍ତୋଷ ପାଇଲି। ଆମେ ସିଧାସଳଖ ମା' ବାପାଙ୍କୁ ଯୋଗାଯୋଗ କରି ତାଙ୍କ ମତାମତ ଜାଣିବାପରେ, ଉଭମ

ମହାନ୍ତିଙ୍କ ସହିତ ପରିଚୟ କରାଇ ଦେଲି । ଅପରାଜିତା ଜଣେ ମେଳାପୀ, ଖୁସମିଜାଜି, ନାଚ଼ଗୀତ, ଅଭିନୟକୁ ଭଲ ପାଉଥିବା ଝିଅ । ତାଙ୍କର ବ୍ୟବହାର ଅତି ଉତ୍ତମ ଓ ସେ ବଡ଼ ଉଦାର ଓ ଖୋଲା । ଏସବୁ ଗୁଣ ପାଇଁ ସେ ପ୍ରଥମ ଚଳଚ୍ଚିତ୍ରରୁ ଆଜିଯାଏ ପଚିଶବର୍ଷ ହେଲା ରାଜୁତି କରୁଛନ୍ତି । 'ଅସ୍ତରାଗ'ର ସୁଟିଂ ସମୟରୁହିଁ କଟକର ସିନେମା ମହଲରେ ଏ ବିଷୟରେ ତନାଘନା ଆଲୋଚ଼ନା ଆରମ୍ଭ ହେବାକୁ ଲାଗିଗଲା । ଆହୁରି ଗୋଟିଏ ମୁଖ୍ୟ କାରଣ ହେଲା, ମାଳବିକା, ମହାଶ୍ୱେତା ଓ ରାଜକିଶୋର ରାୟଙ୍କର ସେ ଜଣେ ଆତ୍ମୀୟା । ଅପରାଜିତାଙ୍କ ନିଜ ମାମୁଁ ହେଉଛନ୍ତି- ପ୍ରଫେସର ରାଜକିଶୋର ରାୟ । 'ଅସ୍ତରାଗ' ସୁଟିଂ ସମୟରେହିଁ ମୋତେ ନେଇ ପ୍ରଯୋଜକ ମାନଙ୍କ ମଧ୍ୟରେ ମତାନ୍ତର ହୋଇ ମୋତେ ଚଳଚ୍ଚିତ୍ରର ବିତରଣ, ପରିବେଷଣ ଓ ପ୍ରଚ଼ାର ବିଷୟରେ ନବୁଝି, କଟକର କେତେଜଣ ସବ୍‌ଜାନତା ଚଳଚ୍ଚିତ୍ରବିତ୍ ମାନଙ୍କ ହାତରେ କ୍ରୀଡ଼ା ପୁତ୍ତଳିକା ହୋଇଗଲେ 'ଅସ୍ତରାଗ' ପ୍ରଯୋଜକ ଗୋଷ୍ଠୀ । ତାହାରି ଫଳରେ ଚିଲିକାରେ ଗୋଟିଏ ରଂଗୀନ ଚଳଚ୍ଚିତ୍ରର ବ୍ୟୟବହୁଳ ପ୍ରଯୋଜନା ଆରମ୍ଭ ହେଲା । 'ଅସ୍ତରାଗ' ବିତରଣ ପରିବେଷଣ ନହୋଇ ପାରି, ବ୍ୟାଙ୍କ ଋଣ ସୁଝି ନପାରି ହଲ୍‌ରୁ ଯାଇ ବ୍ୟାଙ୍କର ଷ୍ଟ୍ରଙ୍ଗରୁମ୍‌ରେ ପଡିରହିଲା କୋଡ଼ିଏ ବର୍ଷ ! ସମ୍ବଲପୁର ଜିଲ୍ଲାରୁ ଏହାପରେ ଆଉ କୌଣସି ପ୍ରଯୋଜକ ଓଡ଼ିଆ ଚଳଚ୍ଚିତ୍ର କରିବାକୁ ଆଗଭର ହେଲେ ନାହିଁ ।

ଶରତ ପୂଜାରୀ ନାମକ ଚଳଚ୍ଚିତ୍ର ଅଭିନେତାର ସଂପୂର୍ଣ୍ଣ ଚରିତ୍ର ସଂହାର କିପରି କରାଯାଇପାରେ ତାହାର ସୁଚିନ୍ତିତ ଯୋଜନା କଟକସହରର ବିଭିନ୍ନ ସ୍ଥାନରେ, ବୈଠକିରେ ଆଲୋଚନା ହେବାର ଖବର ମୋତେ ମିଳିଲା । କଟକର କେଉଁ ବ୍ୟକ୍ତି ମୋ ବିଷୟରେ କେଉଁ ପ୍ରକାରର ମିଥ୍ୟା ଅପପ୍ରଚ଼ାର କରିଥିଲେ, ତାହାର କେତୋଟି ନିଦର୍ଶନ ଦେଲେ ଜଣାପଡିବ ।

ପ୍ରଥମ କଥାହେଲା 'ଅସ୍ତରାଗ' ଚଳଚ୍ଚିତ୍ର ସୁଟିଂ ସମୟରୁ ମୁଁ କିପରି ଅଭିନେତା, ଅଭିନେତ୍ରୀଙ୍କୁ ପାତର ଅନ୍ତର ନୀତି ବ୍ୟବହାର କରୁଛି ତାହାର ଏକ ଗୋପନୀୟ ଆଲୋଚ଼ନା/ ସମାଲୋଚ଼ନା 'ଅସ୍ତରାଗ'ର ତିରିଶଜଣ ପ୍ରଯୋଜକଙ୍କ ଭିତରେ ପୁରାଇ ଦିଆଗଲା । ଏମାନେ ନିଜନିଜ ଭିତରେ ଛୋଟଛୋଟ ଗୋଷ୍ଠୀ ସୃଷ୍ଟିକରି ମୋର ଚଳଚ୍ଚିତ୍ର କାର୍ଯ୍ୟପ୍ରଣାଳୀର ତର୍ଜମା କରୁଥିବାର ଜାଣିଲି । ସେଥିରେ ନାୟକ ନାୟିକାଙ୍କୁ କମ ସୁଯୋଗ ଦେଇ ମୁଁ ନିଜେ ନିଜର ଚରିତ୍ରକୁ ବେଶୀ ପ୍ରାଧାନ୍ୟ ଦେବାର ଗୁପ୍ତ ଉଦ୍ଦେଶ୍ୟ ବିଷୟରେ ଚର୍ଚ୍ଚା ହେଉଥିଲା । ଏହା ଜାଣିବାପରେ ମଧ୍ୟ ଏହାକୁ ଆଲୋଚ଼ନା ସ୍ତରକୁ ଆଣିବାକୁ ଦେଇନଥିଲି । ଯେତେ ଚଞ୍ଚଳ ସୁଟିଂ ସରିବ ଓ ମୋ ପାଖରେ ଚିତ୍ରନାଟ୍ୟର ସବୁଦୃଶ୍ୟର ନେଗେଟିଭ ଆସିଯିବ ତାହାହିଁ ମୋର ଲକ୍ଷ୍ୟଥିଲା । ସେଠି ଚଳଚ୍ଚିତ୍ର ନିର୍ଦ୍ଦେଶକର ପ୍ରାପ୍ୟ,

ତାହାର ସ୍ୱାଧୀନତା ଉପରେ, ପ୍ରଯୋଜକଙ୍କ ଭିତରୁ କେହି କିଛି ନକାଣି, ସମ୍ବଲପୁର ବାହାରର ମୁଖ୍ୟତଃ ରାଉରକେଲା ଓ କଟକର କେତେଜଣ ରାଜନୀତି ସଂପୃକ୍ତଙ୍କ ଗୁଲିଗପକୁ ବିଶ୍ୱାସ କରିବାକୁ ଲାଗିଲେ। ସେମାନଙ୍କ ଉଦ୍ଦେଶ୍ୟ ଥିଲା ମୁଁ ଯେପରି ଅସ୍ତରାଗର ସଂପୂର୍ଣ୍ଣ ସୁଟିଂ ଶେଷ ନକରି ଅଧାରୁ ଛାଡ଼ିଦେଇ ଚାଲିଯିବି। ତେଣୁ 'ଅଶାନ୍ତଗ୍ରହ'ର ବାକିଆ କାମ ସମୟରେ ସେମାନେ ମଧ୍ୟ ଚାହିଁଲେ ଚେନ୍ନାଇରେ ତାଙ୍କ ଚଳଚ୍ଚିତ୍ରର ବାକିଆ କାମ ମଧ୍ୟ ସାରିଦିଆ ଯାଉ। ତେଣୁ ଚେନ୍ନାଇ ପାଖର ପାହାଡ଼ ଭିତରେ ଝରଣାର ବହିର୍ଦୃଶ୍ୟ ଖୋକାଖୋକି କରି ବାଧ୍ୟ ହୋଇ 'ଅଶାନ୍ତଗ୍ରହ'ର କଣେ ରୂପଜୀବିର ଷ୍ଟୁଡିଓ ଫ୍ଲୋର୍‌ରେ ନୃତ୍ୟ ଦୃଶ୍ୟ ସହିତ କରିବାକୁ ପଡ଼ିଥିଲା। ଏ ଦୁଇଟି ଦୃଶ୍ୟ ମୋ ରଚିତ ଚିତ୍ରନାଟ୍ୟର ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ ଦୃଶ୍ୟ।

ଆଜିକାଲିକା ପରି ବମ୍ବେରେ ଚାରିପାଞ୍ଚବର୍ଷ ଚତୁର୍ଥ ଆସିଷ୍ଟାଣ୍ଟ ଭାବରେ କାମ କରି ଓଡ଼ିଶାରେ ମହାନ ନିର୍ଦ୍ଦେଶକ ବୋଲାଇବାର ସହଜ ଧାରା, କେତେକ ମିଡିଆର ରିପୋର୍ଟର ବନ୍ଧୁଙ୍କ ସହିତ ଘନିଷ୍ଠତା ରଖିବା ମୋ'ଦ୍ୱାରା କେବେ ସମ୍ଭବ ହୋଇନାହିଁ। ତେଣୁ, ମୋର ନିଜ ଶିଂଗରେ ଯେତେ ମାଟି ତାଡ଼ିବା କଥା, ତାହାହିଁ କରିଥିଲି। ଅବଶ୍ୟ ଏ ବିଷୟରେ କେବଳ ମୋର ମୁଖ୍ୟ ସହକାରୀ ନିର୍ଦ୍ଦେଶକ ସବ୍ୟସାଚୀ ମହାପାତ୍ରଙ୍କୁ ସବୁକିଛି କଣାଉଥିଲି। ଶେଷରେ ମୁଁ ସଫଳ ହେଲି। ପ୍ରାୟ ପାଞ୍ଚ ବର୍ଷ ଭିତରେ ମୋର ନିର୍ଦ୍ଦେଶିତ ତିନୋଟି ଓଡ଼ିଆ ଚଳଚ୍ଚିତ୍ରକୁ ଅଧାଅପନ୍ତରିଆ କରି ଛାଡ଼ିଦେଇ ନଥିଲି। ମୁଁ କାଣେ, ମୁଁ କେବଳ ପ୍ରଯୋଜକର ଖର୍ଚ୍ଚକୁ ବଞ୍ଚାଉଥିଲି ଓ ମୋ ଚଳଚ୍ଚିତ୍ରରେ ଅଭିନୟ କରୁଥିବା ବହୁ ନୂଆ ଓ ପୁରୁଣା କଳାକାରଙ୍କ ଆଶା, ଆକାଂକ୍ଷା, ଅଭୀପ୍ସା, ପାରଦର୍ଶିତା ଦେଖେଇବାକୁ ସୁଯୋଗ ଦେଉଥିଲି। ମୋର ଆର୍ଥିକ ଅବସ୍ଥାର ଉନ୍ନତି ଏ ଧାରାରେ କେବେ ସମ୍ଭବ ହେବନାହିଁ ତାହା ମୁଁ କାଣିଥିଲି। ସେଥିପାଇଁ ମୋ ନିର୍ଦ୍ଦେଶିତ ତିନୋଟି ଚଳଚ୍ଚିତ୍ର ବ୍ୟୟବହୁଳ ନୁହେଁ। ମୁଁ ସେଥିପାଇଁ "ମାଲେମାଲ" ହୋଇନାହିଁ।

"ଅସ୍ତରାଗ" କଟକରେ ମୁକ୍ତିପାଇବାର ଯୋଜନା କଟକର ବିତରଣ ସଂସ୍ଥାକଲେ। କିନ୍ତୁ ଚଳଚ୍ଚିତ୍ରର ଟ୍ରେଡ୍ ସୋ ସମ୍ବଲପୁରର ଲକ୍ଷ୍ମୀ ସିନେମାରେ ହେଲା। ମୋତେ ପ୍ରଯୋଜକମାନେ ଖବରଦେବାକୁ ଉଚିତ ମନେ କରି ନଥିଲେ। ମୋର ସହକାରୀ ନିର୍ଦ୍ଦେଶକ ଅବଶ୍ୟ ପ୍ରଯୋଜକମାନଙ୍କ ତରଫରୁ ମୋତେ "ଟ୍ରେଡ୍ ସୋ"କୁ ଆସିବାକୁ ଅନୁରୋଧ କରିଥିଲେ। କଟକରେ ମୁକ୍ତି ପାଇବାବେଳେ ପ୍ରଯୋଜକଙ୍କ ଭିତରୁ କେହି ମୋତେ ଯୋଗାଯୋଗ ନକରି, କଟକର ମୋର ବନ୍ଧୁ ଧୀର ବିଶ୍ୱାଳଙ୍କ ହାତରେ ମୋର ନାଁର କାର୍ଡଟି ପ୍ରେରଣ କରିଥିଲେ।

"ଅସ୍ତରାଗ" ମୁକ୍ତିପାଇବା ପରେ, ମହମ୍ମଦ ମହସିନ ଦିନେ ସମ୍ବଲପୁରରେ ମୋତେ

ଦେଖାକଲେ । ତାଙ୍କ ବିଷୟରେ ମୋତେ ଅପରାଜିତାଙ୍କ ମା' ହରପ୍ରିୟା ମାଡ଼ାମ୍ ଆଗରୁ କହିଥିଲେ । ସେ ମୋତେ ତାଙ୍କ ପ୍ରଥମ ଚଳଚ୍ଚିତ୍ର 'ଫୁଲଚନ୍ଦନ'ର ଗୋଟିଏ ଚରିତ୍ରରେ ଅଭିନୟ କରିବାକୁ ଅନୁରୋଧ କରିଥିଲେ । ଆହୁରି ମଧ୍ୟ କହିଥିଲେ ଯେ ସେ "ଅସ୍ତରାଗ"ର ନାୟକ ନାୟିକା ଓ ଅନ୍ୟାନ୍ୟ ଚରିତ୍ରମାନଙ୍କୁ ମଧ୍ୟ ସୁଯୋଗ ଦେଉଛନ୍ତି । ଏ ଚଳଚ୍ଚିତ୍ରଟି ହେଲା "ଫୁଲଚନ୍ଦନ" । ପ୍ରଯୋଜକ ବାରିପଦାର । କିନ୍ତୁ ସେ ମୋତେ ଚଳଚ୍ଚିତ୍ରର ସୁଟିଂ ହେବାଦିନ ଯାଏ ଦେଖାକରି ନଥିଲେ । ମହସିନ୍ ବାବୁଙ୍କ ମୁହଁରୁ ମୋଟାମୋଟି ଗଳ୍ପଟି ଶୁଣିବାପରେ ମୁଁ ରାଜିହେଲି । କିନ୍ତୁ ମୋର ପ୍ରାପ୍ୟ ବିଷୟରେ ସେ କିଛି କହିନଥିଲେ । କିଛିଦିନ ପରେ ତାଙ୍କ ପକ୍ଷରୁ ଜଣେ ନାଟ୍ୟକର୍ମୀ, ନିଜକୁ ମହସିନ ବାବୁଙ୍କ ସହକାରୀ ଭାବରେ ମୋତେ ମୋର ସମ୍ବଲପୁର ଘରେ ଦେଖାକରି ମୋତେ ଗୋଟିଏ ସାଦା, ଫର୍ମ ଦସ୍ତଖତ କରାଇ ମୋର ପ୍ରାପ୍ୟ ବିଷୟରେ ନିଜ ହାତରେ ଲେଖିଦେବାକୁ କହିଲେ । ମୁଁ ଏପରି 'କଣ୍ଟ୍ରାକ୍ଟ'କୁ ପସନ୍ଦ କରେନାହିଁ ବୋଲି ସ୍ପଷ୍ଟ କହିଲି ଓ ପ୍ରଯୋଜକ ସଂଗେ ଏ ବିଷୟରେ ଆଲୋଚନା କରିବି ବୋଲି କହିଲି । ସୁଟିଂ ହେବାଦିନ ପର୍ଯ୍ୟନ୍ତ ଆଉ କୌଣସି ଯୋଗାଯୋଗ ମହସିନ୍ ବାବୁ ମୋ ସଂଗରେ କରିନାହାଁନ୍ତି । ବାରିପଦା ପହଞ୍ଚିବା ପରେ ମୋତେ ହରପ୍ରିୟା ମାଡ଼ାମ୍ ଦେଖାକଲେ ଓ କହିଲେ, "ଶରତ ବାବୁ, ଆପଣ ଓ ଉତ୍ତମ ମହାନ୍ତି ଏ ଚଳଚ୍ଚିତ୍ରରେ ଅଛନ୍ତି ବୋଲି ମୁଁ ହଁ କହିଲି ।"



# ସ୍ମୃତିଚାରଣ ଜଣେ ଆଧୁନିକ ଓଡ଼ିଆ ଦୁହିତାଙ୍କର

ପ୍ରଫେସର ଘନଶ୍ୟାମ ଦାଶ ମୋ ବାପାଙ୍କଠାରୁ ବୟସରେ ବଡ଼ଥିଲେ। ଦୁହେଁ କଲିକତାରେ ପାଠ ପଢ଼ିଥିଲେ। ପ୍ରତିଭାବାନ୍ ଶିକ୍ଷକ ଓ ବାଗ୍ମୀ ଭାବରେ ମୋ ବାପା ତାଙ୍କୁ ଯଥେଷ୍ଟ ସମ୍ମାନ ଦେଉଥିଲେ। ସ୍ୱାଧୀନତା ପୂର୍ବର କଟକ ସହରରେ, ମୋ ବାପା ଓ ପ୍ରଫେସର ଦାଶ ପ୍ରାୟ ତିନିବର୍ଷଯାଏ ଚାକିରୀ କରିଥିଲେ। ସେ ସମୟରୁ ତାଙ୍କ ପରିବାର ସହିତ ମୋର ଘନିଷ୍ଠ ପରିଚୟ ଥିଲା। ମୋର ଉପର ବଡ଼ ଭଉଣୀ ଶ୍ରୀମତୀ ଇଲା ପଣ୍ଡାଙ୍କର ସହପାଠିନୀ ଥିଲେ। ଦୁହେଁ ରେଭେନ୍ସା ଗାର୍ଲ୍ସ ସ୍କୁଲର ଛାତ୍ରୀ ଥିଲେ। ସେଦିନରୁ ମୁଁ ପି.ଏମ୍. ଏକାଡ଼େମୀର ପଞ୍ଚମ ଶ୍ରେଣୀର ଛାତ୍ର ଭାବରେ ଇଲା ନାନୀଙ୍କୁ ସମ୍ମାନ ଦେଇ ଆସିଛି। ସେତେବେଳର ଇଲାନାନୀ ଯାହାଥିଲେ ଶେଷ ଜୀବନ ଯାଏ ବଦଳି ନଥିଲେ।

ଉଚ୍ଚା ପୂରା ଝିଅଟିଏ। ସ୍ପଷ୍ଟବାଦିନୀ, ସାହାସୀ, ଖୁସ୍‌ମିଜାଜି, ନିରହଂକାରୀ, ଉଦାର ଶିଳ୍ପୀଟିଏ। ତା'ପରେ ତାଙ୍କୁ ପୁଣି ଦେଖିଲି ରେଭେନ୍ସା କଲେଜର ବି.ଏ. ଶ୍ରେଣୀରେ ୧୯୫୨ ରୁ ୧୯୫୪ ମସିହାରେ। ସେତେବେଳେ ପ୍ରଫେସର ଦାଶ ଅବସର ନେବାର ସମୟ ହୋଇଯାଇଥିଲା। ସେ କିନ୍ତୁ ଅବସର ନେବାପରେ ମଧ୍ୟ ରେଭେନ୍ସା କଲେଜ ହତା ମଧ୍ୟରେ ତାଙ୍କର ସରକାରୀ ବାସଭବନରେ ରହୁଥିଲେ ପରିବାର ସହ। ସେଇଠି ପୁଣିଥରେ ଦେଖିଲି ଅନ୍ୟ ଭାଇଭଉଣୀଙ୍କ ସହ ଇଲାନାନୀଙ୍କୁ। ସେତେବେଳେ ସେ ଜଣେ ପ୍ରତିଷ୍ଠିତ ଶିଳ୍ପୀ। ଭାରତର ଉତ୍କୃଷ୍ଟ କଳା କ୍ଷେତ୍ରରୁ ଚିତ୍ରକଳାର ସ୍ନାତକ ଭାବରେ ମୋର ଆହୁରି ନମସ୍ୟା ହୋଇଯାଇଥିଲେ। ମୋ ନାନୀ ବାହା ହୋଇ ମା' ହୋଇ ସାରିଥିଲା। ସେ କିନ୍ତୁ ମୋ ନାନୀ ସାଂଗରେ ବସି ଗପିବାକୁ ଆମ ଘରକୁ ଦଉଡ଼ି ଆସିଥିଲେ। ତା'ପରେ ସେ ଉଚ୍ଚଶିକ୍ଷା ପାଇଁ ରୟାଲ ସ୍କୁଲ ଅଫ୍ ଆର୍ଟ୍ସକୁ ଚାଲିଯାଇଥିଲେ।

ଏଲହାବାଦରୁ ସ୍ନାତକୋତ୍ତର ଡିଗ୍ରୀଧରି ଓଡ଼ିଶା ଫେରି ଆସି ମୁଁ ଜୀବନ ଜଞ୍ଜାଳରେ ପଡ଼ି ଘରପାଖରେ ହିଁ ରହିଗଲି। ୧୯୫୯ରେ ଚଳଚ୍ଚିତ୍ର ଅଭିନୟ ଓ ୧୯୬୦ ମସିହାରେ ବରଗଡ଼ ପଞ୍ଚାୟତ କଲେଜର ଅଧ୍ୟାପକ ଚାକିରୀ ମୋତେ ଓଡ଼ିଆ ଚଳଚ୍ଚିତ୍ର ଓ ମୋ ଜିଲ୍ଲାର ଉଚ୍ଚଶିକ୍ଷା ସହିତ ଦୀର୍ଘ ତିରିଶବର୍ଷଯାଏ ବାନ୍ଧି ରଖିଲା। ଇଲାନାନୀଙ୍କ ବିଷୟରେ କିନ୍ତୁ ସବୁ ଖବର ମୋ ପାଖରେ ପହଞ୍ଚୁଥିଲା। ତାଙ୍କର ବିବାହ ଓ ଶିଳ୍ପପତି ବଂଶୀଧର ପଣ୍ଡାଙ୍କର ବିରାଟ ଶିଳ୍ପ ସାମ୍ରାଜ୍ୟରେ ଇଲାନାନୀଙ୍କର ମାନବବାଦୀ ଦରଦୀ ହୃଦୟର ସୁକୋମଳ

ସମନ୍ୱୟ, "ଇମ୍‌ଫା ଟ୍ରଷ୍ଟ" ଭାବରେ ଓଡ଼ିଶାର କୋଣେ ଅନୁକୋଣେ ପ୍ରତ୍ୟେକଟି ଶିକ୍ଷା ଓ ସଂସ୍କୃତି ସଚ୍ଚେତନ ଲୋକଙ୍କୁ ସ୍ପର୍ଶ କରିଛି ।

ସତୁରି ଦଶକର ଆଦ୍ୟ ଭାଗରେ ବେସରକାରୀ ସ୍ତରରେ ମୋର କେତେଜଣ ସହପାଠୀ ଫରାସୀ ଦେଶର "ଆମି-ଦେ-ଲେନ୍ଦ୍" (ଭାରତର ବନ୍ଧୁ) ସଂଗଠନ ସହିତ ସଂପର୍କ ରଖିଲେ । ବେସରକାରୀ ସ୍ତରରେ ଓଡ଼ିଶାରେ ଗଢ଼ାଗଲା, "ଫ୍ରେଣ୍ଡସ୍ ଫ୍ରମ୍ ଓଡ଼ିଶା" । ଏହି ସଂଗଠନର ପୃଷ୍ଠପୋଷକ ଭାବରେ ଶ୍ରୀ ବଂଶୀଧର ପଣ୍ଡା, ଶ୍ରୀମତୀ ଇଲା ପଣ୍ଡା ଓ "ଇମ୍‌ଫା ଟ୍ରଷ୍ଟ" ହିଁ ଆଗେଇ ଆସିଥିଲେ । ଦୀର୍ଘ ପାଞ୍ଚବର୍ଷ ଯାଏ ଓଡ଼ିଶାର ପ୍ରାୟ ଦୁଇଶହଜଣ ସଂସ୍କୃତି ସଚ୍ଚେତନ ଓଡ଼ିଆ, ଫ୍ରାନ୍ସ ଦେଶକୁ ଭ୍ରମଣରେ ଯାଇ ବ୍ୟକ୍ତିଗତ ଜୀବନ ସହିତ ଘନିଷ୍ଠ ଆତ୍ମିକ ସଂପର୍କ ରଖିପାରିଥିଲେ । ଫ୍ରେଣ୍ଡସ୍ ଫ୍ରମ୍ ଓଡ଼ିଶାର ଜଣେ କର୍ମକର୍ତ୍ତା ଭାବରେ ପୁଣିଥରେ ଇଲାନାନୀଙ୍କ, ସ୍ନେହ, ଶ୍ରଦ୍ଧା ଓ ସୌହାର୍ଦ୍ଦ୍ୟର ଅମୃତ ସ୍ପର୍ଶ ମିଳିଲା ।

ଦୀର୍ଘ ଚବିଶବର୍ଷ ଯାଏ ଓଡ଼ିଶାର ସବୁଠାରୁ ପୁରାତନ ଗ୍ରାମ୍ୟ ଘରୋଇ ମହାବିଦ୍ୟାଳୟ, ଲରମ୍ବା କଲେଜର ଅଧ୍ୟକ୍ଷ ଓ ସଂପାଦକ ଭାବରେ ରହିବା ଭିତରେ ଶିଳ୍ପପତି ଶ୍ରୀ ବଂଶୀଧର ପଣ୍ଡା ଓ ଇମ୍‌ଫା ଟ୍ରଷ୍ଟ ସହିତ ଜଡ଼ିତ ହେବାର କୌଣସି ସମ୍ଭାବନା ନଥିଲା । ୧୯୮୯-୯୦ ମସିହାରେ ଲରମ୍ବା ମହାବିଦ୍ୟାଳୟର "ରଜତ ଜୟନ୍ତୀ" ପାଳନ ଅବସରରେ ପଚାଶବର୍ଷରୁ ଊର୍ଦ୍ଧ୍ୱ ଲରମ୍ବା ଉଚ୍ଚ ଇଂରାଜି ବିଦ୍ୟାଳୟର ଶ୍ରେଣୀଗୃହ ଓ ପଚିଶବର୍ଷ ପୁରାତନ ମହାବିଦ୍ୟାଳୟର ଛାତ୍ରାବାସର ଖପର ଛାତକୁ ଟିଣ ବା ଆଜବେଷ୍ଟସ୍ ଛାତରେ ପରିବର୍ତ୍ତନ କରିବାର ଚିନ୍ତା ଜୟନ୍ତୀ ପାଳନ କମିଟିର ସଭ୍ୟମାନଙ୍କୁ ଭାରାକ୍ରାନ୍ତ କରିଥିଲା । ସେତେବେଳକୁ ଇଲାନାନୀ ମାନନୀୟା ସାଂସଦ ଭାବରେ ମନୋନୀତ ହୋଇ ସାରିଛନ୍ତି । ମାନନୀୟ ସାଂସଦଙ୍କୁ ପତ୍ରଟିଏ ଲେଖିବାର ସତ୍‌ସାହାସ କରିଥିଲି କମିଟିର ସଂପାଦକ ଭାବରେ । କେବଳ ସ୍ମରଣ କରାଇଥିଲି ତାଙ୍କର ଜନ୍ମସ୍ଥାନଟିକୁ ଓ ତାଙ୍କର ପିତାଙ୍କର ଯୁବବନ୍ଧୁ ଲରମ୍ବା ମହାବିଦ୍ୟାଳୟର ପ୍ରତିଷ୍ଠାତା ଶିକ୍ଷାବିତ୍ ବ୍ରଜମୋହନ ପଣ୍ଡାଙ୍କୁ ।

ଲରମ୍ବା ମହାବିଦ୍ୟାଳୟରୁ ୧୯୯୨ ମସିହାରେ ସରକାରଙ୍କ ଦ୍ୱାରା ଭୁବନେଶ୍ୱରର ଉତ୍କଳ ସଂଗୀତ ମହାବିଦ୍ୟାଳୟକୁ ଅଧ୍ୟକ୍ଷ ଭାବରେ ସ୍ଥାନାନ୍ତରିତ ହେବାଯାଏ, କୌଣସି ସୂଚନା ଏ ବିଷୟରେ ମୋତେ ମିଳିନଥିଲା । ୧୯୯୩ ମସିହାରେ ହଠାତ୍ ଇମ୍‌ଫା ଟ୍ରଷ୍ଟରୁ ଏକ ପତ୍ର ମୋତେ ହତଚକିତ କରିଥିଲା । ମୋତେ ଇମ୍‌ଫା ଟ୍ରଷ୍ଟ ତରଫରୁ ଶିକ୍ଷା, ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ସେ ବର୍ଷ ସମ୍ମାନିତ କରାଯିବ । ପରେ ପରେ ଚିଠି ଆସିଲା ସାଂସଦଙ୍କ ପାଣ୍ଠିରୁ ସାମୟିକ ଭାବରେ ଏକଲକ୍ଷ ଟଙ୍କାର ଅନୁଦାନ ମିଳିଛି ଛାତ୍ରାବାସର ଖପର ଛାତକୁ ଟିଣ ଛାତରେ ବଦଳାଇବା ପାଇଁ । ଅଧ୍ୟକ୍ଷ ଓ ପରିଚାଳନା ସମିତି ପ୍ଲାନ୍ ଏଷ୍ଟିମେଟ୍ କରି

ପଠେଇ ସାରିଲେଣି । ୧୯୯୪ ମସିହାରେ ସେ କାର୍ଯ୍ୟ ସମାପନ ମଧ୍ୟ ହୋଇ ସାରିଥିଲା । ଏବେ ମଧ୍ୟ ଏ ଅନୁଦାନର ସ୍ରୋତ ସରିନାହିଁ । ମୁଁ ଅବସର ନେଲି ୧୯୯୪ ମସିହାରେ । କ୍ୱଚିତ୍ ଦେଖାହେଉଥିଲା ଇଲାନାନୀଙ୍କ ସଂଗରେ । କେବେ କେମିତି ସାମାଜିକ ଅନୁଷ୍ଠାନରେ ଦେଖାହେଲେ ତାଙ୍କର ପ୍ରଶ୍ନ ହେଉଥିଲା, "ସତ୍ୟବତୀ (ମୋ ନାନୀ) କେମିତି ଅଛି ? ମା' କେମିତି ଅଛନ୍ତି ? ତୋ ପିଲାମାନେ କଣ କଣ କରୁଛନ୍ତି ? ଖାଇଲୁଣି ନାଁ ନାଇଁ "

ଆଉ ତାଙ୍କର ସେ ଉଚ୍ଚାପୁରା ବ୍ୟକ୍ତିତ୍ୱ ଆଗରେ, ମୁଁ ପଞ୍ଚମ ଶ୍ରେଣୀର ଛାତ୍ରଟିଏ ପରି କିଛି କହି ପାରୁନଥିଲି । କେବଳ କୃତଜ୍ଞତାର ହସଟିଏ ହସି ଦେଉଥିଲି । ଏମିତି ଓଡ଼ିଆ ଦୁହିତାଟିଏ ମୋତେ ଆଉ ମିଳିବେନି-

ଇଲାନାନୀ ମୋର ପ୍ରଣାମ ଜାଣିବ ।



# ଅନ୍ତରଂଗ ଧୀର ବିଶ୍ୱାଳ

୧୯୫୩ ମସିହା, ସେପ୍‌ଟେମ୍ବର ମାସ । ରେଭେନ୍‌ସା କଲେଜର ଛାତ୍ର ସଂସଦର ନିର୍ବାଚନ ସରିଯାଇଥାଏ । ଆମେ କେତେଜଣ ସାଂଗ ରେଭେନ୍‌ସା କଲେଜର ଭିତର ପାଖ ବାରଣ୍ଡାରେ ଗପ ଜମେଇ ଦେଇଥାଉ । ହଠାତ୍ ମୋର ଜଣେ ସାଂଗ ମୋତେ ହଲେଇ ଦେଇ ପାଟିକଲା, "ହେ-ହେ- ଧୀରୁ ବିଶ୍ୱାଳ !"

ମୁଁ ବାରଣ୍ଡାର ଶେଷକୁ ଅନେଇଲି । ଦୁଇଜଣ ଲୋକଙ୍କ ମଝିରେ ହୃଷ୍ଟପୁଷ୍ଟ ଲୋକଟିଏ ହାତୀଝୁଲିବା ପରି ଚାଲିଚାଲି ଆମଆଡ଼କୁ ମାଡ଼ି ଆସୁଥାଏ । ମୁହଁରେ ହସ । ଲୋକଟା ଆସି ମୋ ପାଖରେ ଅଟକି ଯାଇ ହାତ ବଢ଼େଇ ଦେଇ କହିଲା, "କଂଗ୍ରାଚୁଲେସନ୍ ଫର ଇଓର ଉଇନ୍ । ଆଇ ଆମ ଧୀର ବିଶ୍ୱାଳ- ଏକ୍ସ ସେକ୍ରେଟେରୀ ଅଫ ଡ୍ରାମା ।" ମୁଁ ହାତ ମିଳେଇ ଦେଇ କହିଲି, "ଧନ୍ୟବାଦ, ଆପଣଙ୍କ କଥା ବହୁତ ଶୁଣିଛି । ଆପଣଙ୍କ କଂସ ଚରିତ୍ର ପାଇଁ ଆପଣ ବିଖ୍ୟାତ । ତା'ପରେ ଧୀରବାବୁଙ୍କର ସେ ବିରାଟ ଓ ବିଖ୍ୟାତ ହସ ।

ରେଭେନ୍‌ସା କଲେଜର ସେତେବେଳେ ପରଂପରାଥିଲା-ପୁରାତନ ସେକ୍ରେଟେରୀ ମାନଙ୍କୁ ସମ୍ମାନ ଦେବା । ମୁଁ ୧୯୫୩-୫୪ ମସିହାରେ ନାଟ୍ୟ ସଂସଦର ସେକ୍ରେଟେରୀ ମାନଙ୍କୁ ଭି.ଆଇ.ପି. ଟ୍ରିଟ୍‌ମେଣ୍ଟ ଦେଇଛି । କଟକରେ ସେତେବେଳେ ୪/୫ଟି କଲେଜ । ଖ୍ରୀଷ୍ଟ, ଷ୍ଟୁଆର୍ଟ, ଶୈଳବାଳା, ମେଡିକାଲ ଓ ମଧୁସୂଦନ ଲ' କଲେଜ । ସବୁ କଲେଜର ନିର୍ବାଚିତ ପ୍ରତିନିଧି ମାନଙ୍କ ମଧ୍ୟରେ ଘନିଷ୍ଠ ସଂପର୍କ ରହୁଥିଲା । ଧୀରବାବୁ ସେ ବର୍ଷ ଲ' କଲେଜର ନାଟ୍ୟ ସଂପାଦକ ଥିଲେ ।

ଧୀରବାବୁ ୧୯୫୧ ମସିହାରେ ରେଭେନ୍‌ସାର ନାଟ୍ୟ ସଂପାଦକ । ତାଙ୍କ ପରେ ୧୯୫୨ ମସିହାରେ କ୍ଷୀରୋଦବାବୁ (କଳାବିକାଶ କେନ୍ଦ୍ରର ସଂପାଦକ) । ୧୯୫୩ ରେ ମୁଁ-ଜଣେ ପଶ୍ଚିମ ଓଡ଼ିଶାବାସୀ । ମୋ ପର ବର୍ଷର ସଂପାଦକ ନାଟ୍ୟକାର ବିଶ୍ୱଜିତ ଦାସ । ତାଙ୍କ ପରେ କିଛିବର୍ଷ ପରେ ମୁଁ ଜାଣିବାରେ ପ୍ରଶାନ୍ତ ନନ୍ଦ ଓ ମହମ୍ମଦ ମହସୀନ୍ ମଧ୍ୟ ନାଟ୍ୟ ସଂସଦର ସଂପାଦକ ଥିଲେ । ହେଲେ ଏ ହିସାବ ବୋଧହୁଏ ରେଭେନ୍‌ସା କଲେଜର ବାର୍ଷିକ ମେଗାଜିନ୍‌ରେ ମଧ୍ୟ ନଥିବ ।

ମୋର ବି.ଏ. ଫଳ ବାହାରିବା ପର୍ଯ୍ୟନ୍ତ ଧୀରବାବୁଙ୍କ ସହିତ ଅନେକ କଲେଜର ସାଂସ୍କୃତିକ କାର୍ଯ୍ୟକ୍ରମରେ ଦେଖା ହେଇଛି । ଆମର ଦୁଇଜଣଙ୍କର ସମ୍ମାନନୀୟ ସଂପର୍କ ହଠାତ୍ ଘନିଷ୍ଠ ହେବାର କାରଣ ହେଉଛି ଆମେ ଦୁଇଜଣ ଅତି ଖାଦ୍ୟପ୍ରିୟ ବ୍ୟକ୍ତି । ଏକୋଇଶିଆ ଭୋଜିଠାରୁ ବାହା, ଶ୍ରାଦ୍ଧ ଭୋଜି ପର୍ଯ୍ୟନ୍ତ ଛାଡ଼ିବା ଲୋକ ଆମେ ନଥିଲୁ ।

ଧୀର ବାବୁ- ଗୁଣ ଚିହ୍ନେ ଗୁଣିଆ ପରି ମୋତେ ସାଂଗରେ ନେଇ ନିମନ୍ତ୍ରିତ/ ଅନିମନ୍ତ୍ରିତ ଭାବରେ ଠିକଣା କାଗାକୁ ଯିବାପାଇଁ କେବେ ଭୁଲୁନଥିଲେ । ଦୁଇଜଣ ପାଖାପାଖି ବସୁଥିଲୁ । ଆମ ଖାଇବା ଷ୍ଟାଇଲଟା ଲୋକଙ୍କୁ ବେଶ୍ ଆନନ୍ଦ ଦେଉଥିଲା । ଧୀରବାବୁ ଏ ଘନିଷ୍ଠତାଟା ଶେଷ ପର୍ଯ୍ୟନ୍ତ ବଜାୟ୍ ରଖିଥିଲେ ମୋ ସହିତ- ଯଦିଓ ଶେଷ ସାତ ବର୍ଷ ସେ ନିଜେ କିଛି ଖାଉନଥିଲେ । ଅନ୍ୟ କାରଣଟି ହେଲା- ହାସ୍ୟ ରସ ।

୧୯୫୪ ମସିହା ମଧ୍ୟ ଭାଗରେ ମୁଁ ପ୍ରୟାଗ ବିଶ୍ୱବିଦ୍ୟାଳୟରେ ଏମ୍.ଏ. ପଢ଼ିବାକୁ ଚାଲିଗଲି । ଖରା ଛୁଟିରେ କଟକ ଆସିଲେ ତାଙ୍କ ସହିତ କେତେବେଳେ କେମିତି ଦେଖାହୁଏ । ଏ ଭିତରେ ଧୀରବାବୁଙ୍କର କଣେ ଖ୍ୟାତନାମା ଚଳଚ୍ଚିତ୍ର ଅଭିନେତା ହେବାର ସ୍ୱପ୍ନ ଧୀରେ ଧୀରେ ଚରିତାର୍ଥ ହେବାକୁ ଯାଉଥାଏ । ସେ ନିଜ ଚେଷ୍ଟାରେ ଢେଙ୍କାନାଳ ଯାଇ କିପରି ଇଣ୍ଟରଭ୍ୟୁ ଦେଲେ ଓ କେଦାର ଗୌରୀ ଚଳଚ୍ଚିତ୍ରରେ ଅଭିନୟ କଲେ ବଡ଼ ମଜାରେ ବର୍ଣ୍ଣନା କରୁଥିଲେ ।

୧୯୫୭ ମସିହା ବେଳକୁ ସବୁ ଓଲଟପାଲଟ ହେଇଗଲା- ମୋ ପାଇଁ । ମୋ ଏମ୍.ଏ. ପାସ୍ କରିବା ପରେ ମୋ ବାପାଙ୍କର ଅଚାନକ ମୃତ୍ୟୁ ଓ ମୋ ଉପରେ ପରିବାରର ସମସ୍ତ ଦାୟିତ୍ୱ ମୋତେ ବିବ୍ରତ, ବ୍ୟଥିତ ଓ କିଂକର୍ତ୍ତବ୍ୟ ବିମୂଢ଼ କରିଦେଲା । ପୈତୃକ ଘର ସମ୍ବଲପୁର ଛାଡ଼ି ମୁଁ କଟକରେ ଡଗରପଡ଼ାରେ ଆସି ମୋ ଭିଣେଇ ଓ ଭଉଣୀଙ୍କ ଘରେ ରହିଲି । ସେତେବେଳର ମୋର ଅବସ୍ଥା ବର୍ଣ୍ଣନା କରିବା ମୋ ପକ୍ଷରେ ସମ୍ଭବ ହୁଏ ନାହିଁ । ବିବାହିତ, ଗୋଟିଏ ସନ୍ତାନର ଜନକ, ବିଧବା ନିଃସହାୟ ମା' ଓ ସାତଟି ସାନ ଭାଇ ଓ ଭଉଣୀଙ୍କର ଭବିଷ୍ୟତ । ମୁଁ ପରିବାରର ଏକମାତ୍ର ଶିକ୍ଷିତ ବେକାର । ପରିବାରର ଲୋକଙ୍କୁ ମୁହଁ ଦେଖାଇବାକୁ ଲଜ୍ଜା ଲାଗୁନଥାଏ । ବହୁଦିନ ଅଭୁକ୍ତ ରହିଛି । ଚାକିରୀ ଅନ୍ୱେଷଣରେ କଲିକତା, କଟକ, ଭୁବନେଶ୍ୱର, ରାଉରକେଲାର ଗଳିକନ୍ଦି ପାଦରେ ଚାଲିଚାଲି ବୁଲିଛି । ହତାଶା, ବିତୃଷ୍ଣା ଓ ଆତ୍ମଶ୍ଳାଘା ଭିତରେ ଯେଉଁ କେତେ ଜଣ ବନ୍ଧୁ ଓ ଆତ୍ମୀୟ ମୋର ସେ ସମୟରେ ଅନ୍ତରଂଗ ଥିଲେ- ସେ ଭିତରେ ଧୀରବାବୁ ଥିଲେ ଗୋଟିଏ ହୀରା ।

ଚାନ୍ଦିନୀଚୌକର ଡ଼ଗରପଡ଼ାରେ ମୁଁ ରହୁଥାଏ । ବେଳେବେଳେ ବନ୍ଧୁ ସୁବୀର ସିହ୍ନାଙ୍କ ମେଡିକାଲ ପରିସର ମଧ୍ୟରେ ଥିବା ଘରେ ଚାଲୁଥିବା ମେସ୍‌ରେ ରହି ପବ୍ଲିକ ସର୍ଭିସ କମିସନ ପରୀକ୍ଷାଦେବାର ଚେଷ୍ଟା କରୁଥାଏ । ଏ ଭିତରେ ଧୀରବାବୁ ହାଇକୋର୍ଟର କଣେ ଓକିଲ ହେଇ ସାରିଲେଣି । ନାଟକ, ସାଂସ୍କୃତିକ କାର୍ଯ୍ୟକ୍ରମ ଓ ଚଳଚ୍ଚିତ୍ର ବିଷୟରେ କିନ୍ତୁ ସେ ଅତି ଘନିଷ୍ଠ ଭାବରେ ସଂପର୍କ ରଖିଥାନ୍ତି । ତାଙ୍କର ଅମାୟିକ, ନିଷ୍ଠାପର ବ୍ୟବହାର ଓ ଡଉଲଡ଼ାଉଲ ଚେହେରା ପାଇଁ ସେ ସବୁଲୋକଙ୍କ ପାଖରେ ଅତିପ୍ରିୟ ଥିଲେ । ନିରଳସ- ନିର୍ବିକାର ଭାବରେ ହାସ୍ୟରସ ସୃଷ୍ଟି କରିବାରେ ସେ ସଂକୋଚ କରୁନଥିଲେ । ଆସ୍ଥାର

କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀ ଶର୍ମାଙ୍କ ଉତ୍କଳ ଚଳଚ୍ଚିତ୍ର ସମବାୟ ଅନୁଷ୍ଠାନର ପ୍ରଥମ ଅବଦାନ "ମହାଲକ୍ଷ୍ମୀ ପୂଜା"ର କଳାକାର ମନୋନୟନର ଭବ୍ୟ ବିରାଟ ଆୟୋଜନରେ ଯୋଗଦେଇ, ନିଜପାଇଁ ଶ୍ରୀୟା ଚଣ୍ଡାଳୁଣୀର ଶଶୁର ଚରିତ୍ରଟି ହାସଲ କରିଥାଆନ୍ତି । ଶ୍ରୀ ତ୍ରିପାଠୀଙ୍କ ବୈଷୟିକ ବିଭାଗ କେତେଜଣ କଲେଜପଢୁଆ ଯୁବକଳାକାରଙ୍କ ଅନୁସନ୍ଧାନରେ ଆସି କଟକ ହୋଟେଲରେ ଅବସ୍ଥାନ କରିଥାନ୍ତି । ଧୀରବାବୁ କଟକ ସହରର ଓ ରେଭେନ୍ସା କଲେଜର ପାଠପଢୁଆ ନାଟ ସଉକିଆ ଲୋକଙ୍କୁ ଚିହ୍ନେଇବା କାର୍ଯ୍ୟ କରୁଥାଆନ୍ତି । ଏ ଦଳର ମୋ ଉପରେ ନଜର ପଡ଼ିଲା । ଧୀରବାବୁ ମୋତେ ଡାକି ନେଲେ ଏମାନଙ୍କ ପାଖକୁ । ତା'ପରେ ସେପ୍ଟେମ୍ବର ୧୯୫୮ ମସିହାରେ ଧୀରବାବୁ, ନରେନ୍ଦ୍ର ମହାନ୍ତି, ଶ୍ରୀକାନ୍ତ ମିତ୍ର ଓ ମୁଁ କଲିକତାର ନିଉଥିଏଟର୍ସ ଷ୍ଟୁଡିଓରେ ମନୋନୀତ ହେଲୁ ଯଥାକ୍ରମେ ଚଣ୍ଡାଳ, ନାରଦ, ବଳରାମ ଓ ଜଗନ୍ନାଥ ଚରିତ୍ର ପାଇଁ । ପ୍ରାୟ ୨/୩ ମାସ କଲିକତାର ଗୋଟିଏ ଭଡ଼ା ଘର ମେସ୍‌ରେ ଆମେ ରହୁଥିଲୁ । ଷ୍ଟୁଡ଼ିଓ ପାଖରେ ଥିବାରୁ ଯେତେବେଳେ ଇଚ୍ଛା ଆମକୁ ଡକରା ହେଉଥିଲା । ଧୀର ବାବୁଙ୍କ ସହିତ ଘନିଷ୍ଠତା ବଢ଼ିଲା । ଏଇଠି 'ଆପଣ' ସମ୍ବୋଧନଟା ହଠାତ୍ 'ତୁ' ପର୍ଯ୍ୟନ୍ତ ଚାଲିଆସିଲା ।

୧୯୫୯ ମସିହାରେ "ମହାଲକ୍ଷ୍ମୀ ପୂଜା" ମୁକ୍ତି ପାଇଲା । ଆମେ ସମସ୍ତେ ସିନେମାବାଲା ହେଇଗଲୁ । ହେଲେ- ତା'ପରେ- ଆଉ କଣ ? ସେଇ ଦରିଦ୍ର ପଞ୍ଚାକ୍ଷର । ଏ ଭିତରେ ନାଟକ ଚର୍ଚ୍ଚା ଚାଲିଥାଏ । ସଂଗୀତ ନାଟକ ଏକାଡ଼େମୀ ଆନୁକୂଲ୍ୟରେ ବ୍ରହ୍ମପୁର ନାଟକ ପ୍ରତିଯୋଗୀତାରେ ଯୋଗଦେବା, ପ୍ରଜାତନ୍ତ୍ର, ମାତୃଭୂମି ପ୍ରେସର ବ୍ଲକ ଡିଜାଇନ୍ କରିବା, କଟକର ଗଳିକନ୍ଦିରେ ବୁଲି ବିଜ୍ଞାପନର "ମେଟର" ଯୋଗାଡ଼ କରିବା କାମରେ- ଗୁଜରାଣ ମେଣ୍ଟାଇବାକୁ ପଡୁଥାଏ । ଧୀରବାବୁ କିନ୍ତୁ ଓକିଲାତି ଭିତରେ କେବଳ ସିନେମା କଥା ଭାବୁଥାଆନ୍ତି । ସେ ଚଳଚ୍ଚିତ୍ର ପ୍ରତିଷ୍ଠାନର ଦ୍ୱିତୀୟ ଅବଦାନ 'ପରିଣାମ'ର ବ୍ୟବସ୍ଥାପକ ଭାବରେ କାମ କରୁଥାଆନ୍ତି । ତା'ପରେ ପ୍ରଚାର ଓ ବିତରଣର କାର୍ଯ୍ୟ କରୁଥାଆନ୍ତି-ଅଭିନୟ ସହିତ । ବନ୍ଧୁ ସୁବୀର ସିହ୍ନାଙ୍କ ସହଯୋଗରେ ମୋତେ ପରିସଂଖ୍ୟାନ ଓ ଇକନମିକ୍ ସର୍ଭେ ବିଭାଗରେ ସାମୟିକ କିରାଣୀ ଚାକିରିଟିଏ ମିଳିଲା । ସେଇ ଜାଗାରେ ପୂର୍ବରୁ ସଙ୍ଗୀତକାର ଅକ୍ଷୟ ମହାନ୍ତି କାର୍ଯ୍ୟରତ ଥିଲେ । କିନ୍ତୁ କାଣ୍ଟନ୍‌ମେଣ୍ଟର ସେକ୍ରେଟେରୀଏଟରୁ ମଧୁସୂଦନ କୋଠୀସ୍ଥିତ ଅଲ ଇଣ୍ଡିଆ ରେଡିଓ ବେଶୀଦୂର ନଥିବାରୁ ସେ ସେକ୍ରେଟେରୀଏଟ ଅଫିସରେ ବେଶୀ ସମୟ ନରହି ଷ୍ଟୁଡ଼ିଓରେ ବେଶୀ ସମୟ ରହୁଥିଲେ । ସେଇ ଦୃଷ୍ଟିରୁ ମୋତେ କର୍ତ୍ତୃପକ୍ଷଙ୍କୁ ବିଶ୍ୱାସ ଦେବାକୁ ପଡ଼ିଲା ଯେ, ମୁଁ ସକାଳ ଦଶଟାରୁ ସନ୍ଧ୍ୟା ୫ଟା ପର୍ଯ୍ୟନ୍ତ ଅଫିସରେ ରହିବି । ମୋଟେ ତିନି ମାସ କିରାଣୀ ଚାକିରି କରିବା ପରେ, ସମ୍ବଲପୁରର ବରଗଡ଼ କଲେଜରୁ ସିଧାସଳଖ ଅର୍ଥନୀତି ଅଧ୍ୟାପକ ଚାକିରୀଟା ମିଳିଗଲା । ମୁଁ ଜୁଲାଇ ୧୯୬୦ ମସିହାରେ କଟକରୁ ବିଦାୟ ନେଲି ।

ଧୀରବାବୁ କିନ୍ତୁ ମାସକୁ ଦୁଇ ତିନୋଟି ଚିଠିଦ୍ୱାରା କଟକ ତଥା ଓଡ଼ିଶାର ଚଳଚ୍ଚିତ୍ର ସମ୍ପର୍କୀୟ ସମସ୍ତ ସମ୍ବାଦ ଜଣାଇବାକୁ ଭୁଲୁନଥିଲେ। ଧୀରବାବୁଙ୍କୁ କଥା ଦେଇଥିଲି- ସେ ଯେତେବେଳେ ଯେକୌଣସି ସାହାଯ୍ୟ ଚାହିଁବେ ମୁଁ ସେଥିରେ ସହଯୋଗ କରିବି-କିନ୍ତୁ ମୋ ଚାକିରୀରେ ଯେମିତି ଆଞ୍ଚ ନ ଆସେ ।

ବରଗଡ଼ର ବେସରକାରୀ କଲେଜର ଉଦ୍ୟୋକ୍ତାମାନେ ବେଶ୍ ନିଷ୍ଠାପର ଭାବରେ ନୂତନ ଅଧ୍ୟାପକମାନଙ୍କୁ ମନୋନୀତ କରିଥିଲେ । ମୋତେ କିନ୍ତୁ ମୋର ହସ୍ତାକ୍ଷର ଯୋଗୁ ମନୋନୟନ କରିଥିଲେ ବୋଲି ଜଣାଇଲେ । ଇଂରାଜୀ ଓ ବିଜ୍ଞାନ ବିଷୟରେ କେରଳର ପ୍ରାର୍ଥୀ ବେଶୀଥିଲେ । କେବଳ କଳା ବିଷୟରେ ଓଡ଼ିଆ ଅଧ୍ୟାପକ ନିୟୋଜିତ ହୋଇଥିଲେ । ଆମେ ବୋଧହୁଏ ଦୁଇଜଣ ସମ୍ବଲପୁର ଜିଲ୍ଲାର ଅଧ୍ୟାପକ ମନୋନୀତ ହୋଇଥିଲୁ । ବର୍ଷେ ଚାକିରି ଭିତରେ ଅଧ୍ୟାପନା ଛଡ଼ା କଲେଜର ଅନ୍ୟାନ୍ୟ ଅଭିବୃଦ୍ଧି ବିଷୟରେ ଭାଗ ନେବାକୁ ପଡ଼ିଥିଲା ମୋତେ । ୧୯୬୧ ମସିହାରେ ଶ୍ରୀ ତ୍ରିପାଠୀ ଆସ୍କାରୁ ଚିଠି ଲେଖିଲେ ତାଙ୍କର ତୃତୀୟ ଅବଦାନ 'ଦସ୍ୟୁ ରତ୍ନାକର' ଚିତ୍ରରେ ଅଭିନୟ ପାଇଁ। ଖ୍ରୀଷ୍ଟମାସ ଛୁଟିରେ ଏ ଚଳଚ୍ଚିତ୍ରର ଅଧିକାଂଶ ସୁଟିଂ ଗଞ୍ଜାମ ଜିଲ୍ଲାର ବିଭିନ୍ନ ସ୍ଥାନରେ ଓ କଲିକତା ଷ୍ଟୁଡ଼ିଓରେ ଇନ୍‌ଡୋର କାମ ହୋଇଥିଲା । ଧୀରବାବୁ ଏ ଚଳଚ୍ଚିତ୍ରରେ ରତ୍ନାକରର ବନ୍ଧୁର ଚରିତ୍ର କରିବା ସହିତ ବ୍ୟବସ୍ଥାପନାରେ ମଧ୍ୟ ଭାଗ ନେଇଥିଲେ । 'ଦସ୍ୟୁ ରତ୍ନକାର' ଚଳଚ୍ଚିତ୍ର ଶେଷ ହେବା ସାଂଗେ ସାଂଗେ ଧୀରବାବୁ ମୋତେ ଚିଠି ଲେଖି ଜଣାଇଲେ 'ପଞ୍ଚସଖା'ର 'ନୂଆବୋଉ' କଥା । ମୋତେ କଟକକୁ ଡକାଗଲା । ପଞ୍ଚସଖାଙ୍କ ସହିତ ପରିଚୟ ହେଲା ବକ୍ସିବଜାର ସ୍ଥିତ ଶ୍ରୀରାମକୃଷ୍ଣ ତ୍ରିପାଠୀଙ୍କ 'ଗ୍ଲାସ୍‌ହାଉସ୍'ରେ ବିଶେଷ ଭାବରେ ଶ୍ରୀ ପାଇକରାୟ ଓ ଶ୍ରୀ ତ୍ରିପାଠୀ ଧୀରବାବୁଙ୍କୁ ଆର୍ଥିକ ଓ ବୈଷୟିକ ସାହାଯ୍ୟ ଦେଉଥିଲେ । 'ନୂଆବୋଉ' ଖୁବ ଅଳ୍ପ ଖର୍ଚ୍ଚରେ, ଖୁବ୍ କମ୍ ସମୟରେ ପ୍ରସ୍ତୁତ ହୋଇ "ପଞ୍ଚସଖା"କୁ ପ୍ରତିଷ୍ଠିତ କରିଦେଲା । କଥାଦେଇଥିବା ଯୋଗୁଁ ମୁଁ ବରଗଡ଼ରୁ ଆସି ନୂଆବୋଉରେ ଅଭିନୟ କରିଥିଲି । ତା'ପରେ "ମାଣିକଯୋଡ଼ି"ରେ ମୋତେ 'ପଞ୍ଚସଖା'ରୁ ନିମନ୍ତ୍ରଣ ଆସିଲା ନାହିଁ । କିନ୍ତୁ ସେବର୍ଷ ଶେଷବେଳକୁ ଶ୍ରୀନିବାସ ରାଉତରାୟ ତାପଙ୍ଗରୁ ମୋତେ ଚିଠିଲେଖିଲେ "ଜୀବନସାଥୀ" ବିଷୟରେ । ନିର୍ଦ୍ଦେଶକ ପ୍ରଭାତ ମୁଖାର୍ଜୀ କଲିକତାରୁ ଚିଠି ଲେଖିଲେ ମେ ମାସରେ ସିମଲାରେ ପହଞ୍ଚିବା ପାଇଁ। ଏଇ ଚଳଚ୍ଚିତ୍ର କଥା ମୋତେ ବ୍ୟବସ୍ଥା ହେବା ପୂର୍ବରୁ ଜଣାଇ ଦିଆ ଯାଇନଥିଲା । ସେଥିପାଇଁ ମୁଁ, ସିଧା ଯାଇ ସିମଲା ସହର ପାଖ ସୋଲାନରେ ପହଞ୍ଚିଲି । ଆଗରୁ କଟକ ଓ କଲିକତାରୁ ପୁରା ୟୁନିଟ୍ ଯାଇ ସେଠି ପହଞ୍ଚି ସାରିଥିଲେ । ଧୀରବାବୁ ଏ ଚଳଚ୍ଚିତ୍ରରେ ଅଭିନୟ କରିବା ସହିତ ବ୍ୟବସ୍ଥାପନାରେ ମଧ୍ୟ ଭାଗ ନେଇଥିଲେ । ପ୍ରାୟ ୧୦ ଦିନ ସୁଟିଂ ହେବାପରେ ଆମେ ଓଡିଶାର ବିଭିନ୍ନ ଜାଗାରେ ସୁଟିଂ

କରି ଚଳଚ୍ଚିତ୍ରଟିକୁ ସାରିଲୁ । ରିଲିଜ ହେବା ପରେ ଦର୍ଶକ ଏ ଛବିର ପ୍ରଶଂସା କଲେ । ଆଜି ପର୍ଯ୍ୟନ୍ତ ଲୋକେ ଏ ଚଳଚ୍ଚିତ୍ରକୁ ପ୍ରଶଂସା କରନ୍ତି ।

୧୯୬୪ ମସିହା ବେଳକୁ ଧୀରବାବୁ ଜଣେ ବ୍ୟବସ୍ଥାପକ ଓ ବିତରକ ଭାବରେ ବେଶ୍ ଜଣାଶୁଣା ହୋଇଯାଇଥିଲେ । ଓଡ଼ିଆ ଚଳଚ୍ଚିତ୍ରର ପ୍ରଯୋଜନା ଓ ବିତରଣର ସବୁ ସମସ୍ୟା ବିଷୟରେ ଆମ ଭିତରେ ବହୁ ଆଲୋଚନା ହେଉଥିଲା । ଓଡ଼ିଶାର ଅନ୍ୟ ପ୍ରଯୋଜକମାନଙ୍କୁ ଏକ ସଂଗଠନକରି ଓଡ଼ିଶା ସରକାରଙ୍କ ପାଖରେ ଦାବୀ ଜଣାଇବାକୁ ସେ ଆଗଭର ହୋଇଥିଲେ । ହରେକୃଷ୍ଣ ମହତାବଙ୍କ ଠାରୁ ନନ୍ଦିନୀ ଶତପଥୀ ଓ ଗଭର୍ଣ୍ଣର ଜଟ୍ଟିଙ୍କ ପର୍ଯ୍ୟନ୍ତ ସେ ବ୍ୟକ୍ତିଗତ ଓ ସାଂଗଠନିକ ଭାବରେ ବହୁ ଆବେଦନ ପତ୍ର ଲେଖି ଜଣାଇଥିଲେ ।

୧୯୬୪ ମସିହାର କେତେଜଣ ବନ୍ଧୁଙ୍କ ସାହାଯ୍ୟରେ ସମ୍ବଲପୁରରୁ ମୁଁ 'ସାଧନା' ଚଳଚ୍ଚିତ୍ର ପ୍ରଯୋଜନା କଲି । କଟକର କଳାକାର ମାନଙ୍କୁ ସାଂଗରେ ନେଇ ଆସିବାର ଭାର ଧୀରବାବୁଙ୍କ ଉପରେ ଥିଲା । ଶେଷକୁ ଉପକୂଳ ଅଞ୍ଚଳରେ 'ସାଧନା'ର ବିତରଣ ଭାର ମଧ୍ୟ ନେଇଥିଲେ । ଓଡ଼ିଆ ଚଳଚ୍ଚିତ୍ରର ବିତରଣ ସମସ୍ୟା ଏତେ କଠିନ ଥିଲା ଯେ ତାଙ୍କୁ ସମାଧାନ କରିବାର ପନ୍ଥା ସହଜ ହେଉନଥିଲା । ସେ ଦୃଷ୍ଟିରୁ ଧୀରବାବୁ ବ୍ୟକ୍ତିଗତ ଭାବରେ କଲିକତାର ଇ.ଆଇ.ଏମ୍.ପି.ପି.ଏ ରେ ଯାଇ ଏସବୁ ସମସ୍ୟାର ସମାଧାନ ଦାବି କରିଥିଲେ । ଫଳରେ କଟକରେ ଇ.ଆଇ.ଏମ୍.ପି.ପି.ଏ ର ଏକ ଶାଖା ଖୋଲିବାର ପ୍ରସ୍ତାବ ହେଲା । ଓଡ଼ିଶାର ସମସ୍ତ ପ୍ରଯୋଜକ ତାଙ୍କୁ ଜଣେ ବିତରକ, ଓକିଲ, ବ୍ୟବସ୍ଥାପକ, ଅଭିନେତା ଓ ଅସୁବିଧା ବେଳେ ସାହାଯ୍ୟକାରୀ ଲୋକ ଭାବରେ ଗ୍ରହଣ କରିନେଇଥିଲେ । ତେଣୁ ସବୁବେଳେ ତାଙ୍କ ଘରେ ଭିଡ଼ ଜମୁଥିଲା । ସାହି ଗଣ୍ଡଗୋଳ ଠାରୁ ରାଜନୀତି ପର୍ଯ୍ୟନ୍ତ ସବୁ ବିଷୟରେ ମୀମାଂସା କରିବାକୁ ଧୀରବାବୁଙ୍କୁ ନିମନ୍ତ୍ରଣ ଆସୁଥିଲା । ଶରୀରର ଓଜନ ଅନୁସାରେ ତାଙ୍କ ମସ୍ତିଷ୍କ ଚାଳନା ଓ ପଦଚ଼ାଳନା ସମାନ ଭାବରେ ଚାଲୁଥିଲା । କୌଣସି ସମସ୍ୟାଠାରୁ ଦୂରେଇ ଯିବା, ଭୟଭୀତ ହେବା ତାଙ୍କ ଜାତକରେ ନଥିଲା । ଯେତେ ବଡ଼ଲୋକ ହେଲେ ମଧ୍ୟ ଧୀରବାବୁ ନିଃସଙ୍କୋଚରେ ତାଙ୍କ ପାଖକୁ ପହଞ୍ଚି ଯାଉଥିଲେ ।

୧୯୬୪ ରୁ ୧୯୭୨ ମସିହା ପର୍ଯ୍ୟନ୍ତ ପ୍ରତ୍ୟେକଟି ଚଳଚ୍ଚିତ୍ରରେ ସେ ଓ ମୁଁ ଏକ ସଂଗରେ ଅଭିନୟ କରିଛୁ । ଏ ଭିତରେ ମୋର କଟକରେ ରହିବା ନିହାତି ଜରୁରୀ ହେଲା । ୧୯୬୬ରେ ମୁଁ ଚାକିରି ଛାଡ଼ି ସାରିଥାଏ । କାରଣ ଭାଇଭାଉଜ, ମାଟିର ମଣିଷ, ଅରୁନ୍ଧତୀ ଓ କିଏ କାହାର ପରପର ପ୍ରଯୋଜିତ ହେଲା । ସେଥିପାଇଁ ମୋତେ କଟକ ଓ କଲିକତା ଯିବାକୁ ପଡ଼ିଲା । ମୁଁ କଟକରେ ଧୀରବାବୁଙ୍କ ଘର ପାଖରେ କିଛିଦିନ ପରିବାର ସହ ଭଡ଼ାଘରେ ରହୁଥିଲି । ଧୀରବାବୁଙ୍କର ନିଜର ଭଉଣୀ ନଥିବାରୁ, ମୋ ସ୍ତ୍ରୀଙ୍କୁ ତାଙ୍କ ପରିବାରର ଲୋକେ ଝିଅ କରିନେଲେ । ସେ ସଂପର୍କ ଏ କେତୋଟି ବର୍ଷରେ ଅତି ଘନିଷ୍ଠ

ହୋଇ ଯାଇଥିଲା । ମୋର କଟକ ରହଣୀ ସମୟରେ ପ୍ରଯୋଜକ ସଂସ୍ଥାକୁ କାର୍ଯ୍ୟକାରୀ କରିବାପାଇଁ ଓ ଉନ୍ନୟନ ନିଗମ ଗଢ଼ିବା ପାଇଁ ଧୀରବାବୁ ବହୁ ସରକାରୀ ଉଚ୍ଚପଦସ୍ଥ ଅଧିକାରୀ, ମନ୍ତ୍ରୀ ତଥା ବିଧାୟକମାନଙ୍କୁ ଭେଟି, ପତ୍ରପତ୍ରିକାରେ ଲେଖାଲେଖି କରି ପ୍ରଭାବିତ କରିପାରିଥିଲେ । ତାଙ୍କର ମୂଳ ଉଦ୍ଦେଶ୍ୟ ଥିଲା ଆମେ ଓଡ଼ିଶା ବାହାରକୁ ଯାଇ କାହିଁକି ଚଳଚ୍ଚିତ୍ର ପ୍ରଯୋଜନା କରିବା ? ଓଡ଼ିଶାରେ ସବୁ ଅଛି । ଏଠି ସରକାର ଓ ପ୍ରଯୋଜକ ଓ ବିତରକ କାହିଁକି ସଂଘବଦ୍ଧ ହେବେ ନାହିଁ । ଏ ଲକ୍ଷ୍ୟ ପଛରେ ବହୁ ଲୋକ ଅସୂୟା ବଶତଃ ଓ ସ୍ୱାର୍ଥ ଦୃଷ୍ଟିରୁ ତାଙ୍କୁ ବିରୋଧ କରୁଥିଲେ । ତଥାପି ସେ ହାରିଯିବା ପାଇଁ ପ୍ରସ୍ତୁତ ନଥିଲେ । ଶେଷରେ ଓ.ଏଫ.ଡି.ସି. ୧୯୭୬ ମସିହାରେ ଗଠିତ ହେଲା ।

୧୯୬୮ ମସିହାରେ ମୁଁ କଟକଛାଡ଼ି ଲରମ୍ବା କଲେଜରେ ଯୋଗଦେଲି । ତିନିବର୍ଷ ପର୍ଯ୍ୟନ୍ତ ଚଳଚ୍ଚିତ୍ରରେ ଚୁକ୍ତି ମୁତାବକ ଅଭିନୟ କରିନାହିଁ । ୧୯୭୨ରେ ପୁଣି ଧୀରବାବୁଙ୍କ ଠାରୁ ଅଭିନୟର ଡ଼ାକରା ପାଇ 'ଧରିତ୍ରୀ'ରେ ଅଭିନୟ କଲି । ଓଡ଼ିଶା ସରକାର ନୂତନ କରି ୧୯୭୯ ମସିହାରେ ପରିଚାଳନା ବୋର୍ଡ ଗଠନ କରିବା ପର୍ଯ୍ୟନ୍ତ ଧୀରବାବୁ ବହୁଗୁଡ଼ିଏ ଚଳଚ୍ଚିତ୍ରରେ ବ୍ୟବସ୍ଥାପକ, ଅଭିନେତା ଓ ପ୍ରଯୋଜକ ଥିଲେ ମଧ୍ୟ ମୋ ସହିତ ତାଙ୍କର ଯୋଗାଯୋଗ ହୋଇ ପାରିନାହିଁ । ସେ ଏ ଭିତରେ ସମୟ, ବତୀଘର, କୃଷ୍ଣସୁଦାମା, ସିନ୍ଦୁରବିନ୍ଦୁ, ବନ୍ଧୁମହାନ୍ତି, ଅଭିମାନ, ନାଗଫାଶ, ସୁନା ସଂସାର, ଗୌରୀ, ରାମାୟଣ, ସମୟ ବଡ଼ ବଳବାନ, ହିସାବନିକାଶ ପରି ଚଳଚ୍ଚିତ୍ରରେ ଅଭିନୟ, ପ୍ରଯୋଜନା, ବିତରଣ ଓ ବ୍ୟବସ୍ଥାପନାର ଭାର ନେଇଥିଲେ । ପରିବାରର ସମସ୍ତଙ୍କ ପାଇଁ ସୁବିଧା ସୁଯୋଗ ଯୋଗାଇବା ଥିଲା ବଡ଼ କର୍ତ୍ତବ୍ୟ । ଏତେ ଦଉଡ଼ାଦଉଡ଼ି ଭିତରେ ସେ ସବୁରେ ମଧ୍ୟ ସେ ତ୍ରୁଟି କରୁନଥିଲେ । ତାଙ୍କର ବିରାଟ ପରିବାର ମଧ୍ୟରେ ମୋର ଉପସ୍ଥିତି ଜଣେ ସଦସ୍ୟ ଭାବରେ ଗ୍ରହଣୀୟ ଥିଲା । ଧୀରବାବୁ ଖାଇବା ସମୟରେ କେବେ ଏକା ଖାଉନଥିଲେ । ସାଥୀରେ ସବୁ ଝିଅ ପୁଅ, ପୁତୁରା ଝିଆରୀ ଏପରିକି ବନ୍ଧୁବାନ୍ଧବଙ୍କୁ ଯୋରକରି ସେ ବସାଉଥିଲେ । ୧୯୬୮ ପର୍ଯ୍ୟନ୍ତ ବହୁବାର ମୋର ଏ ପାରିବାରିକ ଭୋଜନରେ ସାମିଲ ହେବାର ସୌଭାଗ୍ୟ ମିଳିଛି । ମାଂସ, ମିଠା ଓ ବରା ଥିଲା ତାଙ୍କର ଅତିପ୍ରିୟ । ଧୀରବାବୁଙ୍କ ମା' ଭଲ ମାଂସ ରାନ୍ଧିପାରୁଥିଲେ । ମୋତେ ନିମନ୍ତ୍ରଣ କରାଗଲେ ରୋଷେଇଘର ବାରଣ୍ଡାରେ ପରିବାରର ଦଶବାର ଛୁଆଙ୍କ ସଙ୍ଗରେ ମୋ ମୁହଁରେ ମଧ୍ୟ ଭାତ, ଅଣ୍ଡା, ମାଂସ ଓ କଲିଜା ଖୁଆଇବାର ଅଭିଜ୍ଞତା ମୁଁ ଭୁଲି ପାରିନାହିଁ । ଏହି ଅଭ୍ୟାସଟି ସେ ଘରେ ଓ ବାହାରେ, ସୁଟିଂ ସମୟରେ ସବୁବେଳେ କରୁଥିଲେ । କ୍ୱଚିତ୍ ଲୋକ ଅଛନ୍ତି ଯେ ତାଙ୍କ ନିଜ ହାତରୁ ଜବରଦସ୍ତି ମିଠା, ବରା ବା ମାଂସ ବା ମାଛମିଶା ଭାତ ଗୁଣ୍ଡା ନଖାଇଛନ୍ତି ।

ତାଙ୍କ ବୋଉ ବେଳେବେଳେ ଆକ୍ଷେପ କରି କହୁଥିଲେ- ଯାହାହେଲେ ବି ସେ ବ୍ରାହ୍ମଣ। ତୁ ତାକୁ ଅଇଁଠା ହାତରେ ଖୁଆଉଛୁ ? ଧୀରବାବୁଙ୍କ ତତ୍‌କ୍ଷଣାତ୍ ଉତ୍ତର ହେଉଥିଲା, "କୋଉ ଶଳା ବ୍ରାହ୍ମଣ ? ଏଇଟା ତ ଚଣ୍ଡାଳଟେ।" ଏ ଆତ୍ମୀୟତା ଏବେ ମଧ୍ୟ ଭୁଲି ହେଉନାହିଁ। 'ଆପଣ' ରୁ 'ତୁ' ଓ 'ତୁ' ରୁ 'ଶଳା' ପର୍ଯ୍ୟନ୍ତ ଯିବାର ଆତ୍ମୀୟତା ଓ ଅନ୍ତରଂଗତା କେତେ ଜାଗାରେ ମିଳେ ?

୧୯୭୯ ମସିହାରେ ମୁଁ କଲେଜର ଅଧ୍ୟକ୍ଷ ଭାବରେ ଅତି ବ୍ୟସ୍ତ ରହୁଥାଏ। ଓଡ଼ିଶା ସରକାର ମୋତେ ଚଳଚ୍ଚିତ୍ର ଉନ୍ନୟନ ନିଗମର ପରିଚାଳନା ବୋର୍ଡର ମେମ୍ବର ଭାବରେ ମନୋନୀତ କଲେ। ୧୯୮୦ ମସିହାରୁ ଆରମ୍ଭ ହେଲା ଚଳଚ୍ଚିତ୍ର ଶିଳ୍ପର ଉନ୍ନତି ଓ ଉନ୍ନୟନ ପାଇଁ ବହୁ ଯୋଜନା, ସରଣୀ, ନିୟମ ଓ ପଲିସି। ଧୀରବାବୁ ପରିଚାଳନା ବୋର୍ଡର ମେମ୍ବର ନଥିଲେ ମଧ୍ୟ ସାମାନ୍ୟ ସୂଚନାରେ ଆଲୋଚନାରେ ଆସି ଭାଗ ନେଉଥିଲେ। ୧୯୮୫ ବେଳକୁ ପ୍ରଯୋଜନା, ବିତରଣ ଓ ଭାରତୀୟ ଚଳଚ୍ଚିତ୍ର କ୍ଷେତ୍ରରେ ସେ ସର୍ବଭାରତୀୟ ସ୍ତରରେ ଜଣେ ଜଣାଶୁଣା ଲୋକ ହୋଇ ସାରିଥିଲେ। ଦୀର୍ଘ ଚାଳିଶବର୍ଷ ପର୍ଯ୍ୟନ୍ତ ଓଡ଼ିଆ ଚଳଚ୍ଚିତ୍ର ଶିଳ୍ପକୁ ଗଢ଼ି ତୋଳିବାରେ ତାଙ୍କର ଅବଦାନକୁ ଯେଉଁମାନେ ଭୁଲିଯିବେ ସେମାନେ ଓଡ଼ିଆ ପଦବାଚ୍ୟ ନୁହଁନ୍ତି।

ସାମୂହିକ ଭାବରେ-ଜଣେ ସାଧାରଣ ମଣିଷ ଭାବରେ, ଜଣେ ସଂଗଠକ ଓ ଆୟୋଜକ ଭାବରେ, ଜଣେ ବିପଦର ସାଥୀ ଭାବରେ, ଜଣେ ଅଭିନେତା ତଥା ପ୍ରଯୋଜକ ଭାବରେ ଜଣେ ଉଦାର, ଦୟାବନ୍ତ, ହାସ୍ୟପ୍ରିୟ ଅନ୍ତରଂଗ ବନ୍ଧୁ ଭାବରେ କେଜାଣି ଓଡ଼ିଶାରେ ଆଉ କେଉଁଠି କିଏ ମିଳିବେ କି ନାହିଁ। ମୋର ତ ସନ୍ଦେହ ହୁଏ ବୋଧହୁଏ ଆଉ ଧୀର ବିଶ୍ୱାଳଟିଏ ଓଡ଼ିଶାରେ ଜନ୍ମିବେ ନାହିଁ। ମୋ ପରି ଜଣେ ପଶ୍ଚିମାଞ୍ଚଳର କଳାକାରଙ୍କୁ ତା'ର ସୃଜନୀଶକ୍ତି ପାଇଁ ଓଡ଼ିଆ ଚଳଚ୍ଚିତ୍ରରେ ସ୍ଥାନ ଦେବାକୁ ମୁକ୍ତ କଣ୍ଠରେ କିଏ ସ୍ୱୀକାର କରିବ !



# ଓଡ଼ିଆ ସାଂସ୍କୃତିକ ନବଜାଗରଣ ଓ ସଂଗୀତ ସୁଧାକର

ସେତେବେଳେ ଆମେ ଯେଉଁମାନେ ରେଭେନ୍ସା କଲେଜର ଛାତ୍ର ଥିଲୁ ଓ କ୍ରିୟାତ୍ମକ କଳା ବିଷୟରେ ରଚି ରଖିଥିଲୁ, କଟକ ସହରର ବିଭିନ୍ନ ଶିକ୍ଷା ଓ ସାଂସ୍କୃତିକ ଅନୁଷ୍ଠାନର ସବୁ କାର୍ଯ୍ୟକ୍ରମ ବିଷୟରେ ପ୍ରାୟ ଅବଗତ ଥିଲୁ। ସେତେବେଳର କଟକ ସହରରେ ଯେକୌଣସି କଳାପ୍ରିୟ ଛାତ୍ରଟିଏ ସାଧାରଣ ଭାବରେ ଜନସାଧରଣଙ୍କ ପାଖରେ ସମ୍ମାନର ପାତ୍ରଥିଲା । ମୋର ପରିଚୟ କଟକ ସହର ସହିତ ୧୯୪୨ ମସିହାରୁ ୧୯୪୫ ମସିହା ପର୍ଯ୍ୟନ୍ତ ଅତି ଘନିଷ୍ଠ ଥିଲା । ମୋ ବାପା ଜଣେ କଳାପ୍ରାଣ ସରକାରୀ ଅଫିସର ଥିଲେ । ଦ୍ୱିତୀୟ ମହାସମରର ଘନଘଟା ଭିତରେ ମୁଁ ପ୍ୟାରୀମୋହନ ଏକାଡ଼େମୀର ଚତୁର୍ଥ, ପଞ୍ଚମ ଓ ଷଷ୍ଠ ଶ୍ରେଣୀର ଛାତ୍ର ଥିଲି। ତିନିକୋଣିଆ ବଗିଚ଼ା ପାଖରେ ମୁଖ୍ୟରାସ୍ତା ଉପରେ ଗୋଟିଏ ଭଡ଼ାଘରେ ଆମେ ରହୁଥିଲୁ। ପ୍ରଭାତ ଓ କ୍ୟାପିଟେଲ ସିନେମା ଆମ ଘରଠାରୁ ସମାନ ଦୂରତ୍ୱରେ ଥିଲା । ସେ ସମୟର କାଳୀଚ଼ରଣ ପଟ୍ଟନାୟକଙ୍କ ଓଡ଼ିଶା ଥିଏଟର୍ସ ଓ ଅନ୍ନପୂର୍ଣ୍ଣା ଥିଏଟର୍ସ (ବି) ଗ୍ରୁପର ବହୁଗୁଡ଼ିଏ ନାଟକ ଦେଖିବାର ସୁଯୋଗ ମୋତେ ମିଳୁଥିଲା । ସେହି ସମୟରୁ ରଂଗମଞ୍ଚର କେତେଜଣ ପ୍ରତିଷ୍ଠିତ କଳାକାରଙ୍କୁ ମୁଁ ବ୍ୟକ୍ତିଗତ ଭାବରେ ଜାଣିଥିଲି ମଧ୍ୟ।

ଜନ୍ମରୁ ନଅ ବର୍ଷ ପର୍ଯ୍ୟନ୍ତ ମୁଁ ପୁରୀ ଜିଲ୍ଲା ଓ ପୁରୀ ସହରରେ ରହିବା ହେତୁ, ଜଗନ୍ନାଥ ସଂସ୍କୃତି ସମ୍ବନ୍ଧୀୟ କଳାତ୍ମକ ବିଭାଗ ବିଷୟରେ ଅବଗତ ଥିଲି। ଜଣେ ସମ୍ବଲପୁର ଜିଲ୍ଲାର ଅଧିବାସୀ ଭାବରେ ସେଠିକାର ଗ୍ରାମ୍ୟ ସ୍କୁଲରୁ ନବମ, ଦଶମ ଓ ଏକାଦଶ ଶ୍ରେଣୀ ପାସକରି ମୁଁ ଗଙ୍ଗାଧର ମେହେର କଲେଜରୁ ଆଇ.ଏସ୍.ସି. ପାସ୍ କରି ରେଭେନ୍ସା କଲେଜରେ ବି.ଏ. ଶ୍ରେଣୀର ଛାତ୍ର ହେବା ବେଳକୁ, ସମଗ୍ର ଓଡ଼ିଶାର ସାଂସ୍କୃତିକ ବୈଭବ ବିଷୟରେ ମୋର ସମ୍ୟକ ଧାରଣା ହୋଇ ସାରିଥିଲା । ଓଡିଶୀ ସଂଗୀତ, ନୃତ୍ୟ, ଅଭିନୟ, ନାଟ ଓ ନାଟକ ତଥା ଓଡ଼ିଶାର ପଲ୍ଲୀ ସଂଗୀତନୃତ୍ୟ ବିଷୟରେ ପ୍ରତ୍ୟକ୍ଷ ସଂପର୍କ ହୋଇଥିଲା। ଯଦିଓ ଆଜିକାଲିକା ଯୁଗପରି ମୋତେ ସେତେବେଳେ ଜଣେ ସଂଗୀତ ବା ନୃତ୍ୟ ଶିଳ୍ପୀ ହେବାର ସୁଯୋଗ ମିଳିନଥିଲା। କେବଳ ବଂଶଗତ ଗୁଣ ଯୋଗୁଁ ମଞ୍ଚରେ ଏକକ ଅଭିନୟ ଓ ଚିତ୍ର ଆଙ୍କିବା ମୋର ବାଲ୍ୟକାଳରୁ ଗୋଟିଏ ଗୋଟିଏ ସଉକି (hobby) ଭାବରେ ରହିଯାଇଥିଲା । ଏଥିପାଇଁ ମୁଁ ୧୯୫୩/୫୪ ମସିହାରେ ରେଭେନ୍ସା କଲେଜର ନାଟ୍ୟ ସଂସଦର ସଂପାଦକ ଭାବରେ ନିର୍ବାଚିତ ହୋଇଥିଲି। ସେ ସମୟର କଟକ ସହରର ସାତ ଆଠଟି ମହାବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ସୁସଂପର୍କ

ଥିଲା । ପରସ୍ପରର ମହାବିଦ୍ୟାଳୟର ସଭାସମିତି ଓ ସାଂସ୍କୃତିକ ଅନୁଷ୍ଠାନକୁ ଅନ୍ୟ କଲେଜର ଛାତ୍ର ପ୍ରତିନିଧି ମାନଙ୍କୁ ନିମନ୍ତ୍ରଣ କରାଯାଉଥିଲା ।

କ୍ରିୟାତ୍ମକ କଳାଚର୍ଚ୍ଚା ପାଇଁ, ଆକାଶବାଣୀ, କଟକ ମୁଖ୍ୟ ପୀଠ ହେବା ସତ୍ତ୍ୱେ ନ୍ୟାସନାଲ ମ୍ୟୁଜିକ ଏସୋସିଏସନ୍ ଓ କଳାବିକାଶ କେନ୍ଦ୍ର ପରି ଦୁଇଟି ବେସରକାରୀ ସାଂସ୍କୃତିକ ଅନୁଷ୍ଠାନ ସାରା ଓଡ଼ିଶାରେ ବେଶ ସୁନାମ ଅର୍ଜନ କରିଥିଲେ । ସମ୍ବାଦପତ୍ର ମାଧ୍ୟମରେ 'ପ୍ରଜାତନ୍ତ୍ର' ବିଶେଷ ଭାବରେ ଏ କଳାତ୍ମକ ଚର୍ଚ୍ଚା ଓ ଭାବର ଆଦାନ ପ୍ରଦାନକୁ ପ୍ରୋତ୍ସାହିତ କରୁଥିଲା । ଆମ ସମୟରେ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ "ପ୍ରଜାତନ୍ତ୍ର"ରେ ଏହି ବିଭାଗର ସହ ସଂପାଦକ ଭାବରେ କାର୍ଯ୍ୟ କରୁଥିଲେ । କଟକର "କୁମାର ଉତ୍ସବ ସମିତି" ମଧ୍ୟ ଏ ସମୟରେ ଗୋଟିଏ ପ୍ରଭାବଶାଳୀ କଳାତ୍ମକ ବେସରକାରୀ ସଂସ୍ଥା ଭାବରେ ଓଡ଼ିଆ ଜନଜୀବନକୁ ପ୍ରଭାବିତ କରୁଥିଲା ।

ମୁଁ ରେଭେନ୍‌ସା କଲେଜର ଛାତ୍ରଥିବା ସମୟରେ ଓଡ଼ିଶୀ ସଂଗୀତ, ଛାନ୍ଦ, ଜଣାଣ, ଚମ୍ପୁ ଇତ୍ୟାଦି ଉପରେ ଯେତେ ଆଲୋଚନା ହେଉଥିଲା, ଓଡ଼ିଶୀ ନୃତ୍ୟ ବିଷୟରେ ସେତେ ଆଲୋଚନା ହେଉନଥିଲା । ଠିକ୍ ଭାବରେ କହିବାକୁ ଗଲେ ଓଡ଼ିଶୀ ନୃତ୍ୟର ନାମକରଣ ମଧ୍ୟ ହୋଇନଥିଲା । କଳାବିକାଶ କେନ୍ଦ୍ର, କଟକ ତରଫରୁ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ଧୀରେନ୍ଦ୍ର ନାଥ ପଟ୍ଟନାୟକ, ଗୁରୁ କେଳୁଚରଣ ମହାପାତ୍ର ଓ ତାଙ୍କର କେତେକଣ ଶିଷ୍ୟଶିଷ୍ୟା ଏ ନୃତ୍ୟର ଶାସ୍ତ୍ରୀୟତା ଉପରେ ଗବେଷଣା ଆରମ୍ଭ କରିଥିଲେ । ଏମାନଙ୍କୁ ସଂଗୀତ ଓ ବାଦ୍ୟଯନ୍ତ୍ରର ସାହାଯ୍ୟରେ ଯେଉଁମାନେ ସହଯୋଗ କରିଥିଲେ ସେମାନେ ହେଲେ ଓଡ଼ିଶୀ ମର୍ଦ୍ଦଳ ବାଦକ ଗୁରୁ ବନମାଳୀ ମହାରଣା, ତବଲା ବାଦକ ହରମୋହନ ଖୁଣ୍ଟିଆ, ଗାୟକ ଭିକାରୀ ବଳ ଓ ରାଖାଲ ମହାନ୍ତି ଇତ୍ୟାଦି । ମୁଖ୍ୟ ଭାବରେ ଦୁଇଜଣ ସଂଗୀତଜ୍ଞ ଓଡ଼ିଶୀ ନୃତ୍ୟ ଗବେଷଣା କ୍ଷେତ୍ରରେ କର୍ଣ୍ଣଧାର ଥିଲେ ସେମାନେ ହେଲେ ସଂଗୀତ ସୁଧାକର ବାଳକୃଷ୍ଣ ଦାଶ ଓ ପ୍ରଖ୍ୟାତ ବେହେଲା ବାଦକ ଗୁରୁ ଭୁବନେଶ୍ୱର ମିଶ୍ର । ବେହେଲା ବାଦକ ଭୁବନେଶ୍ୱର ମିଶ୍ର ଆକାଶବାଣୀର ନିଜସ୍ୱ କଳାକାର ଥିଲେ, କିନ୍ତୁ ବାଳକୃଷ୍ଣ ଦାଶ ଜଣେ ଉଚ୍ଚଦରର ସ୍ୱୀକୃତିପ୍ରାପ୍ତ ଗାୟକ ଭାବରେ ପ୍ରଥମେ ଆକାଶବାଣୀ, କଲିକତା ଓ ପରେ ଆକାଶବାଣୀ କଟକ ସହିତ ଜଡ଼ିତ ଥିଲେ । ଆକାଶବାଣୀ, କଟକର ସୁରକାର, ଗୀତିକାର ଓ ଉପଦେଷ୍ଟା କମିଟିର ସଭ୍ୟ ଭାବରେ କାଳୀଚରଣ ପଟ୍ଟନାୟକ ଅନେକ ଦିନଯାଏ ଏ ବେତାର କେନ୍ଦ୍ରର ମାନ୍ୟତା ବଢ଼ାଇଥିଲେ । ଠିକ୍ ସେହିପରି ଗୀତିନାଟ୍ୟ ପରଂପରାକୁ ବେତାର ମାଧ୍ୟମରେ ପୁନର୍ଜୀବିତ କରିବା ପାଇଁ ନାଟ୍ୟକାର ଗୋପାଳ ଛୋଟରାୟଙ୍କ ଅବଦାନକୁ ସର୍ବାଗ୍ରରେ ଗଣାଯିବ । କାଳୀଚରଣଙ୍କ ସୁର ଓ ସଂଗୀତ, ନାଟ୍ୟକାର ସୁରେନ ମହାନ୍ତିଙ୍କ ବେତାର ନାଟକ ନିର୍ଦ୍ଦେଶନା, ଭୁବନେଶ୍ୱର ମିଶ୍ର ଓ ବାଳକୃଷ୍ଣ ଦାଶଙ୍କର ସମୂହଚେଷ୍ଟାରେ ଯେକୌଣସି ଯୋଜନା ଆକାଶବାଣୀ, କଟକ

କେନ୍ଦ୍ରରେ "ସମ୍ରାଟ ମିଡ଼ାସ"ଙ୍କ ସ୍ପର୍ଶରେ ସୁନା ପାଲଟି ଯାଉଥିବାର ଅନୁଭବ ଆମପରି ଯୁବଛାତ୍ରମାନଙ୍କୁ ଲାଗୁଥିଲା । ତାହାରି ଫଳରେ ହେମନ୍ତ ଦାସ ଓ ଝରଣା ଦାସ ପରି ବେତାର ଶିଳ୍ପୀ ଓଡିଶାର କୋଣେ କୋଣେ ପ୍ରତିଷ୍ଠିତ ହୋଇଗଲେ। ଏହାର ପ୍ରଭାବ ବହୁଭାବରେ ନ୍ୟାସନାଲ ମ୍ୟୁଜିକ୍ ଆସୋସିଏସନ, କଳାବିକାଶ କେନ୍ଦ୍ର ଓ କୁମାର ଉତ୍ସବ ସମିତି ଉପରେ ପଡ଼ିବାର ଲକ୍ଷ୍ୟ କରାଗଲା । ନାଟକ, ନୃତ୍ୟନାଟକ, ସଂଗୀତ, ଯୌଥଗାନ, ବାଦ୍ୟ ସଂଯୋଜନା ପଛରେ ପଣ୍ଡିତ ଭୁବନେଶ୍ୱର ମିଶ୍ର ଓ ସଂଗୀତ ସୁଧାକର ବାଳକୃଷ୍ଣଙ୍କ ଆନ୍ତରିକ ସହଯୋଗ ହିଁ ପ୍ରତ୍ୟେକଟି କାର୍ଯ୍ୟକ୍ରମକୁ ସଫଳତାର ଶୀର୍ଷକୁ ନେଇ ଯାଉଥିଲା । ଏହାକୁ ହିଁ ଓଡ଼ିଆ ସାଂସ୍କୃତିକ ନବଜାଗରଣର ଆଦ୍ୟ ଯୁଗ ଭାବରେ ଏ ଲେଖାର ଶୀର୍ଷକରେ ଉଲ୍ଲେଖ କରାଯାଇଛି ।

ଠିକ୍ ଏହି ସମୟରେ ଆକାଶବାଣୀ, କଟକର ଆଉ ଦୁଇଜଣ ଅଣଓଡ଼ିଆ ସଂଗୀତଜ୍ଞଙ୍କ ସହଯୋଗ ଉଲ୍ଲେଖଯୋଗ୍ୟ। ସେମାନେ ହେଉଛନ୍ତି ତାମିଲନାଡୁର ଘଟବାଦ୍ୟମ୍ କଳାକାର ତଥା କଟକ କେନ୍ଦ୍ରର ନିର୍ଦ୍ଦେଶକ ଶ୍ରୀ ପି.ଭି. କୃଷ୍ଣମୂର୍ତ୍ତି ଓ ଉତ୍ତର ପ୍ରଦେଶର ବଂଶୀବାଦକ ଶ୍ରୀହରିପ୍ରସାଦ ଚୌରାସିଆ । ଓଡ଼ିଆ ସାଂସ୍କୃତିକ ନବଜାଗରଣରେ ଏମାନଙ୍କ ସକ୍ରିୟ ଯୋଗଦାନ କେବେ ଭୁଲିବାର ନୁହେଁ ।

ଏ ପୃଷ୍ଠଭୂମିରେ ସଂଗୀତ ସୁଧାକରଙ୍କୁ ଜାଣିବାର ମୁଖ୍ୟକାରଣ ଥିଲା, ମୋ ବାପାଙ୍କର ଓଡ଼ିଶୀ ସଂଗୀତ ପ୍ରତି ଅନୁରାଗ । ବାପା ବ୍ୟକ୍ତିଗତ ଭାବରେ ଗାୟକ ସିଂହାରୀ ଶ୍ୟାମସୁନ୍ଦର କର ଓ ତବଲା ବାଦକ କ୍ଷେତ୍ରମୋହନ କରଙ୍କର ପ୍ରଶଂସକ ଓ ବନ୍ଧୁଥିଲେ । ସେତେବେଳେ ନୂଆକରି ଗ୍ରାମୋଫୋନ ରେକର୍ଡରେ ସଂଗୀତ ସୁଧାକରଙ୍କ ସୁଲଳିତ କଣ୍ଠ "ବୋଲ, ବୋଲ ସଜନୀରେ", "ମୋହନ, ହେ ମୋହନ ପ୍ରୀତିରେ ନାହିଁ କାରଣ" ଓଡ଼ିଶାର ଜନମାନସକୁ ବିମୋହିତ କରି ଦେଉଥିଲା । ବାପା ନିଜେ ଏ ରେକର୍ଡଗୁଡ଼ିକ "ମସ୍ତାନ ବାବୁ"ଙ୍କ ଦୋକାନରୁ କିଣିଆଣି ଘରେ ବଜେଇ ଶୁଣୁଥିଲେ। ମୋ ଉପରେ ଏହା ପ୍ରଭାବ ପକାଇଲା । ସତେ ଯେମିତି ମୋ ଛୋଟ ବୟସରୁ ନାଦ, ସୁର, ତାଳ ଓ ମଧୁର ସ୍ୱର ମୋର ରଂଗ ତୂଳୀକୁ ଓ ଅଭିନୟକୁ ଆନ୍ଦୋଳିତ କରୁଥିଲା ।

୧୯୫୧ ମସିହାରୁ ୧୯୫୪ ମସିହାଯାଏ ଆକାଶବାଣୀ, କଟକ ଜରିଆରେ ପ୍ରଖ୍ୟାତ ଗାୟକ ନିମାଇଁ ଚରଣ ହରିଚ୍ଦନ ଓ ବାଳକୃଷ୍ଣ ଦାସଙ୍କର ଗୀତଗୋବିନ୍ଦ, ଓଡ଼ିଆ ଚମ୍ପୂ, ଛାନ୍ଦ, ଭଜନ, ଜଣାଣ, ପଲ୍ଲୀ ସଂଗୀତ ଓ ଆଧୁନିକ ଓଡ଼ିଶାର ଶ୍ରୋତାମାନଙ୍କୁ ପ୍ରଭାବିତ କରିଛି। ଫଳରେ ୧୯୫୦ ଦଶକର ଶେଷଭାଗରେ ବାଳକୃଷ୍ଣ ଦାଶ ଜଣେ ଉତ୍କୃଷ୍ଟ ଓଡ଼ିଶୀ ଗାୟକ ଭାବରେ, ଓଡ଼ିଶୀର ଶାସ୍ତ୍ରୀୟତା ଓ ହିନ୍ଦୁସ୍ଥାନୀ ଶାସ୍ତ୍ରୀୟତା ବିଷୟରେ ପ୍ରଭେଦ ଦେଖାଇବା ଆରମ୍ଭ କଲେ। ସଂଗୀତ ସୁଧାକରଙ୍କ ସୁଲଳିତ କଣ୍ଠ, ଭାଷା

ଓ ଭାବର ଗାୟନ ପଦ୍ଧତିରେ ସମନ୍ୱୟ ବହୁ ଯୁବ କଳାକାରଙ୍କୁ ପ୍ରଭାବିତ କରିଥିଲା । ତାହାରି ଫଳରେ କଟକ ଓ ଭୁବନେଶ୍ୱର ସହରର ଅଧିକାଂଶ ଯୁବଗାୟକ ଗାୟିକା ତାଙ୍କୁ ଗୁରୁ ଭାବରେ ଗ୍ରହଣ କରିଥିଲେ । ସେତେବେଳେ ଓଡ଼ିଶାରେ ଅନେକ ପ୍ରଖ୍ୟାତ ଓଡ଼ିଶୀ ଗାୟକ ଶାସ୍ତ୍ରୀୟ ମତରେ ଓଡ଼ିଶୀ ଗାଉଥିଲେ ଓ ପ୍ରତିଷ୍ଠିତ ଥିଲେ; କିନ୍ତୁ ଓଡ଼ିଶୀ ସଂଗୀତର ବୈଶିଷ୍ଟ୍ୟ ବୁଝାଇବାକୁ ତୁଳନାତ୍ମକ ଭାବରେ ଗୀତଗାଇ ପ୍ରଦର୍ଶନ କରିବାର କ୍ଷମତା ରଖୁନଥିଲେ । କେବଳ ସଂଗୀତ ସୁଧାକରହିଁ ଏମାନଙ୍କ ମଧ୍ୟରେ ଓଡ଼ିଶୀର ମାଧୁର୍ଯ୍ୟ ବିଷୟରେ ପ୍ରଦର୍ଶନ ପ୍ରକାଶ (Demonstration) କରିପାରୁଥିଲେ । ଓଡ଼ିଶାରେ ସେତେବେଳେ ଦୁଇତିନିଜଣ ପ୍ରଖ୍ୟାତ ହିନ୍ଦୁସ୍ଥାନୀ ଗାୟନ ପଦ୍ଧତିର ଗୁରୁଙ୍କ ପାଖରେ ଆଜିକାର ଅନେକ ପ୍ରତିଷ୍ଠିତ ଗାୟକ ଶିକ୍ଷା କରିଥିଲେ । କିନ୍ତୁ ଓଡିଶୀ, ପଲ୍ଲୀ ଓ ଆଧୁନିକ ଗୀତ ବେଳକୁ ସେମାନେ ବାଳକୃଷ୍ଣ ଦାସଙ୍କର ସାବଲୀଳ ଭାଷା ଓ ଭାବ ପ୍ରକାଶକୁ ସ୍ୱକୀୟ ଭାବରେ ଅନୁକରଣ କରୁଥିଲେ ।

ସଂଗୀତ ସୁଧାକରଙ୍କର ଏ ବୈଶିଷ୍ଟ୍ୟ ମୂଳତଃ ତାଙ୍କର ପ୍ରଗାଢ଼ ଗୁରୁଭକ୍ତି ଓ ଅଧ୍ୟବସାୟ ଯାହା ତାଙ୍କର ଐଶ୍ୱରୀୟ ଭାଗ୍ୟବଳରେ ତାଙ୍କୁ ମିଳିଥିଲା । ଯେଉଁ ପରିସ୍ଥିତିରେ କଟକ ଜିଲ୍ଲାର ଗୋଟିଏ ଛୋଟ ଗ୍ରାମରୁ ସେ କଟକ ଓ କଲିକତାଯାଏ ସେ ପହଞ୍ଚିପାରିଥିଲେ, ତାହାହିଁ ତାଙ୍କୁ ଏ ଶ୍ରେଷ୍ଠତ୍ୱ ଦେଇଥିଲା । ଜୀବନରେ ସଂଗୀତର ଅଗାଧ ସମୁଦ୍ରରେ ସେ ଯେମିତି ପହଁରି ପାରିଥିଲେ, ଆଜିକାର କ୍ୱଚିତ ଓଡ଼ିଆ ଗାୟକ ସେ ସୁଯୋଗ ପାଇଛନ୍ତି । ଗୁରୁ ସ୍ୱର୍ଗତ ଶ୍ରୀଚନ୍ଦନ ତାଙ୍କୁ କଲିକତା ନେଇ ଯାଇଥିଲେ । ସେତେବେଳକୁ ସେ ସଂସ୍କୃତ ଓ ଓଡ଼ିଆ ଭାଷାରେ ସଂଗୀତ ବୋଲିବା, ଭଲ ଭାବରେ ଶିକ୍ଷାକରି ସାରିଥିଲେ । କଲିକତାରେ ଓସ୍ତାଦ ବଡ଼େ ଗୁଲାମ ଅଲ୍ଲିଖାଁ ଓ ଓଡ଼ିଶୀରେ ସ୍ୱର୍ଗତ କ୍ଷିତୀଶ ଚନ୍ଦ୍ର ମୈତ୍ରଙ୍କ ଶିଷ୍ୟତ୍ୱରେ ଶାସ୍ତ୍ରୀୟ ହିନ୍ଦୁସ୍ଥାନୀ ଶିକ୍ଷାକରିଥିଲେ । ହିନ୍ଦି, ଉର୍ଦ୍ଦୁ, ଓ ବଙ୍ଗଳା ସହିତ ମୈଥିଳି, ଭୋଜପୁରୀ, ଅଵଧି ଭାଷାରେ ପଲ୍ଲୀ ଓ ଭଜନ ସଂଗୀତ ଶିଖିବାର ସୁଯୋଗ ମିଳିଥିଲା ତାଙ୍କୁ କଲିକତା ରହଣି ସମୟରେ । ଉତ୍ତର ଭାରତର ବହୁ ଜଣାଶୁଣା କଳାକାରଙ୍କ ସହିତ ସେ ସଂପର୍କରେ ଆସି ଥିଲେ ଓ ଶେଷରେ ପ୍ରଖ୍ୟାତ ସଂଗୀତଜ୍ଞ ଓ ଚଳଚ୍ଚିତ୍ର ସଙ୍ଗୀତ ନିର୍ଦ୍ଦେଶକଙ୍କ ରାଇଚାନ୍ଦ ବରାଳଙ୍କ ବନ୍ଧୁତ୍ୱ ତାଙ୍କୁ ତାଙ୍କର ସ୍ୱକୀୟ କଳାପ୍ରକାଶରେ ଯଥେଷ୍ଟ ସାହାଯ୍ୟ କରିଥିଲା । ୧୯୫୪ ମସିହାରୁ କଳାବିକାଶ କେନ୍ଦ୍ର, କଟକ; ଉତ୍କଳ ସଂଗୀତ ସମାଜ, କଟକ; ନ୍ୟାସନାଲ ମ୍ୟୁଜିକ୍ ଆସୋସିଏସନ୍, କଟକ; ଉତ୍କଳ ସଂଗୀତ ମହାବିଦ୍ୟାଳୟ, ଭୁବନେଶ୍ୱର; କଳାକେନ୍ଦ୍ର, ଭୁବନେଶ୍ୱର; ପ୍ରଭାବତୀ ସଙ୍ଗୀତ ସଂସ୍ଥା, ଭୁବନେଶ୍ୱରଠାରେ ଅଧ୍ୟାପନା କରି ଅସଂଖ୍ୟ ଶିଷ୍ୟଶିଷ୍ୟା ସୃଷ୍ଟି କରିପାରିଛନ୍ତି । ଆଜିକାର ପ୍ରାୟ ସମସ୍ତ ଗାୟକ ଗାୟିକା ପ୍ରତ୍ୟକ୍ଷ ବା ପରୋକ୍ଷରେ ବାଳକୃଷ୍ଣ ବାବୁଙ୍କ ସାହାଯ୍ୟ ପାଇବା ମୁଁ ନିଜ ଆଖିରେ ଦେଖିଛି ।

ମୋର ଶିକ୍ଷାର ଅନ୍ତିମ ପର୍ଯ୍ୟାୟରେ ମୁଁ ଓଡ଼ିଆ ଚଳଚ୍ଚିତ୍ର ସହିତ ସଂପୃକ୍ତ ହେଲି- ୧୯୬୦ ଦଶକରେ। ସେତେବେଳେ ଓଡ଼ିଆ ଚଳଚ୍ଚିତ୍ର ପ୍ରଯୋଜନାର ଧାରା ସଂପୂର୍ଣ୍ଣ ଶାସ୍ତ୍ରୀୟ ଥିଲା, ତେଣୁ ଚଳଚ୍ଚିତ୍ରର କଳାକାରଟିଏ ନିର୍ଦ୍ଦେଶକ ଠାରୁ ସଂପାଦନା, ଚିତ୍ରଉତ୍ତୋଳନ, ସଂଗୀତ ନିର୍ଦ୍ଦେଶକଙ୍କ କାର୍ଯ୍ୟ ବିଷୟରେ ଜାଣିବାକୁ ଓ ଶିଖିବାକୁ ବାଧ୍ୟ ହେଉଥିଲା। ସେହିଦୃଷ୍ଟିରୁ ସଂଗୀତର ସୁର ସଂଯୋଜନାଠାରୁ ରେକର୍ଡିଂ ପର୍ଯ୍ୟନ୍ତ ଭାଗ ନେବାର ସୌଭାଗ୍ୟ ମତେ ମିଳିଥିଲା ୧୯୭୨ ମସିହା ପର୍ଯ୍ୟନ୍ତ। ମୋର ଅଭିନୀତ ନୂଆବୋଉ, ଜୀବନସାଥୀ, ସାଧନା, ନବଜନ୍ମ ଠାରୁ ଆରଂଭ କରି ମଥୁରା ବିଜୟ ପର୍ଯ୍ୟନ୍ତ ମୁଁ ବାଳକୃଷ୍ଣଙ୍କ ସଂଗୀତ ସଂଯୋଜନାକୁ ଖୁବ୍ ନିକଟରୁ ଦେଖିଛି। ଏସବୁ ଚଳଚ୍ଚିତ୍ରର ସଂଗୀତ ସେତେବେଳେ କଲିକତାର ଷ୍ଟୁଡ଼ିଓ ମାନଙ୍କରେ ରେକର୍ଡିଂ ହେଉଥିଲା। ପ୍ରାୟ ସାତଦିନଯାଏ ପ୍ରେମଚାନ୍ଦ ବରାଳ ଷ୍ଟ୍ରିଟ୍‌ର ରାଇଚାନ୍ଦ ବରାଳଙ୍କ ବିରାଟ ପ୍ରାସାଦରେ ସଂଗୀତଜ୍ଞ ଗହଣରେ ଅଭ୍ୟାସ ହେଉଥିଲା। ବାଳକୃଷ୍ଣ ବାବୁ ହାରମୋନିୟମରେ ସୁର ସୃଷ୍ଟି କରୁଥିଲେ। ବାଲସରା ପିଆନୋରେ ସହଯୋଗ କରୁଥିଲେ। 'ମୁଲକି' ଏକଡଏନରେ ସହଯୋଗ କରୁଥିଲେ ଓ ବଂଶୀରେ ଆଲୋକବାବୁ। ଏମାନେ ସମସ୍ତେ ଭାରତର ପ୍ରଖ୍ୟାତ ସଂଗୀତଜ୍ଞ, ସୁରକାର ଓ ନିର୍ଦ୍ଦେଶକ। ବେଳେବେଳେ ରାଇଚାନ୍ଦ ବରାଳ ନିଜେ ଆସି ସଂଗୀତ ସଂଯୋଜନା ଦେଖୁଥିଲେ। ମୋର ଚାରୋଟି ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ ଓଡ଼ିଆ ଚଳଚ୍ଚିତ୍ରର ସଂଗୀତ ନିର୍ଦ୍ଦେଶକ ଥିଲେ ସଂଗୀତ ସୁଧାକର ଗୁରୁ ବାଳକୃଷ୍ଣ ଦାସ। ତା' ମଧ୍ୟରୁ ମୋ ନିଜର ପ୍ରଯୋଜନା ସଂସ୍ଥାରେ ନିର୍ମିତ ହୋଇଥିଲା ୧୯୬୪ ମସିହାର "ସାଧନା"। ପାଶ୍ଚାତ୍ୟ "ରେଫ୍ରେନ ଭଏସ" ଓ ପିଆନୋ ଓ ଏକର୍ଡିଏନ୍‌ରେ ଆବାହ ସଂଗୀତର ଯାଦୁକାରୀ ବ୍ୟବହାର; ଓଡ଼ିଶୀ ରାଗରେ କାଳୀଚରଣଙ୍କ ରଚିତ ଗୀତ "ନୟନେ ସୁନୟନା ରେ", ପ୍ରଥମ ଥରପାଇଁ ସମ୍ବଲପୁରୀ ଗୀତ ଓଡ଼ିଆ ଚଳଚ୍ଚିତ୍ରରେ, ସଂପୂର୍ଣ୍ଣ ରବୀନ୍ଦ୍ର ସଂଗୀତ ଛାୟାରେ ଭାବମୟ "ତୁମରି ପ୍ରୀତି ନେଇ" ଗୀତ ଗୁଡ଼ିକର ସଂଯୋଜନା ଓ ଆବାହ ସଂଗୀତର ସଂଯୋଜନାର ଅଭ୍ୟାସ ଓ ରେକର୍ଡିଂ କଲିକତାରେ ଶ୍ରୀ ବାଳକୃଷ୍ଣ ଦାଶଙ୍କ ନିର୍ଦ୍ଦେଶନାରେ ହିଁ ହୋଇଥିଲା। ମୁଁ ପ୍ରଯୋଜକ ଓ ମୁଖ୍ୟ କଳାକାର ଭାବରେ ଦଶଦିନଯାଏ ତାଙ୍କ ସହିତ ରହିବାର ସୌଭାଗ୍ୟ ପାଇଥିଲି। ସେତେବେଳେ ବାଳକୃଷ୍ଣ ଦାଶଙ୍କ ପ୍ରଭାବ କଲିକତାରେ ଯେ କେତେ ସୁଦୂର ପ୍ରସାରୀ ଓ ସମ୍ମାନନୀୟ ଥିଲା ତାହା ମୋର ହୃଦୟଙ୍ଗମ ହୋଇଛି। ମୋର ସେତେବେଳେ ଅନୁଭବ ହୋଇଛି ଯେ ସଂଗୀତ ସୁଧାକରଙ୍କ ପ୍ରଶଂସକଂକ ସଂଖ୍ୟା ଓଡ଼ିଶା ଠାରୁ କଲିକତାରେ ବେଶୀ। କହିବା ବାହୁଲ୍ୟ, ଓଡ଼ିଶୀ, ଆଧୁନିକ, ହନ୍ଦୁସ୍ଥାନୀ ଶାସ୍ତ୍ରୀୟ, ପାଶ୍ଚାତ୍ୟ ସଂଗୀତର ନୋଟେସନ୍, ଠୁମରୀ, ଦାଦରା, ଗଜଲ, ଓଡ଼ିଶା, ବଂଗଳା ଓ ଉତ୍ତର ଭାରତର ପଲ୍ଲୀ ଗୀତର ସୁର, ଭାଟିଆଲି, କୀର୍ତ୍ତନ, ରବୀନ୍ଦ୍ର ସଂଗୀତ, କବୀର ଓ ଓ ତୁଳସୀଦାସଙ୍କ ଭଜନ ଓ ଜଗନ୍ନାଥଙ୍କ ଭଜନ

କଣାଣ ଉପରେ ତାଙ୍କ ଭଳିଆ ଦଖଲଥିବା ଲୋକଟିଏ, ଆଜିଯାଏ ଓଡ଼ିଶାରେ ଜନ୍ମ ହୋଇନାହିଁ । ସେଥିପାଇଁ କଲିକତା ପରି ନଗରୀରେ ସେ ସମ୍ମାନିତ ହୋଇ ରହିଥିଲେ ଶେଷଦିନଯାଏ ।

ପଛକୁ ଅନେଇଲେ, ପେଷାଦାର ରଂଗମଞ୍ଚ କଥା ମନେପଡୁଛି । ଏ ରଂଗମଞ୍ଚ ସହିତ ଯେଉଁ କଳାକାରମାନେ ଯୋଡ଼ି ହୋଇଥିଲେ, ସେମାନଙ୍କ ପ୍ରତିଭାର ବିକାଶ ହୋଇଥିଲା ଏହି ପଞ୍ଚମ ଦଶକରେ । ଗୋଟିପୁଅ ଓ ରାସ କଳା ସହିତ ସଂପୃକ୍ତ ବହୁମାନର ପେଷାଦାର କଳାକାର ଭିତରେ ପଙ୍କଜ ଚରଣ ଦାସ, କେଳୁଚରଣ ମହାପାତ୍ର ଓ ଦେବପ୍ରସାଦ ଦାସ ଥିଲେ ମୁଖ୍ୟ । ଅବଶ୍ୟ, ଆଉ ଦୁଇଜଣ 'ଗୋଟିପୁଅ' ପିଲା ଥିଲେ ପିପିଲିର କାଶୀବାବୁ ଓ ମାଷ୍ଟର ମାଣିଆ ନାଟକର ନିର୍ଦ୍ଦେଶକ ହୋଇ ବୟସାଧିକ୍ୟ ଯେଗୁ ଦୁହେଁ ରଂଗମଞ୍ଚ ଛାଡି ସାରିଥିଲେ । ଷାଠିଏ ଦଶକରେ ମାଷ୍ଟର ମାଣିଆ ତାଙ୍କର ଅଭିନୟ କଳାର ସ୍ୱାକ୍ଷର ଛାଡ଼ିଗଲେ ଓଡ଼ିଆ ଚଳଚ୍ଚିତ୍ର (ମାଟିର ମଣିଷ, ମମତା, ଯାଯାବର ଇତ୍ୟାଦି) ଅଭିନୟ ମାଧ୍ୟମରେ । ୧୯୫୦ ଦଶକର ମଧ୍ୟଭାଗରେ ଏମାନେ ବିଶେଷତଃ ବିଦଗ୍ଧ ଓଡ଼ିଆ ସମାଜରେ ନୃତ୍ୟଗୁରୁ ଭାବରେ ଦେଖାଗଲେ । ପେଷାଦାର ଓଡ଼ିଆ ରଂଗମଞ୍ଚର ହାସ୍ୟ ଅଭିନେତା, ଚରିତ୍ର ଅଭିନେତା, ପଖୋଜ ବାଦକ, ପଲ୍ଲୀ ନୃତ୍ୟ କଳାକାର ଓ ନିର୍ଦ୍ଦେଶକ ଭାବରେ ଏମାନେ ପ୍ରାୟ ଦଶବର୍ଷ ଯାଏ କାମ କରିବା ପରେ ଓଡ଼ିଶାର ସମ୍ଭ୍ରାନ୍ତ ପରିବାରର କନ୍ୟାସନ୍ତାନମାନଙ୍କୁ ନିଜ ଘରେ ନୃତ୍ୟଶିକ୍ଷା ଦେବାର ଏକ ପେଷା କଟକ ସହରରେ ଆରମ୍ଭ ହେଲା । ୧୯୬୦ ମସିହା ବେଳକୁ ଗୁରୁ ପଙ୍କଜ ଚରଣ, ଗୁରୁ କେଳୁଚରଣ ଓ ଗୁରୁ ଦେବପ୍ରସାଦ, ପ୍ରତିଭା ଯୋଗୁ ସୁଦୃଢ଼ ଭାବରେ ନିଜକୁ ପ୍ରତିଷ୍ଠା କରିପାରିଥିଲେ । ୧୯୫୫ ମସିହାରେ ମୁଁ କଟକ ସହରରୁ ପ୍ରୟାଗ ବିଶ୍ୱବିଦ୍ୟାଳୟକୁ ଏମ୍.ଏ.ର ଛାତ୍ର ଭାବରେ ଯିବା ବେଳକୁ, ଏଗୁରୁମାନଙ୍କ ତତ୍ତ୍ୱାବଧାନରେ ମିନତି ଦାସ, ମୀନାକ୍ଷୀ ନନ୍ଦ, ସଂଯୁକ୍ତା ପାଣିଗ୍ରାହୀ, ପ୍ରିୟମ୍ବଦା ମହାନ୍ତିଙ୍କ ପରି କେତେଜଣ ବିଚକ୍ଷଣ ନୃତ୍ୟ ପ୍ରତିଭା "ଓଡ଼ିଶୀ ନୃତ୍ୟ"କୁ ଶାସ୍ତ୍ରୀୟତା ଦେବାପାଇଁ ଆଗେଇ ଆସିଥିଲେ । ତେଣେ କଳାବିକାଶ କେନ୍ଦ୍ର କଟକର ନିଜସ୍ୱ ଚେଷ୍ଟାରେ ବହୁ ସ୍କୁଲ କଲେଜ ଛାତ୍ରୀ ଓଡ଼ିଶୀ ନୃତ୍ୟ ପ୍ରତି ଆକୃଷ୍ଟ ହେଲେ । ନୃତ୍ୟଗୁରୁମାନେ ଓ ସେମାନଙ୍କ ଶିଷ୍ୟମାନେ କବିଚନ୍ଦ୍ର କାଳୀଚରଣଙ୍କ ତତ୍ତ୍ୱାବଧାନରେ ସାମୁହିକ ଭାବରେ କେତୋଟି ମାନ ନିର୍ଦ୍ଧାରଣ କଲେ ଓ ନିଜସ୍ୱ ଶୈଳୀରେ ଶିଖାଇବାର ପ୍ରୟାସ ଚଳାଇବାରେ କ୍ଷାନ୍ତ ହେଲେ ନାହିଁ । ନୃତ୍ୟ ପରିବେଷଣ ମଞ୍ଚ ଉପରେ ଯେତେ ମନ୍ତ୍ରମୁଗ୍ଧକର ହୋଇଥାଏ, ତାହା ପଛରେ ସଂଗୀତ, ବାଦ୍ୟ ଓ ଗୀତର ଅବଦାନ ଯେ ସର୍ବାପେକ୍ଷା ଅଧିକ ଏକଥାଟି କିନ୍ତୁ ସେତବେଳେ କେହି ଆଲୋଚନା କରନ୍ତି ନାହିଁ । ଆଜି ସଂଗୀତ ସୁଧାକର ବାଳକୃଷ୍ଣ ଦାସ ଓ ସୁରକାର ପଣ୍ଡିତ ଭୁବନେଶ୍ୱର ମିଶ୍ରଙ୍କ ଅକ୍ଳାନ୍ତ ପରିଶ୍ରମ ଯେ 'ଓଡ଼ିଶୀ ନୃତ୍ୟ'କୁ ଶାସ୍ତ୍ରୀୟତା ଦେବାରେ ସାହାଯ୍ୟ କରିଛି ତାହା ଆମ

ଦୃଷ୍ଟିଗୋଚରକୁ ଆସିନାହିଁ । ଓଡ଼ିଶୀ ନୃତ୍ୟର 'ସ୍ଥାୟୀ' ଓ 'ସଂଚାରୀ' ଭାବରେ ସଂଗୀତ ଗାୟନର ପଦ୍ଧତି, ସୁର ଓ ଲୟର ବର୍ଣ୍ଣବିନ୍ୟାସ ଯେ ପ୍ରମୁଖ ଅଂଶଗ୍ରହଣ କରିଥାଏ ତାହାର ମୁଖ୍ୟ ସୃଷ୍ଟିକର୍ତ୍ତା ହେଉଛନ୍ତି ପଣ୍ଡିତ ଭୁବନେଶ୍ୱର ମିଶ୍ର ଓ ସଂଗୀତ ସୁଧାକର ବାଳକୃଷ୍ଣ ଦାସ । ଶହଶହ ସଂଖ୍ୟାର ଏକକ, ବୃନ୍ଦ ନୃତ୍ୟ, ଗାଥା, ନୃତ୍ୟନାଟିକା, ଛାୟା ନୃତ୍ୟ ବିଭିନ୍ନ ସ୍ତରରେ ସୃଷ୍ଟି ହେବାବେଳେ ପରଦା ଆଡୁଆଳରେ ଏ ଦୁଇଟି ମହାନ ସୃଜନଶୀଳ କଳାକାରଙ୍କୁ ଆମେ ସ୍ମରଣ କରିନଥାଉ ।

ସଂଗୀତ ସୁଧାକର ପଞ୍ଚମ ଦଶକର ଶେଷ ଭାଗରେ କଟକର ଓ ଭୁବନେଶ୍ୱରର ପ୍ରତ୍ୟେକ ସଂଗୀତ ଅନୁଷ୍ଠାନ, ଆକାଶବାଣୀ, କୁମାର ଉତ୍ସବ ସମିତି, ନ୍ୟାସନାଲ ମ୍ୟୁଜିକ ଆସୋସିଏସନ୍ ଓ କଳାବିକାଶ କେନ୍ଦ୍ରର ସଂଗୀତ ନିର୍ଦ୍ଦେଶକ ଓ ଗୁରୁଭାବରେ କାର୍ଯ୍ୟରତ ଥିଲେ ଓ କଟକର ପ୍ରତିଭାସମ୍ପନ୍ନ ଗାୟକ ଭାବରେ ଗଣାଯାଉଥିଲେ । ଅନ୍ୟମାନଙ୍କ ମଧ୍ୟରେ କଟକ ସହରର ତିନିଜଣ, ଶ୍ରୀ ଅକ୍ଷୟ ମହାନ୍ତି, ଶ୍ରୀ ପ୍ରଣବ ପଟ୍ଟନାୟକ, ମହମ୍ମଦ ସିକନ୍ଦର ଆଲାମ୍ ଓ ଏମାନଙ୍କ ଛଡ଼ା ପୁରୀର ଶ୍ରୀ ପ୍ରଫୁଲ୍ଲ କର ଓ ଦକ୍ଷିଣର ଶ୍ରୀ ରଘୁନାଥ ପାଣିଗ୍ରାହୀ ('ଗୀତଗୋବିନ୍ଦ' ପାଣିଗ୍ରାହୀ) । ମୟୁରଭଞ୍ଜର ସଂଗୀତଜ୍ଞ ଓ ନୃତ୍ୟବିତ୍ ଶ୍ରୀ ରାଧାକୃଷ୍ଣ ଭଞ୍ଜଙ୍କ ଝୁମର ଓ ଛଉ ପଦ୍ଧତି ଓ ବରଗଡ଼ର ଓକିଲ ଗୁଣନିଧି ଦାଶଙ୍କ ସମ୍ବଲପୁର ଅଞ୍ଚଳର ପଲ୍ଲୀ ସଂଗୀତ ଆକାଶବାଣୀ, କଟକର ଶ୍ରୋତାମାନଙ୍କୁ ବିମୋହିତ କରୁଥିଲା । ଏ ଯୁବଗାୟକ ମାନେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ସମସ୍ତେ ସଂଗୀତ ସୁଧାକରଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ । ଖୁବ୍ ଅଳ୍ପଦିନ ମଧ୍ୟରେ ଏ ନୂତନ ପିଢ଼ିର ଗାୟକମାନେ ନିଜର ଅଲଗାଅଲଗା ମୌଳିକ ଗାୟନ ଶୈଳୀରେ ସଂଗୀତ ଓ ସୁର ରଚନା କରି ପ୍ରତିଷ୍ଠିତ ହୋଇଗଲେ । ବେତାର ଓ ଗ୍ରାମୋଫୋନ ରେକର୍ଡ ଯୋଗେ ଏମାନେ ଓଡ଼ିଶା ସାରା ପରିଚୟ ପାଇଲେ । ସଂଗୀତ ସୁରକାର ବାଳକୃଷ୍ଣ ଦାଶ ଓ ପଣ୍ଡିତ ଭୁବନେଶ୍ୱର ମିଶ୍ର ଓଡ଼ିଆ ଚଳଚ୍ଚିତ୍ରର ପ୍ରଥମ ଓଡ଼ିଆ ସଂଗୀତ ନିର୍ଦ୍ଦେଶକ ଭାବରେ ଏମାନଙ୍କୁ ପରିସ୍ଥିତି ଓ ଚରିତ୍ର ଅନୁଯାୟୀ ଓଡ଼ିଆ ଚଳଚ୍ଚିତ୍ର ସଂଗୀତ ଗାଇବାର ସୁଯୋଗ ଦେଲେ । ୧୯୬୦ ଦଶକ ମଧ୍ୟରେ ଏମାନେ ପ୍ରତିଷ୍ଠିତ ସଂଗୀତଜ୍ଞ ହେବା ସହିତ କେତେଜଣ ସୁରକାର, ଗୀତିକାର ଓ ସଂଗୀତ ନିର୍ଦ୍ଦେଶକ ଭାବରେ ପରିଚୟ ପାଇଲେ । ୧୯୬୦ ଦଶକରେ ଏମାନେ ମୁମ୍ବାଇ ଓ ଚେନ୍ନାଇ ଯାଇ ଓଡ଼ିଆ ଚଳଚ୍ଚିତ୍ରର ନିଜସ୍ୱ ଧାରା ପ୍ରବର୍ତ୍ତନ କରିବାରେ ସହଯୋଗ କଲେ । ୧୯୬୦ ଦଶକର ଶେଷଭାଗରେ ଓଡ଼ିଆ ଚଳଚ୍ଚିତ୍ର ସଂଗୀତ ଆଉ କଲିକତାର ରେକର୍ଡିଂ ଥିଏଟର ମାନଙ୍କରେ ସଂଯୋଜିତ ହେଲା ନାହିଁ । ସଂଗୀତ ସୁଧାକର ବାଳକୃଷ୍ଣ ଦାଶ ଓ ପଣ୍ଡିତ ଭୁବନେଶ୍ୱର ମିଶ୍ର କେବଳ ଶିକ୍ଷା ଓ ଗବେଷଣାର ବସ୍ତୁ ହୋଇ ରହିଲେ । ନୂତନ ପିଢ଼ିର ଚଳଚ୍ଚିତ୍ର ସଂଗୀତ, ସଂପୂର୍ଣ୍ଣ ଇଲୋକ୍ଟ୍ରନିକ୍, ବ୍ୟବସାୟିକ ଓ ସ୍ନାୟୁଉତ୍ତେଜକ ଧାରା

ଉପରେ ପରିଚାଳିତ ହେଲା । ସଂଗୀତର ନୋଟେସନ ନକାଣି ଓଡ଼ିଆ ଚଳଚ୍ଚିତ୍ରର ଓ ଗଣନାଟ୍ୟର ସଂଗୀତ ନିର୍ଦ୍ଦେଶକ ହେବାର ସୌଭାଗ୍ୟ ବହୁ ଯୁବକ ନିଜ ହାତକୁ ନେଲେ । ଓଡ଼ିଶୀ ସ୍ୱାଭିମାନ ହଜିଗଲା ।

ତଥାପି ସଂଗୀତ ସୁଧାକରଙ୍କ ତିରୋଧାନ ପରେ (୧୯୯୩) ମଧ୍ୟ ତାଙ୍କର ଅସଂଖ୍ୟ ଶିଷ୍ୟ ଓ ଶିଷ୍ୟା ଏବେ ମଧ୍ୟ ତାଙ୍କୁ ସ୍ମରଣ କରିବାକୁ ବାଧ୍ୟ ହେଉଛନ୍ତି । "ଫୁଲ ରସିଆରେ..."ର ସୁରକାରଙ୍କୁ ଏବେବି ମନେପଡୁଛି । ଶ୍ରୀମନ୍ଦିର ଆଗରେ ଛିଡ଼ାହେଲେ ଅନ୍ତରରେ "ଜଗନ୍ନାଥ ହୋ, କିଛି ମାଗୁନାହିଁ ତୋତେ" ମନେ ପଡ଼ିଯାଉଛି । ଅନ୍ଧ ଭିଖାରୀଟିଏ ଖଞ୍ଜଣୀ ବଜାଇ ଗାଇବା ବେଳେ "ବଡ଼ ମାୟାବୀ ଜୀବ ନୋହେ କାହାରି" ଗୀତର ଭାବ ବିଗଳିତ କରିପକାଉଛି, ବର୍ଷା ବିଧୌତ ରାତ୍ରିରେ ବିରହୀ ମନରେ "ଏଇ ଲଗନେ- ମୋ ମନ ବୁଝେନା..." ସଂଗୀତର ସୁର ତୁହାକୁ ତୁହା ମନେପଡ଼େ । ପ୍ରେମରେ ଉବୁଟୁବୁ କିଶୋରୀଟିଏ ଏବେବି ଆଧୁନିକ ଗୀତ ଭିତରୁ "ମୁଁ ଯେ ଭାସେ ସପନେ, ଭରା ତାରା ଗଗନେ" ଗୀତଟିକୁ ପସନ୍ଦ କରି ଗୁଣୁଗୁଣୁ ଗାଇଯାଏ । ଶାସ୍ତ୍ରୀୟ ସଂଗୀତ ପ୍ରିୟ ପ୍ରୌଢ଼ଟିଏ, "ବଦସି ଯଦି କିଞ୍ଚିଦପି" ଗୀତ ସ୍ମରଣ କରି ଚକ୍ଷୁ ମୁଦ୍ରିତ କରି ଭାବବିହ୍ୱଳ ହୋଇଯାଏ । କୌଣସି ସଂଗୀତ ଆସରର ଏବେବି ତାଙ୍କର ଶିଷ୍ୟ ବା ଶିଷ୍ୟାଟିଏ "ବିତିଲାତ ଯାମିନୀ" ବା "ପଖାଳ ଭାତ" ଗୀତଟି ଗାଇଲେ ମୋ' ପରି ଲୋକଙ୍କ ଆଖିରେ ଭାସି ଆସନ୍ତି ସଂଗୀତ ସୁଧାକର । ମଣିଷ ଭିତରେ ଗନ୍ଧର୍ବଟିଏ - ନିନ୍ଦା ଅପବାଦର ବହୁ ଊର୍ଦ୍ଧ୍ୱରେ ।

ଶାନ୍ତ, ଭଦ୍ର, ମୃଦୁଭାଷୀ, କଳାତ୍ମକ ଠାଣିରେ ପରିଧାନ ଓ ଆଭୂଷଣ, ରୁଚିପୂର୍ଣ୍ଣ ଚାଲିଚଳଣରେ ଓଡ଼ିଆ ଲୋକଟିଏ ଭୁବନେଶ୍ୱର ରାଜରାସ୍ତାରେ ସାଇକେଲ ରିକ୍ସା ହୁଡ଼ଖୋଲି ଯାଉଥିବାବେଳେ ମୋ ଆଖିରେ ପଡୁଥିଲେ ବାଳକୃଷ୍ଣ ବାବୁ । ଅମାୟିକ, ଉଦାର, ଛାତ୍ରବତ୍ସଳ ଗୁରୁଟିଏ । ଶିଶୁଟିଏ ପରି ହସି ସମ୍ଭାଷଣ କରୁଥିଲେ । ଏତେ ଉଚ୍ଚସ୍ତରର କଳାକାରଟିଏ ହୋଇ ମଧ୍ୟ ଗର୍ବ, ଅଭିମାନ ଓ ଅହଂକାର ତାଙ୍କୁ କେତେବେଳେ ସ୍ପର୍ଶ କରୁନଥିଲା । ଚିହ୍ନରା ରସିକତା କରି ନିମନ୍ତ୍ରଣ କରୁଥିଲେ ଘରକୁ । ମାଂସ ଓ ଚକୁଳି କିଂବା ମାଂସ ଓ ଭାତ ଖୁଆଇବାକୁ । ଜୀବନରେ ଯାହା ଅର୍ଜନ କରିଥିଲେ ସବୁ ସ୍ନେହ ଓ ଶ୍ରଦ୍ଧା ବାଣ୍ଟିବାରେ ଖର୍ଚ୍ଚ କରି ଦେଉଥିଲେ । ନିଃସଙ୍କୋଚରେ ପ୍ରିୟଜନଙ୍କ ଅନୁରୋଧରେ ଯେଉଁଠି ସେଇଟି ଗୀତ ଗାଉଥିଲେ-ବେଧଡ଼କ । ସବୁବେଳେ "ରଜାମାର୍ଗେ" ମନରେ ଚଳୁଥିଲେ ସଂଗୀତ ସୁଧାକର । ଏମିତି ଆଉ ଏକ ଯୁଗ ପ୍ରବର୍ତ୍ତକଟିଏ ଓଡ଼ିଆ ଦେଶରେ ବିଂଶଶତାବ୍ଦୀରେ ଜନ୍ମଗ୍ରହଣ କରିବାର ନଜିର ମୋ ଆଖିରେ ନାହିଁ । କେଜାଣି, ଏକବିଂଶ ଶତାବ୍ଦୀରେ ଓଡ଼ିଶାରେ ସମ୍ମାନ ରଖିବାକୁ ବାହାରିବେ ଅବା- ।



# ମହାନ୍ ଆଚାର୍ଯ୍ୟ ବିଧୁଭୂଷଣ ଦାସ ସ୍ମରଣେ

ପ୍ରଫେସର ବିଧୁଭୂଷଣ ଦାସ ଚାଲିଗଲେ । ଭୁବନେଶ୍ୱରରେ ରହୁଥିଲେ ମଧ୍ୟ ମୋର ବ୍ୟସ୍ତ ଜୀବନରେ ମୁଁ ତାଙ୍କୁ କ୍ୱଚିତ୍ ଦେଖାକରି ପାରୁଥିଲି । ଏସବୁ ସତ୍ତ୍ୱେ ସେଥିଲେ ମୋର ପଚାଶବର୍ଷର ଏକମାତ୍ର ସୃଜନଶୀଳତାର ଆଧାର । ପ୍ରେରଣାର ଉତ୍ସ । ସେ ଥିରେ ମୋର ପିତୃତୁଲ୍ୟ ।

ଜଣେ ଇଣ୍ଟରମିଡିଏଟ୍ ଛାତ୍ର ଭାବରେ ୧୯୫୨ ମସିହାରେ ମୁଁ ପ୍ରଥମେ ତାଙ୍କୁ ଦେଖିଲି ରେଭେନ୍ସା ମହାବିଦ୍ୟାଳୟର ଇଂରାଜୀ ବିଭାଗର ମୁଖ୍ୟ ଅଧ୍ୟାପକ ପଦବୀରେ । ବାହାରୁ ଅତିମାତ୍ରାରେ ଗମ୍ଭୀର କିନ୍ତୁ ଭିତରେ ଅମାୟିକତା, ରସିକତା ଓ ଜ୍ଞାନଭଣ୍ଡାରର ଏକ ଅମୂଲ୍ୟ ଖଣିଥିଲେ ବିଧୁବାବୁ । ଏକ ସଂଭ୍ରାନ୍ତ ବିରାଟ ପରିବାରର ସେ ଥିଲେ ଜ୍ୟେଷ୍ଠ ଭ୍ରାତା । ତାଙ୍କର କନିଷ୍ଠ ପ୍ରଫେସର ଚଣ୍ଡୀଚରଣ, ପୂର୍ବତନ ମୁଖ୍ୟଶାସନ ସଚିବ ରବିନାରାୟଣ, ଆଇ.ଏ.ଏସ, ଅରୁଣ ଚରଣ ଓ ଅନ୍ୟାନ୍ୟ ଭ୍ରାତାମାନଙ୍କ ସହିତ ମୋର ଆତ୍ମୀୟତା ଓ ପରିଚୟ ଥିଲା ଛାତ୍ର ଜୀବନରୁ । ମୋର ସ୍ୱର୍ଗତ ପିତା ବିଧୁବାବୁଙ୍କ ସ୍ୱର୍ଗତ ପିତା କଲେକ୍ଟର ଦୁର୍ଗା ଦାସଙ୍କର ଅନୁଜସଦୃଶ କନିଷ୍ଠ କର୍ମୀ ଥିଲେ । ତେଣୁ ଆମର ଦୁଇଟି ପରିବାର ତିରିଶ ଦଶକରୁ ପରସ୍ପରକୁ ଜାଣିଥିଲେ ।

ଇଂରାଜୀ ବିଭାଗର ମୁଖ୍ୟଥିଲେ ମଧ୍ୟ ରେଭେନ୍ସା ମହାବିଦ୍ୟାଳୟର ପ୍ରାୟ ସମସ୍ତ ଛାତ୍ରଛାତ୍ରୀ, ତାଙ୍କୁ ଯଥେଷ୍ଟ ଭୟ ଓ ସମ୍ମାନ ଦେଖାଉଥିଲେ । ମୋ ପରି ଓଡ଼ିଆ ସମ୍ମାନ ଶ୍ରେଣୀର ଛାତ୍ର ଇଂରାଜି ବିଭାଗର ମୁଖ୍ୟ ଅଧ୍ୟାପକ ପ୍ରଫେସର ଦାସଙ୍କ ନିକଟତମ ହେବା ପଛରେ ଥିଲା ତାଙ୍କର ବ୍ୟକ୍ତିତ୍ୱ । ସର୍ବଦା ସୁଟ୍ ବା ପରିଷ୍କାର ମଠା, ଟସର ଓ ଧଳାକନାର ସଫାରୀ ସୁଟ୍ ପିନ୍ଧୁଥିବା ପ୍ରଫେସର ଦାସଙ୍କ ଉନ୍ନତ କପାଳ ଓ ଧୂଆଁଳିଆ ଚଷମା ଭିତରର ଆଖି ଦୁଇଟିରେ ଥିଲା ଏକ ଅପୂର୍ବ ଦୀପ୍ତି । ଜଣେ ଛାତ୍ରପାଇଁ ସେ ଦୃଷ୍ଟିରେ ଥିଲା ଅନୁସନ୍ଧିତ୍ସା, ପ୍ରଶାସନିକ ବିଶ୍ଳେଷଣ ଓ ପିତୃତୁଲ୍ୟ ଅନୁକମ୍ପା । ପ୍ରଥମରୁ ପ୍ରତ୍ୟେକ ଛାତ୍ରସହିତ କଥାବାର୍ତ୍ତା କରିବାବେଳେ ତାଙ୍କର ଅକ୍ସଫୋର୍ଡିୟ ଇଂରାଜି ଉଚ୍ଚାରଣ ଆମକୁ ଉତ୍ତର ଦେବାପାଇଁ ଅପ୍ରସ୍ତୁତ କରି ପକାଉଥିଲା । ପରେପରେ ମୁହଁର ସାମାନ୍ୟ ଚାପାହସ ସହିତ ଖାଣ୍ଟି ଓଡିଆରେ ତାଙ୍କର ବକ୍ରୋକ୍ତି ବେଶ୍ ଆଶ୍ୱସନା ଦେଉଥିଲା । ଜଣେ ବରିଷ୍ଠ ଅଧ୍ୟାପକ ଭାବରେ ଭଲଛାତ୍ର ମଧ୍ୟରୁ ମଧ୍ୟମ ଓ ଅଧମ ଧରଣର ଛାତ୍ରମାନଙ୍କ ବିଷୟରେ ଖୁବ କମ୍ ସମୟ ମଧ୍ୟରେ ପ୍ରଫେସର ଦାସ ସବୁକିଛି ଅବଗତ ହୋଇ ପାରୁଥିଲେ । ଇଂରାଜୀରେ କମ୍ ନମ୍ବର ରଖୁଥିଲେ ମଧ୍ୟ ତାଙ୍କର ଦୃଷ୍ଟି ମୋ ଉପରୁ କେବେହେଲେ ଦୂରକୁ

ଅପସାରିତ ହୋଇନଥିଲା । କାରଣ ମୋର ଜନ୍ମଗତ ସଉକି ଚିତ୍ରକଳା ଓ ଅଭିନୟ ପ୍ରତି ସେ ଆକୃଷ୍ଟ ହୋଇଥିଲେ । ପାଖକୁ ଡାକି, ପିଠି ଥାପୁଡ଼େଇ ତାଙ୍କର ଇଂରାଜୀର ଉତ୍ସାହବାଣୀ ମୋର ଏବେବି କାନରେ ଗୁଞ୍ଜରିତ ହେଉଛି ।

ଅଥେଲୋ, ହ୍ୟାମଲେଟ୍, ମିଡ୍ସମର ନାଇଟସ୍ ଡ୍ରୀମ ପରି ନାଟକ ତଥା ବର୍ଟ୍ରାଣ୍ଡ ରସେଲ୍ ଓ ଟି.ଏସ୍.ଇଲିଅଟ୍ଙ୍କ ପରି ଯୁଗଜନ୍ମା ସାହିତ୍ୟିକ କୃତିକୁ ମୋ ପରି ଛାତ୍ର ଆଗରେ ପରିବେଷଣ କରିବାରେ ସେ ଥିଲେ ଜଣେ ସିଦ୍ଧହସ୍ତ ଯାଦୁକର । ନାଟକର ପ୍ରତ୍ୟେକ ଚରିତ୍ର, ଦାର୍ଶନିକ ଚିନ୍ତା ଓ କାବ୍ୟିକ ବିଶ୍ଳେଷଣ ସେ ଯେପରି ଜୀବନ୍ତ ଭାବରେ ଛାତ୍ରମାନଙ୍କ ଆଗରେ ପରିବେଷଣ କରୁଥିଲେ, ତାହା ଅନ୍ତତଃ ମୋର ଇଂରାଜୀ ସାହିତ୍ୟପ୍ରତି ଆକର୍ଷଣ ଓ ଆସକ୍ତି ଜନ୍ମାଇଥିଲା । ତାଙ୍କରି ପ୍ରରୋଚନାରେ କନିକା ଲାଇବ୍ରେରୀର ଇଂରାଜି ସାହିତ୍ୟର ବହି ବ୍ୟତୀତ ଇଂରାଜୀ ପରେ ଅନୂଦିତ ଫରାସୀ ସାହିତ୍ୟ, ଇଟାଲୀୟ ସାହିତ୍ୟ, କର୍ମାନ୍ ସାହିତ୍ୟ ଓ ଋଷୀୟ ସାହିତ୍ୟପ୍ରତି ମୋ 'ପରି ଜଣେ ଓଡ଼ିଆ ସାହିତ୍ୟର ଛାତ୍ରକୁ ଆକର୍ଷିତ କରିଥିଲା ।

୧୯୫୩/୫୪ ମସିହାର କଲେଜ ନିର୍ବାଚନରେ ମୁଁ ନାଟ୍ୟ ସଂସଦର ସଂପାଦକ ଭାବରେ ନିର୍ବାଚିତ ହେବା ପରେ ପ୍ରଫେସର ଦାସଙ୍କ ସହିତ ବେଶୀ ଘନିଷ୍ଠ ହେବାକୁ ପଡ଼ିଲା । କାରଣ ସେ ବର୍ଷପାଇଁ ପ୍ରଫେସର ଦାସ ଓ ଡ଼କ୍ଟର ଦେବେନ୍ଦ୍ର ମିଶ୍ର ନାଟ୍ୟ ସଂସଦର ଯୁଗ୍ମ ଉପସଭାପତି ଭାବରେ ଦାୟିତ୍ୱ ଗ୍ରହଣ କରିଥିଲେ । ନିର୍ବାଚନ ଫଳାଫଳ ବାହାରିବା ସଂଗେ ସଂଗେ ବିଧୁବାବୁ ନାଟ୍ୟ ସଂସଦର କାର୍ଯ୍ୟକାରୀ ସଭା ଡକାଇ କେତେକ ପ୍ରସ୍ତାବ ଉପସ୍ଥାପନ କଲେ । ଏ ପ୍ରସ୍ତାବ ଗୁଡ଼ିକ ଯେପରି ଆଧୁନିକ ଥିଲା ସେତିକି ବିପ୍ଳବାତ୍ମକ ମଧ୍ୟ ଥିଲା । ଇଉରୋପୀୟ ଶିଳ୍ପ ବିପ୍ଳବ ପୃଷ୍ଠଭୂମୀରେ ମାନବ ସମ୍ବଳ ପ୍ରତି ସାମାଜିକ ଶୋଷଣକୁ ଆଧାରକରି କର୍ମାନ ନାଟ୍ୟକାର 'ହଫ୍ମ୍ୟାନ'ଙ୍କର "ଦି ୱିଭର୍ସ" ନାଟକର ଓଡ଼ିଆ ରୂପାନ୍ତର ପରିବେଷଣ କରିବାକୁ ସେ ଯୋଜନା କଲେ । ଏହାକୁ ଫଳବତୀ କରିବା ପାଇଁ ତାଙ୍କର ଧୈର୍ଯ୍ୟ ଓ ଅନୁଶାସନ ମୋତେ ସଂପୂର୍ଣ୍ଣ ପ୍ରଭାବିତ କରିଥିଲା । ଦୁଇ ମାସର ଅକ୍ଳାନ୍ତ ପରିଶ୍ରମ ଓ ଇଂରାଜୀ ବିଭାଗର ସମସ୍ତ ଅଧ୍ୟାପକମାନଙ୍କ ସହଯୋଗରେ ଏ ନାଟକର ଓଡ଼ିଆ ରୂପାନ୍ତର କରାଯାଇ ରେଭେନ୍ସା କଲେଜ ନାଟ୍ୟ ସଂସଦ ଏହାକୁ ୧୯୫୪ ମସିହାର ଫେବୃୟାରୀ ମାସରେ ସଫଳତାର ସହିତ ପରିବେଷଣ କରିଥିଲେ । ସେଇ ବର୍ଷ ପ୍ରଫେସର ଦାସଙ୍କ ପ୍ରରୋଚନାରେ ଆମେ କେତେଜଣ ଛାତ୍ର ସହଯୋଗ କଲୁ । ଇଂଲଣ୍ଡର ପ୍ରଫେସର ଜିଓଫ୍ରି କ୍ୟାଣ୍ଡେଲଙ୍କର ବିଖ୍ୟାତ "ସେକ୍ସିପିଆରିନା" ନାଟ୍ୟଦଳକୁ କଟକ ନିମନ୍ତ୍ରଣ ପ୍ରସ୍ତାବ ଦିଆଗଲା । ସାତଦିନ ଯାଏ- ବାଙ୍କାବଜାର ଗଳିର ଜନତା ଥିଏଟର୍ସ ମଞ୍ଚ ଉପରେ ଏ ଦଳ ଆସି ବ୍ୟବସାୟିକ ଢ଼ଙ୍ଗରେ ପରିବେଷଣ କରିଥିଲେ ସେକ୍ସପିଅର ଓ ସ'ଙ୍କର ବିଶ୍ୱବିଖ୍ୟାତ ୭/୮ଟି ନାଟକ । ଏ ସମସ୍ତ କାର୍ଯ୍ୟକ୍ରମ ମଧ୍ୟରେ ସେ ମୋତେ

ଶରତ୍ ରୁ "ସେକି" (ସେକ୍ରେଟେରୀ) ଡାକରେ ଭୂଷିତ କରିସାରିଥିଲେ। ବି.ଏ. ପରୀକ୍ଷାପରେ ରେଭେନ୍‌ସା କଲେଜରୁ ବିଦାୟ ନେବା ବେଳେ ପ୍ରଫେସର ଦାସ ଓ ଡକ୍ଟର ଦେବେନ୍ଦ୍ର ମିଶ୍ର ଇଂଲଣ୍ଡଯାଇ "ରୟାଲ ସ୍କୁଲ ଅଫ ଡ୍ରାମା"ରେ ଅଧ୍ୟୟନ କରିବାପାଇଁ ମୋତେ ଉତ୍ସାହିତ କରିଥିଲେ। ମୋପରି ଛାତ୍ରପାଇଁ ଏ ଉତ୍ସାହ, ପ୍ରୋତ୍ସାହନ ଓ ଆନ୍ତରିକତା ମୋ ସାରାଜୀବନରେ ଏକ ଅଭୁଲା ପାଥେୟ ହୋଇ ରହିଗଲା।

ଘଟଣାଚକ୍ରରେ ମୁଁ ୧୯୬୦ ରୁ ୧୯୬୬ ଯାଏ ଅଧ୍ୟାପକ ଭାବରେ ଅବସ୍ଥାପିତ ହେଲି ବରଗଡ଼ ପଞ୍ଚାୟତ କଲେଜରେ। ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ଥିବାରୁ ମୋ'ର ତାଙ୍କ ସହିତ କଲେଜ ପରିଚାଳନା ସଂପର୍କ ଥିଲା। ଶେଷବେଳକୁ ସେ କାଠମଣ୍ଡୁ ତ୍ରିଭୂବନ ବିଶ୍ୱବିଦ୍ୟାଳୟରେ ଅବସ୍ଥାପିତ ହେଲେ। ମୁଁ ବରଗଡ଼ କଲେଜରୁ ବିଦାୟନେଇ ଲରମ୍ବା କଲେଜରେ ଅଧ୍ୟକ୍ଷ ଭାବରେ ଯୋଗଦେବା ବେଳକୁ ସେ ଓଡ଼ିଶା ଫେରିଆସି ଡ଼ିପିଆଇ ଭାବରେ ଅବସ୍ଥାପିତ ହେଲେ। ଦୀର୍ଘ ସାତବର୍ଷକାଳ କଟକ ଓ ଭୁବନେଶ୍ୱରର ଡି.ପି.ଆଇ ଅଫିସରେ ଜଣେ ବେସରକାରୀ ଗ୍ରାମାଞ୍ଚଳ କଲେଜର ଅଧ୍ୟକ୍ଷ ଭାବରେ ତାଙ୍କ ସହିତ ମୋ ସଂପର୍କ ଯେତିକି ଉତ୍ସାହବର୍ଦ୍ଧକ ସେତିକି ଶିକ୍ଷାପ୍ରଦ ହୋଇଛି। ବିଧୁବାବୁ ଥିଲେ କର୍ମଯୋଗୀ, ଦୂରଦୃଷ୍ଟିସମ୍ପନ୍ନ ଜଣେ ଅସାଧାରଣ ସାଲିସବିହୀନ ପ୍ରଶାସକ। ଛଳନାକୁ ସେ ସହ୍ୟ କରିପାରୁନଥିଲେ। ଶିକ୍ଷକ ଭାବରେ ସେଥିଲେ ଯଥେଷ୍ଟ ସ୍ୱାଭିମାନୀ।

ତାଙ୍କର ଶିକ୍ଷାବିଭାଗର ପ୍ରଶାସନିକ ଢାଞ୍ଚା, ବିଶ୍ୱବିଦ୍ୟାଳୟ ଓ ଉଚ୍ଚଶିକ୍ଷାର ଦୂରଦୃଷ୍ଟି ସଂପନ୍ନ ଯୋଜନା ଓ ଚିନ୍ତାଧାରା ସହିତ ଆମେ ପ୍ରାୟ ସମସ୍ତ ୧୫୦ ଜଣ ଅଧ୍ୟକ୍ଷ ପ୍ରଭାବିତ ହେଇଥିଲୁ। ଆମେ ସମସ୍ତେ ଏବେ ଅବସରପ୍ରାପ୍ତ। ତାଙ୍କର ନୀତି ନିୟମ ଯୋଗୁ ଶିକ୍ଷାପ୍ରଶାସନରେ ଜଣେ ଅଧ୍ୟକ୍ଷକୁ ଯେତେ ପ୍ରୋତ୍ସାହନ ମିଳୁଥିଲା ତାହା ୧୯୮୦ ଦଶକରେ ଧୀରେ ଧୀରେ ମଉଳିବାକୁ ଆରମ୍ଭ କଲା। ଯୁକ୍ତ ଦୁଇ ଶିକ୍ଷାପ୍ରଣାଳୀ ଗ୍ରହଣ କରିବାପରେ ଉଚ୍ଚଶିକ୍ଷାର ଅବକ୍ଷୟ ହେବା ଆମେ ପୁରାତନ ଅଧ୍ୟକ୍ଷମାନେ ଅନୁଭବ କଲୁ। ବିଧୁବାବୁ ଡି.ପି.ଆଇ ଭାବରେ ଓଡ଼ିଶାର ସମସ୍ତ ସରକାରୀ ଓ ବେସରକାରୀ କଲେଜର ଅଧ୍ୟକ୍ଷମାନଙ୍କ ସହିତ ବ୍ୟକ୍ତିଗତ ସଂପର୍କ ରଖୁଥିଲେ। ପନ୍ଦରଦିନ ଓ ମାସରେ କଲେଜର ମୁଖ୍ୟ ସମସ୍ୟାକୁ ନେଇ ଅନ୍ତତଃ ଗୋଟିଏ ଗୁପ୍ତପତ୍ର ତାଙ୍କର ହସ୍ତଗତ ନହେଲେ ଅଧ୍ୟକ୍ଷମାନଙ୍କୁ ସେ ଯେମିତି ତାଗିଦା କରୁଥିଲେ ତାହା ପିଲାବେଳର "ହୋମୱାର୍କ" ନକରିଥିବା ଛାତ୍ରଠାରୁ ଆହୁରି ବଳି ପଡୁଥିଲା। ବର୍ଷକୁ ଥରେ ମେ' ବା ଜୁନ୍‌ମାସରେ ଶିକ୍ଷାବିଭାଗ ତରଫରୁ ଡି.ପି.ଆଇଙ୍କ ତତ୍ତ୍ୱାବଧାନରେ ସାରା ଓଡ଼ିଶାର ଅଧ୍ୟକ୍ଷ ମାନଙ୍କର ଏକ ବାର୍ଷିକ ସମ୍ମିଳନୀ ଆହୂତ ହେଉଥିଲା। ଏହା ପ୍ରତିବର୍ଷ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ହେବାର ଆୟୋଜନ ହେଉଥିଲା। ବର୍ଷଯାକର ଅଳିଆ, ଆବର୍ଜନା, ଅସୁବିଧା ଓ ସମସ୍ୟାର

ଏକ ଖୋଲାଖୋଲି ଆଲୋଚନା ମନ୍ତ୍ରୀ ଓ ସଚିବଙ୍କ ଅବଗତି ପାଇଁ ଏ ସମ୍ମିଳନୀରେ ହେଉଥିଲା । ଫଳରେ ଅଧ୍ୟକ୍ଷମାନଙ୍କୁ ପ୍ରଶାସନ କ୍ଷେତ୍ରରେ ଅସୁବିଧା ହେଉନଥିଲା । ବିଧୁବାବୁଙ୍କ ସହିତ ୨/୩ ଦିନ ପର୍ଯ୍ୟନ୍ତ ବ୍ୟକ୍ତିଗତ ଅନୌପଚାରିକ ସଂପର୍କ ଆମ ଯୁବ ଅଧ୍ୟକ୍ଷମାନଙ୍କ ମନରେ ଯଥେଷ୍ଟ ସାହସ ଓ ଶକ୍ତି ସଂଚାର କରୁଥିଲା । ସମସ୍ତଙ୍କ ସମ୍ମୁଖରେ ଅଧ୍ୟକ୍ଷମାନଙ୍କର ଭଲକାର୍ଯ୍ୟ ପାଇଁ ଯେମିତି ପ୍ରଶଂସା ମିଳୁଥିଲା ତାଙ୍କଠାରୁ, ସେମିତି ଖରାପ କାମ ପାଇଁ ମୃଦୁ ଭର୍ତ୍ସନା ମଧ୍ୟ ସେ କରୁଥିଲେ ଏ ସମ୍ମିଳନୀରେ ।

ପ୍ରଫେସର ଦାସଙ୍କର ପାଶ୍ଚାତ୍ୟ ଶିକ୍ଷାବିତ୍ ଓ ଶିକ୍ଷାପ୍ରଶାସକର ବାହ୍ୟଆବରଣ ତଳେ ଯେଉଁ ସୂକ୍ଷ୍ମ ରସାପ୍ଲୁତ କଳାନୁରାଗୀ ଭାରତୀୟ ମଣିଷଟି ଥିଲା ତାହାର ପରିଚୟ କ୍ୱଚିତ୍ ସେ ପ୍ରକାଶ କରୁଥିଲେ । ଆଧୁନିକ ନାଟକ, ଚିତ୍ରକଳା, ଶାସ୍ତ୍ରୀୟ ସଂଗୀତ, ଓଡ଼ିଶୀ ନୃତ୍ୟ ଓ ଚଳଚ୍ଚିତ୍ର ଉପରେ ସେ ଅସାଧାରଣ ଗବେଷଣା କରିଥିଲେ । ବହୁ ସଭା, ସମିତି, ସେମିନାର ଓ କମିଟିର ସଭ୍ୟ ଭାବରେ ମୁଁ ତାଙ୍କର ନିକଟତର ହେବାର ସୁଯୋଗ ପାଇଥିଲି ବିଗତ ଦୁଇ ଦଶନ୍ଧିରେ । ସବୁଠାରେ ତାଙ୍କର ପ୍ରଭୂତ ଜ୍ଞାନ ଓ ସୂକ୍ଷ୍ମ ବିଶ୍ଳେଷଣ ଆଗରେ ମୋ'ଠାରୁ ଯଥେଷ୍ଟ ବିଜ୍ଞ ବୁଦ୍ଧିଜୀବୀ ସଭ୍ୟ ମଧ୍ୟ ତାଙ୍କ ସହିତ ଏକମତ ହେଉଥିଲେ । ବିଧୁବାବୁ ଭାରତୀୟ ପୁରାତନ ଶାସ୍ତ୍ର ଓ ପରଂପରା ବିଷୟରେ ଗଭୀର ବୈଜ୍ଞାନିକ ଅନୁଧ୍ୟାନ କରିଥିଲେ । ସକାଳୁ ପୂଜାକରିବା ଥିଲା ତାଙ୍କର ନିତିଦିନର ଅଭ୍ୟାସ । ଶେଷ ଜୀବନରେ ପ୍ରଫେସର ବିଧୁଭୂଷଣ ପାଲଟି ଯାଇଥିଲେ ଜଣେ ଆଧ୍ୟାତ୍ମିକ ମଣିଷ । ସାଂଖ୍ୟ ଯୋଗ, ଶ୍ରୀଅରବିନ୍ଦ ଓ ବିବେକାନନ୍ଦଙ୍କ ପରି ମହାନ ଯୋଗୀଙ୍କ ଦର୍ଶନ ଓ ମନନ ମଧ୍ୟରେ ସେ ନିଜକୁ ହଜେଇ ଦେଇଥିଲେ । ଭାରତର ବିଭିନ୍ନ ଅଞ୍ଚଳରେ ଥିବା ବିବେକାନନ୍ଦ ମେମୋରିଏଲ ଓ ରାମକୃଷ୍ଣ ମିଶନର ଶିକ୍ଷାନବୀଶ ତାଙ୍କୁ ନିମନ୍ତ୍ରଣକରି ନେଉଥିଲେ ଅଭିଭାଷଣ ଦେବାପାଇଁ । ଓଡ଼ିଶାରେ ଏ ବିଷୟରେ ଖୁବ୍ ଅଳ୍ପ ଆଲୋଚନା ହେଉଥିଲା, କାରଣ ପ୍ରଚାର ମାଧ୍ୟମରେ ସେ ବିଶ୍ୱାସ କରୁନଥିଲେ । ସରକାରଙ୍କ ଦୃଷ୍ଟିରେ ତେଣୁ ସେ ଜଣେ ଅବସରପ୍ରାପ୍ତ ଇଂରାଜୀ ଅଧ୍ୟାପକ ଭାବରେ ଶେଷପର୍ଯ୍ୟନ୍ତ ରହିଗଲେ । କିନ୍ତୁ ପ୍ରତ୍ୟେକ କ୍ଷେତ୍ରରେ ଯେଉଁଠାରେ ଯାହା କରଣୀୟ ତାହାର ଆଲେଖ୍ୟ ସେ ଲେଖି ରଖିଯାଉଥିଲେ । ଏଥିରେ ସେ କାର୍ପଣ୍ୟ କରିନାହାନ୍ତି । ଏ ଶତାବ୍ଦୀର ଜଣେ ମହାନ୍ ଓଡ଼ିଆ ଶିକ୍ଷାବିତ୍ ଓ ଦାର୍ଶନିକ ଭାବରେ ଆମେ ତାଙ୍କର ଅସଂଖ୍ୟଛାତ୍ର ତାଙ୍କୁ ସ୍ମରଣ କରି ଚାଲିବୁ । ଆଶାକରିବୁ, ଆସନ୍ତା ଶତାବ୍ଦୀର ଶିକ୍ଷାନବୀସଗଣ ତାଙ୍କର ପ୍ରାଥମିକ ଶିକ୍ଷାଠାରୁ ଉଚ୍ଚତମ ଶିକ୍ଷାର ସମ୍ବନ୍ଧୀୟ ଆଲେଖ୍ୟକୁ ପୁନର୍ଜୀବିତ କରି ଏକ ସୁସ୍ଥ ସାମାଜିକ ଶିକ୍ଷାବ୍ୟବସ୍ଥାର ପ୍ରତିଷ୍ଠା ପାଇଁ ଚେଷ୍ଟିତ ହେବେ । ଏହାହିଁ ହେବ ସ୍ୱାଭିମାନୀ ପ୍ରଫେସର ବିଧୁଭୂଷଣ ଦାସଙ୍କପାଇଁ ସର୍ବଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।



# ମୋ ସାର୍ ପ୍ରଫେସର ପ୍ରଫୁଲ୍ଲ ପତି

ମୋର ଛାତ୍ର ଜୀବନରେ ମୁଁ କେବେ ମେଧାବୀ, ବିଚ଼କ୍ଷଣ, ପ୍ରଥମ ଶ୍ରେଣୀରେ ପ୍ରଥମ, ଟପର ଉପାଧିରେ ଭୂଷିତ ହୋଇନାହିଁ । ତେଣୁ ଆଜି କାଲିକା ପ୍ରତିଯୋଗୀତା ଭିତରକୁ ମୁଁ ପଶିପାରେ ନାହିଁ । ଲୋକେ ମତେ ଜଣେ ମଧ୍ୟମ ଶ୍ରେଣୀର ଲୋକ ଭାବରେ ଗ୍ରହଣ କରନ୍ତି । ବେଳେବେଳେ ମୋ ନାଁଟା ମଧ୍ୟ ଗଣ ଦଉଡ଼ ଲିଷ୍ଟରେ ନଥାଏ ।

ତଥାପି, ମୁଁ ଦୀର୍ଘ କୋଡ଼ିଏବର୍ଷ ପର୍ଯ୍ୟନ୍ତ ଛାତ୍ର ଥିଲି । ସର୍ବମୋଟ ସାତଟି ପ୍ରାଥମିକ, ମାଇନର, ଉଚ୍ଚ ଇଂରାଜୀ ଓ ଦୁଇଟି ମହାବିଦ୍ୟାଳୟ ଓ ପ୍ରୟାଗ ବିଶ୍ୱବିଦ୍ୟାଳୟରେ ପାଠପଢ଼ି ଡିଗ୍ରୀ ହାସଲ କରିଛି । ନିଜ ଇଚ୍ଛାରେ ବା ମୋ ଚରିତ୍ରର ବୈଶିଷ୍ଟ୍ୟ ଯୋଗୁ ମୁଁ ଏତେଗୁଡ଼ିଏ ଶିକ୍ଷା ଅନୁଷ୍ଠାନରେ ପାଠପଢ଼ି ତଡ଼ା ଖାଇନଥିଲି । ମୋ ବାପାଙ୍କ ବ୍ରିଟିଶ୍ ଅମଳର ରେଭିନ୍ୟୁ ଚ଼ାକିରୀ ଏଥିପାଇଁ ଦାୟୀ । ଏତେ ସ୍କୁଲରେ ଯେତେ ଶିକ୍ଷକ, ଶିକ୍ଷୟିତ୍ରୀ, ଅଧ୍ୟାପକ, ଅଧ୍ୟାପିକା, ହେଡ଼ମାଷ୍ଟର ଓ ମହାବିଦ୍ୟାଳୟର ଅଧ୍ୟାପକ, ପ୍ରାଧ୍ୟାପକ ଓ ଅଧ୍ୟକ୍ଷ ସମସ୍ତଙ୍କର କୃପାବାରି ଅଳ୍ପେ ବହୁତେ ମୋ' ଉପରେ ପଡିଛି । ସେ ଅର୍ଦ୍ଧଶତାବ୍ଦୀରୁ ବେଶୀଦିନ ତଳର କଥା । କିନ୍ତୁ ଆଜିଯାଏ ସବୁ ମନେ ଅଛି । ଆଜିକାଲିର ସିଲାବସ୍‌ରେ ପାଠ୍ୟକ୍ରମ ବାହାରର 'ଶାଠ' ବିଷୟରେ ସେମିତି କିଛି ଆଲୋଚ଼ନା ହୋଇନଥାଏ । ଆମବେଳେ ଶିକ୍ଷକମାନେ ହିଁ ଆମକୁ ଏ ଶାଠ ବିଷୟରେ ଶିଖାଉଥିଲେ । କ୍ଲାସରେ ଭଲ ନମ୍ବର ରଖି ଜଣେ ପ୍ରିୟ ଛାତ୍ର ହେବା ଅପେକ୍ଷା ସଂଗଠନ, ଖେଳକୁଦ, ସାମାଜିକ କାର୍ଯ୍ୟ, ନାଟକ, ସାଜସଜ୍ଜା, ଅଳଙ୍କରଣ, ଚିତ୍ର ଆଙ୍କିବା, ଆନନ୍ଦ ଉଲ୍ଲାସର ବାତାବରଣରେ କିଛି ନୂତନ ସୃଜନଶୀଳ କାର୍ଯ୍ୟ, ଭୋଜିଭାତ, ପିକ୍‌ନିକ୍ ଓ ଚରିତ୍ର ଗଠନପରି ପାଠ୍ୟକ୍ରମ ବାହାର କାର୍ଯ୍ୟରେ ମୋର ସ୍କୁଲ କଲେଜର ସାର୍ ମାନେହିଁ ମୋତେ ବେଶୀ ଉତ୍ସାହିତ କରିଥିଲେ ।

ଆଶ୍ଚର୍ଯ୍ୟର କଥା, ଅନିଚ୍ଛାକୃତ ଶିକ୍ଷକ ଚାକିରିରେ ମଧ୍ୟ ଏ ପରିବେଶ ମୋର ପିଛା ଛାଡ଼ିଲା ନାହିଁ । ମୋର ଅଧିକାଂଶ ସହଯୋଗୀ ଓ ଛାତ୍ରଛାତ୍ରୀମାନେ ମୋତେ ତିରିଶ ବର୍ଷଯାଏ ସହଯୋଗ କଲେ । ଏବେ ଅବସର ନେବାର ବାରବର୍ଷ ପରେ ମଧ୍ୟ ମୋ ସ୍ମୃତିରେ ଉଜାଗର ହୋଇ ରହିଛି ମୋର ସେ ଶିକ୍ଷକମାନଙ୍କର ଚାରିତ୍ରିକ ବୈଶିଷ୍ଟ୍ୟ, ଜୀବନଧାରା ଓ ଆଦର୍ଶ । ତାହାହିଁ ମୋତେ ପ୍ରତି ମୁହୂର୍ତ୍ତରେ ପ୍ରେରଣା ଦେଉଛି ଏବେବି । ବେଳେବେଳେ ଆଶ୍ଚର୍ଯ୍ୟ ଲାଗେ, ମୋର ବୟସ କାହିଁକି ବଢୁନାହିଁ ! ଯୌବନର ଉଦ୍ଦାମତାରେ ଶିକ୍ଷକର ସାହଚ଼ର୍ଯ୍ୟ ଚରିତ୍ର ଗଠନରେ ଯେ କେତେ ସାହାଯ୍ୟକାରୀ, ଫଳପ୍ରଦ ଓ ସୃଜନଶୀଳ ହୋଇଥାଏ ତାହା ମୋ ପରି ଛାତ୍ରଟିଏ କେବଳ ଅନୁଭବ କରି ପାରିବ ।

ଅଶୀବର୍ଷ ବୟସର ମୋର ପୁରୁଣା ଶିକ୍ଷକମାନେ ଏବେ ମଧ୍ୟ ମୋତେ ଯେତେବେଳେ ସ୍ପର୍ଶକରି ଆଶୀର୍ବାଦ କରନ୍ତି, ମୋ ଦେହରେ ତଡିତ୍‌ର ଏକ ତରଂଗ ବହିଯାଏ । ମୁଁ ଧନ୍ୟ ହୋଇଯାଏ । ସେ ଏକ ଅନନ୍ୟ ଅନୁଭୂତି । ଅବର୍ଣ୍ଣନୀୟ । ଏକାନ୍ତ ନିଜସ୍ୱ ।

ଡକ୍ଟର ପ୍ରଫୁଲ୍ଲ ପତି ମୋର ସେମିତି ଜଣେ ସାର୍ ।

ଲରମ୍ବା ଆବାସିକ ଉଚ୍ଚ ଇଂରାଜୀ ବିଦ୍ୟାଳୟରୁ ୧୯୪୯ ମସିହାରେ ମାଟ୍ରିକ ପାସ୍‌କରି ସମ୍ବଲପୁର ଗଙ୍ଗାଧର ମେହେର କଲେଜର ଆଇ.ଏସ୍‌ସି ଛାତ୍ର ଭାବରେ ମୋଟା ଚଷମା ପିନ୍ଧା ଜଣେ ଇଂରାଜି ଅଧ୍ୟାପକଙ୍କୁ ଯେତିକି ଭୟ କରିବା କଥା, ତା'ଠାରୁ ମୁଁ ବେଶୀ ଭୟାତୁର ଥିଲି, ଏହା ଅସ୍ୱୀକାର କରିହେବ ନାହିଁ । ଅନେକ ଦିନଯାଏ ମୁଁ ଏମିତି ମୋଟା ଚଷମା ପିନ୍ଧା ଅଧ୍ୟାପକ ମାନଙ୍କର ପାଖ ମାଡୁନଥିଲି । ସେଥିରେ ଫିଜିକ୍ସ, ଅର୍ଥନୀତି, ଦର୍ଶନ, ଗଣିତ, ଅଧ୍ୟାପକମାନେ ଅନ୍ତର୍ଭୁକ୍ତ ଥିଲେ ।

ମୋଟା ଚଷମାଟା ସବୁବେଳେ ଧୋକା ଦିଏ । ସାର ମାନଙ୍କ ଆଖି ଦେଖିଲେ ହୃଦୟଟା ଚିହ୍ନିହୁଏ । ଡକ୍ଟର ପତିଙ୍କ କ୍ଷେତ୍ରରେ ତାହାହିଁ ହେଲା । ଭାଗ୍ୟକୁ ଗଙ୍ଗାଧର ମେହେର କଲେଜର ଟ୍ୟୁଟରିଏଲ କ୍ଲାସରେ ଫାଙ୍କି ଦେଇ ଚାଲିଆସିଥିବା ଛାତ୍ରଟି ପୁନର୍ବାର ଯେ ରେଭେନ୍‌ସା କଲେଜର ବି.ଏ ଶ୍ରେଣୀର ଟ୍ୟୁଟରିଏଲ କ୍ଲାସରେ ସେହି ମୋଟା ଚଷମାର ଅଧ୍ୟାପକଙ୍କୁ ଭେଟିବ, ଏହାତ କୌଣସି ରୁଟିନ୍‌ରେ କେବେ ଲେଖାନଥାଏ ! ଅଗତ୍ୟା ଡକ୍ଟର ପ୍ରଫୁଲ୍ଲ ପତିଙ୍କ ଦଶବାରଟି ଛାତ୍ରଙ୍କୁ ନେଇ ନିୟମିତ ହେଉଥିବା ଟ୍ୟୁଟରିଏଲ କ୍ଲାସରୁ "ପଳାଇ ବଞ୍ଚିବାର" ଉପାୟ ଖୋଜି ପାଇ ପାରିଲି ନାହିଁ । ସେତେବେଳକୁ ସାର ମୋ ବଂଶ ପରିଚୟ ପାଇ ସାରିଲେଣି । ଆମେ ଦୁହେଁ ସମ୍ବଲପୁର ସହରର ବାସିନ୍ଦା । ଆମ ସାହି ଓ ସାରଙ୍କ ସାହି ଲାଗିଛି । ମହାନଦୀର ପାଣି ବୋହି ଯାଉଛି । କିନ୍ତୁ କଥାବାର୍ତ୍ତା ସବୁ ଇଂରାଜୀରେ ।

ଡକ୍ଟର ପତି ସାଧାରଣ ଭାବରେ ଖୁବ୍ ଗମ୍ଭୀର । କ୍ୱଚିତ ହସିବାର ବା ଆମୋଦିତ ହେବାର ମୁଦ୍ରାରେ ନିଜ ଛାତ୍ରମାନଙ୍କ ଆଗରେ, ନିଜକୁ ପ୍ରକାଶ କରୁଥିଲେ । ତାହାହିଁ ମୋର ଭୟର କାରଣ । ଟ୍ୟୁଟୋରିଏଲ କ୍ଲାସର ହାତଗଣତି ବାର/ପନ୍ଦର ଜଣ ଛାତ୍ରଙ୍କ ଖାତା ଦେଖି, ସଂଶୋଧନ କରି, ମାର୍କ ଦେବା ସହିତ ଅଧମ ଛାତ୍ରମାନଙ୍କୁ ସାମାନ୍ୟ ବ୍ୟଙ୍ଗାତ୍ମକ ଭାବରେ ଭର୍ତ୍ସନା କରିବା ବେଳେ ମୋ ଉପରେ ସାର୍‌ଙ୍କର ଦୃଷ୍ଟି ପଡିଥିଲା । ଦେଢ଼ ଦୁଇ ପୃଷ୍ଠାର ଗୋଲଗୋଲ ଅକ୍ଷରରେ ଚୁମ୍ବକୀୟ ଉତ୍ତର ଯେ ପନ୍ଦର କୋଡ଼ିଏ ମିନିଟ ଆଗରୁ ଲିଖିତ ହୋଇଛି, ସେକଥା ସାର୍ ଠିକ୍ ବୁଝି ଯାଉଥିଲେ । ତେଣୁ ମାର୍କ୍ ବସେଇବା ପୂର୍ବରୁ ଗୋଟିଏ ଅନିଚ୍ଛାକୃତ ହସଟିଏ ହସି କହୁଥିଲେ, "ଶରତ, ୟୋର ହେଣ୍ଡ୍-ରାଇଟିଂ ଇଜ୍ ସ୍ପେକ୍ଟାକୁଲାର, ବଟ୍ ୟୋର ରାଇଟିଂ ଇଜ୍ ଇରିଟେଟିଂ ।" ହସଟି ଛୋଟ ପିଲାର କଉତୁକିଆ ହସ ପରିହସଟିଏ-କିଛି ବିଦ୍ରୂପ, ତାଚ୍ଛଲ୍ୟ, ଆନନ୍ଦ ଓ ଉଲ୍ଲାସର । ସାର ଉଚ୍ଚପାଟିରେ

ହସୁଥିଲେ । ସାଙ୍ଗମାନେ ମଧ୍ୟ ହସୁଥିଲେ । ଯା’ ପରେ ମୋର ଭୟ ଅନେକାଂଶରେ କମିଗଲା । ମୁଁ ଆଉ ଫାଙ୍କିବାକୁ ଚେଷ୍ଟାନକରି ଘରେ ଚାରି ପାଞ୍ଚ ପୃଷ୍ଠାର ଉତ୍ତର ଓ ହୋମୱାର୍କ କରି ଟ୍ୟୁଟୋରିଏଲକୁ ଆସିଲି ।

୧୯୫୦ର ଆଦ୍ୟ ଭାଗରୁ ୧୯୬୦ ମସିହା ଯାଏ, କଟକ ସହରର ପରିବେଶରେ ଏକ ଓଡ଼ିଆ ସଂସ୍କୃତିର ନବଜାଗରଣର ସୂତ୍ରପାତ ହୋଇଥିଲା । ବହୁ ଅନୁଷ୍ଠାନ ଓ ବ୍ୟକ୍ତି ବିଶେଷ ଏଥିରେ ଭାଗ ନେଇଥିଲେ । ସେତେବେଳେ ଓଡ଼ିଶାର ହାତଗଣତି ବାରଟି ମହାବିଦ୍ୟାଳୟ ମଧ୍ୟରେ ରେଭେନ୍ସା କଲେଜ ସବୁଠାରୁ ବେଶୀ ଆକର୍ଷଣୀୟ ଥିଲା । କଳା, ବିଜ୍ଞାନର ସ୍ନାତକ ଶ୍ରେଣୀ ବ୍ୟତୀତ, ଆଇନ କଲେଜ, ନୂତନ ବାଣିଜ୍ୟ ବିଭାଗ ରେଭେନ୍ସା କଲେଜ୍ ପରିସରରେ ହିଁ ଥିଲା । କଟକ ସହର ଛୋଟ ସହରଟିଏ ଥିଲେ ମଧ୍ୟ ଖ୍ରୀଷ୍ଟ କଲେଜ, ଷ୍ଟୁଆର୍ଟ କଲେଜ, ବି.ଇଡ଼ି. ଟ୍ରେନିଂ କଲେଜ, ଶୈଳବାଳା ମହିଳା କଲେଜ, ମେଡିକାଲ କଲେଜ ଓ ଉତ୍କଳ ବିଶ୍ୱବିଦ୍ୟାଳୟର ମୁଖ୍ୟ କାର୍ଯ୍ୟାଳୟ ପାଇଁ ରେଭେନ୍ସା କଲେଜର ପରିସର ଏକ ସୁସ୍ଥ ବାତାବରଣ ସୃଷ୍ଟି କରୁଥିଲା । ଖେଳକୁଦ, ନାଟକ, ପ୍ରଦର୍ଶନୀ, ଏନ୍.ସି.ସି., ସମାବର୍ତ୍ତନ ଉତ୍ସବ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟ ରେଭେନ୍ସା କଲେଜ ଛାତ୍ର ଓ ଅଧ୍ୟାପକମାନଙ୍କର ସହଯୋଗ ଚାହୁଁଥିଲେ । ଆଶ୍ଚର୍ଯ୍ୟର କଥା, ନିର୍ବାଚିତ ଛାତ୍ର ନେତା ମାନେ ହିଁ ଏ ସମସ୍ତ ଯୋଜନା ଓ ସମସ୍ୟାର ସମାଧାନ କରୁଥିଲେ । ଅଧ୍ୟାପନାମଣ୍ଡଳୀ ଓ ଅଧ୍ୟକ୍ଷଙ୍କ ହସ୍ତକ୍ଷେପର ପ୍ରୟୋଜନ ମଧ୍ୟ ହେଉନଥିଲା । ରେଭେନ୍ସା କଲେଜ ପରିସରରେ ସ୍ନାତକୋତ୍ତର ଛାତ୍ର ସଂଖ୍ୟା ଥିଲେ ସବୁଠାରୁ ବେଶୀ । ଏ ଛାତ୍ରମାନଙ୍କ ଦୃଷ୍ଟିରେ ଅଧ୍ୟାପନା ମଣ୍ଡଳୀ ଯଥେଷ୍ଟ ସମ୍ମାନର ଅଧିକାରୀ ଥିଲେ । ପ୍ରତ୍ୟେକ କଲେଜର ବିଭିନ୍ନ ବିଭାଗରେ ଦକ୍ଷତା ଥିବା ବହୁ ପ୍ରଫେସର ନିଜ ପାଠରେ ଓ କେତୋଟି ‘ଶାଠ’ରେ ବିଚକ୍ଷଣ ପ୍ରତିଭାର ଅଧିକାରୀ ଥିଲେ । ଏ ଅଧ୍ୟାପକ ଓ ପ୍ରଫେସର ମାନଙ୍କୁ ସହରର ସବୁ କଲେଜର ଛାତ୍ରଛାତ୍ରୀ ସମ୍ମାନ ପ୍ରଦର୍ଶନ କରୁଥିଲେ ।

ରେଭେନ୍ସା କଲେଜର ସ୍ନାତକ ଛାତ୍ର ଓ ଆଇନ ମହାବିଦ୍ୟାଳୟର ଛାତ୍ର ମାନଙ୍କ ଅତି ଘନିଷ୍ଠ ସହଯୋଗ ଥିଲା । ତେଣୁ ରେଭେନ୍ସା କଲେଜର ସବୁ ସାଂସ୍କୃତିକ କାର୍ଯ୍ୟକ୍ରମ ସାରା ସହରର ଲୋକଙ୍କ ପାଇଁ ଆକର୍ଷଣୀୟ ହେଉଥିଲା । ସବୁଠାରୁ ବିଶେଷ ଉଲ୍ଲେଖନୀୟ ଥିଲା ରେଭେନ୍ସା କଲେଜର ଛାତ୍ରଛାତ୍ରୀମାନଙ୍କ ଭଦ୍ର ଓ ନମ୍ର ବ୍ୟବହାର । ସେଥିପାଇଁ ରେଭେନ୍ସା କଲେଜ ପାଇଁ କଟକ ସହର ବାହାର ଲୋକଙ୍କର ମଧ୍ୟ ସଦ୍‌ଭାବନା ଥିଲା । ରେଭେନ୍ସା କଲେଜର ପ୍ରତ୍ୟେକ ବିଭାଗରେ ଯେଉଁ ଅଧ୍ୟାପକ ମାନେ ଥିଲେ ସେମାନେ ଏତେ ବିଚକ୍ଷଣ ଓ ଧୁରନ୍ଧର ଥିଲେ ଯେ ଏକ ଆରକୁ ବଳି ଯାଉଥିଲେ । ଆମ ସମୟରେ ଇଂରାଜୀ ବିଭାଗର ଅଧ୍ୟାପକ ଥିଲେ,- ପ୍ରଫେସର ବିଧୁଭୂଷଣ ଦାସ, ପ୍ରଫେସର ଓବ୍ରାଏନ, ପ୍ରଫେସର ତ୍ରିଲୋଚନ ମିଶ୍ର, ପ୍ରଫେସର ସର୍ବେଶ୍ୱର ଦାଶ, ଡ଼କ୍ଟର ପ୍ରଫୁଲ୍ଲ ପତି ଓ ପ୍ରଫେସର

ଯତୀନ ମହାନ୍ତି । କିଛିଦିନ ପାଇଁ ଶ୍ରୀମତୀ ପ୍ରଭାତନଳିନୀ ଦାସ ମଧ୍ୟ ଆମର ଇଂରାଜୀ ଅଧ୍ୟାପିକା ଥିଲେ। ଠିକ୍ ସେପରି ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ଉଦ୍ଭିଦ ବିଜ୍ଞାନ, ପ୍ରାଣୀ ବିଜ୍ଞାନ, ଦର୍ଶନ, ଇତିହାସ, ଅର୍ଥନୀତି, ଗଣିତ, ରାଜନୀତି ବିଜ୍ଞାନ, ସଂସ୍କୃତି ଓ ଓଡ଼ିଆ ଭାଷା ବିଜ୍ଞାନର ବିଭାଗ ଗୁଡ଼ିକ ବହୁ ମୂଲ୍ୟବାନ ରତ୍ନଦ୍ୱାରା ଭରି ଯାଇଥିଲା ।

ଆମ ହୃଦୟର ଏକ ନିଭୃତ କୋଣରେ "ଆଲ୍‌ମା ମେଟରୀୟ୍" ଏକ ଦୀପ ଶିଖା ରେଭେନ୍‌ସାର ସେ ଯୁଗର ଛାତ୍ର ବୋଲି ଦପ୍‌ଦପ୍ ହୋଇ ଜଳିଉଠେ। ଆମେ ସମସ୍ତେ ରେଭେନ୍‌ସା କଲେଜ୍ ପାଇଁ ଗର୍ବ ଅନୁଭବ କରୁଁ। ଶେଷ ନିଶ୍ୱାସ ଯାଏ ଏ ଗର୍ବ ଆମର ଥିବ। ଆମବେଳେ ସଂଗୀତ, ନାଟକ, ନୃତ୍ୟନାଟିକା, ବାଦ୍ୟ, ଖେଳକୁଦ, ସମାଜସେବା, ତର୍କ, ଆଲୋଚ଼ନାରେ ଅଧିକ ସଂଖ୍ୟକ ଛାତ୍ରଛାତ୍ରୀ ଭାଗ ନେଉଥିଲେ। ଅଧ୍ୟାପକମାନେ ସମାନ ଭାବରେ ଛାତ୍ରମାନଙ୍କୁ ଉତ୍ସାହିତ କରୁଥିଲେ। ଆନ୍ତରିକ ସହଯୋଗ କରୁଥିଲେ।

ଡକ୍ଟର ପତି ଥିଲେ ଜଣେ ସୁବକ୍ତା। ତେଣୁ, ଯେ କୌଣସି ବକ୍ତୃତା ପ୍ରତିଯୋଗିତାରେ ତାଙ୍କର ଉପସ୍ଥିତି ଆମକୁ ଆନନ୍ଦ ଦେଉଥିଲା। ଆମ ବେଳେ ରେଭେନ୍‌ସା କଲେଜର ପ୍ରଫେସର ଗୌରୀକୁମାର ବ୍ରହ୍ମା, ପ୍ରଫେସର ବିଧୁଭୂଷଣ ଦାସ, ପ୍ରଫେସର ଜୟକୃଷ୍ଣ ମିଶ୍ର, ପ୍ରଫେସର ସଦାଶିବ ମିଶ୍ର, ପ୍ରଫେସର ଦେବେନ୍ଦ୍ର ମିଶ୍ର, ଡକ୍ଟର ବଂଶୀଧର ମହାନ୍ତି, ପ୍ରଫେସର ସର୍ବେଶ୍ୱର ଦାଶ, ପ୍ରଫେସର ରାଓ, ପ୍ରଫେସର ଓବ୍ରାୟେନ, ପ୍ରଫେସର ଶ୍ରୀନିବାସ ସାହୁ, ପ୍ରଫେସର କ୍ଷେତ୍ରମୋହନ ପଟ୍ଟନାୟକ ଓ ଡକ୍ଟର ପ୍ରଫୁଲ୍ଲ କୁମାର ପତି ସମସ୍ତେ କଲେଜର ସବୁ ସଭା ସମିତିରେ ଯୋଗ ଦେବାର ଏକ ବାଧ୍ୟବାଧକତା ପାଳନ କରୁଥିଲେ। ତାହା ଆମକୁ ଯଥେଷ୍ଟ ଉତ୍ସାହ ଦେଉଥିଲା। ସେମିନାର୍, ତର୍କ ପ୍ରତିଯୋଗିତା ଗୁଡ଼ିକ ଚାରିଘଣ୍ଟା ପାଞ୍ଚ ଘଣ୍ଟାଯାଏ ଚିତ୍ତାକର୍ଷକ ହେଉଥିଲା।

ଆମର ତୃତୀୟ୍ ବର୍ଷ ବେଳକୁ ୧୯୫୩/୫୪ ମସିହାରେ ଡକ୍ଟର ପତି "ରେଭେନ୍‌ସାଭିଏନ୍" ମୁଖପତ୍ରର ସଂପାଦନା ଭାର ଗ୍ରହଣ କଲେ। ଟ୍ୟୁଟୋରିଏଲ କ୍ଲାସରେ ଆମକୁ ସମସ୍ତଙ୍କୁ ସେ ଗଳ୍ପ କବିତା ଇତ୍ୟାଦି ଲେଖିବାକୁ କହିଲେ। କ୍ଲାସ ଶେଷରେ ମୋ ଆଡ଼କୁ ଦେଖି, ଟିକିଏ ହସି ଦେଇ କହିଲେ, "ଶରତ, ହ୍ୱାଏ ଡ଼ୋଣ୍ଟ ୟୁ କଣ୍ଟ୍ରିବ୍ୟୁଟ୍ ସମଥିଂ ଫର ଦି କଲେଜ ମେଗାଜିନ୍ ?" ମୁଁ ଦାନ୍ତ ଦେଖାଇ, ବେକ କୁଣ୍ଡେଇ କଥାଟିକୁ ଥଟ୍ଟା ଭାବରେ ଗ୍ରହଣ କରି ନେଲି। କିନ୍ତୁ ବାରଣ୍ଡାରେ ଛିଡ଼ାହେଇ ଭାବିଲି, ସାରଙ୍କ ଏ "କଣ୍ଟ୍ରିବ୍ୟୁଟ ସମଥିଂ"ର ମାନେ କଣ ? ମନେ ପଡ଼ିଲା, ମୋର ଇଂରାଜି ଟ୍ୟୁଟୋରିଏଲ ଖାତାର କେତୋଟି ପୃଷ୍ଠାରେ ମୋ ଆଙ୍କିଥିବା କେତୋଟି "ଡୁଡ୍‌ଲି" ଦେଖି ସେ ଖୁସି ହେଇଥିଲେ। ମୁଁ ଭାବିଲି ସାର, ୟାକୁଇ "ସମଥିଂ" କହୁନାହାଁନ୍ତି ତ ?

ମୋର ମନରେ ସ୍ପୃହା ଜନ୍ମିଲା। ଦୁଇଟି ରାତି ଟେବୁଲ ଲେମ୍ପ ଜଳେଇ କୋଣାର୍କର ଲାସ୍ୟମୟୀ କଙ୍କାଳବାଦିନୀ ନାରୀ ମୂର୍ତ୍ତିଟିର ଆବକ୍ଷ "ପିନ୍‌ପଏଣ୍ଟ" ଇଣ୍ଡିଏନ ଇଙ୍କରେ

କଳାଧଳା ଚିତ୍ରଟିଏ ଆଙ୍କି ତିନିଦିନ ପରେ ସାରଙ୍କୁ ନେଇ ଦେଖେଇଲି । ସାର୍ ଖୁସିହୋଇ କହିଥିଲେ, "ଏଇଟା ତୁମେ ଆଙ୍କିଛ ? ଭଲ ହେଇଛି । ଏଇଟା ଏଥର ରେଭେନ୍ସାଭିଏନ୍‌ରେ ଛାପିବା ।" ୧୯୫୪ ଅଗଷ୍ଟ ବେଳକୁ ମୁଁ ପ୍ରୟାଗ ବିଶ୍ୱବିଦ୍ୟାଳୟକୁ ଚାଲି ଆସିଥିଲି । ଖବର ପାଇଲି କେବଳ ମୋର କଳାଧଳା କୋଣାର୍କର ନର୍ତ୍ତକୀ ଚିତ୍ରଟିହିଁ ମେଗାଜିନ୍‌ରେ ବାହାରିଥିଲା । ତାହାହିଁ ଥିଲା ମୋର ପ୍ରଥମ ଚିତ୍ର ଯାହା ମୁଦ୍ରଣଯୋଗ୍ୟ ବିବେଚିତ ହୋଇଥିଲା ।

୧୯୫୦ ଦଶକର ମଧ୍ୟ ଭାଗରେ ରେଭେନ୍ସା କଲେଜର ଛାତ୍ରମାନଙ୍କ ମଧ୍ୟରେ ପଶ୍ଚିମ ଓଡ଼ିଶାର ଛାତ୍ରଙ୍କ ସଂଖ୍ୟା ବିଶେଷ ଭାବରେ ସ୍ନାତକୋତ୍ତର ଶ୍ରେଣୀରେ ବେଶ ବଢ଼ି ଯାଇଥିଲା । ମୁଁ ବି.ଏ ଶ୍ରେଣୀର ଶେଷବର୍ଷର ଛାତ୍ର ଭାବରେ ଏମାନଙ୍କ ସହିତ ଭଲ ସଂପର୍କ ରଖିଥିଲି । ତେଣୁ ପୁରାତନ "ସମ୍ବଲପୁରୀ ଏସୋସିଏସନ" ନାମରେ ଏକ ସାଂସ୍କୃତିକ ଛାତ୍ର ଅନୁଷ୍ଠାନ ରେଭେନ୍ସା ଓ ଆଇନ କଲେଜ ପରିସରରେ ଖୁବ୍ ସକ୍ରିୟ ହୋଇ ଉଠିଲା । ଆମ ଛାତ୍ର ମାନଙ୍କ ପଛରେ ଦୃଢ଼ ଭାବରେ କେତେଜଣ ବରିଷ୍ଠ ଅଧ୍ୟାପକ ସହଯୋଗ କରୁଥିଲେ । ସେମାନେ ହେଲେ ପ୍ରଫେସର ଘନଶ୍ୟାମ ଦାଶ, ପ୍ରଫେସର ପର୍ଶୁରାମ ମିଶ୍ର, ପ୍ରଫେସର ପ୍ରହ୍ଲାଦ ପ୍ରଧାନ ଓ ଡକ୍ଟର ପ୍ରଫୁଲ୍ଲ ପତି । "ନୂଆ ଖାଇ" ପର୍ବ ପାଳନ ଯାହା ପଶ୍ଚିମାଞ୍ଚଳର ବିଶେଷତ୍ୱ ତାହାକୁ ଆମେ ଛାତ୍ରମାନେ ପାରିବାରିକ ଓ ସାମାଜିକ ସ୍ତରରେ ପାଳନ କରିବାର ଯୋଜନା କରିଥିଲୁଁ, କେବଳ ଛାତ୍ରମାନେ ନିଜ ଚେଷ୍ଟାରେ କଟକ ଓ ଭୁବନେଶ୍ୱର ସହରର ବାସିନ୍ଦାଙ୍କ ଭିତରେ କେତେଜଣ ବରିଷ୍ଠ ପଶ୍ଚିମାଞ୍ଚଳର ନାଗରିକ ମାନଙ୍କୁ ଠାବକରି, ତାଙ୍କଠାରୁ ଚାନ୍ଦା ସଂଗ୍ରହ କରି ଓ ଆମ ଏସୋସିଏସନର ସଭ୍ୟମାନେ ଆମ ଫି ମିଶେଇ ଜାକଜମକରେ ଆରମ୍ଭ କରିଥିଲୁ "ନୂଆଁଖାଇ ଭେଟଘାଟ୍" । ଏହାର ତିନୋଟି ଦିଗ ଥିଲା । ପ୍ରଥମରେ ଏହା ପ୍ରକୃତିର କୋଳରେ ପାଳନ କରାଯିବ । ଦ୍ୱିତୀୟରେ ଖାଦ୍ୟପେୟରେ ପଶ୍ଚିମାଞ୍ଚଳର ବୈଶିଷ୍ଟ୍ୟ ରହିବ । ତୃତୀୟରେ କେବଳ ପଶ୍ଚିମାଞ୍ଚଳର ଭାଷା, ଭାବ, ଗୀତ, ନୃତ୍ୟ ମାଧ୍ୟମରେ ପରସ୍ପର ପ୍ରତି ସୌହାର୍ଦ୍ଦ୍ୟ ଦେଖାଇବା । ଏହାକୁ ଏକ 'ପିକନିକ୍'ର ରୂପ ଦିଆ ଯାଉଥିଲା । ବରିଷ୍ଠ ନାଗରିକଙ୍କ ପରିବାରର ସମସ୍ତ ସଭ୍ୟ ଯେମିତି ଯୋଗ ଦେଇ ପାରିବେ, ସେଥିପାଇଁ, ବସ୍ ଯୋଗାଡ଼, ଡଙ୍ଗା ଯୋଗାଡ଼ ଟ୍ରେନର କନସେସନ ଟିକଟ ଯୋଗାଡ଼, ଖାଦ୍ୟପେୟର ସାରଞ୍ଜାମ ସୁଦୂର ପଶ୍ଚିମାଞ୍ଚଳରୁ ଯୋଗାଡ଼ କରିବା, ନୃତ୍ୟ ଗୀତର ଅଭ୍ୟାସ କରିବା ସବୁକାର୍ଯ୍ୟ କେବଳ ରେଭେନ୍ସା କଲେଜର ଛାତ୍ରମାନେହିଁ କରୁଥିଲେ । କୌଣସି ସରକାରୀ ସାହାଯ୍ୟ ବା ମନ୍ତ୍ରୀ ବିଧାୟକ ମାନଙ୍କ ସାହାଯ୍ୟକୁ ଅପେକ୍ଷା କରାଯାଉନଥିଲା । ଧବଳେଶ୍ୱର ମନ୍ଦିର ପ୍ରାଙ୍ଗଣ, ମହାନଦୀ ବିସ୍ତୀର୍ଣ୍ଣ ତୋଟାମାଳଥିବା ପଠା, ଖଣ୍ଡଗିରି ଉଦୟଗିରି ପାହାଡ଼ ଜଙ୍ଗଲ ପାଖ ଡ଼ାକବଙ୍ଗଳାମାନ ଆମର ନୂଆଖାଇ ଭେଟ୍‌ଘାଟ୍‌ର ସ୍ଥାନ ନିରୂପଣର ଜାଗାଥିଲା । "ଫାର ଫ୍ରମ୍ ଦି ମେଡେନିଂ କ୍ରାଉଡ଼ ।" ୧୯୬୦

ମସିହା ପରେ ଏହା ଧୀରେ ଧୀରେ କଟକର ରେଭେନ୍‌ସା କଲେଜ ହତାରୁ ଭୁବନେଶ୍ୱରର ବିଧାନସଭା ପରିଷଦକୁ ଚାଲି ଆସିଲା । କିନ୍ତୁ ସେତେବେଳର ଆମର ସାର୍‌ମାନଙ୍କର ପରିବାରର ସଭ୍ୟ ସଭ୍ୟାମାନେ ଯେତେ ଅକୁଣ୍ଠ ଉତ୍ସାହ ଆମକୁ ଦେଉଥିଲେ, ତାହା ଆଜି ଏବେ ଦେଖାଯାଉ ନାହିଁ ।

ଭାଗ୍ୟର ବିଡ଼ମ୍ବନାରେ, ମୋର ଶିକ୍ଷା ସମାପ୍ତି ସହିତ ମୋର ଜୀବନରେ ଅନେକ ଝଡ଼ଝଞ୍ଜା ବୋହିଗଲା । ମୁଁ ୧୯୫୮ରେ ଚଳଚ୍ଚିତ୍ରରେ ଅଭିନେତା ହେବା ସହିତ, ସେକ୍ରେଟେରୀଏଟ କିରାଣୀ ଚାକିରି କରି ୧୯୬୦ ବେଳକୁ ବରଗଡ଼ ପଞ୍ଚାୟତ କଲେଜର ଅର୍ଥନୀତି ଅଧ୍ୟାପକ ଭାବରେ ଯୋଗ ଦେଲି । ମୋଉପରେ ଏତେ ଦାୟିତ୍ୱ ଆସି ଅଜାଡ଼ି ପଡ଼ିଲାଯେ ମୁଁ ଅଣନିଶ୍ୱାସୀ ହୋଇଗଲି । ତଥାପି ମୋ ଛାତ୍ରଜୀବନର ଶିକ୍ଷକମାନଙ୍କର ସମବେଦନା ଓ ଦିଗ୍‌ଦର୍ଶନ ମୋତେ ମାର୍ଗ ଦର୍ଶନରେ ସାହାଯ୍ୟ କରିଥିଲା । ପ୍ରତ୍ୟେକ ସମସ୍ୟାକୁ ମୁକାବିଲା କରିବାକୁ ମୋ ସାର୍‌ମାନେ ମୋ ଭିତରେ ଅନେକ ସାହସ ଓ ଧୈର୍ଯ୍ୟ ଭରି ଦେଇଥିଲେ । ପାଞ୍ଚବର୍ଷରୁ ବେଶୀ ଅଧ୍ୟାପକ ଚାକିରି, ଅଧ୍ୟକ୍ଷର ଅନୁଭୂତି, ଦଶଟି ଚଳଚ୍ଚିତ୍ରର ଅଭିନୟକୁ ସମ୍ବଳକରି ମୁଁ ଏକ ଆହ୍ୱାନର ସମ୍ମୁଖୀନ ହେଲି ୧୯୬୮ ମସିହାରେ । ଗୋଟିଏ ଗ୍ରାମ୍ୟ ମୃତବତ୍ କଲେଜକୁ ଗଢ଼ି ତୋଳିବାର ଆହ୍ୱାନ !

ସେପ୍‌ଟେମ୍ବର ୧୯୬୮ ମାସରେ ମୁଁ ଲରମ୍ବା କଲେଜର ଦ୍ୱିତୀୟ ଅଧ୍ୟକ୍ଷ ଭାବରେ ପ୍ରଥମ ଅଧ୍ୟକ୍ଷ ଓ ମୋର ହାଇସ୍କୁଲର ଚାରିବର୍ଷର ହେଡ଼ମାଷ୍ଟ୍ର ଶ୍ରୀ ଖଗେନ୍ଦ୍ର ନାଥ ସେନଗୁପ୍ତଙ୍କ ଠାରୁ ଦାୟିତ୍ୱ ଗ୍ରହଣ କଲି । ମୁଁ ଏ ଅଧ୍ୟକ୍ଷ ପଦବୀ ପାଇଁ ପ୍ରତିଯୋଗିତା କରିନଥିଲି । ସାଧନା ବା ତପସ୍ୟା କରିନଥିଲି । ଡକ୍ଟର ପତିଙ୍କ ସହିତ ମୋର ସଂପର୍କ ଛିନ୍ନହୋଇ ସାରିଥିଲା । ଲରମ୍ବା କଲେଜର ଅଧ୍ୟକ୍ଷ ହେବା ସହିତ ସମ୍ବଲପୁର ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ଯୋଗୁ ମୋତେ କଲେଜ ପରିଚାଳନା ସମିତିର ବିଧିବଦ୍ଧ ସଂପାଦକର ଦାୟିତ୍ୱ ମଧ୍ୟ କାନ୍ଧରେ ବୋହିବାକୁ ପଡ଼ିଲା ।

ସମ୍ବଲପୁର ଓ ବୁର୍ଲା ସହରର ସବୁଠାରୁ ପାଖ ଗ୍ରାମୀଣ କଲେଜ ଭାବରେ ଲରମ୍ବା କଲେଜ ଉପରେ ସମସ୍ତଙ୍କ ନଜର ପଡିଲା । ବିଶ୍ୱବିଦ୍ୟାଳୟର ପ୍ରଫେସର ମାନଙ୍କ ମଧ୍ୟରେ ଡକ୍ଟର ପ୍ରଫୁଲ୍ଲ ପତି ମଧ୍ୟ ଥିଲେ । ତାଙ୍କର ଜଣେ ଛାତ୍ର, ଯେ ଏ ଭିତରେ ଜଣେ ନାଟକ ଓ ଚଳଚ୍ଚିତ୍ରର ଅଭିନେତା ଭାବରେ ପରିଚୟ ପାଉଛି, ଏ ଗ୍ରାମୀଣ କଲେଜକୁ କେମିତି ଚଲେଇବ ସେ ବିଷୟରେ ଡକ୍ଟର ପତି ମୂଳରୁ ତୀକ୍ଷ୍ଣ ଦୃଷ୍ଟି ପକେଇଥିଲେ । ଏହାର ମୁଖ୍ୟ କାରଣଥିଲା ଲରମ୍ବା ଗ୍ରାମର ପ୍ରାଇମେରୀ ସ୍କୁଲ ଠାରୁ କଲେଜ ପର୍ଯ୍ୟନ୍ତ ଯେଉଁ ବ୍ୟକ୍ତି ପ୍ରତିଷ୍ଠା କରିଥିଲେ, ସେହି ପୂଜ୍ୟ ଶ୍ରୀ ବ୍ରଜମୋହନ ପଣ୍ଡା ଆମ ଅଞ୍ଚଳର ସମସ୍ତଙ୍କର ନମସ୍ୟ ଥିଲେ । ୧୯୬୫ ମସିହାରେ ତାଙ୍କର ତିରୋଧାନ ପରେ ଏ ରୁଗ୍‌ଣ କଲେଜଟି କିପରି ଗଢ଼ାଯାଇପାରିବ ସେ ବିଷୟରେ ଆମ ଅଞ୍ଚଳର ସବୁ ଶିକ୍ଷାପ୍ରେମୀ ଜନତା ଚିନ୍ତିତ ଥିଲେ ।

ବହୁଦିନ ପରେ ଡକ୍ଟର ପ୍ରଫୁଲ୍ଲ ପତିଙ୍କ ସହିତ ମୋର ଦେଖାହେଲା । ଆମ ସଂପର୍କରେ ସେମିତି କିଛି ପରିବର୍ତ୍ତନ ନଥିଲା । ମୁଁ ୧୯୫୧ ମସିହାର ଟ୍ୟୁଟରିଅଲ କ୍ଲାସର ଛାତ୍ର ଭାବରେ ଦେଖା ଯାଉଥିଲି ଓ ସାର ତାଙ୍କ ମୋଟା ଚଷମା ଭିତରୁ ମୋତେ ଅନେଇଲେ ମୁଁ ତଟସ୍ଥ ହେଇଯାଉଥିଲି । ଭିତରେ କିଛି ସାରମର୍ମ ନଥାଇ ଉପରେ ଉପରେ ଗୋଲଅକ୍ଷରରେ ମେକଅପ୍ ଦେଇ ସାର୍‌ଙ୍କର ଏ ଛାତ୍ରଟି କେମିତି ଅଧ୍ୟକ୍ଷ ଓ ସଂପାଦକର କାର୍ଯ୍ୟ କରୁଛି ସେଥିପ୍ରତି କିନ୍ତୁ ସାରଙ୍କର ମୋ ଅଜାଣତରେ ତୀକ୍ଷ୍ଣ ଦୃଷ୍ଟି ରହିଥିଲା ୧୯୬୮ ମସିହାରୁ ।

ପ୍ରତିବର୍ଷର କଲେଜ୍ କ୍ୟାଲେଣ୍ଡର ଓ ମେଗେଜିନ୍ ଠିକଣା ସମୟରେ ଛପେଇବା ଓ ସେଗୁଡ଼ିକ ଶିକ୍ଷାବିତ୍ ମାନଙ୍କୁ ପଠେଇବାର ମୋର ଅଭ୍ୟାସ ସାରଙ୍କୁ ବୋଧହୁଏ ଭଲ ଲାଗୁଥିଲା । କାରଣ ସାର୍‌ହିଁ ଏକମାତ୍ର ପାଠକ, ଯେ କେଲେଣ୍ଡର ଓ ମେଗେଜିନଟି ପଢ଼ିସାରି ଅନ୍ତତଃ ଗୋଟିଏ ପୋଷ୍ଟକାର୍ଡରେ ପ୍ରାପ୍ତି ସ୍ୱୀକାର କରି, ଭଲ ମନ୍ଦ, ଉଚିତ ଅନୁଚିତ ବିଷୟରେ ପଦେ ଅଧେ ତାଙ୍କର ୧୯୫୪ ମସିହାର ସିଧାସଳଖ ଛାତ୍ରଟିକୁ ଜଣାଇ ଦେଉଥିଲେ । ନିଶ୍ଚୟ ସାର୍‌ଙ୍କର ଏ ଅଭ୍ୟାସଟି ସୌଜନ୍ୟ ଦୃଷ୍ଟିରୁ ନହୋଇ ଗୁରୁଶିଷ୍ୟ ସଂପର୍କ ଯୋଗୁ ହେଉଥିଲା, ମୁଁ ତାହା ଉପଲବ୍ଧି କରୁଥିଲି । ସେ କଲେଜ୍ ବୁଲି ଦେଖୁଥିଲେ । ବ୍ରଜମୋହନ ବାବୁଙ୍କ ଦର୍ଶନକୁ ସ୍ମରଣ କରାଇ ଦେଉଥିଲେ ଛାତ୍ର ଓ ଶିକ୍ଷକମାନଙ୍କୁ ।

ମୋର ଲରମ୍ବା କଲେଜର ଅଧ୍ୟକ୍ଷ ଚାକିରୀ କରିବାର କୋଡ଼ିଏ ବର୍ଷ ପୂରିଲା । ବରିଷ୍ଠ ପୁରାତନ ଛାତ୍ର ଭାବରେ, ଲରମ୍ବା କଲେଜ ଅଧ୍ୟକ୍ଷ ଭାବରେ ମୋତେ ଉଚ୍ଚ ବିଦ୍ୟାଳୟର ସୁବର୍ଣ୍ଣ ଜୟନ୍ତୀ ପାଳନ ଓ ପ୍ରତିଷ୍ଠାତା ବ୍ରଜମୋହନଙ୍କ ଶତବାର୍ଷିକୀ ପାଳନ କରିବାର ଦାୟିତ୍ୱ ଦିଆଗଲା । ୧୯୮୯ ଓ ୧୯୯୦ ମସିହାରେ ଏହା ସୁଚାରୁ ରୂପେ ସଂପାଦନ କରିବା ପରେ ଲରମ୍ବା କଲେଜର ରୌପ୍ୟ ଜୟନ୍ତୀ ପାଳନର ପ୍ରସ୍ତାବ ଆସିଲା ।

ଅନେକ ପରିଶ୍ରମ କରି ୧୯୪୫ ମସିହାର ବହୁ ପୁରାତନ ଚିଠିପତ୍ର, ରେକର୍ଡ, ଫଟୋ ଚିତ୍ର ଓ ତଥ୍ୟ ସଂଗ୍ରହ କରି ମୋର ବ୍ୟକ୍ତିଗତ ଫଟୋ ଓ ଚିତ୍ର ସେଥିରେ ଯୋଡ଼ି ଗୋଟିଏ ସ୍ୱୟଂ ସଂପୂର୍ଣ୍ଣ ରୌପ୍ୟ ଜୟନ୍ତୀ ସ୍ମରଣିକା ପ୍ରକାଶ କରିବାକୁ ମନସ୍ଥ କଲି । ବ୍ରଜମୋହନ ପଣ୍ଡାଙ୍କ ଅମଳର ସମସ୍ତଙ୍କୁ ଅନୁରୋଧ କରିଥିଲି ଲେଖା ଦେବା ପାଇଁ । ଡକ୍ଟର ପ୍ରଫୁଲ୍ଲ ପତିଙ୍କୁ ମଧ୍ୟ ଅନୁରୋଧ କଲି ଲେଖାଟିଏ ଦେବା ପାଇଁ । କାଳବିଳମ୍ବ ନକରି ଲେଖାଟି ପହଞ୍ଚିଲା ।

ଏ କୋଡ଼ିଏ ବର୍ଷ ଭିତରେ ଡକ୍ଟର ପ୍ରଫୁଲ୍ଲ ପତି, ସମ୍ବଲପୁର ବିଶ୍ୱବିଦ୍ୟାଳୟର ଇଂରାଜି ବିଭାଗର ମୁଖ୍ୟ, ସିଣ୍ଡିକେଟ୍ ଓ ସିନେଟ ସଭ୍ୟ, କୁଳପତି ପଦବୀ ମଣ୍ଡନ କରିବାପରେ ଓ.ପି.ଏସ୍.ସି ର ଜଣେ ସଭ୍ୟ ଭାବରେ ନିଯୋଜିତ ହୋଇ ଅବସର ନେଇଥିଲେ । ସମ୍ବଲପୁର ମୋତିଝରଣ ଠାରେ ନିଜର ବାସଗୃହରେ ସସ୍ତ୍ରୀକ ଅବସ୍ଥାନ କରୁଥିଲେ । ମୁଁ ସାର୍‌ଙ୍କୁ ଯେତିକିବର୍ଷ ଦେଖିଛି, ଗୋଟିଏ ବିଶେଷ ଗୁଣ ଯାହା ସାରଙ୍କ ନିଷ୍ଠାପରତା ଓ

କ୍ରିୟାଶୀଳତା ଉପରେ ପ୍ରଭାବ ପକାଉଥିଲା ସେ ହେଉଛି ଶ୍ରୀମତୀ ପତିଙ୍କ ସାହଚାର୍ଯ୍ୟ । ମୁଁ ମୋ ସାର ମାନଙ୍କ ଭିତରେ ଏମିତି ଗୋଟିଏ ଦମ୍ପତି କ୍ୱଚିତ୍ ଦେଖିଛି । ଶେଷଜୀବନ ଯାଏ ଡକ୍ଟର ପତି ବଡ଼ ଭାଗ୍ୟବାନ ଥିଲେ । ଶ୍ରୀମତୀ ପତି ଏଥିପାଇଁ ମୋର ନମସ୍ୟା ।

ଡକ୍ଟର ପତିଙ୍କ ଲେଖାର ଶୀର୍ଷକ ଥିଲା, "ଏକ ଆଦର୍ଶ କଲେଜ, ଲରମ୍ବା କଲେଜ"। ଦୀର୍ଘ ପଚାଶବର୍ଷର ଅଧ୍ୟାପନା, ଗବେଷଣା, ପ୍ରଶାସନ, ଅଧ୍ୟକ୍ଷତା କରିବା ଜଣେ ଅବସରପ୍ରାପ୍ତ କୁଳପତି ଓ ଓ.ପି.ଏସ୍.ସି.ର ମାନ୍ୟବର ସଭ୍ୟ ଲେଖିଲେ, "କଲେଜ ନାଁ ଶୁଣିଲେ, ଆମ ପୁରୁଣା ଲୋକଙ୍କ ମନକୁ ନାନା ପ୍ରକାରର ଦୁର୍ଭାବନା ଆସେ। ଦୁର୍ଭାଗ୍ୟବଶତଃ ସ୍ୱାଧୀନ ଭାରତରେ କଲେଜଗୁଡ଼ିକ ରୋଗାକ୍ରାନ୍ତ ହୋଇ ଯାଇଛନ୍ତି । ଶିକ୍ଷା ପଦ୍ଧତିର ସଂସ୍କାର କରାଗଲା ନାହିଁ । ତେଣୁ ଛାତ୍ରମାନଙ୍କର ଜ୍ଞାନ ଆହରଣର ଆଗ୍ରହ ନାହିଁ । ତାଙ୍କର ଲୋଡ଼ା କେବଳ ଗୋଟାଏ ଡିଗ୍ରୀ । ପରୀକ୍ଷାରେ ନୋଟବହିରୁ କପିକରି ଭଲ ମାର୍କ ପାଇଲେ ହେଲା । ଯୁବକମାନେ ତ ଫେର୍ କିଛି କରିବେ ! ସେମାନେ ଯେ ଜୀବନ୍ତ । ତେଣୁ ଛାତ୍ରମାନଙ୍କର ଜୀବନୀଶକ୍ତି ବିଭିନ୍ନ ଉଦ୍ଭଟ ରୂପ ଧାରଣ କରିଛି- ଛାତ୍ର ରାଜନୀତି, ଦଳାଦଳି, ମାରପିଟ ଇତ୍ୟାଦି ଇତ୍ୟାଦି । ତା' ସହିତ ଯୋଡ଼ି ହେଇ ଯାଉଛି ଅଧ୍ୟାପକ ମାନଙ୍କର ଶିଥିଳତା ଓ ଶିକ୍ଷାଦାନର ବୀତସ୍ପୃହତା । ଫଳରେ କଲେଜ ଗୁଡ଼ିକ ରାଜନୈତିକ ଦଳମାନଙ୍କର ଚରାଭୂଇଁ ହୋଇଛନ୍ତି- । ଆଶ୍ୱାସନାର ବିଷୟର ହେଉଛି ଯେ ଏବେ ମଧ୍ୟ ଏହି ମରୁଭୂମିରେ ମଝିରେ ମଝିରେ ମରୁଦ୍ୟାନ ଦେଖିବାକୁ ମିଳେ । ଅର୍ଥାତ୍ କେତୋଟି କଲେଜର ଅବସ୍ଥା ଓ ମାନର ଅବକ୍ଷୟ ହୋଇନାହିଁ- । ଲରମ୍ବା କଲେଜ ସେଥିମଧ୍ୟରୁ ଅନ୍ୟତମ ।" "..... ଯେକୌଣସି କଲେଜ ହେଉଛି ଜିଜ୍ଞାସୁ ଓ ଜ୍ଞାନପିପାସୁ ମାନଙ୍କର ମିଳନ ପୀଠ ।" ".....କଲେଜିୟମ୍‌ର ପରଂପରା ଥିଲା ସ୍ୱାୟତ୍ତ ଶାସନ ଅର୍ଥାତ୍ ଜଣେ ମୁଖ୍ୟ ଅଧ୍ୟାପକ (Principal)ର ତତ୍ତ୍ୱାବଧାନରେ ଅଧ୍ୟାପକ ଓ ବିଦ୍ୟାର୍ଥୀମାନେ ନିଜକଥା ନିଜେ ବୁଝିବେ । ସରକାର କିମ୍ବା ବାହାରର କୌଣସି ବ୍ୟକ୍ତି ଏଥିରେ ହସ୍ତକ୍ଷେପ କରିବେ ନାହିଁ ।".... "ଲରମ୍ବା କଲେଜ ଏହି ଆଦର୍ଶକୁ ଅନେକାଂଶରେ ରୂପାୟିତ କରି ପାରିଛି ।" .... "ଗୋଡ଼ଭଗା ତୁରୁମ ସଡ଼କର ବ୍ୟସ୍ତ ପର୍ଯ୍ୟାବରଣକୁ ପଛରେ ପକାଇ ଆଗନ୍ତୁକ କଲେଜ ରାସ୍ତାରେ ପ୍ରବେଶ କଲେ ସେ ଏକ ଶାନ୍ତ ଓ ସ୍ନିଗ୍ଧ ପରିବେଶରେ ଉପନୀତ ହୁଏ । ପ୍ରାଚୀନ ଭାରତର ଆଶ୍ରମର ଆଭାସ ତା' ମନକୁ ଆପେ ଆପେ ଆସେ । ଏହି କଲେଜରେ ପଢ଼ାପଢ଼ି ରୀତିମତ ହୁଏ । ପରୀକ୍ଷା ପରିଚାଳନାରେ କେବେ କୌଣସି ବିଭ୍ରାଟ ହୋଇନାହିଁ । ଲରମ୍ବା କଲେଜର ଛାତ୍ରଛାତ୍ରୀମାନେ ସମାଜସେବା ତଥା ସାଂସ୍କୃତିକ କାର୍ଯ୍ୟକ୍ରମରେ ସର୍ବଦା ଅଗ୍ରଣୀ । କଲେଜ ଖେଳ ଓ NCC କାର୍ଯ୍ୟକ୍ରମରେ ମଧ୍ୟ ଉଚିତ୍ ସ୍ଥାନ ଦେଇଥାଏ । କେବଳ ଅଧ୍ୟାପନାରେ ନୁହେଁ ଗବେଷଣାରେ ମଧ୍ୟ ଅଧ୍ୟାପକମାନେ ନିଜ ନିଜକୁ ନିୟୋଜିତ କରନ୍ତି ।" ..... ଏ ସମୀକ୍ଷା ଦେଖି ମୋର ପେଟ ପୁରିଗଲା । ଟ୍ୟୁଟୋରିଆଲ ଖାତାରେ ସାର୍

ମତେ ଦଶରୁ ୮.୫ ମାର୍କ ଦେଲା ପରି ଲାଗିଲା । ଆଜିକାଲି ସିନା ଇଂରାଜିରେ ଶହେରୁ ୯୭/୯୮ ମାର୍କ ସହଜରେ ମିଳିଯାଉଛି । ଆମେ ବେଳକୁ ଦଶରୁ ଛ ମାର୍କ ପାଇବା କାଠିକର ପାଠଥିଲା । ମୁଁ ରୌପ୍ୟ ଜୟନ୍ତୀ ଉତ୍ସବ ସମାପନ ପରେ "ସ୍ମରଣିକା"ଟିକୁ ସମସ୍ତଙ୍କ ପାଖକୁ ଡାକରେ ପଠେଇ ଦେଲି । ସବୁବର୍ଷ ପରି ୧୯୯୧ ମସିହା ଅଗଷ୍ଟ ମାସରେ, ଡକ୍ଟର ପ୍ରଫୁଲ୍ଲ ପତିଙ୍କ ପାଖରୁ ବ୍ୟକ୍ତିଗତ ଚିଠି ମୁଁ ପାଇଲି । ଚିଠିଟି ଇଂରାଜିରେ ଲିଖିତ । ମୁଁ ଅନୁବାଦ କରିବାର ଆସ୍ପର୍ଦ୍ଧା କରିବି ନାହିଁ । ଚିଠିଟି ଏହିପରି :-

Motijharan, Sambalpur
Aug. 16, 1991

My dear Sarat,

Please don't mind that I am addressing you by your first name. It is because my heart is full. I have gone through your Silver Jubilee Souvenir. It has both facts and beauty; it gives both information and pleasure. The photographs and pictures make the souvenir more effective as a medium of communication – the visual effect is added to the cognitive apprehension. All the articles, except one, are good. The articles have approached the theme from various angles.

The college has crossed a milestone, but will move on that road with the same zeal and purposefulness as it has shown till today. I will not be surprised if the college celebrates its golden jubilee under your leadership.

Please accept my greetings and convey the same to all concerned.

With best wishes,

Yours affectionately,
Prafulla Kumar Pati

ସାର୍‌ଙ୍କ ବୟସ ସେତେବେଳେ ନିଶ୍ଚୟ ପଞ୍ଚସ୍ତରୀ ବର୍ଷରୁ ବେଶୀ । ମୁଁ ତିନିବର୍ଷ ପରେ ଅବସର ନେଲି । କିନ୍ତୁ ଭାବୋଚ୍ଛ୍ୱାସରେ ମୋର ପଚିଶବର୍ଷ ବଢ଼େଇ ଦେବାର ଯେଉଁ ଆଶୀର୍ବାଦ ଜଣାଇଲେ, ତା'ର ମୂଲ୍ୟାଙ୍କନ କରିବାକୁ ମୁଁ କେବେ ଚାହିଁନାହିଁ । ଜଣେ ଅତିପ୍ରିୟ ଛାତ୍ରକୁ ଶିକ୍ଷକଟିଏ ଏମିତି ଆଶିଷ ଦେଇପାରେ ।

ମୋର ଅବସର ନେବାର ବାରବର୍ଷ ପରେ, ଲରମ୍ବା କଲେଜ ପ୍ରତିଷ୍ଠା ହେବାର ବୟାଳିଶ ବର୍ଷପରେ, ସାରଙ୍କ ଦେହାନ୍ତ ହେବାର ତିନିମାସପରେ ଭାରତ ସରକାରଙ୍କ

NAAC ସଂସ୍ଥା ଲରମ୍ବା କଲେଜର ମୂଲ୍ୟାଙ୍କନ କରିବାକୁ ଏପ୍ରିଲ ୨୦୦୬ ମସିହାରେ ଲରମ୍ବା କଲେଜ ଓ ଗ୍ରାମାଞ୍ଚଳ ତିନିଦିନ ବୁଲି ଦେଖିଲେ ।

ତାଙ୍କର ମୂଲ୍ୟାଙ୍କନର ରିପୋର୍ଟରେ ଲରମ୍ବା କଲେଜର ଯାହା ବୈଶିଷ୍ଟ୍ୟ ତାହା ଉପରେ ପନ୍ଦରଟି ଗୁଣର ବର୍ଣ୍ଣନା କରିଦେଇ ଗଲେ । ଏହାର ଏକକିତା ନକଲ ମୋ' ପାଖରେ ଆସି ପହଞ୍ଚିଲା । ଏହାର ଭାବାନୁବାଦ ମୁଁ ଉପସ୍ଥାପନ କରୁଛି । "୧୯୬୪ ରୁ ପ୍ରତିଷ୍ଠିତ ଗ୍ରାମୀଣ କଲେଜଟି ଗ୍ରାମ୍ୟ ପରିବେଶରେ ଥାଇ ମଧ୍ୟ ଆଖପାଖର ଶିକ୍ଷାନବିଶମାନଙ୍କୁ ଖୁବ ଭଲ ଭାବରେ ଆକର୍ଷିତ କରିପାରିଛି- ବିଶେଷରେ ଛାତ୍ରୀମାନଙ୍କୁ । ୧୮.୦୨ ଏକରର ସବୁକିମା ଭରା ଏକ ଖୋଲା ଶାନ୍ତ ବାତାବରଣରେ ଏକ ସ୍ନାତକ ବିଜ୍ଞାନ କଲେଜର ସମସ୍ତ ଭିତ୍ତିଭୂମି ଥାଇ ଲରମ୍ବା କଲେଜ ଗଡ଼ିଉଠିଛି । ଚାରୋଟି ଛାତ୍ରାବାସ ୩୪୦ ଜଣ ଛାତ୍ରଛାତ୍ରୀ ମାନଙ୍କୁ ବାସଉପଯୋଗୀ ସମସ୍ତ ସୁବିଧା ଯୋଗାଇ ଥିବାରୁ ଏହା ଏକ ଆବାସିକ ବନ ବିଦ୍ୟାଳୟ ବା "ଗୁରୁକୂଳ"ର ପରିବେଶ ସୃଷ୍ଟି କରୁଛି । ଶିକ୍ଷକମାନଙ୍କ ବାସଗୃହ ଯୋଗାଣ, ସମୟାନୁବର୍ତ୍ତୀ ଶିକ୍ଷାଦାନ, ଉଚ୍ଚତର ନିରାପତ୍ତା, ଆତ୍ମସମୀକ୍ଷା ଓ ସେବାର ନିରନ୍ତର ସୁଯୋଗ ଯୋଗାଉଛି । ଭଲ ସଂଖ୍ୟାରେ ପି.ଏଚ୍‌ଡି ଓ ଏମ୍.ଫିଲ ଡିଗ୍ରୀ ପ୍ରାପ୍ତ ଅଧ୍ୟାପକଗଣ ଗବେଷଣାରେ ସାହାଯ୍ୟ କରିପାରୁଛନ୍ତି । ସବୁ ପ୍ରକାରର ଘର ଭିତରର ଖେଳ ଓ ବାହ୍ୟ ଖେଳକୁଦର ବ୍ୟବସ୍ଥା, ଏକ ବହୁମୁଖୀ ବ୍ୟାୟାମାଗାରର ଭିତ୍ତିଭୂମି, ସମର ଶିକ୍ଷାର୍ଥୀ ବାହିନୀ ଓ ଜାତୀୟ ସେବା ସଂସ୍ଥାର ସକ୍ରିୟ ନିରବଚ୍ଛିନ୍ନ ସାହାଯ୍ୟ ଛାତ୍ରଛାତ୍ରୀ ମାନଙ୍କ ପାଇଁ ଓ ଗ୍ରାମାଞ୍ଚଳର ସାଧାରଣ ଜନତା ପାଇଁ ଉପଲବ୍ଧ ହୋଇ ପାରୁଛି.... ଇତ୍ୟାଦି... ଇତ୍ୟାଦି ।"

ଏ ରିପୋର୍ଟର ସମୀକ୍ଷା ପଢ଼ିବାପରେ ଯେକୌଣସି ପୁରାତନ ଅଧ୍ୟକ୍ଷର ଆଖି ଆନନ୍ଦାଶ୍ରୁରେ ଭରିଯିବ । ଯେ ଚବିଶ ବର୍ଷର ଅକ୍ଳାନ୍ତ ପରିଶ୍ରମରେ ଏକ ରଢ଼ିବାଦୀ ଚିନ୍ତା ଚେତନା, ଅନୁଶାସନ ଓ ଆଦର୍ଶକୁ ଲକ୍ଷ୍ୟରଖି ସମସ୍ତ ପ୍ରତିକୂଳ ପରିସ୍ଥିତିରେ ଦୀର୍ଘ ଚାଳିଶବର୍ଷଯାଏ ଏହାକୁ ବଞ୍ଚାଇ ରଖିଥିଲା । ତାହା ପ୍ରାଦେଶିକ ସ୍ତରରେ ସ୍ୱୀକୃତି ନପାଇଲେ ମଧ୍ୟ ଜାତୀୟ ସ୍ତରରେ ତ ପରିଚୟ ପାଇଲା ।

ସେଇ ଶିକ୍ଷାନବିସଟି ଓ ତା'ର ପଚାଶ ବର୍ଷ ପର୍ଯ୍ୟନ୍ତ ଟ୍ୟୁଟୋରିଏଲ ଖାତାରେ ମାର୍କ ଚଢ଼ାଉଥିବା ଇଂରାଜି ଅଧ୍ୟାପକଟି ସ୍ୱର୍ଗରେ ଥାଇ ମଧ୍ୟ ନିର୍ଭୁଲ ସମୀକ୍ଷାକରି ଆଶିଷ ବାରି ଝରାଇ ଚାଲିଥିବେ ଏ ବିଶ୍ୱାସ ତା'ର ଅନୁଭୂତି ହେଉଛି । ସେଥିପାଇଁ ଏ ଅଧମ ଛାତ୍ରଟି ତା'ର ସାରଙ୍କୁ ଶେଷଥର ଆଖିବୁଜି ହେଇ ଯିବାଯାଏ ସମ୍ମାନ ଜଣାଉଥିବ । ସେଥିରେ ହିଁ ତା'ର ସମସ୍ତ ଗୌରବ ଓ ଗର୍ବ ।

ମୋ' ସାର ଡକ୍ଟର ପ୍ରଫୁଲ୍ଲ ପତି- ଜଣେ ଆଦର୍ଶ, ଏକ ଅନୁଶାସନର ପ୍ରତୀକ, ଏକ ଦର୍ଶନ । ସେ ଜଣେ ଗୁରୁ ଓ ତାହାହିଁ ମୋର ଗର୍ବ !



# ବିଦାୟ୍ ବନ୍ଧୁ ବିଶ୍ୱଜିତ୍ !

ଏମିତି ନାଟକୀୟ ଭାବରେ ସମସ୍ତଙ୍କ ଆଖି ସାମନାରୁ ଚାଲି ଯିବାର ଅଭିନୟ କେହି କେବେ ଦେଖି ନଥିବେ। ସେଇ ଜଣକ ସେମିତି ଆମ ସମସ୍ତଙ୍କୁ ଆଚମ୍ବିତ କରି ଦେଇଗଲା। ହତବାକ୍ କରିଦେଲା ୨୦୦୪ ମସିହା ଡ଼ିସେଂବର ତିରିଶ ତାରିଖ ସନ୍ଧ୍ୟା ୫ଟା ବେଳେ। ଓଡ଼ିଶା ସାହିତ୍ୟ ଏକାଡ଼େମୀର ଭବ୍ୟ ସଭାର ମୁଖ୍ୟବକ୍ତା ଆସନ ଅଳଙ୍କୃତ କରି ସାହିତ୍ୟିକ ଓ ନାଟ୍ୟକାର ମାନଙ୍କୁ ବକ୍ତବ୍ୟ ଦେବା ଛଳରେ, ନାଟକର ଓ ଜୀବନର ଅନ୍ତିମ ସତ୍ୟକୁ ଅଭିନୟ କରି ଚାଲିଗଲା। ଓଡ଼ିଆ ସାହିତ୍ୟ ଓ ନାଟକ ଇତିହାସରେ ଏହା ଅଭୁଲା ହେଇ ରହିଗଲା।

ପଚାଶବର୍ଷ ତଳେ ରେଭେନ୍ସା କଲେଜରେ ପଢ଼ିଲାବେଳେ ତମେ ଆମ ସାଥୀ ହେଇଥିଲ ନା ବିଶ୍ୱଜିତ୍। ମୁଁ ନାଟ୍ୟ ସଂପାଦକ ଓ ତୁମେ ମୋର ସହ ସଂପାଦକ। ଦୀର୍ଘ ଦିନର ସଂପର୍କ ଭିତରେ ତମେ ସେମିତି ଜଣେ ନିରହଂକାରୀ ବନ୍ଧୁ ହେଇ ରହିଗଲ। କେବେ ଆମେ ତମକୁ ସଂପୂର୍ଣ୍ଣ ଭାବରେ ଚିହ୍ନିପାରିଲୁ ନାହିଁ। ବାପା ସୁବୋଧ ଦାସଙ୍କ ପାଖରୁ ତୁମେ ଲେଖିବାର ପ୍ରେରଣା ପାଇଥିଲ। ତମ ପଛରେ ଲାଗି ନାଟକ ଲେଖେଇଲୁ ଆମେ। ୧୯୫୬ ରୁ ୧୯୬୦ ଭିତରେ ତମେ କେତେ କ୍ଷୁଦ୍ରନାଟକ ଲେଖିଲ ତା'ର ହିସାବ ତମ ପାଖରେ ନଥିଲା। ଏବେବି ତା' ତୁମେ ଖୋଜି ପାଇନାହଁ। ସବୁଗୁଡ଼ାକ ଏକାଙ୍କିକା। ତା'ଭିତରେ ଅନନ୍ତ, ହେମନ୍ତ, ଶଚ୍ଚି ଦାସ, ସୁଷମା, ରାଧାରାଣୀ ଓ ମୁଁ ତୁମ ଲେଖାର ସଂପୂର୍ଣ୍ଣ ଫାଇଦା ଉଠେଇ ପ୍ରତିଷ୍ଠା ପାଇଗଲୁ। ଅଧ ରାତିରେ କଟକର ଡଗରପଡ଼ା ଘରୁ ତୁମକୁ ଉଠେଇ ଆଣି ନାଟକ ଲେଖାଇଛୁ। ସୌଖୀନ ନାଟକର ନବନାଟ୍ୟ ଯୁଗର କଥା। ପାଠପଢ଼ା ପର ପେଟପାଟଣା ଚିନ୍ତାରେ କିଏ କୁଆଡ଼େ ଏପଟସେପଟ ହେଇଗଲୁ ଆମେ ସମସ୍ତେ !

ଦୀର୍ଘ ପଚାଶ ବର୍ଷ ଯାଏ ତୁମେ ତୁମ ଚାକିରି ଜୀବନର ଅଧିକାଂଶ ସମୟ ଭୁବନେଶ୍ୱରରେ ରହିଲ। ଆମ ପରେ ଆମ ପର ପିଢ଼ିର ହଜାର ହଜାର ନାଟକ ପ୍ରିୟ ଲୋକେ ତମ ପାଖରେ ଜମା ହେଲେ। ତମେ ଓଡ଼ିଆ ନବନାଟ୍ୟ ଆନ୍ଦୋଳନର ଜଣେ ପୁରୋଧା ହେଇ କେତେ ଯେ ନାଟକ ଲେଖିଲ, ନିର୍ଦ୍ଦେଶନା ଦେଲ, ଅଭିନୟ କଲ, ସଂଗଠନ ଗଢ଼ିଲ ତାହାର ଉପକାର ସମସ୍ତଙ୍କୁ ମିଳିଲା। ଯେତେ ଦୂରରେ ଥିଲେ ମଧ୍ୟ ତମ ପ୍ରତିଭାର ଛିଟା ଆମ ଉପରେ ବି ପଡ଼ିଛି।

ତମ ସଂସାର, ଘର ପରିବାରର ଖବର ତମେ ସେତେ ରଖୁନଥିଲ। ଆମେ ଜାଣିବାରେ ତମ ଅର୍ଦ୍ଧାଙ୍ଗିନୀହିଁ ସେକଥା ବୁଝୁଥିଲେ। ତମ ଅଫିସ କାମ ଛଡ଼ା ଖୋଲାଖୋଲି

ଭାବେ ତମେ ଯେ ନାଟକ ସହିତ ପ୍ରେମ ଫାଶରେ ଆବଦ୍ଧ ହେଇଯାଇଥିଲ, ସେ କଥା ତୁମ କର୍ତ୍ତୃପକ୍ଷବି ଜାଣିଥିଲେ। ନାଟକ ପରେ ଚଳଚ୍ଚିତ୍ରରେ ମଧ୍ୟ ହାତ ଦେଇଥିଲ। ହେଲେ ତମର ପ୍ରଥମ ପ୍ରେମିକା ନାଟକକୁ ତୁମେ ଶେଷ ଜୀବନଯାଏ ଛାଡ଼ି ପାରିଲ ନାହିଁ। ଭଞ୍ଜମଣ୍ଡପରେ ଏବେବି ତୁମର "ସେଇ ତିନିଜଣ" ଅଭିନୀତ ହେଉଛି। ମୋପାଇଁ କିନ୍ତୁ ତୁମେ ସେଇ ଜଣେ। କେବଳ ଆମର ଅନ୍ତରଂଗ ବନ୍ଧୁଟିଏ ହେଇ ରହିଗଲ। ମୋର ମନେ ପଡୁଛି ଏକ ନମ୍ବର ମାର୍କେଟ ବିଲଡିଂ ପାଖ କ୍ୱାଟର୍ସ ପାଖରେ ଗୋଟିଏ ବର୍ଷର ଡିସେମ୍ବର ୩୧ ତାରିଖର ସାରାରାତିର କବିତା ଆସର। ମୋତେ ନିମନ୍ତ୍ରଣ କରି ଆପ୍ୟାୟିତ କରିଥିଲ ସାରାରାତି ତୁମେ ତୁମ ଭୁବନେଶ୍ୱର ବନ୍ଧୁ ଗହଣରେ- ।

ଜୀବନଟା କେତେବଡ଼ "ମୁସ୍କିଲ" ପଦାର୍ଥଟିଏ, ତାକୁ ତୁମେ ତୁମ ନାଟକରେ ସବୁବେଳେ ଦେଖେଇବାକୁ ଚାହୁଁଥିଲ। ଘଟଣାଠାରୁ ଚରିତ୍ର ତମ ପାଖରେ ମୁଖ୍ୟଥିଲା। ତୁମର ଅସଂଖ୍ୟ ସାଧାରଣ ଓ ଅସାଧାରଣ ଚରିତ୍ର ଭିତରେ ସମ୍ରାଟଠାରୁ ରାଜାରାଣୀ ପର୍ଯ୍ୟନ୍ତ, ମନ୍ତ୍ରୀଠାରୁ ଗଳିମୁଣ୍ଡର ଅଧସ୍ତନ ଚାକିରିଆଯାଏ ଓ ରାସ୍ତାର ମଳିମୁଣ୍ଡିଆ ମଣିଷଟିର ମାନସିକ ଦ୍ୱନ୍ଦକୁ ଉପସ୍ଥାପନା କରିବାର କ୍ଷମତା ଥିଲା ଅସାଧାରଣ। ତୁମର ନାଟକରେ ହାସ୍ୟରସର ପ୍ରୟୋଗ ଥିଲା ସଂପୂର୍ଣ୍ଣ ଚାର୍ଲିଚାପଲିନ୍ ଢଙ୍ଗର। ତାକୁ ଅନୁକରଣ କରିବାର ସାହସ ଆଜିଯାଏ କୌଣସି ଓଡିଆ ନାଟ୍ୟକାର କରିପାରିନାହାଁନ୍ତି। ଭାଷା ସବୁବେଳେ ଚରିତ୍ର ଉପଯୋଗୀ, ସାବଲୀଳ ଓ ସ୍ୱଚ୍ଛନ୍ଦ। ସଂଳାପରେ ନାଟ୍ୟକାରର ନିଜସ୍ୱ ବୌଦ୍ଧିକତା ଦେଖାଇବାର ଅତିଶୟୋକ୍ତି ତୁମ ଲେଖାରେ ଦେଖାଯାଉ ନଥିଲା। ଅବାସ୍ତବ, ଉଦ୍ଭଟ କଥାଟାକୁ ତୁମେ ଯେତେ ସରଳ ଭାବରେ ନାଟକରେ ଉପସ୍ଥାପନ କରୁଥିଲ ତାହା ସମସ୍ତଙ୍କ ପାଇଁ ବୋଧଗମ୍ୟ ହେଉଥିଲା। ଅଭିନେତାଟିଏ ତୁମ ନାଟକର ଚରିତ୍ର ଭିତରକୁ ପଶିଯିବା ସତେ କେଡ଼େ ସହଜ ଥିଲା !

ତୁମ ଲେଖା ନାଟକକୁ ନିର୍ଦ୍ଦେଶନା ଦେଇ ବହୁ ନିର୍ଦ୍ଦେଶକ ଓ ଆୟୋଜକ ସାରା ଓଡ଼ିଶାରେ ପ୍ରତିଷ୍ଠା ପାଇଛନ୍ତି। ତୁମେ ବହୁ ନାଟ୍ୟକାରଙ୍କୁ ପ୍ରେରଣା ଯୋଗାଇଛ- ଏ ପଚାଶବର୍ଷ ଭିତରେ। ଯେତିକି ସମ୍ମାନ ପାଇଛ, ହୁଏତ ତା'ଠାରୁ ଅନେକ ବେଶୀ ସମ୍ମାନର ଅଧିକାରୀ ତୁମେ। ଆମ ତମ ଚାରିପାଖର ହିଂସୁକୁଡ଼ା, ସୁବିଧାବାଦୀ "ବେକୁବ" ଲୋକଗୁଡ଼ା ତୁମକୁ ସର୍ବଭାରତୀୟ ସ୍ତରକୁ ପହଞ୍ଚାଇବାର ଉଦ୍ୟୋଗ କେବେବି କରିନାହାନ୍ତି। କେବଳ ଫାଇଦା ଉଠେଇଛନ୍ତି।

ଚାରିଦିନ ଯାଏ, ଏସିୟା ମହାଦେଶର ଭୟାବହ ସୁନାମୀ ମୃତ୍ୟୁର ବିଭୀଷିକା ଦୃଶ୍ୟ ଦେଖିବା ଭିତରେ ତୁମ ଅନ୍ତିମ ବିଦାୟ ସତେ କେତେ ପବିତ୍ର !

ବିଦାୟ ବନ୍ଧୁ ବିଶ୍ୱଜିତ୍ !

ତୁମେ ଜଣେ ଅଦ୍ୱିତୀୟ ନାଟ୍ୟକାର ଓ ଅଭିନେତା !

ତୁମଠାରୁ ମାତ୍ର କେତେ ଦିନର ବୟୋଜ୍ୟେଷ୍ଠ ବନ୍ଧୁ ଭାବରେ ମୋର ହାର୍ଦ୍ଦିକ, ଅନ୍ତିମ ପ୍ରଣାମ ଜଣାଉଛି । ତୁମର ଆତ୍ମା ପ୍ରଶାନ୍ତି ଲାଭ କରୁ ।

ଆଶୀର୍ବାଦ କର । ଏମିତି ଚାର୍ଲି ଚାପ୍‌ଲିନୀୟ ମୃତ୍ୟୁଟିଏ ଆମ ଭାଗ୍ୟରେ ମଧ୍ୟ ପ୍ରାପ୍ୟ ହେଉ ।

ତୁମେ ଯିବାପରେ ମଞ୍ଚ ପ୍ରବେଶ କରିବାକୁ ଆଉ ସେମିତି ସ୍ପୃହା ଆସୁନାହିଁ ।

ବିଦାୟ ଯଶସ୍ୱୀ ସାହିତ୍ୟିକ ଓ ନାଟ୍ୟକାର ବିଶ୍ୱଜିତ୍ ଦାସ !



## ସଂପୂର୍ଣ୍ଣ ଅଭିନେତା-ମାଷ୍ଟର ମାଣିଆଙ୍କ ସହିତ ସଂପର୍କ

ଓଡ଼ିଆ ନାଟ୍ୟ ଆନ୍ଦୋଳନର ଏକ ଘଡିସନ୍ଧି ମୁହୂର୍ତ୍ତରେ ମୋର ଜନ୍ମ। ଭାଷାଭିତ୍ତିକ ପ୍ରଦେଶ ଗଠନ ପାଇଁ ଓଡ଼ିଶାର ଯେଉଁ ଅଞ୍ଚଳ ନିଜର ପରିଚୟ ଦେବାକୁ ଚାହୁଁଥିଲେ ସେଠାରେ ଜଣେ ଜଣେ ବ୍ୟକ୍ତିର ଅକ୍ଲାନ୍ତ ପରିଶ୍ରମ ଓ ତ୍ୟାଗ ଫଳରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଭାବରେ ଗଠିତ ହୋଇ ସାରିଛି। ସେମାନଙ୍କୁ ଆଜିର ଓଡ଼ିଶା ସ୍ମରଣ ମଧ୍ୟ କରିବାକୁ ଚାହେଁ ନାହିଁ। ବିଂଶ ଶତାବ୍ଦୀର ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଦଶକରେ ରାଜନୈତିକ କ୍ଷେତ୍ର ବ୍ୟତୀତ ସାଂସ୍କୃତିକ କ୍ଷେତ୍ରରେ ଯେଉଁ ସାହିତ୍ୟିକ, ନାଟ୍ୟକାର, କଳାକାରମାନେ ସମସ୍ତ ଉତ୍କଳୀୟ (ଓଡ଼ିଆ ଭାଷାଭାଷୀ) ଅଞ୍ଚଳରେ ନାଚ୍, ନାଟ, ଯାତ୍ରା ଓ ନାଟକ ପ୍ରଦର୍ଶନ କରି/ କରାଇ ଏ ଜାତିକୁ ଐକ୍ୟବଦ୍ଧ କରି-ସ୍ୱାଭିମାନ ପ୍ରକାଶ କରିବାକୁ ଗଢ଼ି ତୋଳିବାକୁ ଚେଷ୍ଟା କରିଥିଲେ ସେମାନଙ୍କ ସହିତ ମୋର ବ୍ୟକ୍ତିଗତ ପରିଚୟ ହୋଇଥିଲା। ଏହାହିଁ ମୋର ସୌଭାଗ୍ୟ। ପଶ୍ଚିମାଞ୍ଚଳର ଏକ ସରକାରୀ ଚାକିରୀଆ ଶିକ୍ଷିତ ପରିବାରରେ ମୋର ଜନ୍ମ। ବିଂଶ ଶତାବ୍ଦୀର ଦ୍ୱିତୀୟ ତୃତୀୟ ଦଶକରେ ଓଡ଼ିଶାର ଭୌଗୋଳିକ ମାନଚିତ୍ରରେ ଦେଶୀୟ ରାଜ୍ୟ ଓ ଖାସମାହାଲ ଶାସନ ମଧ୍ୟରେ ଆକାଶପାତାଳ ବିଭିନ୍ନତା ମଧ୍ୟରେ ମୋର ବାଲ୍ୟ ଜୀବନ ପୁଷ୍କଳ ହୋଇଛି। ମୋର ପିତା ଓ ପିତୃବ୍ୟମାନେ ତା' ସହିତ ଉଚ୍ଚଶିକ୍ଷିତ ଥିଲେ ନାଟ୍ୟକଳା ଓ ସଂଗୀତ ନୃତ୍ୟରେ ଯଥେଷ୍ଟ ରୁଚି ରଖୁଥିଲେ। ଖଡିଆଳ, ଭବାନୀପାଟଣା, ବଲାଙ୍ଗୀର, ଦେବଗଡ଼, ସମ୍ବଲପୁର ପରି ସହର ମାନଙ୍କରେ ସେତେବେଳେ ଓଡ଼ିଆ ନାଚ୍, ଗୀତ ଓ ନାଟକର ଚର୍ଚ୍ଚା ସୌଖୀନ ଭାବରେ ବେଶ ବ୍ୟାପକ ଥିଲା। କେବଳ ଗ୍ରାମାଞ୍ଚଳର ସାଧାରଣ ଲୋକେ ଏଥିରେ ଭାଗ ନେଉନଥିଲେ। ଏସବୁ କାର୍ଯ୍ୟରେ ସେ ଅଞ୍ଚଳର ଗୋଟିଏ ଗୋଟିଏ ପରିବାରର ସମସ୍ତ ଶିକ୍ଷିତ ପୁରୁଷ, ଜାତି, ଧର୍ମ ନିର୍ବିଶେଷର ଏତେ ଉଦାର ଭାବରେ ନିଜକୁ ବିନିଯୋଗ କରୁଥିଲେ ଯେ, ତାହା ଏବେ କଳ୍ପନା ମଧ୍ୟ କରିହେଉ ନାହିଁ।

ମୋର ପିତାଙ୍କର ବଡ଼ଭାଇ ଡାକ୍ତର ସନାତନ ପୂଜାରୀ ଓ ଡ଼ାକ୍ତର ଜନାର୍ଦ୍ଦନ ପୂଜାରୀ ନାଟକ ସହିତ ଓତପ୍ରୋତ ଭାବରେ ସଂଶ୍ଳିଷ୍ଟ। ସମସାମୟିକ ନାଟ୍ୟଧାରା ସହିତ ଏମାନଙ୍କର ଗଭୀର ସଂପର୍କ ଥିଲା। ଶିକ୍ଷିତ ଥିବା ହେତୁ କଲିକତା, ପାଟଣା, ନାଗପୁର ଓ କଟକ ପରି ସ୍ଥାନରେ ନାଟକ କ୍ଷେତ୍ରରେ ଯେଉଁ ପରିବର୍ତ୍ତନ ହେଉଥିଲା ତାହାକୁ ନିଜ ସହର ଓ ଗ୍ରାମାଞ୍ଚଳରେ କିପରି ପ୍ରଦର୍ଶନ କରିହେବ ସେଥିରେ ବର୍ତ୍ତମାନ ଓଡ଼ିଶାର ବହୁ ସମ୍ଭ୍ରାନ୍ତ ପରିବାରର ବ୍ୟକ୍ତି ଜଡ଼ିତ ହୋଇଥିଲେ। ବିଶେଷକରି ଦେଶୀୟ ରାଜ୍ୟର ରାଜା ଓ ଧନୀକ

ଶ୍ରେଣୀ (ଜମିଦାର, ମଠର ମହନ୍ତ) ମଧ୍ୟରେ ଏପରି ବହୁବ୍ୟକ୍ତି ସଂପୃକ୍ତ ହେଉଥିଲେ। ସେମାନଙ୍କର ପୃଷ୍ଠପୋଷକତାରେ ଓଡ଼ିଆ ନାଟକର ବହୁ ଆଦିପର୍ବର ଇତିହାସ ଉନ୍ମୋଚନ-ଆଜିସୁଦ୍ଧା ଲିବିବଦ୍ଧ ହୋଇ ପାରିନାହିଁ।

ବିଂଶ ଶତାବ୍ଦୀର ଦ୍ୱିତୀୟ ଓ ତୃତୀୟ ଦଶକରେ ମୋର ପିତା ସଚ୍ଚିଦାନନ୍ଦ, ପିତୃବ୍ୟ ଡାକ୍ତର ସନାତନ ଓ ଡାକ୍ତର ଜନାର୍ଦ୍ଦନ ନିଜନିଜ କର୍ତ୍ତବ୍ୟ ସ୍ଥଳୀରେ (ଛାତ୍ର ଓ ସରକାରୀ କାର୍ଯ୍ୟରେ) ଅଶ୍ୱିନୀକୁମାର ଘୋଷ, କାର୍ତ୍ତିକ କୁମାର ଘୋଷ, କାଳୀଚରଣ, ମାଷ୍ଟର ମାଣିଆଙ୍କ ପରି ନାଟ୍ୟପ୍ରେମୀ ମାନଙ୍କର ବେଶ ଅନ୍ତରଂଗ ଥିଲେ। ସେମାନଙ୍କ ସହିତ ସୌଖୀନ କଳାକାର ଭାବରେ ମଧୁର ସଂପର୍କ ରଖିଥିଲେ।

ବୋଧହୁଏ, ୧୯୪୧/୪୨ ମସିହାରେ ମୋ ବାପାଙ୍କ ଗହଣରେ କଟକ 'ଅନ୍ନପୂର୍ଣ୍ଣା' ଥିଏଟର ପ୍ରାଙ୍ଗଣରେ ମୋର ମାଷ୍ଟର ମାଣିଆଙ୍କ ସହିତ ପ୍ରଥମେ ଦେଖା। ବାପା ଡେପୁଟି ମାଜିଷ୍ଟ୍ରେଟ। କଟକରେ 'ସିଭିଲ୍ ଡିଫେନ୍ସ ଅଫିସର' ଭାବରେ ତିନିକୋଣିଆ ବଗିଚା ପାଖରେ ଗୋଟିଏ ଭଡ଼ାଘରେ ରହୁଥିଲେ। ଅନ୍ନପୂର୍ଣ୍ଣା ଥିଏଟର ଠାରୁ ପ୍ରାୟ ପଚାଶଗଜ ଦୂର। ତେଣୁ, ଯେଉଁ ନୂଆ ନାଟକ ଅନ୍ନପୂର୍ଣ୍ଣା ଥିଏଟର ବା ଓଡ଼ିଶା ଥିଏଟର୍ସରେ ହେଉଥିଲା ତାହା ବାପାଙ୍କ ସହିତ ଦେଖିବାର ସୁଯୋଗ ମିଳୁଥିଲା। ମୁଁ ପଞ୍ଚମ ଶ୍ରେଣୀର ଛାତ୍ର। ବୟସ ନଅବର୍ଷ। ସେତେବେଳେ ମାଷ୍ଟର ମାଣିଆ ମୋତେ ବେଶ୍ ଗମ୍ଭୀର ଓ ଭଦ୍ର ଜଣାପଡୁଥିଲେ। ତାଙ୍କ ପାଖରେ ଥିଲେ ଅଶ୍ୱିନୀ କୁମାର ଘୋଷ ଓ କାର୍ତ୍ତିକ କୁମାର ଘୋଷ। ବାପାଙ୍କୁ ଏମାନେ ସମସ୍ତେ ଛାତ୍ର ଜୀବନରୁ ଜାଣିଥିଲେ। କାରଣ ବାପା ଥିଲେ ତାଙ୍କ ସମୟର ଜଣେ ଭଲ ଫୁଟ୍‌ବଲ ଖେଳାଳୀ ଓ ରେଭେନ୍‌ସା କଲେଜ୍‌ର ଛାତ୍ର। ନାଟକ ଓ ବଂଶୀବାଦନରେ ତାଙ୍କର ରୁଚି ଥିଲା। P.W.D., କୋଣାର୍କ ଓ କଳାପାହାଡ ପରି ନାଟକ ଦେଖିବାର ସୁଯୋଗ ମୋତେ ଏଠି ମିଳିଥିଲା, ସେତେବେଳେ ଅନ୍ନପୂର୍ଣ୍ଣା ଥିଏଟର୍ ବିଭାଜିତ ହୋଇନଥିଲା।

ଶ୍ରୀ ରାମଚନ୍ଦ୍ର ମାଣିଆ ଆର୍ଟଏଟର ନାଚ଼ପାର୍ଟିରୁ ସିଧା ଆସି ବାଉରୀବନ୍ଧୁ ମହାନ୍ତିଙ୍କ ଅନ୍ନପୂର୍ଣ୍ଣା ଥିଏଟରରେ ଯୋଗ ଦେଇ ଥାଆନ୍ତି। ସେତେବେଳକୁ ତାଙ୍କୁ ସମସ୍ତେ ମାଷ୍ଟର ବାବୁ ବୋଲି ସମ୍ବୋଧନ କରୁଥିଲେ। ତାଙ୍କୁ ମୁଁ ବିଶୁ ମହାରଣା ଚରିତ୍ରରେ ନାଟକରେ ଦେଖି ସ୍ତମ୍ଭୀଭୂତ ହୋଇଯାଇଥିଲି। ବାପା ମୋତେ କହିଥିଲେ କାହିଁକି ତାଙ୍କୁ "ମାଷ୍ଟର ମାଣିଆ" ବୋଲି ଡାକନ୍ତି। ସେତେବେଳେ ନାଟକ ନିର୍ଦ୍ଦେଶନା କ୍ଷେତ୍ରରେ ରାମଚନ୍ଦ୍ର ମାଣିଆ ବେଶ ନାଁ କରିଥିଲେ। ନୃତ୍ୟ, ଗୀତ ଓ ଅଭିନୟ- ଏ ସବୁକ୍ଷେତ୍ରରେ ସେ ଏତେ ଦକ୍ଷ ନିର୍ଦ୍ଦେଶକ, ଗୁରୁ ଓ ସହାୟକ ଥିଲେ ଯେ ତାଙ୍କୁ ସେତେବେଳର ଓଡ଼ିଶାର ବହୁ ସୌଖୀନ ସଂସ୍ଥାର ପୃଷ୍ଠପୋଷକମାନେ ମାସ ମାସ ଧରି ନିମନ୍ତ୍ରଣ କରି ଡାକି ନେଉଥିଲେ। ଅଳ୍ପ ଶିକ୍ଷା ପାଇଥିବା- ନାଚ଼ପାର୍ଟିର ଅଭିନେତା ଠାରୁ ଉପରକୁ ଉଠି ସେଥିଲେ ସବୁଠାରୁ ଉତ୍କୃଷ୍ଟ

ନିର୍ଦ୍ଦେଶକ । ତେଣୁ ସେ ଓଡ଼ିଶାର ସବୁଅଞ୍ଚଳରେ "ମାଷ୍ଟର ମାଣିଆ" ଭାବରେ ପରିଚିତ ଥିଲେ ।

ମାଷ୍ଟର ମାଣିଆ ଥିଲେ ସରଳ, ନିଷ୍କପଟ, ଶାନ୍ତ ପ୍ରକୃତିର ଲୋକଟିଏ । ଅତି ନମ୍ର ଓ ଭଦ୍ର ଭାବରେ ସେ ନିଜକୁ ଅନ୍ୟ ପାଖରେ ଉପସ୍ଥାପନ କରୁଥିଲେ । ଯେଉଁ ଦର୍ଶକ ତାଙ୍କର ବିଭିନ୍ନ ଚରିତ୍ରରେ ଅଭିନୟ ଦେଖୁଥିଲେ, ସେମାନେ ତାଙ୍କ ପାଖକୁ ଆକୃଷ୍ଟ ହେଉଥିଲେ । ନାଚ ହେଉ ବା ନାଟକ ହେଉ ବା ସିନେମା ହେଉ ମାଷ୍ଟର ମାଣିଆ ସାବଲୀଳ ଭାବରେ ଏସବୁ କ୍ଷେତ୍ରରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ସେଥିପାଇଁ ଦ୍ୱିତୀୟ ଓ ତୃତୀୟ ଦଶକର ବହୁ ଶିକ୍ଷିତ ଛାତ୍ର ତାଙ୍କୁ ଆଦର୍ଶ ଭାବରେ ଗ୍ରହଣ କରୁଥିଲେ ।

ମାଷ୍ଟର ମାଣିଆଙ୍କ ପ୍ରଥମ ଚଳଚ୍ଚିତ୍ର ଅଭିନୟ ୧୯୪୮ ମସିହାରେ 'ଶ୍ରୀ ଜଗନ୍ନାଥ' ଚଳଚିତ୍ରରେ । ୧୯୬୦ ମସିହାର 'ଦସ୍ୟୁ ରତ୍ନାକର' ତାଙ୍କ ଅଭିନୀତ ଦ୍ୱିତୀୟ ଚଳଚିତ୍ର । ବାପାଙ୍କ ଅକାଳ ମୃତ୍ୟୁପରେ ଅବସ୍ଥା ଚକ୍ରରେ ପଡ଼ି ମୁଁ ୧୯୫୮ ମସିହାରେ 'ମହାଲକ୍ଷ୍ମୀ ପୂଜା' ଚଳଚିତ୍ରରେ ଅଭିନୟ କରି ସାରିଥାଏ । ତା'ପରେ ୧୯୬୦ ମସିହାରେ ବରଗଡ଼ର ପଞ୍ଚାୟତ ମହାବିଦ୍ୟାଳୟରେ ଅର୍ଥନୀତିର ଅଧ୍ୟାପକ ଭାବରେ ଯୋଗ ଦେଇଥାଏ । 'ଦସ୍ୟୁ ରତ୍ନାକର' ଚଳଚିତ୍ର ମୋର ଦ୍ୱିତୀୟ ଚଳଚିତ୍ର । ଏ ଚଳଚିତ୍ରରେ ଅଭିନୟ କରୁଥିବା ସମୟରେ 'ମାଷ୍ଟର ମାଣିଆ'ଙ୍କ ସହିତ ଘନିଷ୍ଠ ଭାବରେ ପରିଚୟ ହେଲା । କଲିକତାରେ ଏ ଚଳଚିତ୍ରର ଇନ୍‌ଡୋର ସୁଟିଂ ହୋଇଥିଲା । ତେଣୁ ୭/୮ ଦିନଯାଏ ଏକ ସଂଗରେ ଗୋଟିଏ ମେସ୍ ବା ଭଡ଼ାଘରେ ରହିବାକୁ ପଡୁଥିଲା । ପ୍ରଥମ ପରିଚୟରେ ମୁଁ ତାଙ୍କୁ ପ୍ରଣାମ କରିବା ମାତ୍ରେ ସେ ମୋତେ ଦେଖି କହିଲେ, "ହଁ, ବାପା ବଡ଼ବାପାଙ୍କ ଗୁଣ ପାଇଛ । ନହଲେ କଲେଜର ଅଧ୍ୟାପକ ହେଇ ସିନେମାରେ ଅଭିନୟ କରି ଥାଆନ୍ତ ?" ମୁଁ ଟିକିଏ ଆଚମ୍ବିତ ହେଲି । ସେ କହିଲେ, ବସ । ଗୋଟିଏ ଗପ କହିବି, ଶୁଣ । -ଆଜିକୁ ପ୍ରାୟ ୩୦/୩୫ ବର୍ଷ ତଳେ ଆମ ନାଟ ପାର୍ଟି କଲିକତାରେ କେମ୍ପ କରୁଥାଏ । ସେତେବେଳେ ଓଡ଼ିଶାର ବହୁ ଛାତ୍ର କଲିକତାରେ ପଢୁଥିଲେ । ସେମାନେ ପ୍ରାୟ ଆମ ନାଟକ ଦେଖିବାକୁ ଆସନ୍ତି । ପ୍ରବାସୀ ଓଡ଼ିଆଙ୍କ ନିମନ୍ତ୍ରଣରେ ଆମେ କଲିକତାରେ ଦୁଇ/ତିନି ମାସ ରହି ଅନେକ ଓଡ଼ିଆ ନାଟକ ପ୍ରଦର୍ଶନ କରୁଁ । ମୋତେ ନିର୍ଦ୍ଦେଶନା ସହିତ ମୁଖ୍ୟ ଅଭିନେତାର ଚରିତ୍ରରେ ଅଭିନୟ କରିବାକୁ ପଡୁଥାଏ । ଲୋକଙ୍କ ଦାବି ଅନୁସାରେ 'କୋଣାର୍କ' ନାଟକଟି ବାରଂବାର ଅଭିନୟ କରିବାକୁ ହେଉଥାଏ । ତୁମର ବଡ଼ବାପା ଡାକ୍ତର ଜନାର୍ଦ୍ଦନ ପୂଜାରୀ ସେତେବେଳେ କଲିକତା ମେଡିକାଲ ସ୍କୁଲର ଶେଷବର୍ଷର ଛାତ୍ର । କଲେଜ ଓ ବିଶ୍ୱବିଦ୍ୟାଳୟର ଓଡିଆ ଛାତ୍ରଙ୍କୁ ନେଇ ସେ କଲିକତାରେ ଓଡ଼ିଆ ନାଟକ ପରିବେଷଣ କରି ସାରିଥିଲେ । ଆମ ପାର୍ଟିର ନାଟକ ଦେଖିବାକୁ ସେ ପ୍ରାୟ ପ୍ରତିଦିନ ସନ୍ଧ୍ୟାରେ ଆମ ମେସ୍‌କୁ

ଆସି ଆମ ଦେହପାହା କଥା ବୁଝି ଯାଉଥିଲେ। ନାଟକ ମଧ୍ୟ ଦେଖୁଥିଲେ। ଦିନେ ଅଭିନୟ ପରେ ମୋର ଦେହ ହଠାର୍ଟ ଖରାପ ହେଲା। ଝାଡ଼ା, ବାନ୍ତି ଓ ଜ୍ୱର ଯୋଗୁଁ ମୁଁ ଦୁର୍ବଳ ହୋଇପଡ଼ିଲି। ଆମ ପାର୍ଟିର ଲୋକଯାଇ ଡାକ୍ତରୀ ଛାତ୍ରଙ୍କ ମେସ୍‌ରେ ଖବରଟା ପହଞ୍ଚାଇ ଦେଲେ। ଶୁଣିବା ମାତ୍ରେ ଡାକ୍ତର ଜନାର୍ଦ୍ଦନ ଆସି ମେସରେ ପହଞ୍ଚିଲେ। ମୋର ଦେହ ପରୀକ୍ଷା କଲେ ଓ ଔଷଧଦେଇ ଜଗି ରହିଲେ। ଏତିକିବେଳେ ଆମ ପାର୍ଟିର ମେନେଜର ଓ ପରିଚାଳକ ଆସି ଡାକ୍ତରବାବୁଙ୍କୁ ସନ୍ଧ୍ୟାସୁଦ୍ଧା ମୋ ଦେହ ଭଲହେବ କି ନାହିଁ ପଚାରି ବୁଝିଲେ। ସେ ସ୍ପଷ୍ଟ ମନା କଲେ ଓ କହିଲେ ଦୁଇ ତିନିଦିନ ପର୍ଯ୍ୟନ୍ତ ମୋର ସଂପୂର୍ଣ୍ଣ ବିଶ୍ରାମ ଦରକାର। କୌଣସି ମତେ ନାଟକରେ ଅଭିନୟ କରିବା ସମ୍ଭବ ନୁହେଁ। ପାର୍ଟିର ସମସ୍ତଙ୍କ ମୁଣ୍ଡରେ ବଜ୍ର ପଡ଼ିଲା। ଆଗୁଆ ଟିକଟ ବିକ୍ରୀ ହୋଇଛି। ମାଷ୍ଟର ମାଣିଆ ଅଭିନୟ କରି ପାରିବେ ନାହିଁ। କାହାର ବା ଏତେ ପ୍ରସ୍ତୁତି ଅଛି ? ବହୁ ସମୟ ପର୍ଯ୍ୟନ୍ତ ବାଦାନୁବାଦ ହେବାପରେ ଡାକ୍ତର ଜନାର୍ଦ୍ଦନ ପୂଜାରୀ କହିଲେ, ଯଦି ମାଷ୍ଟର ମାଣିଆ ଅନୁମତି ଦେବେ ତେବେ ମୁଁ ତାଙ୍କ ଚରିତ୍ରଟିରେ ଅଭିନୟ କରିପାରିବି। କାରଣ ମୁଁ ମାଷ୍ଟର ମାଣିଆଙ୍କ ଅଭିନୟ ଦେଖିଦେଖି ଏହାକୁ ନିଜେ ଦୁଇ/ତିନିଥର ଆମ ଗାଁରେ ମଞ୍ଚସ୍ଥ କରିସାରିଛି। ଆପଣ ମାନେ ଚାହିଁଲେ ମୁଁ ସାମାନ୍ୟ ରିହାରସାଲ କରି କିଛି ଅଂଶ ଦେଖାଇଦେଇ ପାରେ। ଆମ ପାର୍ଟିର ସମସ୍ତେ ହତବାକ୍ ହେଲେ। ମୁଁ ଖଟରେ ଉଠି ବସିଲି। ତା'ପରେ ଆମ ପାର୍ଟିର ଅଭିନେତା ମାନଙ୍କ ଗହଣରେ ମୁଁ ଯେଉଁ ଚରିତ୍ରରେ ଅଭିନୟ କରେ ତାହାର ବହୁ ନକଲ କରି ଅନର୍ଗଳ ସଂଳାପ କହି ଚାଲିଲେ ସେ। ଆମେ ସମସ୍ତେ ସ୍ତମ୍ଭୀଭୂତ ହେଲୁ। ସେଦିନ ଠିକ୍ ହେଲା ଡାକ୍ତର ଜନାର୍ଦ୍ଦନ ପୂଜାରୀହିଁ ମୋ' ଚରିତ୍ରରେ ଅଭିନୟ କରିବେ ଏବଂ ଶେଷ ମୁହୂର୍ତ୍ତରେ ଘୋଷଣା କରାଯିବ। ଡାକ୍ତର ଜନାର୍ଦ୍ଦନ ପୂଜାରୀ କଲିକତା ଓଡ଼ିଆ ସମାଜରେ ବେଶ ଜଣାଶୁଣା ଥିଲେ। ତେଣୁ କେହି ଏହି ହଠାତ୍ ପରିବର୍ତ୍ତନରେ ଅସନ୍ତୁଷ୍ଟ ହେବେ ନାହିଁ। ଶେଷପର୍ଯ୍ୟନ୍ତ ମୋର ଜ୍ୱର କମିଲା ନାହିଁ। ମୋତେ ଦର୍ଶକଙ୍କ ଶେଷଧାଡ଼ିରେ ଗୋଟିଏ ଆରାମ ଚଉକିରେ ନେଇ ବସେଇ ଦିଆଗଲା। ନାଟକ ଆରମ୍ଭ ହେବା ପୂର୍ବରୁ ମୋର ଅସୁସ୍ଥତା ବିଷୟରେ ଘୋଷଣା କରାଯାଇ ଡାକ୍ତର ପୂଜାରୀଙ୍କ ବିଷୟରେ କୁହାଗଲା। ସବୁଦର୍ଶକ ଆଶ୍ଚର୍ଯ୍ୟ ହେଇ ଅନେଇ ରହିଲେ। କିନ୍ତୁ ଆଶ୍ଚର୍ଯ୍ୟର କଥା ଡାକ୍ତର ଜନାର୍ଦ୍ଦନ ପୂଜାରୀ ଅତି ସାବଲୀଳ ଭାବରେ ମୂଳରୁ ଅଭିନୟ କରିଚାଲିଲେ, କେଉଁଠାରେ ହେଲେ ଟିକିଏ ହେଲେ ଝୁଣ୍ଟିଲେ ନାହିଁ। ମୁଁ ସ୍ତମ୍ଭୀଭୂତ ହୋଇ ରହିଗଲି, ତାଙ୍କର ଅସାଧାରଣ ସାହସ, ଧୈର୍ଯ୍ୟ, ସାଧନା ଓ ଏକାଗ୍ରତା ଦେଖି। ଆଜିପର୍ଯ୍ୟନ୍ତ ମୁଁ ତାଙ୍କୁ ଭୁଲି ପାରୁନାହିଁ। ସୌଖୀନ କଳାକାର ଭାବରେ ଡାକ୍ତର ଜନାର୍ଦ୍ଦନ ପୂଜାରୀଙ୍କ ପରିବାରରେ ତୁମେ ଯେତେବେଳେ ଜନ୍ମ ହେଇଛ-କିଛିତ ତାଙ୍କର ଗୁଣ ଥିବ। ଚେଷ୍ଟା ଓ ସାହସ କଲେ, ନିଶ୍ଚୟ

ତୁମେ ବି ଜଣେ ଭଲ କଳାକାର ହେଇପାରିବ । ଗର୍ବ, ଅହଂକାର ଶୂନ୍ୟ- "ମୁଁ" କାରଠାରୁ ଦୂରରେ ରହି-ଅଯାଚିତ ଭାବରେ ଷଷ୍ଠୀପୂର୍ତ୍ତି ବୟସର ଜଣେ ବରିଷ୍ଠ, ପ୍ରତିଷ୍ଠିତ ଅଭିନେତା ଯଦି ଜଣେ ଯୁବ କଳାକାର ପାଇଁ ଏପରି ଆଶିଷବାଣୀ ଶୁଣାଇପାରେ ସେଠାରେ ନାଟ୍ୟ ପରଂପରା ଯେ ବଞ୍ଚିରହିବ-ଏହା ମୋର ବିଶ୍ୱାସ ହୋଇଥିଲା । ଏହାହିଁ ମୋତେ ଉତ୍ସାହ ଦେଇଥିଲା ସେଦିନ ଓ ଆଜି ପର୍ଯ୍ୟନ୍ତ ଦେଇ ଆସୁଛି । ତା ନହୋଇଥିଲେ ସେ କଣ 'ମାଷ୍ଟର' ହୋଇଥାନ୍ତେ ?!

ମାଷ୍ଟର ମାଣିଆ ପୁଣି ଦେଖା ଦେଲେ ୧୯୬୬ ମସିହାରେ "ମାଟିର ମଣିଷ"ର ପ୍ରଧାନ ବୁଢ଼ା ଚରିତ୍ରରେ । ଜଗତପୁରଠାରେ ନିର୍ମିତ ଝାଟିମାଟି ଘର ଭିତର କେତେକ ଆଉଟ୍‌ଡୋର ସେଟ୍‌ରେ ପୁଣି ୧୦/୧୫ ଦିନ କାମ ଚାଲିଲା । ପଧାନ ପଡ଼ାର ପଧାନ ବୁଢ଼ା ଓ ବଡ଼ ପୁଅ ବରଜୁ ପଧାନ ଚରିତ୍ରରେ, ସେ ଓ ମୁଁ ଅଭିନୟ କରିଥିଲୁ । ମାଷ୍ଟର ମାଣିଆଙ୍କ ବୟସ ସେତେବେଳେ ଷାଠିଏ ଟପିଲାଣି । କିନ୍ତୁ ଏବେବି ମୋ ଆଖି ଆଗରେ ଭାସିଯାଏ ତାଙ୍କ ଅଭିନୀତ ଦୃଶ୍ୟ କେତୋଟି । ବାଟହୁଡ଼ା ପୁଅ ଛକଡିକୁ କାବଡ଼ା ମାରି ପଧାନ ବୁଢୀର ମୃତ୍ୟୁ ଖବର ଦେବା ଦୃଶ୍ୟ । ପରିବାରର ସମସ୍ତଙ୍କ ଆଗରେ ରାତି ଅଧରେ ପଧାନବୁଢ଼ୀର ଘରକରଣା ବିଷୟର ବର୍ଣ୍ଣନା କରିବାର ଦୃଶ୍ୟ । ଶେଷରେ ବିରୂପା କୂଳରେ ବସି ଦାର୍ଶନିକ ଭାବରେ ତାଙ୍କ ମୁହଁରେ ଉଚ୍ଚାରିତ ସଂଳାପ କେତୋଟି- "ହଁ, ମୁଦୁଲି ବୁଢା ଚାଲିଗଲେ । ବଅସ ହେଇଥିଲା ।"

ତା'ପରେ ୧୯୭୫ ମସିହାରେ 'ମମତା' ଚଳଚ୍ଚିତ୍ରରେ ବୁଢ଼ା ଶଙ୍ଖାରୀ ଚରିତ୍ରରେ କେବଳ ଗୋଟିଏ ନିର୍ବାକ ଦୃଶ୍ୟରେ ତାଙ୍କର ଅଭିନୟ ଓ ସେହି ବର୍ଷରେ ପ୍ରଯୋଜିତ 'ଯାଯାବର' ଚଳଚିତ୍ରରେ ବାସ୍ତୁହରା, ନିମ୍ନବର୍ଗର ବୁଭୁକ୍ଷିତ ଚରିତ୍ରର ଜୀବନ୍ତ ଅଭିନୟ ।

ଓଡ଼ିଶାର ବିଗତ ୬୫ ବର୍ଷର ଚଳଚିତ୍ର କ୍ଷେତ୍ରରେ "ଅଭିନୟ" ବିଷୟଟିକୁ ନେଇ କେହି କେବେ ତାତ୍ତ୍ୱିକ ଆଲୋଚ଼ନା ବା ଗବେଷଣା କରି ନାହାଁନ୍ତି । ମୋ ଦୃଷ୍ଟିରେ, ଅଳ୍ପ ବୟସରୁ ନାକ ଓ କାନ ଫୋଡ଼ା, ଦରପାଠୁଆ ଗଉଡ଼ ପିଲାଟିଏ ଯେ କେବଳ ଗୋଟିପୁଅ ନାଚିବା ପାଇଁ ନାଚ଼ ପାର୍ଟିକୁ ଆସିଥିଲା, ସେ କିପରି ନିଜର ଅଧ୍ୟବସାୟ ବଳରେ ନାଟ ଓ ନାଟକ କ୍ଷେତ୍ରରେ ଅନବଦ୍ୟ "ବିଶୁ ମହାରଣା" ଓ "କଳା ପାହାଡ଼" ଚରିତ୍ରରେ ଅଭିନୟ ସାଫଲ୍ୟ ଦେଖାଇ ପାରିଲେ । ସେତେବେଳର ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ସୌଖୀନ ସଂସ୍ଥା ମାନଙ୍କର ଅଭିନୟ ନିର୍ଦ୍ଦେଶନା ଦେଇ ସମସ୍ତଙ୍କ ଠାରୁ ପ୍ରିୟ "ମାଷ୍ଟର" ଉପାଧିଟି ପାଇ ପାରିଥିଲେ । ଠିକ୍ ସେମିତି ବିଂଶ ଶତାବ୍ଦୀର ସାମୂହିକ ଅଭିନୟ ପରାକାଷ୍ଠା ପାଇଁ, ଗୋଟିପୁଅ ନାଟରୁ ଚଳଚିତ୍ର ଅଭିନୟ ପର୍ଯ୍ୟନ୍ତ ଜଣେ ସର୍ବଶ୍ରେଷ୍ଠ ଅଭିନେତା-ସଂପୂର୍ଣ୍ଣ ଅଭିନେତା ଭାବରେ ତାଙ୍କୁ ଓଡ଼ିଆ ଜାତି ମରଣୋତ୍ତର ସମ୍ମାନ ପ୍ରଦର୍ଶନ କରିବା ଉଚିତ୍ ।

ପ୍ରଚାରଠାରୁ, ସ୍ତାବକତା ଠାରୁ ଦୂରେଇ ଯାଇ ତାଙ୍କପରି ସଂପୂର୍ଣ୍ଣ ଅଭିନେତାଟିଏ, ନିଜ ଗାଁମାଟିକୁ ଭଲ ପାଉଥିବା ମାର୍ଜିତ, ଶୃଙ୍ଖଳିତ ଅଭିନେତାଟିଏ, ପୃଥିବୀର ଯେକୌଣସି ନାଁକରା ବୈଦେଶିକ ବିଖ୍ୟାତ ଚଳଚିତ୍ର ଅଭିନେତାମାନଙ୍କ ସମକକ୍ଷ ଓଡ଼ିଆ ଅଭିନେତାଟିଏ- ଆଜିପର୍ଯ୍ୟନ୍ତ ଓଡ଼ିଶାରେ ଜନ୍ମଗ୍ରହଣ କରି ନାହାଁନ୍ତି ।

ଆଜିର ଯୁବପିଢ଼ି ତାଙ୍କୁ ଜାଣିବା ପାଇଁ ତାଙ୍କ ଅଭିନୀତ "ମାଟିର ମଣିଷ", "ମମତା" ଓ "ଯାଯାବର" ଚଳଚିତ୍ର ଖୋଜି ବାହାର କରି ଦେଖିବା ଉଚିତ । ଏ ଚଳଚିତ୍ର ଗୁଡ଼ିକର ସରକାରୀ ସ୍ତରରେ ସଂରକ୍ଷିତ ହେବା ଉଚିତ୍ । ମାଷ୍ଟର ମାଣିଆଙ୍କ ଚରିତ୍ର ଚିତ୍ରଣ, ସଂଳାପ ଉଚ୍ଚାରଣ ଓ ଆଙ୍ଗିକ ଅଭିନୟ ସୂକ୍ଷ୍ମଭାବରେ ଦେଖିଲେ ଜଣାପଡ଼େ ଚଳଚିତ୍ରଧର୍ମୀ ଅଭିନୟ କାହାକୁ କୁହାଯାଏ । ନାଟ, ଅପେରା, ଯାତ୍ରା ଓ ନାଟକ ତଥା ଚଳଚିତ୍ର ଅଭିନୟରେ କେତେ ପାର୍ଥକ୍ୟ ଓ ବିବିଧତା ଅଛି । ରାମଚନ୍ଦ୍ର ମାଣିଆ ପ୍ରତ୍ୟେକ ଓଡ଼ିଆ କଳାକାରର ନମସ୍ୟ ।



# ଶ୍ରଦ୍ଧାସୁମନ ବାବିଭାଇଙ୍କୁ

ବାବି ଭାଇ, ତୁମେ ଚାଲିଗଲା ପରି ମନେ ହେଉ ନାହିଁ । ତୁମଠାରୁ ଦୂରରେ ଥିଲେ ମଧ୍ୟ ଯେତେବେଳେ ନାଟକ ଓ ଅଭିନୟ କଥା ପଡିଯାଏ, ତମେ ଆଉ ତମର କଳା, ମନ ଓ଼ ଧ୍ୟାନକୁ ଛାଇଯାଏ । ମୁଁ ପଞ୍ଚମ ଶ୍ରେଣୀର ଛାତ୍ର ଥିବା ସମୟରୁ- 'ଗାର୍ଲ୍ ସ୍କୁଲ' ଓ 'ଚୁମ୍ବନ' ନାଟକର ସେଇ ଜୀବନ୍ତ ନାୟକଟିକୁ କେମିତି ଭୁଲିଯିବି ଯେ-? ତା' ଆଗରୁ ହିନ୍ଦି ଓ ବଙ୍ଗଳା ସିନେମାରେ ମୁଁ ସେମିତି ନାୟକ ମାନଙ୍କୁ ଦେଖିଥିଲି । ତମର ସେ କଲର୍ ଟେକା, ହାଫ୍ ସାର୍ଟ ଇନ୍‌କରା, ଦୁଷ୍ଟାମୀ ହସର ଯାଦୁକାରୀ ଚେହେରା ଯେ ଥରେ ଦେଖିଛି- ସେ କେମିତି ଭୁଲିବ ଯେ- । ଏମିତି ରୋମାଣ୍ଟିକ୍ ନାୟକ ଓଡ଼ିଶାରେ ତା'ପରେ ଜନ୍ମ ହେଲେ କି ?

୧୯୪୨ ମସିହାରେ କାଳୀବାବୁଙ୍କ ଓଡ଼ିଶା ଥିଏଟର୍ସରେ ତମେ ସମସ୍ତ କଳାକାରଙ୍କ ଭିତରେ ଥିଲ ପ୍ରଧାନ ଆକର୍ଷଣ । ସ୍କୁଲ, କଲେଜ ଛାତ୍ରଙ୍କର ତୁମେ ଥିଲ ଆଦର୍ଶ ନାୟକ । ତମକୁ ଦେଖିବାକୁ ଓ ତମ ନାଟକର ଅଭିନୟ ଦେଖିବାକୁ ଓଡ଼ିଶା ଥିଏଟର୍ସରେ ଯେଉଁ ଭିଡ ହେଉଥିଲା ଆଜିର ନାଟକବାଲା କେବେ କଳ୍ପନା କରି ପାରିବେ କି ? ବାଇଶ/ତେଇଶ ବର୍ଷର ସ୍ମାର୍ଟ ନାୟକଟିଏ ହେଇ ଓଡ଼ିଶାର ଦର୍ଶକମାନଙ୍କୁ ବିମୋହିତ କରିବା ବେଳକୁ, 'ଭାତ' ନାଟକରେ ପ୍ରୌଢ଼ ଜମିଦାର ଭୂମିକାରେ କର୍କଶ ଚରିତ୍ରର ଅଭିନୟ ଦର୍ଶକଙ୍କୁ ସ୍ତମ୍ଭୀଭୂତ କରି ଦେଇଥିଲା ସେଇ ସମୟରେ । ପରେ ଜୟଦେବ, ଚକ୍ରୀ ନାଟକରେ ମଧ୍ୟ ଦେଖିଥିଲେ ତମକୁ । ତମ ବିଷୟରେ ଆହୁରି ବେଶୀ ଜାଣିବା ଆଗରୁ ମୁଁ ଚାଲିଗଲି କୋରାପୁଟ ।

ତା'ପରେ ତୁମର ସଂଘର୍ଷ "ଅନ୍ନପୂର୍ଣ୍ଣା ବି" ଗ୍ରୁପ ଥିଏଟରକୁ ନେଇ । ଏଇ ସଂସ୍ଥାଟିକୁ ଗଢ଼ି ତୋଳିବାରେ ତୁମର ଯେ ଅବଦାନ ଥିଲା ସେକଥା କେହି ମନେ ପକାନ୍ତିନି । କାରଣ ତମେତ ଜଣେ ଅଭିନେତା କେବଳ । ଥିଏଟର ମାଲିକ, ପଇସା ଖଟେଇଲା ବାଲାଙ୍କ କଥାଟା ସବୁବେଳେ ଇତିହାସ ଲେଖି ରଖେ । ଯେମିତି ଲାଙ୍ଗୁଳା ନରସିଂହ ଦେବ । ବିଶୁ ମହାରଣା ଆଉ ଧରମା କଣ କରିଛନ୍ତି ଯେ ଇତିହାସରେ ତାଙ୍କ ନାଁ ରହିବ ?

ରାମଚନ୍ଦ୍ର ମିଶ୍ର, ଭଞ୍ଜ କିଶୋର ପଟ୍ଟନାୟକ, କମଳ ଲୋଚନ, ଗୋପାଳ ଛୋଟରାୟ, ବିଜୟ ମିଶ୍ରଙ୍କ ପରି ନାଟ୍ୟକାରଙ୍କ ସହିତ ତମର ଯୋଗାଯୋଗ ସେମାନଙ୍କୁ କେତେ ଯଶ, ଖ୍ୟାତି ଓ ସମ୍ମାନ ଆଣି ଦେଇଥିଲା ସେ କଥା ଅନ୍ୟ କେହି ନଜାଣିଲେ ମଧ୍ୟ ମୁଁ ଜାଣେ, ତୁମର ସେଥିରେ ସହଯୋଗ କେତେ ।

ଭାରତ ସ୍ୱାଧୀନ ହେବା ପରେ ଆକାଶବାଣୀ, କଟକର ନାଟକ ବିଭାଗର ସର୍ବଶ୍ରେଷ୍ଠ କଳାକାର ଥିଲ ତମେ । ପ୍ରେକ୍ଷାଳୟର ଖୋଲା ପରିବେଶ ଭିତରେ ତୁମ ଗଳାରେ ଉଚ୍ଚାରିତ ସଂଳାପ ଦର୍ଶକଙ୍କୁ ଯେତେ ଉନ୍ମାଦନା ଦେଉଥିଲା ତାହା ବେତାର ନାଟକର ରୁଦ୍ଧ କୋଠରୀ ଭିତରୁ ଯେତେବେଳେ ଆହୁରି ଗୁରୁଗମ୍ଭୀର ଭାବରେ ଭାସି ଆସିଲା, ଓଡ଼ିଆ ହିସାବରେ ବଡ଼ ଗର୍ବ ହେଉଥିଲା ବାବି ଭାଇ, ଯେ- ସର୍ବ ଭାରତୀୟ ସ୍ତରର ଅଭିନେତାଟିଏ ଆମର ବି ଅଛନ୍ତି ।

ବେତାର ନାଟକରେ ତୁମର ଅଭିନୟ ଆକାଶବାଣୀ, କଟକକୁ କେତେ ଲୋକପ୍ରିୟ କରିଥିଲା ତା'ର ହିସାବ ବୋଧହୁଏ ଏବେ ମିଳିବ ନାହିଁ-ତେବେ, ମୋର କଲେଜପଢ଼ା ବୟସରେ, ୧୯୫୦ ରୁ ୧୯୫୮ ପର୍ଯ୍ୟନ୍ତ ଯେ କେତେ ଯୁବକଯୁବତୀ ତୁମ ଅଭିନୟ ଦ୍ୱାରା ପ୍ରଭାବିତ ହୋଇଥିଲେ ତା'ର ହିସାବ ମୋ' ପାଖରେ ଅଛି । ଏ ସମୟରେ ମଞ୍ଚ ନାଟକ ଓ ବେତାର ନାଟକ ତମକୁ ଅନେକ ସମ୍ମାନ ଆଣି ଦେଇଥିଲା । ମୋ ପରି ଲୋକଟିଏ ତାହାଦ୍ୱାରା ଆକର୍ଷିତ ହୋଇଥିଲା ।

କୌଣସି ଲକ୍ଷ୍ୟ ନଥାଇ, ମୋ ଭାଗ୍ୟକୁ ମୁଁ ଆପଣଙ୍କର ଆହୁରି ନିକଟତର ହେଲି ୧୯୬୩ ମସିହାରେ-ଜଣେ ସହ ଅଭିନେତା ଭାବରେ । ବୟସରେ ତମେ ମୋ'ଠାରୁ ୧୫ ବର୍ଷ ବଡ଼ । ଜଣେ ପ୍ରଥିତଯଶା ଅଭିନେତା । ହେଲେ, ପ୍ରଥମରୁ ଆପଣଙ୍କର ଅନ୍ତରଂଗ ସଂପର୍କ ମୋତେ ଅଭିଭୂତ କରି ରଖିଲା । ବୟସର ଦୂରତ୍ୱ ନଥିଲା ଆପଣଙ୍କ ମନରେ । ସୋଲାନ (ସିମଲା) ସହରରେ ଗୋଟିଏ ଘରେ ଚାରିପାଞ୍ଚଟା କମ୍ବଳ କଣେ ଲେଖାଏଁ ଘୋଡିହେଇ ଯେଉଁ ସପ୍ତାହଟି "ଜୀବନସାଥୀ"ର ସୁଟିଂ ସମୟରେ ୟୁନିଟର ଆମେ ସମସ୍ତେ ବିତେଇଲେ-ସେଠି ମୁଁ ଦେଖିଲି ଆପଣଙ୍କୁ ଅତି ନିକଟରୁ । ଉଦାର ଓ ଆଧୁନିକ ଚିନ୍ତାରେ ଭରପୁର ଜଣେ ସୃଜନଶୀଳ କଳାକାର । ଯାହା ଭିତରେ କୌଣସି ଛନ୍ଦ ବା କପଟ ଆଚରଣ ନାହିଁ । ମନଟା ସଂପୂର୍ଣ୍ଣ ରାଜକୀୟ । ଖାଇବା, ପିଇବା, ଖେଳିବା, ହାସ୍ୟବ୍ୟଙ୍ଗ କରିବାରେ ଆପଣଥିଲେ ଅନନ୍ୟ । ସଂପୂର୍ଣ୍ଣ ଖୁସ୍‌ମିଜାଜିଆ ଲୋକଟିଏ । ଦୁଃଖ, ଅଭାବ, ରୋଗ, ଶୋକ ସତେ ଯେମିତି ସ୍ପର୍ଶ କରିନାହିଁ ଆପଣଙ୍କୁ- ।

"ଜୀବନ ସାଥୀ"ରେ ମୁଁ ଆପଣଙ୍କ ସହିତ ପ୍ରଥମେ ଅଭିନୟ କଲି, ଆପଣ 'ଅଜା' ଓ ମୁଁ 'ନାତି'-ସତସତିକା ନୁହେଁ । ଥଟ୍ଟାରେ । ଆପଣଙ୍କ ଚଳଚ୍ଚିତ୍ର ଅଭିନୟ କ୍ଷେତ୍ରରେ ଜୀବନସାଥୀର ଚରିତ୍ର ଯେ ସର୍ବଶ୍ରେଷ୍ଠ ଏହା ଆପଣ ମଧ୍ୟ ସ୍ୱୀକାର କରିଥିଲେ । ପାଗଳା, ଷ୍ଟେସନ ମାଷ୍ଟର, ଘରୋଇ ହୋମିଓପାଥି ଡାକ୍ତର ଓ ତା'ଭିତରେ ଗୋଟିଏ ଦରଦଭରା ପ୍ରେମିକର ଅଭିନୟ ଯେ ଏତେ ସୁନ୍ଦର ଭାବରେ ଉପସ୍ଥାପନା କରାଯାଇପାରେ ତା' ନଦେଖିଲେ ବିଶ୍ୱାସକରି ହେବ ନାହିଁ । ଆଜିର ଓଡ଼ିଶାର କଳାକାରମାନେ ତାହା ଆଉ

ଦେଖିପାରିବେ କି ନାହିଁ ସନ୍ଦେହ । ପ୍ରିଣ୍ଟ ସହିତ ନେଗେଟିଭ ମଧ୍ୟ ନଷ୍ଟ ହୋଇଗଲାଣି- ଏ ଭିତରେ । ତା'ପରେ ୧୯୬୪ରେ ମୋ' ପ୍ରଯୋଜିତ 'ସାଧନା' । ସେ ଚରିତ୍ର ଏକ ସମ୍ଭ୍ରାନ୍ତ ପରିବାରର ମୁଖ୍ୟଙ୍କ ଚରିତ୍ର । ପେଷା ଓକିଲାତି । ସେ ଏକ କଠୋର ପାରିବାରିକ ମୁଖ୍ୟ । ୧୯୬୬/୬୭ ମସିହାରେ ଆପଣଙ୍କ ଅଭିନୀତ ଓ ନିର୍ଦ୍ଦେଶିତ "ଭାଇ ଭାଉଜ" । ଆପଣହିଁ ମୁଖ୍ୟନାୟକ ଥିଲେ 'ଭାଇଭାଉଜ'ରେ । ମୁଁ ଯୁବ ନାୟକ । ବହୁଦିନ ଯାଏ ଏହାର ସୁଟିଂ ଚାଲିଥିଲା । ସିରୋଲ ଗାଁ ଓ କଲିକତାର ଟାଲିଗଞ୍ଜ ଭଡ଼ାଘରେ ମାସ ମାସ ରହିବାର ଅଭିଜ୍ଞତା ଏବେବି ସ୍ପଷ୍ଟ ମନେଅଛି । ତା'ପରେ ୧୯୬୮ ମସିହାରେ "କିଏ କାହାର"ର ଚରିତ୍ର ଅଭିନେତା । ୧୯୭୭ ମସିହାରେ "ଅଭିମାନ" ଚଳଚ୍ଚିତ୍ରର ବାରିପଦାରେ ସୁଟିଂ ଚାଲିଲା ବହୁଦିନ ଯାଏ । ପୁରାପୁରି ପାରିବାରିକ ଚଳଚିତ୍ର । ଦୁଇଟି ଯାକ ଅତିମାତ୍ରାରେ ସଫଳ ଚଳଚିତ୍ର । ଏ ଭିତରେ ଅନ୍ନପୂର୍ଣ୍ଣା ଥିଏଟରର ଆଉ ସେମିତି ଆକର୍ଷଣ ନଥିଲା ।

ପେଷାଦାର ରଂଗମଞ୍ଚର ଦୁର୍ଦ୍ଦିନ ଆସି ସାରିଥିଲା ଓଡିଶାରେ । ଆପଣଙ୍କ ପରି କଳାକାର ଆକାଶବାଣୀ ଓ ଦୂରଦର୍ଶନର ଧରାବନ୍ଧା କଳାକାର ଭାବରେ ଗ୍ରହଣ କରାଯିବା କଥା । ସର୍ବଶ୍ରେଷ୍ଠ କଳାକାର ଭାବରେ ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ, ଓଡ଼ିଶା ସଂଗୀତ ଏକାଡେମୀ ଓ ଅନ୍ୟାନ୍ୟ ପୁରସ୍କାରରେ ସମ୍ମାନିତ କଳାକାର ଭାବରେ ଆପଣଙ୍କ ଅବସରର ଚିନ୍ତା ଓଡ଼ିଆ ଜାତି କରିପାରିଲା ନାହିଁ । ଯେଉଁମାନେ ବ୍ୟକ୍ତିଗତ ଭାବରେ ଜାଣିଥିଲେ ସେମାନେ ଆପଣଙ୍କୁ କାମ ଦେବାକୁ ଆଗେଇ ଆସିଲେ । ୧୯୭୮ ମସିହାରେ ମୋ ନିର୍ଦ୍ଦେଶିତ "ତଅପୋଇ"ରେ ଆପଣଙ୍କୁ ନେବାବେଳେ ମୋତେ ଆପଣଙ୍କର ପାରିବାରିକ ସମସ୍ୟା ଜଣାଗଲା । କିନ୍ତୁ ସରକାରୀ ସ୍ତରରେ, ମନ୍ତ୍ରୀଙ୍କ ଭାଷଣରେ ପ୍ରତିଶ୍ରୁତି ଓ ଯୋଜନାର ବଡ଼ବଡ଼ ଆଶା ବାରଂବାର ଶୁଣିଶୁଣି ଆପଣ ହତାଶ ହୋଇ ପଡ଼ିଲେ । ଆକାଶବାଣୀ ଓ ଦୂରଦର୍ଶନରେ ଯେଉଁ ପଦ୍ଧତିରେ ସମ୍ମାନିତ କଳାକାରଙ୍କର ପଞ୍ଜିକରଣ କରାଯାଏ ତାହାର ବ୍ୟତିକ୍ରମ ହେଲା ଏହି ସମୟରେ । ବହୁ ନୂତନ କଳାକାର ଆପଣଙ୍କର ସ୍ଥାନ ଓ ସୁଯୋଗ ନେଲେ । କିନ୍ତୁ ଆପଣଙ୍କୁ, ଆପଣଙ୍କର ସ୍ୱରକୁ ଖୋଦ କଟକର ଶ୍ରୋତା ଭୁଲିଗଲେ । ବୟସ ଓ ଯୁଗର ଅଦ୍ଭୁତ ସ୍ୱାକ୍ଷର ଆପଣଙ୍କ ନାଁରେ ଦିଆଗଲା ନୂତନ ଇତିହାସ ଲେଖାଗଲା ।

ରଜା ମିଜାଜ୍‌ର ଲୋକ ଆପଣ । କାହା ପଛରେ ଗୋଡେଇ "କଣ୍ଟ୍ରାକ୍ଟ" ନେବା ଲୋକ ଆପଣ ହେବେ କେମିତି ? କାମ ନଥିଲେ ବି ଆକାଶବାଣୀ ଓ ଦୂରଦର୍ଶନ ଅଫିସ୍‌ରେ ଚକ୍କର କାଟିବାର ଅଭ୍ୟାସ ତ ଆପଣଙ୍କର କେବେ ନଥିଲା । ଆପଣଙ୍କୁ ବୟୋଜ୍ୟେଷ୍ଠ କଳାକାର କହି ଉପଢୌକନଟିଏ ଧରେଇ ଦେଇ ଓଡ଼ିଶାର ନେତୃବର୍ଗ ଗର୍ବିତ ହେଲେ । ତେବେ "କଳାକାର ପେନ୍‌ସନ୍‌" କଥା ଆପଣଙ୍କ ଜୀବନର ଶେଷ ତିରିଶବର୍ଷ ଏକ ପ୍ରହସନ ହୋଇ ରହିଗଲା । ସବୁଠାରେ, ସଭା ସମିତି, ଜନ୍ମ ଦିନରେ, ଶ୍ରାଦ୍ଧରେ "କଳାକାର ପେନ୍‌ସନ୍‌"

ଉପରେ ବହୁ ସାରଗର୍ଭକ ଭାଷଣ ଶୁଣିବାକୁ ମିଳିଲା । କିଛିଦିନ ପାଇଁ ଆପଣଙ୍କ ପରି କଳାକାରଙ୍କୁ କାମଦେବା ପାଇଁ ଅନ୍ନପୂର୍ଣ୍ଣ ଥିଏଟର୍ସକୁ ପୁନର୍ଜିବୀତ କରିବା ପାଇଁ ସଂସ୍କୃତି ବିଭାଗ ଲକ୍ଷେଟଙ୍କା କରି ଅନୁଦାନ ଦେଲେ । ସେଥିରେ କ'ଣ ଆପଣଙ୍କ ପରି କଳାକାରର ଭାଗ ଥିଲା ? କେତେବେଳେ କେମିତି ନେତାମାନେ ଚାନ୍ଦା ଉଠେଇ ଦୁଃସ୍ଥ କଳାକାର ପାଣ୍ଠିଟିଏ ଆରମ୍ଭ କରିଦେଲେ । ସେଇ ମୁହୂର୍ତ୍ତରେ ଏ ପାଣ୍ଠିର ଅପମୃତ୍ୟୁ ହେବାର ଏ ଆଖି ବହୁବାର ଦେଖିଲା ଖୋଦ୍ କଟକ ଓ ଭୁବନେଶ୍ୱର ସହରରେ । ଏ ସମୟରେ କଟକ ସହର ଛଡ଼ା ଆପଣଙ୍କ ସହିତ ଆଉ ସାକ୍ଷାତ ହୋଇନାହିଁ । ଯେତେବେଳେ କଳାବିକାଶ କେନ୍ଦ୍ର ବା କଟକଚଣ୍ଡୀ ପାଖରେ ଦେଖାହେଇଛି ଆପଣଙ୍କ ପାରିବାରିକ ଦୁର୍ଯୋଗ ବିଷୟରେ ଶୁଣି ବ୍ୟଥିତ ହୋଇଛି । ଯାତ୍ରାର ନିର୍ଦ୍ଦେଶନା ଦେବାପାଇଁ ଆପଣଙ୍କୁ ନିମନ୍ତ୍ରଣ ଆସିଲା । ତାହା କଣ ଆପଣଙ୍କ ବୟସ ଓ ଅଭିଜ୍ଞତା ପାଇଁ ଏକ ଉପଯୁକ୍ତ ବ୍ୟବସ୍ଥା ? ସରକାର ବା ଓଡ଼ିଶାର ଚିନ୍ତାଶୀଳ ସଂସ୍କୃତି ସମ୍ପନ୍ନ ବୁଦ୍ଧିଜୀବୀ ଜନତା ଆପଣଙ୍କୁ ଦୀର୍ଘ କୋଡ଼ିଏ ବର୍ଷଯାଏ ସ୍ମରଣ କରିପାରିଲେ ନାହିଁ ।

ଆପଣ ମୋତେ ସେତେବେଳେ କହିଥିଲେ, "କଟକ ବକ୍ସିବଜାର ଛକରେ ଯାତ୍ରାକଲେ, ତୁ ମୋ ସାଂଗରେ ଅଭିନୟ କରିବୁ ତ ?" ମୋ ଠାରୁ ପ୍ରତିବଦ୍ଧତା ଚାହିଁଥିଲେ ଆପଣ । ମୁଁ "ହଁ" କହିଥିଲି । ତା' ସମ୍ଭବ ହେଲା ନାହିଁ ।

ଆଉ ଗୋଟିଏ କଥା ସବୁବେଳେ ମୋତେ କହୁଥିଲେ । ମୁଁ ତାକୁ ମୋଟେ ଭୁଲି ପାରୁନାହିଁ । "ଆରେ ଶରତ୍, ଦି'ଟା ନାଆରେ ଗୋଡ଼ ଦେଲେ ବୁଡ଼ିବା ସାର ହେବରେ । ଚାଲିଆ ଗୋଟାଏ ନାଆ ଉପରକୁ ।" ତା' ମଧ୍ୟ ପରିବାର ପାଇଁ ମୋ ଦେଇ ହେଇ ପାରିଲା ନାହିଁ । ଦୁଇଟା ନାଆରେ ଗୋଡ଼ ଦେଲି ଅଥଚ୍ ବାବି ଭାଇ ଆପଣଙ୍କ ପରି ସ୍ୱାଭିମାନୀ ହେଇ ବଞ୍ଚିଗଲି । ହାତ ପାତି ନାହିଁ । ପାଠ ଘରେ "ଚାଟ"ଟିଏ ହେଇ ବଞ୍ଚିଗଲି ସିନା- "ଭାଟ" ଟିଏ ହେବା କଳାଟିକୁ ଆପଣେଇ ପାରିଲି ନାହିଁ । ସ୍ୱାଭିମାନୀ କଳାକାରଟିଏ, "ଭାଟ" ହେବ କେମିତି ?

ଯୀଶୁଖ୍ରୀଷ୍ଟଙ୍କ ଉତ୍ସର୍ଗ କଥା ମନେ ପଡୁଛି । ଓଡ଼ିଶାର ଅଭିନୟ କଳାକୁ ବଞ୍ଚେଇ ରଖିବାର ମହାର୍ଘ୍ୟ ଦାୟିତ୍ୱଟି ଶେଷ ଜୀବନଯାଏ ପାଳନ କରିବା ଭିତରେ, ଆପଣଙ୍କର ଉଦାର ମନର ବ୍ୟଙ୍ଗ ଓ ହାସ୍ୟ ବ୍ୟଞ୍ଜକ ସଂଳାପଟିକକ ଆମପରି ଓଡ଼ିଆ ମାନଙ୍କର ପଥପ୍ରଦର୍ଶକ ହେଉ । ଆପଣଙ୍କର ଶେଷ କଥା- "କ'ଣ, ମିଳିଲା ?"

ଆମେ ଋଣୀ ହୋଇ ରହିଗଲୁ-ଉତ୍କୃଷ୍ଟ କଳାର ଦେଶରେ !

ବାବି ଭାଇ ! କେତୋଟି ଶ୍ରଦ୍ଧା ସୁମନ ଆପଣଙ୍କୁ ଦେବା ଛଡ଼ା ଆମପରି ଦରିଦ୍ର ଜାତିଟିଏ ଆଉ କଣ ବା ଦେବ ?



# ବରଗଡ଼ର ଲେଙ୍ଗୁ ବାବୁ - ଏକ ଅନନ୍ୟ ପ୍ରତିଭା

ଜୀବନର ଯଥାର୍ଥତା ବିଷୟରେ ଯୋଗୀ ମୁନି ମାନେ ଅନେକ କଥା କହିଛନ୍ତି। ଧର୍ମଗ୍ରନ୍ଥ ମାନଙ୍କରେ ଅନେକ କଥା ଲେଖା ଯାଇଛି। ଶ୍ରୀମଦ୍ ଭଗବତ୍ ଗୀତାରେ ଏହାର ତାତ୍ପର୍ଯ୍ୟ ବୁଝାଇ ଦିଆଯାଇଛି। ପୃଥିବୀର 'ସୁଫି' ପନ୍ଥୀମାନେ ନିଜର କବିତା ଓ ସଂଗୀତ ମାଧ୍ୟମରେ ଏହାର ପ୍ରଚାର ଆଜିଯାଏ, ବହୁ ଭାବରେ କରି ଚାଲିଛନ୍ତି। ହେଲେ ଯେଉଁ ଲୋକଟି କେବଳ ମଣିଷକୁ ଚିହ୍ନେ-? ତା'ର ଦୁଃଖ, କଷ୍ଟ ଦୟନୀୟତାକୁ ନେଇ ବ୍ୟଥିତ ହୋଇପଡ଼େ। ତା' ପାଇଁ ଧର୍ମ କିଛି ନୁହେଁ, ଜାତି ଭେଦ କିଛି ନୁହେଁ, ଶିକ୍ଷିତ ଅଶିକ୍ଷିତ କିଛି ନୁହେଁ, କଳା ଗୋରା କିଛି ନୁହେଁ। ସବୁ କେବଳ ମଣିଷ ! ପିଲା, ବୁଢ଼ା, ଝିଅ, ବୋହୁ, ବୁଢ଼ୀ ସମସ୍ତେ ଦୟାର ପାତ୍ର, କରୁଣାର ପାତ୍ର। ତା' ବ୍ୟତୀତ ଆଉ କିଛି ବିଚାର କରିବାର ନାହିଁ। ସୀମିତ ସମୟ ମଧ୍ୟରେ, ସୀମିତ ସମ୍ବଳ ମଧ୍ୟରେ ସେ ହତଭାଗ୍ୟ ମଣିଷଟିର କେତେ ମଙ୍ଗଳ କରାଯାଇପାରେ, ତାହାହିଁ ଲକ୍ଷ୍ୟ। ତାହାହିଁ ଏକମାତ୍ର କର୍ତ୍ତବ୍ୟ ହୋଇଯାଏ। ତାହାହିଁ ଜୀବନର ଯଥାର୍ଥତା !

ଏମିତି ଆଦର୍ଶରେ ଅନୁପ୍ରାଣିତ ଲୋକେ ସମାଜସେବୀ ବୋଲି ଆମ ସମାଜରେ ପରିଚୟ ପାଇ ଥାଆନ୍ତି। ସେମାନଙ୍କ ଚାରିପାଖରେ ଏକ ପ୍ରଚାର ପ୍ରାଚୀର ଗଢ଼ି ଉଠେ। ସେମାନେ ସକାଳୁ ରାତି ଯାଏ ଯାହା କରନ୍ତି ସବୁ ସମାଜ ସେବା ଭାବରେ ପ୍ରଚାର କରାଯାଏ। ସେମାନେ ଧୀରେ ଧୀରେ ସମାଜର ନେତୃତ୍ୱ ନିଅନ୍ତି। କିଛି ଦିନ ଭିତରେ ସେମାନେ ସାଧାରଣ ମଣିଷ ସ୍ତରରୁ ଉପରକୁ ଉଠି ଯାଆନ୍ତି। ସାଧାରଣ ମଣିଷ ସେମାନଙ୍କୁ ଦେଖା କରିବାକୁ ପାଆନ୍ତି ନାହିଁ। ହାରି ଗୁହାରି କରି ପାରନ୍ତି ନାହିଁ। ତଥାପି ସେମାନେ ଆମର (ସର୍ବସାଧାରଣଙ୍କର) ନେତା ଭାବରେ ବାରମ୍ବାର ପ୍ରଚାରିତ ହୋଇ ଥାଆନ୍ତି। ଆମେ ଭୋଟ ଦେଇ ଏମାନଙ୍କୁ ଏକ ସୁରକ୍ଷିତ ବଳୟକୁ ପଠାଇ ଦେଉ। ସେଠାରୁ ସେମାନେ ସ୍ୱର୍ଗର ପରୀ ଭାବରେ ଆମକୁ ଆଶ୍ୱାସନା ଦିଅନ୍ତି। ଅନେକ ପ୍ରତିଶ୍ରୁତି ଓ ସ୍ୱପ୍ନର ପୁଡିଆ ବାଣ୍ଟନ୍ତି। ଏମିତି ଆମ ସମାଜ, ଧନ/ଧାନ୍ୟରେ ଭରି ଯାଏ। ଯୁଗ ଯୁଗ ହେଇ ପଚାଶବର୍ଷ ବିତିଯାଏ।

ମଣିଷ କିନ୍ତୁ ସେମିତି ରହି ଯାଏ। ତାର ଦୁଃଖ, କଷ୍ଟ, ଅଭାବ, ଦାରିଦ୍ର୍ୟ, ଦୟନୀୟତାର ପରିବର୍ତ୍ତନ ହୁଏ ନାହିଁ। ରୋଗ, ମରୁଡ଼ି, ବନ୍ୟା, ବାତ୍ୟା, ମଡ଼କ କମେ ନାହିଁ। ଏମିତି ଏକ ଅବସ୍ଥାରେ କେତେ ଜଣ ମଣିଷ ବିଦ୍ରୋହୀ ହୋଇ ଯାଆନ୍ତି। ସ୍ଥିତାବସ୍ଥା ବିରୁଦ୍ଧରେ ତାଙ୍କର ବିଦ୍ରୋହ। ପତିଆରା ବିରୁଦ୍ଧରେ ଯୁଦ୍ଧ ଘୋଷଣା। ଧାର୍ମିକ ଦୁରାଚାର

ବିରୁଦ୍ଧରେ, ଆଇନକୁ ନେଇ ଖେଳୁଥିବା ଲୋକଙ୍କ ବିରୁଦ୍ଧରେ ସେମାନେ ସ୍ୱର ଉତ୍ତୋଳନ କରନ୍ତି। ନିଜ ଆତ୍ମିକ ଶକ୍ତିକୁ ଏକୀଭୂତ କରି 'ଇନକ୍ଲାବ ଜିନ୍ଦାବାଦ' କହି ତାଙ୍କର ଚତୁଃପାର୍ଶ୍ୱକୁ କମ୍ପାଇ ଦିଅନ୍ତି। ଏମିତି ମଣିଷମାନେ ସମାଜରେ କ୍ୱଚିତ୍ ଜନ୍ମ ଗ୍ରହଣ କରିଥାଆନ୍ତି। ଜୀବନରେ ସୁଖ କଣ ଜାଣନ୍ତି ନାହିଁ। ତାଙ୍କ ନିଜ ପରିବାରର ଲୋକେ ଅଭାବ ଅନାଟନରେ ଥିବା ବେଳେ, ସେମାନେ ତାଙ୍କ ଠାରୁ ଆହୁରି ନିଃସ୍ୱ ଲୋକଙ୍କର ମାନବିକ ଅଧିକାରକୁ ନେଇ ପୋଲିସର ଲାଠି ଖାଇବା ଶ୍ରେୟସ୍କର ମନେ କରନ୍ତି। ଜେଲ ଯାଆନ୍ତି। ଏମିତି ଜଣେ ଲୋକ ଥିଲେ ଲେଙ୍ଗୁବାବୁ। ମୁଁ ଯେତେବେଳେ ଚବିଶ ବର୍ଷ ବୟସରେ ତାଙ୍କୁ ଦେଖିଥିଲି, ସେ ସେତେବେଳେ ବରଗଡ଼ର ଜଣେ ବିଦ୍ରୋହୀ ନେତା। କମ୍ୟୁନିଷ୍ଟ ପାର୍ଟିର ସକ୍ରିୟ କମ୍ରେଡ୍। ଖାଲି ପାଦ, ମଇଳା ଧୋତି, ପାନପିକ ପଡ଼ିଥିବା ଫଟା କୁରୁତା ପିନ୍ଧା, ଫୁରଫୁର ଉଡୁଥିବା ଅସଜାଡ଼ିତ ମୁଣ୍ଡ ବାଳକୁ ଦୁଇ ହାତରେ ସାଉଁଟୁଥିବା ଜଣେ ବିଗତ ଯୌବନ ମଣିଷ। ମୋ ଠାରୁ ସେ ନିଶ୍ଚୟ ବୟସରେ ବଡ଼ ଥିଲେ। ବହୁ କଷ୍ଟରେ ମାଟ୍ରିକ୍‌ପାସ କରିଥିବା, ଏ ସାଧାରଣ ଜନତାର ପ୍ରିୟ ଲୋକଟି ବରଗଡ଼ ସହରର ଗଳିକନ୍ଦିରେ ପିଲା ବୁଢ଼ାଙ୍କର ଅତି ପିରିଚିତ ଚରିତ୍ରଟିଏ। ଧନୀ, ଦରିଦ୍ର, ନିଃସ୍ୱ, ବ୍ରାହ୍ମଣ, ଶୁଦ୍ର, ଗିରିଜନ, ହରିଜନ ସମସ୍ତଙ୍କ ପାଖରେ ସେ 'ଲେଙ୍ଗୁ ମିଶ୍ର'। ବ୍ୟକ୍ତିଗତ ଓ ସାମୂହିକ ସମସ୍ୟା ନେଇ ଲୋକେ ତାଙ୍କ ପାଖରେ ପହଞ୍ଚୁଥିଲେ। ସେ ସବୁ ବିଷୟ ଶୁଣୁଥିଲେ। କଥାଟିକୁ ଛାଣୁ ଥିଲେ, ସମସ୍ୟାଟିକୁ ତଉଲୁ ଥିଲେ। ଯଦି ତାଙ୍କର ହୃଦବୋଧ ହେଉଥିଲା ଯେ ଏହା ନିଶ୍ଚିତ ଭାବରେ ଏକ 'ସର୍ବହରାର ସମସ୍ୟା', ସେ କମର କସୁ ଥିଲେ। ମଇଦାନକୁ ସିଂହ ରୂପରେ ଡେଇଁ ପଡୁଥିଲେ।

୧୯୬୦ ଦଶକରେ ଶିକ୍ଷା ସଚେତନତା ବରଗଡ଼ ସବଡ଼ିଭିଜନକୁ ଗ୍ରାସ କରିଥିଲା। ଲୋକେ ସ୍କୁଲ କଲେଜ ଗଢ଼ିବାକୁ ଏକ ଆନ୍ଦୋଳନର ରୂପ ଦେଇଥିଲେ। ତା'ର ଜଣେ କର୍ମୀ ଥିଲ ଲେଙ୍ଗୁବାବୁ। ଗାଁ ଗାଁ ବୁଲି ଲୋକଙ୍କୁ ଶିକ୍ଷା ବିଷୟରେ ସଚେତନ କରାଇବା ଓ କଲେଜ ପାଇଁ ଚାନ୍ଦା ସଂଗ୍ରହ କରିବାରେ ସେ ସହଯୋଗ କରିଥିଲେ। କଲେଜରେ ନାଁ ଲେଖାଇ ପାଠ ପଢ଼ିବା ପାଇଁ ଅଭିଭାବକ ମାନଙ୍କୁ ସେ ଅନୁରୋଧ କରିଥିଲେ। କଲେଜର ଛାତ୍ର ଭାବରେ ଯୋଗ ଦେଇ ସେ ପଞ୍ଚାୟତ କଲେଜର ପ୍ରଥମ ଛାତ୍ର ସଂସଦର ସଭାପତି ଭାବରେ ମନୋନୀତ ହୋଇଥିଲେ।

ନିରୁତା ସମାଜସେବାର ସମସ୍ତ କାର୍ଯ୍ୟ ମଧ୍ୟରେ ତାଙ୍କର ଖେଳକୁଦ ପ୍ରତି ଆଗ୍ରହ ମୋତେ ସ୍ତମ୍ଭୀଭୂତ କରିଥିଲା। ଭଲିବଲ୍ ଓ ଫୁଟବଲ୍ ଖେଳ ସେତେବେଳେ ବରଗଡ଼ର ମୁଖ୍ୟ ଲୋକପ୍ରିୟ ଖେଳ। ତା ବ୍ୟତୀତ କବାଡ଼ି ଓ ବାର୍ଷିକ ଖେଳକୁଦ (ସ୍ପୋର୍ଟ୍‌ସ) ପ୍ରତିଯୋଗିତା ଆୟୋଜନ କରିବାରେ ତାଙ୍କର ଅକ୍ଳାନ୍ତ ନିଃସ୍ୱାର୍ଥପର ସହଯୋଗ କେବେ ଭୁଲିହେବ ନାହିଁ। ସେ ନିଜେ ଜଣେ ଭଲ ଫୁଟବଲ୍ ଖେଳାଳୀ ଥିଲେ।

ଜର୍ଜ ହାଇସ୍କୁଲ୍ ପଡ଼ିଆ, କଲେଜ ପଡ଼ିଆ, କଚେରୀ ପଛପଟ ପଡ଼ିଆ ସେତେବେଳେ ଏ ଖେଳକୁଦ ପାଇଁ ଓ ଫୁଟବଲ, ଭଲିବଲ ଟୁର୍ଣ୍ଣାମେଣ୍ଟ ପାଇଁ ବ୍ୟବହୃତ ହେଉଥିଲା । ଏସବୁ ପଡ଼ିଆର ଯତ୍ନ ଓ ଏମାନଙ୍କୁ ନେଇ ବରଗଡ଼ରେ ଏକ ଷ୍ଟାଡ଼ିୟମ୍ ଗଡ଼ିବାର ଚିନ୍ତା ତାଙ୍କ ମୁଣ୍ଡରେ ପଚାଶ ଦଶକରୁ ଲାଗି ରହିଥିଲା । ଅନେକ ଦିନ ଯାଏ ଏହା ବହୁ କାରଣରୁ ସମ୍ଭବ ହୋଇ ପାରିନଥିଲା । କିନ୍ତୁ ତାଙ୍କରି ଉଦ୍‌ଯୋଗରେ ଶେଷରେ ଷ୍ଟାଡ଼ିୟମର କାର୍ଯ୍ୟ ଆରମ୍ଭ ହୋଇଥିଲା । ବର୍ତ୍ତମାନ ବରଗଡ଼ର ଯୁବ ଖେଳାଳୀ ମାନେ ଏ ବିଷୟରେ ସେତେ ସଚେତନ ନୁହଁନ୍ତି-ପରି ମନେ ହୁଏ ।

ଲେଙ୍ଗୁମିଶ୍ର, ଜଣେ କମ୍ରେଡ୍ ଭାବରେ ବରଗଡ଼ ଚାରିପାଖରେ ଯେତେ ପରିଚିତ ଥିଲେ, ସୌଭାଗ୍ୟକୁ ମୋ ପାଖରେ ସେ ଜଣେ ଅତି ନିରୀହ ମଣିଷ ପାଲଟି ଯାଉଥିଲେ । ତାର କାରଣ ଥିଲା ମୁଁ ତାଙ୍କ ପାରିବାରିକ ବଳୟ ସହିତ ସଂପୃକ୍ତ ଥିଲି । ଘରେ ବୟସ୍କ ମାତା ପିତା ଓ ନବବିବାହିତ ପତ୍ନୀଙ୍କ ସହିତ ମୋର ପରିଚୟ ହୋଇଥିଲା ମୋର ବରଗଡ଼ ରହଣିର ଦୁଇବର୍ଷ ମଧ୍ୟରେ । ମୁଁ ବରଗଡ଼ ପଞ୍ଚାୟତ କଲେଜର ଅଧ୍ୟାପକ/ ଭାରପ୍ରାପ୍ତ ଅଧ୍ୟକ୍ଷ ଭାବରେ ପ୍ରାୟ ବରଗଡ଼ର ସାତଟି ଭଡ଼ା ଘରେ ରହିବାର ସୁଯୋଗ ପାଇଥିଲି । ସେଥିରୁ ଲେଙ୍ଗୁ ବାବୁଙ୍କ ପୈତୃକ ଘର ପଛପଟେ ଗୋଟିଏ ଦୁଇ କୋଠରୀ ବିଶିଷ୍ଟ ଘରେ କିଛି ମାସ ଭଡ଼ାରେ ଥିଲି । ଲେଙ୍ଗୁ ବାବୁଙ୍କ ଧର୍ମପତ୍ନୀ ମୋ ସ୍ତ୍ରୀଙ୍କୁ ମାଉସୀ ଡ଼ାକିବାରୁ ମୁଁ ତାଙ୍କର ସମ୍ମାନନୀୟ ମଉସା ସ୍ତରକୁ ଆସିଯାଇଥିଲି । ତେଣୁ ପ୍ରଥମ ଦୁଇବର୍ଷ ପରେ ଯଦିଓ ସେ ପଞ୍ଚାୟତ କଲେଜର ଛାତ୍ର ନଥିଲେ ଓ ସାଧାରଣ ଭାବରେ ଜଣେ ପ୍ରାଦେଶିକ ସ୍ତରର ସମ୍ମାନନୀୟ କମ୍ରେଡ୍ ଥିଲେ, ମୋ ପାଖରେ ଶେଷ ଜୀବନ ଯାଏ ସେ ଜଣେ ଝିଆରୀଜ୍ୱାଇଁର ପରିଚୟ ଦେବାକୁ ଭୁଲୁନଥିଲେ ।

୧୯୭୮ ମସିହା ପରେ ମୁଁ ଲରମ୍ବା କଲେଜର ଅଧ୍ୟକ୍ଷ ପଦରେ ରହିବା ସମୟରେ ସାମୟିକ ଭାବରେ ବରଗଡ଼ର ବହୁ ପରିବାର ସହିତ ବ୍ୟକ୍ତିଗତ ସଂପର୍କ ରଖିଥିଲି । ସେଥିଭିତରୁ ଲେଙ୍ଗୁ ମିଶ୍ର ଓ ତାଙ୍କର ଧର୍ମପତ୍ନୀଙ୍କ ସହିତ ମୋର ସଂପର୍କ ଥିଲା ଅତି ଆନ୍ତରିକ । ତାଙ୍କର ପରିବାରର ସାନ ଭାଇଟିର ସମସ୍ତ ସନ୍ତାନସନ୍ତତିଙ୍କ ପ୍ରତି ଲେଙ୍ଗୁବାବୁ ଥିଲେ ଅଭିଭାବକ । ସେମାନଙ୍କ ଭବିଷ୍ୟତ ବିଷୟରେ ସେ ଯଥେଷ୍ଟ ଚିନ୍ତିତ ଥିଲେ । ବରଗଡ଼ ସହର ଓ ଏଠାର ବାସିନ୍ଦାଙ୍କୁ ସେ ଭଲ ପାଉଥିଲେ । ଗରିବ, ନିଷ୍ପେଶିତ ଓ ନିରାଶ୍ରୟ ଲୋକଙ୍କ ସେ ଥିଲେ ବନ୍ଧୁ । ବେଳେବେଳେ ଜଣଙ୍କ ଘରେ ଦୁଇ ତିନି ଦିନ ଯାଏ ରୋଗୀ ସେବା କରିବା ଭିତରେ ସେ ଘରକୁ ଫେରୁ ନଥିଲେ । ଖବର ମଧ୍ୟ ପଠାଉ ନଥିଲେ । ତାଙ୍କର ଏ ପ୍ରକୃତି ଦେହସୁହା ହୋଇ ଯାଇଥିଲେ ମଧ୍ୟ ଧର୍ମପତ୍ନୀ ନଖାଇ ନପିଇ ବାଟ ଚାହିଁ ରହିବାଟା ମୋ କାନକୁ ଆସିଲେ ମୁଁ ବେଳେବେଳେ ତାଙ୍କୁ ଶୁଣାଇ ଦେଉଥିଲି । ସେ ଲଜ୍ଜିତ

ହେଉଥିଲେ । କିନ୍ତୁ ଅଭ୍ୟାସ ବଦଳୁନଥିଲା । ବୟସ ବଢ଼ିବା ସଂଗେ ଏସବୁ ଯଥେଷ୍ଟ କମି ଥିଲେ ମଧ୍ୟ ତାଙ୍କର ଅଗ୍ନିବର୍ଷି ସ୍ଫୁଲିଙ୍ଗ ବେଳେବେଳେ ଗୋଟିଏ ସମସ୍ୟାକୁ ତାର ନିଧାର୍ଯ୍ୟ ରୂପରେଖ ଦେବାରେ ସାହାଯ୍ୟ କରୁଥିଲା- ତାଙ୍କ ଜୀବନ ଯାଏ ।

ବିଦ୍ରୋହୀର ସମସ୍ତ ଜିଦ୍‌ଖୋରୀ ମନୋଭାବ ଭିତରେ ଗୋଟିଏ ସରଳ, ନୀରିହ, ମାନବବାଦୀ ମଣିଷର ହୃଦୟ ମୋତେ ତାଙ୍କ ପାଖକୁ ଆକର୍ଷିତ କରିଥିଲା ।

ତାଙ୍କ ପାର୍ଟିର ବହୁ ନେତାଙ୍କ ସହିତ ମୋର ପରିଚୟ ଥିଲେ ମଧ୍ୟ, ଲେଙ୍ଗୁ ବାବୁ ସବୁବେଳେ ଓଡ଼ିଶାର ଜଣେ ଅନନ୍ୟ ପ୍ରତିଭା ଭାବରେ ମୋର ଭବିଷ୍ୟତ୍ ବଂଶଧର ମାନଙ୍କୁ ପ୍ରଭାବିତ କରିବେ ବୋଲି ମୋର ବିଶ୍ୱାସ ଅଛି । ତାଙ୍କର ସ୍ୱପ୍ନ କେବଳ ସ୍ୱପ୍ନ ନହେଉ । ତାଙ୍କୁ ମୋର ଲାଲ୍ ସଲାମ୍ ।



# ଦରଦୀ ଓ ଦୁଃଖୀ କଳାକାର - ବନ୍ଧୁ ନରେନ୍ଦ୍ର ମହାନ୍ତି

୧୯୫୮ ମସିହା । ସଦ୍ୟ ମୋ' ମୁଣ୍ଡରୁ ବାପାଙ୍କ ଆଶ୍ରା ହଜିଯାଇଥାଏ । ଘରର ସାତଟି ଛୋଟ ଭାଇ, ଗୋଟିଏ ଭଉଣୀ ଓ ମା'ଙ୍କ ଦାୟିତ୍ୱ ସହିତ ନିଜର ସ୍ତ୍ରୀ ଓ ଗୋଟିଏ ଦୁଗ୍ଧପୋଷ୍ୟ ଶିଶୁର ଭରଣ ପୋଷଣର ଦାୟିତ୍ୱ ମୋ ଉପରେ ଅଜାଡ଼ି ପଡିଥାଏ । ପ୍ରୟାଗ ବିଶ୍ୱବିଦ୍ୟାଳୟର ଆଇନ ବିଭାଗର ଛାତ୍ର ଓ ଜଣେ ବେକାର ଭାବରେ ମୋର ସେତେବେଳର ପରିଚୟ । ସମ୍ବଲପୁର ସହରର ପୈତୃକ ଘର ଛାଡ଼ି କଟକରେ ଅନ୍ନ ସଂସ୍ଥାନ ସନ୍ଧାନରେ ଆସି ବଡ଼ ଭଉଣୀ ଓ ପରିସଂଖ୍ୟାନ ବିଭାଗର ଅଫିସର ମୋର ଭିଣୋଇଙ୍କ ଭଡ଼ାଘରେ ତଗରପଡ଼ାରେ ରହୁଥାଏ । ମୋର ମାନସିକ ଅବସ୍ଥା ବିଷୟରେ କହିବା ନିଷ୍ପ୍ରୟୋଜନ । ପ୍ରଜାତନ୍ତ୍ର ଓ ମାତୃଭୂମି ପ୍ରେସରେ ବ୍ଲକ ଡିଜାଇନର କାମ ଠିକାରେ କରିବାପାଇଁ କେତେଜଣ ବନ୍ଧୁ ସାହାଯ୍ୟ କରିଥିଲେ । ମାସକୁ ପଚାଶ/ଷାଠିଏ ଟଙ୍କାରେ ଚଳିବାକୁ ପଡୁଥାଏ । ଭିଣୋଇଙ୍କ ଦୟାରୁ ଦୁଇବଖତ ଖାଇବା ଓ ଆଶ୍ରୟସ୍ଥଳଟିଏ ମିଳିଥାଏ । ବିଭିନ୍ନ ସଂସ୍ଥାକୁ ଚାକିରିଟିଏ ପାଇଁ ଦରଖାସ୍ତ ପଠେଇବା ଓ ସାକ୍ଷାତ କରିବାପାଇଁ କଟକ ସହରହିଁ ସେତେବେଳେ ଉତ୍କୃଷ୍ଟ ବିବେଚିତ ହେଉଥିଲା ।

ତଗରପଡ଼ା ନିକଟବର୍ତ୍ତୀ ପ୍ରଜାତନ୍ତ୍ର ପ୍ରେସରେ ଶ୍ରୀ ଦେବେନ୍ଦ୍ର ମହାନ୍ତି ସହ ସଂପାଦକ ଭାବରେ କାର୍ଯ୍ୟ କରୁଥିଲେ ଓ ଚାନ୍ଦିନୀ ଚୌକ ପାଖ ଷ୍ଟୋନିରୋଡ଼ ରାସ୍ତାକଡ଼ରେ ଘରଭଡ଼ା ନେଇ ରହୁଥିଲେ । ଶ୍ରୀ ନରେନ୍ଦ୍ର କୁମାର ମହାନ୍ତି ତାଙ୍କର ସାନ ଭାଇ । ସେ ତାଙ୍କ ବଡ଼ଭାଇଙ୍କ ସହିତ ରହୁଥିବା ସମୟରେ ମୋର ତାଙ୍କ ସହିତ ପରିଚୟ ହୋଇଥିଲା ।

ନରେନ୍ଦ୍ରବାବୁ ମୋ'ଠାରୁ ଚାରିବର୍ଷ ବଡ଼ଥିଲେ । ଗୋରା ତକ୍‌ତକ୍ ଚେହେରା । ମିଷ୍ଟଭାଷୀ କଥାରେ କଥାରେ ଛୋଟପିଲାପରି ହସ । ଆଖି ଦୁଇଟିରେ ଭରି ରହିଥିଲା ଦୁନିଆଯାକର ଦରଦ, ସ୍ନେହ, ଆଦର । ତା'ଭିତରେ କେମିତି ଗୋଟିଏ ଦାର୍ଶନିକ ମନୋଭାବ । ଏସବୁ ବିଶେଷ ଐଶ୍ୱରୀୟ ଲକ୍ଷଣପାଇଁ ସେ ମୋତେ ପ୍ରଭାବିତ କରିଥିଲେ । ଦୁଇଜଣ ଯାକ ଚାକିରୀ ନାମଧେୟ ପଦାର୍ଥଟିର ଅନ୍ୱେଷଣ କଟକ ସହରରେ କରିବାପାଇଁ ମନୋନିବେଶ କରିଥିଲୁ । ସମ୍ବଳ କେବଳ ପାଠପଢ଼ା ଡିଗ୍ରୀ ।

ଗଞ୍ଜାମ ଜିଲ୍ଲାର ଆସ୍କା ସହରରେ ତେଣେ କବିରାଜ ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ ଶର୍ମାଙ୍କ ଉତ୍କଳ ଚଳଚ୍ଚିତ୍ର ସମବାୟ ପ୍ରତିଷ୍ଠାନ, ତାଙ୍କର ପ୍ରଥମ ଅବଦାନ ପାଇଁ କେତେଜଣ ପେଷାଦାର ନାଟ ଓ ନାଟକ କଳାକାରଙ୍କୁ ମନୋନୀତ କରିବା ପରେ, ପାଠପଢୁଆ ଯୁବ କଳାକାର ସନ୍ଧାନରେ କଟକ ହୋଟେଲରେ ଡ଼େରା ପକେଇଲେ । ଏହା ରେଭେନ୍‌ସା

କଲେଜ ପାଖର ସବୁଠାରୁ ଆଧୁନିକ ହୋଟେଲ ଭାବରେ ଗଣା ଯାଉଥିଲା । ଏହି ହୋଟେଲରେ ପ୍ରତିଷ୍ଠାନର ଚାରିପାଞ୍ଚ ମୁଖ୍ୟ କାର୍ଯ୍ୟକାରୀ ସଭ୍ୟଙ୍କ ସହିତ ରହୁଥାନ୍ତି କଲିକତା ନିବାସୀ ଚଳଚ୍ଚିତ୍ର ସଂପାଦକ ଓ ନିର୍ଦ୍ଦେଶକ ଶ୍ରୀ ଭଗବାନ ନାୟକ, ବିଖ୍ୟାତ ଚିତ୍ରଉତ୍ତୋଳକ ଶ୍ରୀ ରାମାନନ୍ଦ ସେନଗୁପ୍ତ; ଶବ୍ଦ ଗ୍ରହଣ ଇଂଜିନିୟର ଓ ଟେକ୍‌ନିସିଏନ୍ ଷ୍ଟୁଡ଼ିଓର ଅଂଶୀଦାର ଶ୍ରୀ ସତ୍ୟେନ୍ ଚାଟାର୍ଜୀ; ନାଟ୍ୟକାର, କାହାଣୀକାର ଓ ଚିତ୍ରନାଟ୍ୟ ଲେଖକ ଶ୍ରୀ ସତ୍ୟନାରାୟଣ ପଣ୍ଡା । କଳାକାରମାନଙ୍କୁ ହୋଟେଲକୁ ଡ଼କାଇ ତାଙ୍କର ମତାମତ ସଂଗ୍ରହ ପରେ ଏ ଦଳ କଲିକତା ଫେରିଯାଇଥିଲେ । ୧୯୫୮ ସେପ୍‌ଟେମ୍ବର ମାସରେ ଆମେ ଯେଉଁ କେତେଜଣ କଲିକତାରୁ ଡାକରାପାଇ ଟ୍ରେନ୍‌ରେ ଏକସଂଗରେ କଟକ ଛାଡିଲୁ, ସେମାନେ ହେଲୁ ଶ୍ରୀ ଧୀରେନ୍ଦ୍ର ନାଥ ବିଶ୍ୱାଳ, ଶ୍ରୀ ଶ୍ରୀକାନ୍ତ ମିତ୍ର, ଶ୍ରୀ ନରେନ୍ଦ୍ର କୁମାର ମହାନ୍ତି ଓ ଶରତ୍ ଚ଼ନ୍ଦ୍ର ପୂଜାରୀ । କଲିକତାର ବିଖ୍ୟାତ ନିଉ ଥିଏଟର୍ସ ଷ୍ଟୁଡିଓ (ଏକ ନମ୍ବର)ର ଠିକ୍ ସାମନାରେ ଗୋଟିଏ ଭଡ଼ାଘର ଥିଲା ଆମ ଆଶ୍ରୟ ସ୍ଥଳ । ରୋଷେୟା, ଚ଼ାକର, ମେନେଜର, ଅଫିସଘର, ଷ୍ଟୋର୍ ଓ ରୋଷେଇ ଘର ଓ ସ୍ତ୍ରୀ ପୁରୁଷ କଳାକାର ମାନଙ୍କୁ ରହିବା ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ଥିବା ସତ୍ତ୍ୱେ, ରାତିରେ ଶୋଇବା ବେଳେ ପ୍ଲାଟ୍‌ଫର୍ମରେ ବିକଳ ଯାତ୍ରୀମାନେ ଶୋଇବା ପରି ଦୃଶ୍ୟ ଦେଖିବାକୁ ମିଳୁଥିଲା । ବେଡିଂ ଓ ମଶାରି ଯେତିକି ସ୍ଥାନ ଆବୋରିବା କଥା ସେତିକି ଥିଲା ଆମର ବ୍ୟକ୍ତିଗତ ଜାଗା । ସକାଳ ପାହିବା ପୂର୍ବରୁ ବେଡିଂ ମଶାରି ଗୁଡ଼େଇଦେଇ କାନ୍ଥ କଡ଼ରେ ଆଉଜାଇ ଦିଆଯାଉଥିଲା । ନରେନ୍ଦ୍ର ବାବୁ ଓ ମୁଁ ପାଖାପାଖି ବେଡିଂ ଗୁଡ଼େଇ ରଖୁଥିବାରୁ ଆମର ଘନିଷ୍ଠତା ବଢ଼ିଲା । ମୋର ମାନସିକ ଅବସ୍ଥା ବିଷୟରେ ଆମ ୟୁନିଟ୍‌ର ସମସ୍ତେ ଜାଣିଥିଲେ । ତେଣୁ ସମବେଦନା ଜଣାଉଥିଲେ । ତା'ଭିତରୁ ନରେନ୍ଦ୍ରବାବୁ ଥିଲେ ନିଆରା ମଣିଷ । ମୋ ପାରିବାରିକ ସମସ୍ୟା ବିଷୟରେ ସେ ପଚ଼ାରି ବୁଝୁଥିଲେ । ବେଳେବେଳେ ତାଙ୍କ ଦୁଃଖଦ କାହାଣୀ କହୁଥିଲେ । ମୋ' ନିଜର ଦୁଃଖକୁ ତୁଳନାକରି ମୁଁ ସ୍ତମ୍ଭୀଭୂତ ହେଉଥିଲି । ମୋ' ଭିତରେ ଅନେକ ସାହସ ଆସିଥିଲା ।

ଶ୍ରୀଶ୍ରୀ ମହାଲକ୍ଷ୍ମୀ ପୂଜାର ପ୍ରଯୋଜନା ସମୟ ସେପ୍‌ଟେମ୍ବର ୧୯୫୮ରୁ ମାର୍ଚ୍ଚ ୧୯୫୯ ଯାଏଁ ଚାଲିଥିଲା । କଲିକତାର ତିନି ଚାରିଟା ଷ୍ଟୁଡିଓର ସେଟ୍‌ରେ, ପୁରୀର ସମୁଦ୍ର ବେଳାଭୂମି, ନୋଳିଆ ବସ୍ତି, ଗୁଣ୍ଡିଚ଼ା ମନ୍ଦିର ଓ ଚିଲିକା କୂଳରେ (ବରକୂଳ ପାଖରେ) ଚଳଚ୍ଚିତ୍ରର ଭିତର ଓ ବାହାର ଦୃଶ୍ୟ ଉଠାହୋଇଥିଲା । ନୂତନ ଅଭିନୟ ଓ ଅଭିଜ୍ଞତା ଯୋଗୁଁ ପାଞ୍ଚ ଛଅ ମାସ ଯାଏ ଉତ୍ତେଜନା ଓ ଉନ୍ମାଦନା ଭରି ରହିଥିଲା । ଦକ୍ଷିଣ ଓଡ଼ିଶାର ବହୁ କଳାକାର ଏ ଚଳଚ୍ଚିତ୍ରରେ ସଂପୃକ୍ତ ଥିଲେ । ପ୍ରଥମଥର ପାଇଁ ସୁରମଣି ରଘୁନାଥ ପାଣିଗ୍ରାହୀ ଏ ଚଳଚ୍ଚିତ୍ରରେ ଦଶାବତାର ଗୀତଟି ବୋଲିଥିଲେ । ପଦ୍ମଶ୍ରୀ ସଂଯୁକ୍ତା ପାଣିଗ୍ରାହୀ

ଦଶବତାର ନୃତ୍ୟମଧ୍ୟ କରିଥିଲେ । ଚଳଚ୍ଚିତ୍ରଟିର ଶେଷରେ ଜଗନ୍ନାଥ, ବଳଭଦ୍ର ଓ ମା' ମହାଲକ୍ଷ୍ମୀ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରିବାପରେ ଦଶାବତାର ଗୀତଟି ସଂଯୁକ୍ତାଙ୍କ ନୃତ୍ୟ ମାଧ୍ୟମରେ ପ୍ରଦର୍ଶିତ କରିବାର ଯୋଜନା ହେଲା ଆମ ସୁଟିଂ ଚାଲିଥିବା ସମୟରେ । ପ୍ରତ୍ୟେକ ପଦର ଶେଷ ଭାଗରେ ଯେତେବେଳେ "ଜୟ୍ ଜଗଦୀଶ ହରେ" ଘୋଷା ଆକାରରେ ବୋଲାଯାଏ, ସେଠାରେ ନିର୍ଦ୍ଦେଶକ ଚାହିଁଲେ ମୋର ମୁଖ ଓ ଶରୀରରେ ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ, ରାମ, ପରଶୁରାମ ଅବତାରମାନ ସମୁଦ୍ରର ଜଳମଧ୍ୟରେ ଦେଖାଯିବ । ମୋତେ ଏ ବିଷୟ୍ ଜଣାଇ ଦିଆଗଲା । ମୋର ଅଣ୍ଟାମାପ ପର୍ଯ୍ୟନ୍ତ ମତ୍ସ୍ୟ ଓ କଚ୍ଛପର କାଗଜ ଓ ପ୍ଲାଷ୍ଟର ଅଫ୍ ପାରିସର ଖୋଳ ଓ ମୋ ମୁଣ୍ଡ ସାଇଜରୁ ବଡ଼ ବରାହ ଓ ନୃସିଂହ ମୁଖା ତିଆରି କରାଗଲା । ଏକନମ୍ବର ଷ୍ଟୁଡ଼ିଓ ଖାଲି ଫ୍ଲୋରରେ ଗୋଟିଏ କାଠର ମଣ୍ଡପ ଉପରେ ମୋର ଖୋଳ, ମୁଖା, ସିଂହାସନ, ସ୍ତମ୍ଭର ସେଟ୍ ସବୁ ପ୍ରସ୍ତୁତ ହୋଇ ରହିଲା । ପ୍ରଥମରୁ ମୋର ମତ୍ସ୍ୟ ଅବତାରର ମେକ୍ଅପ୍ ଓ ପୋଷାକ ପିନ୍ଧିବା ପରେ, ଚତୁର୍ଭୁଜ ମୂର୍ତ୍ତି ପାଇଁ ଅନ୍ୟ ଦୁଇଟି ହାତ ବିଷୟରେ ସମସ୍ତେ ଭୁଲି ଯାଇଥିଲେ । ନରେନ୍ଦ୍ରବାବୁ ସକାଳୁ ମୋ' ସହିତ ଜଳଖିଆ ଖାଇ ବାହାରି ଆସିଥିଲେ ସେଟ୍ ଓ ସୁଟିଂ ଦେଖିବା ପାଇଁ । ମଧ୍ୟାହ୍ନ ଭୋଜନବେଳେ ହାତ ବିଷୟରେ ସମସ୍ତଙ୍କର ମନେ ପଡ଼ିଲା । କ୍ୟାମେରାମ୍ୟାନ ଜଣେ ଗୋରାଲୋକଙ୍କ ହାତ ଖୋଜିବାକୁ କହିଲେ । ନରେନ୍ଦ୍ର ବାବୁଙ୍କ ହାତ ସହିତ ମୋ' ହାତର ରଂଗ ଓ ସାଇଜ୍ ମେଚ କରିବାରୁ, ସେ ନିର୍ବିକାର ଚିତ୍ତରେ ମୋ' ପଛରେ ଛିଡ଼ା ହୋଇ ତାଙ୍କ ହାତ ଦୁଇଟି ଧାର ଦେବାକୁ ରାଜି ହେଲେ । ଖାଲି ଦେହରେ ଶଙ୍ଖ ଓ ଚକ୍ର ଧରି ସେ ମୋ ଉପରୁ ହାତ ଦୁଇଟିକୁ କାଢ଼ି ନିଜ ମୁଣ୍ଡକୁ ମୋ' ମୁଣ୍ଡ ପଛରେ ଲୁଚାଇ ରଖିବାକୁ ତାଙ୍କୁ ନିର୍ଦ୍ଦେଶ ଦିଆଗଲା । ମୋ' ଦୁଇଟି ହାତରେ ଗଦା ଓ ପଦ୍ମ ଧରାଇଦେଇ ତଳକୁ ଝୁଲାଇ ଦିଆଗଲା । ସୁଟିଂ ଆରମ୍ଭ ହେବା ବେଳକୁ ସନ୍ଧ୍ୟା ୬ଟା ହୋଇ ଯାଇଥିଲା । ଆମେ ଦୁହେଁ ମଧ୍ୟାହ୍ନ ଭୋଜନ ନଖାଇ ଆମ ମେକ ଅପ୍ ଓ ସୁଟିଂ ବିଷୟରେ ବ୍ୟସ୍ତ ରହି କ୍ୟାମେରା ଆସିଷ୍ଟେଣ୍ଟ ମାନଙ୍କୁ ରିହରସାଲ ଦେଖାଇବାରେ ବ୍ୟସ୍ତ ରହିଲୁ ।

ମୀନ ଅବତାର ପରେ, କଚ୍ଛପ ଅବତାର ବେଳକୁ ରାତି ନ'ଟା ବାଜିଗଲା । ମୁଁ ମୁଖ୍ୟ ନାୟକ ଭାବରେ ଖୋଳ ଭିତରେ ଛିଡ଼ା ହେଇ ଯେତିକି କଷ୍ଟ ଭୋଗୁଥିଲି, ନରେନ୍ଦ୍ର ବାବୁ ଚେହେରା ଲୁଚାଇ, କେବଳ ହାତ ଦୁଇଟି ମୋ' କାନ୍ଧ ଉପରେ ରଖି ଶଙ୍ଖ ଚକ୍ର ଦେଖେଇବାରେ ବେଶି କଷ୍ଟ ଭୋଗୁ ଥିଲେ । ସୁଟିଂ ତଥାପି ଚାଲିଥାଏ । ରାତି ୯ଟା ପରେ ଆରମ୍ଭ ହେଲା ବରାହ ଓ ନୃସିଂହ ଅବତାର । ଏ ଦୁଇଟି ମୁଖା ବା ମୁଣ୍ଡର ଖୋଳ ପେପର ମୁଖା ଓ ପ୍ଲାଷ୍ଟର ଅଫ ପେରିସ ଖୋଳ ଯାହା ମୋତେ ପିନ୍ଧିବାକୁ ପଡୁଥିଲା । ଖୋଳକୁ ବୋହି ମୁଣ୍ଡ ସିଧାରଖିବା, ଲାଇଟ ମେନ୍ ଓ କ୍ୟାମେରାମେନ ନିର୍ଦ୍ଦେଶମାନି ଛିଡ଼ାହେବା, ନିଶ୍ୱାସ

ନେବାବେଳକୁ ଶ୍ୱାସରୁଦ୍ଧପରି ଲାଗିବା ଓ ସେଟ/ପୋଷାକରେ ଗରମ ଅସହ୍ୟ ହୋଇଗଲେ ମୁଁ ନରେନ୍ଦ୍ରବାବୁଙ୍କୁ ହିଁ ଜଣାଉଥିଲି, କାରଣ ସେ ମୋର ଠିକ୍ ପଛପଟେ ତାଙ୍କ ହାତ ଦୁଇଟି ଦେଖେଇ ନିଶ୍ଚଳ ହୋଇ ଛିଡ଼ା ହୋଇ ରହିଥିଲେ । ଏ ଦୁଇଟି ଅବତାର ମୋତେ ଏତେ ଶାରିରୀକ କଷ୍ଟଦେଲେ ଯେ ସୁଟିଂ ସରିବା ବେଳକୁ ରାତି ବାରଟା ବାଜିଗଲା । ନରେନ୍ଦ୍ରବାବୁ ଓ ମୁଁ ନଖାଇ, କେବଳ ପାନୀୟ ପିଇ ଏ କୃଚ୍ଛ୍ର ସାଧନାରେ, ଠାକୁରଙ୍କ ମାନସିକ ପାଇଁ ନିମଜ୍ଜିତ ଥିଲୁ । କହିବାକୁ ଗଲେ ଉପବାସରେ ରହିଗଲୁ । କିନ୍ତୁ ମୋ'ର ସେତେବେଳେ ଶରୀର ଦୁର୍ବଳ ଓ ମାନସିକ ଦୁଃଶ୍ଚିନ୍ତା ପାଇଁ ପ୍ରାୟ ପେଟ ଗଣ୍ଡଗୋଳ ହେଉଥାଏ । ପେଟରେ ବାୟୁ ହୋଇ ଗର୍ଜନ ଛାଡୁଥାଏ । ଯତ୍‌ପରୋନାସ୍ତି ଏହାକୁ ଚାପିରଖିବାରେ ମୁଁ ବ୍ୟର୍ଥହେଲି । ନରେନ୍ଦ୍ରବାବୁ ମୋତେ ଆସ୍ତେ ପଚାରିଲେ, ସେଟ୍‌ର ପଟାକଂଟା ଗଡ଼ଗଡ଼ ହେଉଛି ନା ଆପଣଙ୍କ ପେଟ ଯୋରରେ ଗର୍ଜନ ହେଉଛି ? ମୁଁ ହଁ ବୋଲି କହିବା ପରେ ତାଙ୍କର ଅନୁରୋଧରେ ଆମକୁ ଘଣ୍ଟାଏ ଛୁଟି ମିଳିଲା । ଆମେ ପୋଷାକ ଖୋଲି ଟଏଲେଟ୍ ଦଉଡିଲୁ । ପଙ୍ଖାତଳେ ଆରାମରେ ବସିଲୁ । ଆମ ପାଇଁ ପଇଡ଼ପାଣି ଓ ସନ୍ଦେଶ ଆସିଲା । ସବୁ ସୁଟିଂ ସରିବାବେଳକୁ ସକାଳ ପାହିଗଲା । ନରେନ୍ଦ୍ରବାବୁଙ୍କ ସାହାଯ୍ୟ ଓ ସହଯୋଗ ମୁଁ କେବେ ଭୁଲି ପାରି ନାହିଁ । ନାୟକମାନଙ୍କୁ ଯେତେ ପ୍ରଶଂସା ମିଳିଥାଏ, ତା'ର ଅଧାରୁ ବେଶୀ ଯେ ଏମିତି କେତେଜଣ ସହକଳାକାର ଓ କଳାକୁଶଳୀଙ୍କ ଅବଦାନ, ଏକଥା ବହୁ ଅଭିନେତା ସ୍ୱୀକାର କରନ୍ତି ନାହିଁ । ମୋର ପ୍ରଥମ ଚଳଚ୍ଚିତ୍ରର ଏ କଷ୍ଟକର ଅନୁଭୂତି ଆଜିଯାଏ ମୁଁ ଭୁଲି ପାରିନାହିଁ । ଏ ଥିଲା ଓଡ଼ିଶାର ଦଶମ ଓଡ଼ିଆ ଚଳଚ୍ଚିତ୍ରର ପ୍ରସ୍ତୁତି ପର୍ବ !

୧୯୫୯ ମେ' ମାସରେ ଦଶମ ଓଡ଼ିଆ ଚଳଚ୍ଚିତ୍ର ଓଡ଼ିଶାର ସାମାଜିକ ପରଂପରା ଓ ଧର୍ମ ଧାରଣାକୁ ନେଇ ମୁକ୍ତିଲାଭ କଲା । ସାମୁହିକ ଭାବରେ ଓଡ଼ିଶାର ସର୍ବତ୍ର ଓ କଲିକତା ପରି ସ୍ଥାନରେ ଏହା ଭଲ ବ୍ୟବସାୟ କଲା । ଗାଁ ଗହଳିର ଲୋକେ ଠାକୁରଙ୍କୁ ଦର୍ଶନ କରିବାକୁ ନଡିଆ ନୈବେଦ୍ୟ ଓ ପଇସା ଫୋପାଡ଼ି "ଶ୍ରୀଶ୍ରୀ ମହାଲକ୍ଷ୍ମୀ ପୂଜା" ଚଳଚ୍ଚିତ୍ର ଦେଖିଲେ । ହେଲେ ଏସମସ୍ତ ଗହଳି ଓ ପ୍ରଶଂସା ମୋତେ ପ୍ରଭାବିତ କରିନଥିଲା । ଦ୍ୱିତୀୟ ଚଳଚ୍ଚିତ୍ର ପାଇଁ ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନ ମୋତେ ବା ନରେନ୍ଦ୍ର ବାବୁଙ୍କୁ ଉପଯୁକ୍ତ ମନେ କରିନଥିଲେ । ଧୀରବାବୁ ଅଭିନେତା ଓ ପ୍ରଯୋଜକ ହେବାକୁ ମନ ବଳାଇଲେ । ଓକିଲାତି ସିରସ୍ତା ତ ତାଙ୍କର ଥିଲା । ଶ୍ରୀକାନ୍ତ ସରକାରୀ ଚାକିରିକୁ ଚାଲିଗଲେ । ନରେନ୍ଦ୍ର ବାବୁ ଓ ମୁଁ କଟକର କାଠଯୋଡ଼ି କୂଳରେ ବସି ଚାକିରିଟିଏକୁ ଅପେକ୍ଷା କରି ବସିଲୁ । ମାସକୁ ମାସ ଦରମା ମିଳୁଥିବା ଚାକିରି ଆମ ଦୁଇଜଣଙ୍କ ପାଇଁ ନିହାତି ଦରକାର ଥିଲା । ଶେଷରେ ଜଣେ ବନ୍ଧୁଙ୍କ ଯୋଗୁ କଟକ ସେକ୍ରେଟେରୀଏଟର ପରିଂଖ୍ୟାନ ବିଭାଗରେ ତିନିମାସିଆ ସାମୟିକ କିରାଣି ଚାକିରି କରିବାର ସୌଭାଗ୍ୟ ମିଳିଲା । ତଥାପି ଖବରକାଗଜରୁ ଚାକିରି ଖବର

ପଡ଼ି ଆବେଦନ ପତ୍ର ପଠାଇବା କାମ ଚାଲିଥାଏ । ସୌଖୀନ ରଂଗମଞ୍ଚ କଳାକାର ଭାବରେ ଅଭିନୟ କରିବାକୁ ନିଶୁଳ୍କ ଅନୁରୋଧ ଆସୁଥିଲା । ୧୯୬୦ ମସିହା ଜୁନ ମାସରେ ବରଗଡ଼ ପଞ୍ଚାୟତ କଲେଜର ଅର୍ଥନୀତି ଅଧ୍ୟାପକ ଚାକିରିଟି ସିଧାସଳଖ ମିଳିଗଲା । କଟକରୁ ବିଦାୟ ନେଇ ଆସିବା ବେଳକୁ "ପରିଣାମ", "ସୂର୍ଯ୍ୟମୁଖୀ", "ଶ୍ରୀଲୋକନାଥ" ଚଳଚ୍ଚିତ୍ର ମୁକ୍ତିଲାଭ କରି ସାରିଥିଲା । ମୋର ନିଷ୍ପତ୍ତି ଥିଲା ଚାକିରି ନକରି ଚଳଚ୍ଚିତ୍ରରେ ଆଉ ଅଭିନୟ କରିବି ନାହିଁ ଓ ମୁଁ ନିଜେ କୌଣସି ପ୍ରଯୋଜକଙ୍କୁ ଅଭିନୟ କରିବାର ସୁଯୋଗ ମାଗିବି ନାହିଁ । ଦୀର୍ଘ ପଇଁଚାଳିଶ ବର୍ଷ ହେଲା ଏହା ମୋ ପାଇଁ ଏକ ନିୟମ ହୋଇରହିଛି ।

ବରଗଡ଼ ପଞ୍ଚାୟତ କଲେଜରେ ବର୍ଷେ କାମ କରିବା ପରେ କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ଚିଠି ପହଞ୍ଚିଲା । ପ୍ରତିଷ୍ଠାନର ତୃତୀୟ ଚଳଚ୍ଚିତ୍ର ପୁନର୍ବାର ପୌରାଣିକ ଗଳ୍ପ ଉପରେ ଆଧାରିତ ହେବ । ନୂଆ ନିର୍ଦ୍ଦେଶକଙ୍କ ତତ୍ତ୍ୱାବଧାନରେ ମୁଖ୍ୟତଃ ବହିର୍ଦ୍ଦୃଶ୍ୟ ସଂବଳିତ ଚଳଚ୍ଚିତ୍ରଟିଏ ହେବ । ଗଞ୍ଜାମ ଜିଲ୍ଲାର ବହୁ ଜଙ୍ଗଲ, ପାହାଡ଼, ଗଡ଼ ଓ ରାଜବାଟିରେ ଏ ଚଳଚ୍ଚିତ୍ରର ସୁଟିଂ ହୋଇଥିଲା । ମୁଁ ଖ୍ରୀଷ୍ଟମାସ ଓ ଗ୍ରୀଷ୍ମ ଛୁଟିରେ ଏ ଚଳଚ୍ଚିତ୍ରର ସୁଟିଂରେ ଭାଗ ନେଇଥିଲି । ଏହାର ବାହ୍ୟଦୃଶ୍ୟ ବେଳକୁ ପୁଣିଥରେ ନରେନ୍ଦ୍ର ବାବୁଙ୍କ ସଙ୍ଗେ ଦେଖା ହେଲା । ସେହି ଦେବର୍ଷି ନାରଦ ଚରିତ୍ରରେ । "ଦସ୍ୟୁ ରତ୍ନାକର"କୁ ପ୍ରବର୍ତ୍ତାଇ ବାଲ୍ମିକୀରେ ପରିଣତ କରିବାପାଇଁ ସେ ଏ ଚଳଚ୍ଚିତ୍ରରେ ଅଭିନୟ କରିଥିଲେ । କିଛିଦିନ ବେଶ ଭଲରେ କଟିଲା । ଏ ଚଳଚ୍ଚିତ୍ରରେ ବାଲ୍ମିକୀ ଲବକୁଶଙ୍କୁ ଶିକ୍ଷାଦେବା ଓ ସୀତାଙ୍କ ପାତାଳ ଗମନ ଦୃଶ୍ୟଗୁଡ଼ିକୁ ଗେଭାକଲରରେ ରଂଗୀନ କରାଯାଇଥିଲା । ଶେଷ ଫିଲ୍ମରୋଲଟି ସଂପୂର୍ଣ୍ଣ ରଂଗୀନ ହେବା "ଦସ୍ୟୁରତ୍ନାକର" ହିଁ ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର । ମୁଁ ବରଗଡ଼ରେ ଅଧ୍ୟାପକ ଭାବରେ ଯୋଗ ଦେବାପରେ, ନରେନ୍ଦ୍ର ବାବୁ ରାଉରକେଲାରେ ଚାକିରି କରିବାକୁ ଚାଲିଗଲେ । ଖବର ପାଇଲି ସପରିବାର ସେଠି ଭଲରେ ଅଛନ୍ତି । ସିନେମା ଛାଡ଼ି ଦେଲେଣି । ତାଙ୍କର ବନ୍ଧୁବାନ୍ଧବ କେହି ତାଙ୍କୁ ଚଳଚ୍ଚିତ୍ରରେ ଅଭିନୟ କରିବାକୁ ସୁଯୋଗ ଦେଉନାହାଁନ୍ତି । ନରେନ୍ଦ୍ରବାବୁଙ୍କ ସଂଗରେ ଆଉ ଦେଖା ହେଲାନାହିଁ । ମୁଁ କିନ୍ତୁ ପ୍ରତିବର୍ଷ ଅନ୍ତତଃ ଗୋଟିଏ ଚଳଚ୍ଚିତ୍ରରେ ଅଭିନୟ କରିବାପାଇଁ ସୁଯୋଗ ପାଇଲି । କଟକ ଭୁବନେଶ୍ୱରଠାରୁ ତିନିଶହ କିଲୋମିଟର ଲମ୍ବା ଗାଁର ଦୂରତ୍ୱ ଚଳଚ୍ଚିତ୍ର ଅଭିନୟ ପାଇଁ ବାଧା ସୃଷ୍ଟି କରିନାହିଁ । କଟକର ଚିନ୍ମୟ ପଟ୍ଟନାୟକଙ୍କ "ଭାଇଭାଉଜ" ଚଳଚ୍ଚିତ୍ର ୧୯୬୫/୬୬ରେ ପ୍ରଯୋଜିତ ହେବାବେଳେ ପ୍ରଫେସର ରାଜକିଶୋର ରାୟଙ୍କ ସହିତ ଅଭିନୟ କରିବାର ସୁଯୋଗ ମିଳିଲା । ତାଙ୍କଠାରୁ ଜାଣିଲି ନରେନ୍ଦ୍ରବାବୁ-ତାଙ୍କର ମଧୁର ସଂପର୍କୀୟ । ୧୯୬୮/୬୯ ବେଳକୁ ତାଙ୍କ କନ୍ୟା ମାଳବିକା ରାୟଙ୍କ ସହିତ ପରିଚୟ ହେଲା । ୧୯୭୭/୭୮ ମସିହାବେଳକୁ ଅଭିନେତ୍ରୀ ମହାଶ୍ୱେତା ରାୟଙ୍କ ସହିତ ପରପର

ତିନିଚାରୋଟି ଚଳଚ୍ଚିତ୍ରରେ ଅଭିନୟ କରିବାର ସୁଯୋଗ ମିଳିଲା । ଅଧିକାଂଶ ସୁଟିଂ ଆଉଟଡ଼ୋରରେ ହେଉଥିବାରୁ ଆନ୍ଧ୍ରପ୍ରଦେଶ, ଓଡ଼ିଶା ଓ ମାନ୍ଦ୍ରାଜର ବହୁ ଜାଗାରେ ହୋଟେଲ ଓ ଗେଷ୍ଟହାଉସରେ ରହିବା ବେଳେ ମହାଶ୍ୱେତାଙ୍କ ମା'ଙ୍କ ସହିତ ଘନିଷ୍ଠତା ବଢ଼ିଲା । ସମସ୍ତଙ୍କ ଅତିପ୍ରିୟ 'ମାମା' ମୋର ବିଶେଷ ଆକର୍ଷଣ ହୋଇ ରହିଲେ ତାଙ୍କର ଶେଷବେଳଯାଏ । ଏହାର ମୂଳକାରଣ ହେଉଛନ୍ତି ନରେନ୍ଦ୍ରବାବୁ । ବାଘ ନଦେଖିଲେ ବିଲେଇ ଦେଖ ପରି ସଂଯୋଗ 'ମାମା' ଓ ନରେନ୍ଦ୍ର ବାବୁଙ୍କର । ଦୁହେଁ ଭାଇ ଭଉଣୀ । କିନ୍ତୁ ଚେହେରାରେ, କଥାବାର୍ତ୍ତାରେ, ହାବଭାବରେ, ହସକୌତୁକରେ ଦୁହିଁଙ୍କ ଭିତରେ ଏତେ ସାମଞ୍ଜସ୍ୟ ଥିଲା ଯେ 'ମାମା'ଙ୍କୁ ଦେଖିଲେ ମୋତେ ନରେନ୍ଦ୍ରବାବୁଙ୍କୁ ଦେଖିଲା ପରି ଲାଗେ । ମାମା ଏତେ ସ୍ନେହୀ ଥିଲେ ଯେ ମୋତେ ଛୋଟଛୁଆଟିଏ ଭାବରେ ଗ୍ରହଣ କରୁଥିଲେ । ଭଲ ଜିନିଷ ରାନ୍ଧି ବା ମଗାଇ ଖୁଆଇବାରେ ତାଙ୍କର ଭାରି ସଉକିଥିଲା । ଯୋଗକୁ ଶ୍ରୀମତୀ ମାଳବିକା ରାୟ ଓ ମୁଁ ଚଳଚ୍ଚିତ୍ର ନିଗମର ବୋର୍ଡ ସଭ୍ୟ ଭାବରେ ୧୯୮୪ ମସିହାରୁ ୧୯୯୪ ମସିହା ପର୍ଯ୍ୟନ୍ତ ପ୍ରାୟ ପ୍ରତି ମାସରେ ଦେଖାସାକ୍ଷାତ କରୁଥିଲୁ । ସୁଯୋଗ ଦେଖି ପ୍ରଫେସର ରାୟ ଓ 'ମାମା'ଙ୍କ ପୁରୀର ବଳଗଣ୍ଡିଠାରେ ଦେଖାକରିବା ରୁଟିନ ହୋଇଗଲା । ଦୁଇଜଣ ସ୍ୱାମୀ ସ୍ତ୍ରୀଙ୍କ ଅନାବିଳ ସ୍ନେହ ଓ ଆଦର ମୁଁ ଭୁଲିପାରିବି ନାହିଁ । ଏହା ମୂଳରେ ନରେନ୍ଦ୍ରବାବୁଙ୍କ ମୋ' ପ୍ରତି ସଦିଚ୍ଛା ଯେ ଅନ୍ତର୍ନିହିତ ଏହା ମୋର ଧାରଣା ।

୧୯୯୨ ମସିହାରେ ଓଡ଼ିଶା ସରକାର ମୋତେ ଲରମ୍ବା କଲେଜରୁ ଭୁବନେଶ୍ୱରର ସରକାରୀ ସଂଗୀତ ମହାବିଦ୍ୟାଳୟକୁ ଅଧ୍ୟକ୍ଷ ଭାବରେ ଡେପୁଟେସନ୍‌ରେ ବଦଳିକରି ଆଣିଲେ । ମୋ' ବଡ଼ପୁଅ ସିଦ୍ଧାର୍ଥ ସେତେବେଳେ 'ଡାନିଡା' ସଂସ୍ଥାର କର୍ମଚାରୀ । ସେ ସାନ୍ତରାପୁରରେ ଭଡ଼ାଘରେ ରହୁଥାଏ । ସାନ ପୁଅ ସୌମେନ୍ଦ୍ର ଜେଭିୟର୍ସର ଛାତ୍ର ଥାଏ । ସେମାନଙ୍କଠାରୁ ଖବର ପାଇଲି ନରେନ୍ଦ୍ର ବାବୁ ରବିଟକିଜ୍ ପାଖରେ ରହୁଛନ୍ତି । ତାଙ୍କ ପୁଅ ଦେବଦତ୍ତ । ସେ ଗୋଟିଏ ହାର୍ଡ ୱେୟାର୍ ଷ୍ଟୋରର ମାଲିକ ।

ଦୀର୍ଘ ତିରିଶବର୍ଷ ପରେ ନରେନ୍ଦ୍ରବାବୁଙ୍କ ସହିତ ଦେଖାହେଲା । ଚାକିରିରୁ ଅବସର ନେବାପରେ ନରେନ୍ଦ୍ରବାବୁ ଦୁର୍ବଳ ହୋଇଯାଇଥିଲେ । ଅସମୟରେ ସ୍ତ୍ରୀ, ପୁତ୍ର, କନ୍ୟା, ଜାମାତାଙ୍କୁ ହରାଇ ବଡ଼ ଏକେଲା ମଣିଷଟିଏ ହୋଇଯାଇଥିଲେ ସେ । ମୁଁ, ତାଙ୍କ ଦୋକାନରେ ପାଦ ଦେବା ସଂଗେସଂଗେ ନରେନ୍ଦ୍ରବାବୁଙ୍କ ଚେହେରା ବଦଳିଗଲା । ଆମ ଦୁଇଜଣଙ୍କର ଆଦ୍ୟଜୀବନର ସଂଘର୍ଷ ସମୟର କିଛିସ୍ମୃତିର ମୁହୂର୍ତ୍ତ ତାଙ୍କ ମୁହଁରେ ଅବୀର ବୋଳିଦେଇଥିଲା । ଅନେକ କଥା ମନେ ପକେଇ ଗପିଲେ । ତାଙ୍କ କଥା ମଝିରେ ସେଇ ଦାର୍ଶନିକ ଚାହାଣୀ ଓ ଛୋଟ ପିଲାର ଖୋଲା ହସ ଠିକ ସେମିତି ଥିଲା । କିନ୍ତୁ ଏକାଥିବା ସମୟରେ ବଡ଼ ଉଦାସିଆ ଓ ଦୁର୍ବଳ ମନେ ହେଉଥିଲେ ନରେନ୍ଦ୍ର ବାବୁ । ସରକାରୀ ଘର

ପାଇବା ପରେ, ମୁଁ ସାମନ୍ତରାପୁରରୁ ଆଠ ନମ୍ବରକୁ ଚାଲି ଆସିଲି। ତାଙ୍କ ସହିତ ଦେଖାସାକ୍ଷାତ କମିଗଲା। ଦେବଦତ୍ତ କିନ୍ତୁ ମୋ ସହିତ ଯୋଗାଯୋଗ ରଖିଥିଲେ।

୧୯୯୪ ମସିହାରେ ଶ୍ରୀବୀର ବିଖ୍ୟାତ ଓଡ଼ିଆ ଗଳ୍ପଲେଖକ ପ୍ରଫେସର ରାମଚନ୍ଦ୍ର ବେହେରାଙ୍କ 'ଶେଷଦୃଷ୍ଟି' ଗଳ୍ପ ଉପରେ ଆଧାରିତ ଓଡ଼ିଆ ଚଳଚ୍ଚିତ୍ର ପ୍ରସ୍ତୁତ କରିବାପାଇଁ କଳାକାର ଖୋଜିବାପାଇଁ ଓଡ଼ିଶା ଆସିଲେ। ମୁଖ୍ୟ କଳାକାର ଜଣେ ବୃଦ୍ଧ ସ୍ୱାଧୀନତା ସଂଗ୍ରାମୀଙ୍କୁ ଖୋଜିବାରେ ସେ ସମର୍ଥ ନହେବାରୁ ମୋ ପାଖକୁ ଆସିଲେ। ତାଙ୍କର କଳ୍ପନା ପ୍ରସୂତ ଚରିତ୍ରର ରେଖାଚିତ୍ର ଆଙ୍କି, ମାନସିକ ଅବସ୍ଥା ବିଷୟରେ ମୋତେ କହିବା ପରେ ମୋ ମନରେ ନରେନ୍ଦ୍ରବାବୁଙ୍କ ଚେହେରାଟି ସ୍ୱଚ୍ଛ ଭାବରେ ଭାଷି ଉଠିଲା। ମୁଁ ଶ୍ରୀ ବୀରଙ୍କୁ କହିଲି, ଜୀବନରେ ଥରେମାତ୍ର ତିରିଶବର୍ଷ ତଳେ ମୁଁ ସେମିତି ଜଣେ ଯୁବ କଳାକାରଙ୍କୁ ଦେଖିଥିଲି। ବିଗତ ତିରିଶ ବର୍ଷ ଭିତରେ ସେ ଅଭିନୟଠାରୁ ଦୂରେଇ ଯାଇ, ବାସ୍ତବ ଜୀବନରେ ସଂଘର୍ଷ କରି ଚାଲିଛନ୍ତି। ଆପଣ ଯଦି ତାଙ୍କୁ ନିଜେ ସାକ୍ଷାତକରି, ଅଭିନୟ ପାଇଁ ମନାଇ ପାରିବେ ତେବେ ନରେନ୍ଦ୍ର ମହାନ୍ତିହିଁ ଏ ଚରିତ୍ର ପାଇଁ ଏକମାତ୍ର ଉପଯୁକ୍ତ ବ୍ୟକ୍ତି। ଶ୍ରୀ ବୀର ତାହାହିଁ କଲେ। ପୁତ୍ର ଦେବଦତ୍ତଙ୍କ ଅନୁରୋଧରେ ନରେନ୍ଦ୍ରବାବୁ ରାଜି ହେଲେ। ମୋ' ପାଖକୁ ଫୋନ୍ କଲେ। ମୁଁ ତାଙ୍କୁ ଧନ୍ୟବାଦ ଜଣାଇଲି। ତିରିଶ ବର୍ଷ ତଳେ ସେ ଯେମିତି ସାହସ ଦେଇଥିଲେ, ସେ କଥା ମୁଁ ତାଙ୍କୁ ମନେ ପକେଇ ଦେଲି। କେନ୍ଦ୍ରାପଡ଼ା ଆଖପାଖରେ 'ଶେଷଦୃଷ୍ଟି' ଚଳଚ୍ଚିତ୍ରର ସୁଟିଂ ହେଲା। 'ଶେଷଦୃଷ୍ଟି' ସେ ବର୍ଷର ଭାରତ ସରକାରଙ୍କ ଶ୍ରେଷ୍ଠ ଓଡ଼ିଆ ଚଳଚ୍ଚିତ୍ର ଭାବରେ ପୁରସ୍କାର ପାଇଲା। ଅଥଚ ଏ ଚଳଚ୍ଚିତ୍ର ବିଷୟରେ ଓଡ଼ିଶାରେ ସେପରି କାହାର ଆନ୍ତରିକତା ନଥିଲା। ଓଡ଼ିଶାର ସଂସ୍କୃତି ବିଭାଗ, ଫିଲ୍ମ କ୍ରିଟିକ, ଏପରିକି ଓଡ଼ିଶାର ସେନ୍ସର ବୋର୍ଡ ମଧ୍ୟ ଏ ଚଳଚ୍ଚିତ୍ରଟିକୁ ଓଡ଼ିଆ ଚଳଚ୍ଚିତ୍ର ଲିଷ୍ଟ ଭିତରେ ଦରଜ କଲେ ନାହିଁ। ଓଡ଼ିଶାର କୌଣସି ବିତରକ ଓ ପ୍ରେକ୍ଷାଳୟ ମାଲିକ ଏ ଚଳଚ୍ଚିତ୍ରକୁ ଓଡ଼ିଶାର ଲୋକଙ୍କୁ ଦେଖାଇବା ପାଇଁ ଚେଷ୍ଟିତ ହେଲେନାହିଁ, ଏହା ଏକ ରଂଗୀନ କଳାତ୍ମକ ଚିତ୍ର ହୋଇମଧ୍ୟ। ବୋଧହୁଏ ଏହାର ମୁଖ୍ୟ କାରଣ ହେଲା, ଏ ଚଳଚ୍ଚିତ୍ରରେ କୌଣସି 'ଷ୍ଟାର' ଅଭିନୟ କରିନଥିଲେ ଓ ଏହା ଏକ ପ୍ରେମ କାହାଣୀ ନୁହେଁ। ଏ ଥିଲା ୧୯୯୬/୯୭ ମସିହାର ଘଟଣା। ଏହାହିଁ ଓଡ଼ିଶାର ଚଳଚ୍ଚିତ୍ର ସଂସ୍କୃତି।

୨୦୦୪ ମସିହା ବେଳକୁ ଓଡ଼ିଶା ଓ ଭୁବନେଶ୍ୱରରେ ଅନେକ ପରିବର୍ତ୍ତନ ହୋଇଯାଇଛି। ମୁଁ ଅବସର ନେବାର ଦଶବର୍ଷ ବିତିଗଲାଣ। ୧୯୫୮ ମସିହାର ଦଶମ ଓଡ଼ିଆ କଳାଧଳା ଚଳଚ୍ଚିତ୍ର "ମହାଲକ୍ଷ୍ମୀ ପୂଜା" କାହାଣୀକୁ ଆଧାର କରି ମୁମ୍ବାଇଠାରେ ପ୍ରଯୋଜିତ ହେଉଛି ସଂପୂର୍ଣ୍ଣ ଆଧୁନିକ ରଂଗୀନ ଚଳଚ୍ଚିତ୍ର "ଶ୍ରୀୟା ଚଣ୍ଡାଳୁଣୀ" ଓ ଏହାର ବିଭିନ୍ନ ଭାଷାର ରୂପାନ୍ତର "ଶ୍ରୀଜଗନ୍ନାଥ"। ଏହି ଚଳଚ୍ଚିତ୍ରର ପୁରୀରାଜା ଭୂମିକାର

ଅଭିନେତା ଭାବରେ ୨୦୦୪ ଜୁଲାଇ ମାସରେ ପ୍ରାୟ କୋଡ଼ିଏ ଦିନଯାଏ ଆରବ ସାଗର ତଟରେ, ଜିମ୍ମି ଜିବ କ୍ୟାମେରା ଆଗରେ ଅଭିନୟ କରି ଫେରିବାପରେ ଟେଲିଫୋନରେ ଖବର ପାଇଲି, "ଆପଣ ସବୁଦିନ ପାଇଁ ଆମଠାରୁ ବିଦାୟ ନେଇ ଚାଲିଗଲେ ।"

୪୬ ବର୍ଷ ହେଲା ଅନେକ କଳାକାରଙ୍କ ସଂଘର୍ଷମୟ ଜୀବନର ସାକ୍ଷୀ ଭାବରେ ମୁଁ ବଞ୍ଚିଛି । ବିଶ୍ୱାସ କରନ୍ତୁ ନରେନ୍ଦ୍ର ବାବୁ "ଶ୍ରୀୟା ଚଣ୍ଡାଳୁଣୀ"ର ସୁଟିଂବେଳେ ଆପଣ ସବୁବେଳେ ମୋର ମନେ ପଡୁଥିଲେ । ଆପଣଙ୍କ ସେ ଦରଦଭରା ଆଖିପାଇଁ ଓ ସବୁଦୁଃଖ ଭୁଲା-ଛୋଟ ପିଲାର ହସଟିକକ ପାଇଁ । ମୋ' ପ୍ରଦେଶର ଲୋକେ କଳାକାରର କୃତି ଓ ବୈଶିଷ୍ଟ୍ୟକୁ ଜାତୀୟ ସମ୍ପତ୍ତି ଓ ସଂସ୍କୃତି ଭାବରେ ସାଇତି ରଖିଜାଣନ୍ତି ନାହିଁ । ତାକୁ ଭୁଲେଇ ଦେବାରେ ନିକର ବୈଶିଷ୍ଟ୍ୟ ପ୍ରତିପାଦନ କରନ୍ତି । ମୋ'ପରି କଳାକାରଟିଏ ଆପଣଙ୍କୁ ଭୁଲି ପାରୁନାହିଁ । ଆପଣ ଯେଉଁଠାରେ ଥାଆନ୍ତୁ, ଶାନ୍ତିରେ ଥାଆନ୍ତୁ । ମୋତେ ପଛରୁ ଥାଇ ଆଶୀର୍ବାଦ କରନ୍ତୁ । ଆପଣଙ୍କ ପରି ଦୁଃଖ କଷ୍ଟ ସହି କଳାକାରଟିଏ ହେଇ ବଞ୍ଚିରହେ । ଆପଣଙ୍କର ପ୍ରିୟଜନ ମାନଙ୍କ ପାଇଁ ସମବେଦନା ଜଣାଉଛି । ଦେବର୍ଷି ନାରଦ ଚରିତ୍ରରେ ଆପଣଙ୍କ ଅବଦାନ ମୋର ଶେଷଦୃଷ୍ଟି ଯାଏ ଭାସ୍ୱର ହୋଇ ରହୁ ।



# ଜଣେ ସାଂସ୍କୃତିକ ପହିଲ୍‌ମାନଙ୍କ ସଂପର୍କରେ

**ଦୃଷ୍ଟି ଓ ଦର୍ଶନ :**

୧୯୬୦ ମସିହାରେ ପଶ୍ଚିମାଞ୍ଚଳର ଏକ ବ୍ୟବସାୟିକ ସହରରେ ସବୁ ଅନିଶ୍ଚିତତା ଓ ଅଭାବବୋଧ ଭିତରେ ମୋର ଅଧ୍ୟାପକ ଜୀବନ ଆରମ୍ଭ ହୋଇଥିଲା । ନିଜ ଇଚ୍ଛାରେ ଭବିଷ୍ୟତ ଗଢ଼ି ନପାରିଥିବା ଲୋକଟିଏ ବେସରକାରୀ କଲେଜର ଅଧ୍ୟାପକ ହୋଇଗଲେ କଣ ବା କରିପାରେ ? ପାଠ ପଢ଼ିଲେ ସିନା ପାଠ ପଢ଼େଇବ ! ନୂତନ ପ୍ରତିଷ୍ଠିତ ମହାବିଦ୍ୟାଳୟରେ କଳା, ବିଜ୍ଞାନ ଓ ବାଣିଜ୍ୟ ବିଭାଗର ଯୁବ ଅଧ୍ୟାପକ ଅଧ୍ୟାପିକା ମାନଙ୍କ ମଧ୍ୟରେ ଯୋଗାଯୋଗ ଥିଲା ଖୁବ୍ ଅନ୍ତରଂଗ ଓ ଶିକ୍ଷଣୀୟ । ବହୁ ଆକାଙ୍‌କ୍ଷା ଓ ଉନ୍ମାଦନା ମଧ୍ୟରେ ଚାରିପାଞ୍ଚ ବର୍ଷ ବିତିଥିଲା । ସେତେବେଳର ହାତଗଣତି ପତ୍ରପତ୍ରିକାରେ ପ୍ରକାଶିତ ଲଳିତ ନିବନ୍ଧ, ଗଳ୍ପ, କବିତା ଓ ଉପନ୍ୟାସ ଇତ୍ୟାଦି ପଢ଼ିବାର ଆକର୍ଷଣ ଥିଲା ଅନେକ ବେଶୀ । ଖେଳ ଓ ନାଟକ ପ୍ରତି ମଧ୍ୟ ଆକର୍ଷଣ ଥିଲା । କିନ୍ତୁ ପିଲାବେଳୁ ପହିଲମାନଟିଏ ଅତି ନିକଟରୁ ଦେଖି ନଥିଲି । ଅବଶ୍ୟ ସର୍କସରେ, ସାହି ଆଖଡ଼ାଘରେ, ଭାର ଉତ୍ତୋଳନ ପ୍ରତିଯୋଗିତାରେ ପହିଲମାନ୍ ମାନଙ୍କୁ ଦେଖିବାର ସୁଯୋଗ ମିଳିଥିଲା । ଏବେତ ଟେଲିଭିଜନ୍‌ରେ ସବୁଦିନେ ଶହଶହ ପ୍ରକାରର ପହିଲମାନ ମାନଙ୍କୁ ଦେଖୁଛି !

୧୯୬୮ ମସିହାରେ ମୋତେ ଜଣେ ସାଂସ୍କୃତିକ ପହିଲମାନଙ୍କୁ ଦେଖିବାର ସୁଯୋଗ ମିଳିଲା । ୧୯୬୩ ମସିହାରୁ ମୁଁ ତାଙ୍କୁ ଜାଣିଥିଲି ଜଣେ ପ୍ରାବନ୍ଧିକ ଭାବରେ । ପରେ ଜଣେ ଗଳ୍ପ ଓ ଉପନ୍ୟାସ ଲେଖକ ଭାବରେ । ଶୁଣାଶୁଣିରେ, ସେ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟର କଣେ ଇଂରାଜୀ ସାହିତ୍ୟର ଏମ୍.ଏ. ଡିଗ୍ରୀ ଧାରୀ ସରକାରୀ କଲେଜର ଅଧ୍ୟାପକ । ଏସବୁ ଜାଣିବା ପଛରେ ତାଙ୍କର ଲେଖାର ପ୍ରଭାବ ଯେ ମୂଳ କାରଣ ଏହା କହିବା ବାହୁଲ୍ୟ ମାତ୍ର ।

ବ୍ୟକ୍ତିଗତ ଭାବରେ ସେ ପହିଲମାନ୍ ଲେଖକଙ୍କ ଚେହେରା ଦେଖିବା ସୁଯୋଗ ମିଳିଲା ୧୯୬୬ ମସିହାର ବିଷୁବ ମିଳନ ଅବସରରେ । ସେତେଦିନ ଯାଏ ଓଡ଼ିଶାର ଏତେବଡ଼ ବପୁଶାଳୀ ସାହିତ୍ୟକଙ୍କୁ ମୁଁ ଦେଖିନଥିଲି । ସେ ଥିଲେ ପାଞ୍ଚହାତିଆ ମଣିଷଟିଏ । ଛାତିଟା ବୋଧହୁଏ ୫୬ ଇଞ୍ଚ । ଉଚ୍ଚତା ଛ'ଫୁଟ ପାଖାପାଖି । ଧୋତି ଓ ଶିଲ୍କ ପଞ୍ଜାବି ପିନ୍ଧା ଏ ଲୋକଟିକୁ ଦେଖି ମୋର ପ୍ରଥମ ଧାରଣା ହୋଇଥିଲା ପୁରୀର କେଗାଘର ମାଲଟିଏ କି ଆଉ ! ସେଇଠି ଜାଣିଲି ସେ ହେଉଛନ୍ତି ସାହିତ୍ୟିକ ଅଧ୍ୟାପକ ଚନ୍ଦ୍ରଶେଖର ରଥ ।

ମୋତେ ତାଙ୍କ ସହିତ କେହି ପରିଚୟ କରାଇନଥିଲେ । ସେତେବେଳେ ସେ ଜଣେ ପ୍ରତିଷ୍ଠିତ ଲେଖକ ଓ ମୁଁ ଜଣେ ଅର୍ବାଚୀନ ବେସରକାରୀ କଲେଜର ନିଷ୍କ୍ରାନ୍ତ ଅଧ୍ୟାପକ । ସେ

ସମୟରେ କିନ୍ତୁ ମୋର ଅନ୍ୟ ପରିଚୟଟି ଉଦ୍‌ଭାସିତ ହୋଇଥିଲା ତାଙ୍କ ଅଭିବ୍ୟକ୍ତିରେ। ଆଖିର ଭୃଲତାକୁ ଉଠେଇ, ଆଖି ଦୁଇଟି ବିଷ୍ଫାରିତ କରି, ତାଙ୍କର ଦକ୍ଷିଣ ହସ୍ତଟି ମୋ' ଆଡ଼କୁ ପ୍ରସାରିତ ହୋଇଯାଇଥିଲା। ପାଟିରେ ଥିଲା ଗୋଟିଏ ଶିଶୁର ଅନାବିଳ ମୁହଁ ଖୋଲା ହସ। ମକ୍‌ବୁଡିଆ ପାପୁଲିରେ ସେ ମୋ ସହିତ କରମର୍ଦ୍ଦନ କରିଥିଲେ। ମୁଁ କୃତାର୍ଥ ହୋଇଥିଲି। ସେ ମୋତେ ଜଣେ କଳାକାର ଭାବରେ ଚିହ୍ନିଥିଲେ ବୋଲି।

**ଏ ଯେଉଁ ପୃଥିବୀ :**

୧୯୨୯ ମସିହାର କୁମାର ପୂର୍ଣ୍ଣିମା ତିଥିର ଚନ୍ଦ୍ର ଉଦୟ ସମୟରେ, ଓଡ଼ିଶାର ବଲାଙ୍ଗୀର ସହରରେ ତାଙ୍କର ଜନ୍ମ। ସେହି ସହରର୍ ସ୍କୁଲ ଓ କଲେଜରେ ସେ ତାଙ୍କର ସ୍ନାତକ ଉପାଧି ପାଇବା ପର୍ଯ୍ୟନ୍ତ ଛାତ୍ର ଥିଲେ। ତେଣୁ ପଶ୍ଚିମ ଓଡ଼ିଶାର ଭାଷା, ଭାବ, ଚଳଣୀ ଓ ସଂସ୍କୃତି ସହିତ ସେ ଓତଃପ୍ରୋତ ଭାବରେ ଜଡ଼ିତ। ସେଠିକା ମାଟି, ପାଣି, ପବନ ଓ ଜୀବଜନ୍ତୁଙ୍କ କଥା ସେ ଭଲଭାବରେ ବୁଝିପାରନ୍ତି। ସ୍ନାତକୋତ୍ତର ଶିକ୍ଷା ପାଇଁ ଲକ୍ଷ୍ନୌର କ୍ୟାନିଂ କଲେଜର ଛାତ୍ର ଥିବା ସମୟରେ ସେ ତାଙ୍କର ନିଜ ବିଷୟ ଇଂରାଜୀ ଭାଷା ସାହିତ୍ୟ ବ୍ୟତୀତ କଳା, ସ୍ଥାପତ୍ୟ ଓ ଶରୀର ଚର୍ଚ୍ଚା ବିଷୟରେ ଯଥେଷ୍ଟ ରୁଚି ଦେଖାଇଥିଲେ। ସେହି ସମୟରୁ ତାଙ୍କର ସୃଜନଶୀଳ ବ୍ୟକ୍ତିତ୍ୱର ପରିସ୍ଫୁଟନ ହୋଇଥିଲା।

୧୯୫୨ ମସିହାରେ ବ୍ରହ୍ମପୁର ଖଲିକୋଟ କଲେଜ, ୧୯୫୯ରେ ବାରିପଦା ମହାରାଜ ପୂର୍ଣ୍ଣଚନ୍ଦ୍ର କଲେଜ, ୧୯୬୩ରେ ଜୟପୁରର ବିକ୍ରମ ଦେବ କଲେଜରେ ସଫଳତାର ସହିତ ଅଧ୍ୟାପନା କରିସାରିବା ପରେ ପୁରୀର ସାମନ୍ତ ଚନ୍ଦ୍ରଶେଖର କଲେଜରେ ଅବସ୍ଥାପିତ ହେବା ସମୟରେ ମୁଁ ତାଙ୍କୁ ପ୍ରଥମେ ଦେଖିଲି। ଯୁବକ ଅବସ୍ଥାରେ ଓଡ଼ିଶାର ଏ ମୁଣ୍ଡରୁ ସେ ମୁଣ୍ଡଯାଏ ବୁଲିବା ଯୋଗୁ ସବୁ ଅଞ୍ଚଳର ଭାଷା ଓ ଚଳଣିର ପ୍ରଭାବ ପଡିଛି ତାଙ୍କ ଲେଖାରେ। ସବୁ ଅଞ୍ଚଳର ଚରିତ୍ର ଓ ଚଳଣି ସହିତ ଅଧ୍ୟାପକ ଚନ୍ଦ୍ରଶେଖର ରଥ ପ୍ରତ୍ୟକ୍ଷ ସଂପର୍କ ରଖିଥିବାରୁ ତାଙ୍କ ଲେଖା ଗୁଡ଼ିକର ଭାଷାରେ ବହୁ ବୈଚିତ୍ର୍ୟ ଦେଖାଯାଏ। ବେଳେ ବେଳେ ସଂପୂର୍ଣ୍ଣ ନୂଆ ଶବ୍ଦଟିଏ ପାଠକକୁ ଚକିତ କରିଦିଏ। ଗଳ୍ପ ମାନଙ୍କର ଚରିତ୍ରଚିତ୍ରଣ, ପ୍ରକୃତି ବର୍ଣ୍ଣନା ଓ ଶୈଳୀରେ ଅନେକ ବିବିଧତା ମୋତେ ତାଙ୍କ ଲେଖାପ୍ରତି ଆକର୍ଷିତ କରୁଥିଲା। ଲଳିତ ନିବନ୍ଧର ଭାବ ଓ ସାରମର୍ମକୁ ଆଶ୍ରାକରି ସେ ଯେଉଁ ଭାଷା ବ୍ୟବହାର କରୁଥିଲେ ତାହା ସବୁବେଳେ ସରଳ ମାର୍ଜିତ କଣାପଡୁଥିଲା। ସେଥିପାଇଁ ସୁଖପାଠ୍ୟ ହେଉଥିଲା।

ଗଳ୍ପ ଲେଖାର ଚାତୁରୀ ତାଙ୍କର ଅନବଦ୍ୟ। ଗଭୀର ମାନବବାଦୀ ଚିନ୍ତା ଓ ଚେତନାରୁ ତାଙ୍କ କଳ୍ପନାରେ ଚରିତ୍ରଟିଏ ସୃଷ୍ଟିହେଲେ ସେ ତାହାକୁ ଏପରି ଚିତ୍ରରୂପ ଦିଅନ୍ତି ଯେ ପାଠକର ଆଖିରେ ଦାଉଦାଉ ହୋଇ ତାହା ଦେଖାଯାଏ। ଚରିତ୍ରଟିର ଚାଲିଚଳଣ,

ବେଶଭୂଷା ପାଠକ ଯେମିତି ଅନୁଭବ କରିପାରେ, ତାହା ତାଙ୍କ ଲେଖାର ମୂଳଆଧାର ହୋଇ ରହେ। ମୋ' ପାଇଁ ତାଙ୍କ ଅଧିକାଂଶ ଗଳ୍ପରେ ଗୋଟିଏ ଚଳଚ୍ଚିତ୍ରର ଚିତ୍ରନାଟ୍ୟ ସବୁବେଳେ ଝଲସି ଝଲସି ଉଠେ।

**ମୁଁ ସତ୍ୟଧର୍ମ କହୁଛି :**

ଅଧ୍ୟାପକ ଚନ୍ଦ୍ରଶେଖର ରଥଙ୍କୁ ଦେଖିଲେ ଜଣାପଡ଼େ ସେ ସ୍ୱାସ୍ଥ୍ୟ ସଚେତନ। ବଂଶଗତ ଲକ୍ଷଣରୁ ଜଣେ ଖେଳପ୍ରିୟ ଓ କସରତ୍ ପ୍ରିୟ ବ୍ୟକ୍ତି। ସେ ଜଣେ ଭଲ ଡିସ୍କସ, ସଟ୍‌ପୁଟ୍ ଓ ଜେଭେଲିନ୍ ଆଥେଲେଟ୍। ବିଶ୍ୱବିଦ୍ୟାଳୟ ଶିକ୍ଷା ପର୍ଯ୍ୟନ୍ତ ଟେନିସ୍ ଓ ଭଲିବଲ୍ ପରି ଖେଳରେ ବିଶେଷ ରୁଚି ରଖୁଥିଲେ। ପୂର୍ବପୁରୁଷଙ୍କ କୃପାରୁ ଶାସ୍ତ୍ର ଓ ପୁରାଣ ସହିତ ବାଲ୍ୟକାଳରୁ ଓତଃପ୍ରୋତ ଭାବରେ ଜଡିତ ଥିଲେ। ଯୋଗାସନ ଓ ପ୍ରାଣାୟମ କରି ଶରୀରକୁ ନିର୍ମଳ ଓ ଅନ୍ତରକୁ ପବିତ୍ର କରି ରଖିବା ତାହାଙ୍କୁ ତାଙ୍କ ସଂସ୍କାର ଶିଖାଇଛି।

ଯୁବ ଅବସ୍ଥାରେ ସେ ଖାଦ୍ୟପ୍ରିୟ ଥିଲେ। ଧୀରେଧୀରେ ତାଙ୍କର ପାରିବାରିକ ସଂସ୍କାର ଓ ସଂସ୍କୃତ ଭାଷା ତାଙ୍କୁ ଆଧ୍ୟାତ୍ମିକ ଭାବନାରେ ପ୍ରଭାବିତ କରିଛି। ଏସବୁ ସାଧାରଣ ଭାବରେ ତାଙ୍କ ବ୍ୟବହାରରେ ଜଣାପଡ଼େ ନାହିଁ। କିନ୍ତୁ ଥରେ କଥାକହିବା ଆରମ୍ଭ କଲେ ପ୍ରତ୍ୟେକ କଥାରେ ଭାରତୀୟ ସଂସ୍କୃତି, ପରଂପରା ଓ ଶାସ୍ତ୍ରୀୟତା ଉପରେ ଯେପରି ଉଦାହରଣ ଦେବା ଆରମ୍ଭ କରନ୍ତି, ସେତେବେଳେ ଜଣାପଡ଼େ ସେ ଜଣେ ଇଂରାଜୀ ଅଧ୍ୟାପକ ନୁହଁନ୍ତି; ଭାରତୀୟ ଦର୍ଶନ ଶାସ୍ତ୍ରର ଜଣେ ଅଧ୍ୟାପକ। ତାଙ୍କର ଜ୍ଞାନ କେବଳ ପୁସ୍ତକ ଆଧାରିତ ଓ କଣ୍ଠସ୍ଥ ନୁହେଁ; ସେ ଯେମିତି ତାଙ୍କ ଶରୀରର ପରୀକ୍ଷାଗାରରେ ଶତବାର ପରୀକ୍ଷିତ ସତ୍ୟଟିକୁ ଆମ ଆଗରେ ଉପସ୍ଥାପିତ କରୁଛନ୍ତି।

୧୯୭୦ ମସିହାରେ ସେ ଭୁବନେଶ୍ୱରର ବକ୍ସି ଜଗବନ୍ଧୁ କଲେଜର ଉପାଧ୍ୟକ୍ଷ ଭାବରେ ଅବସ୍ଥାପିତ ହେଲେ। ସେତେବେଳେ ପ୍ରଫେସର ବିଧୁଭୂଷଣ ଦାସ ଓଡ଼ିଶାର ଉଚ୍ଚଶିକ୍ଷା ବିଭାଗର ନିର୍ଦ୍ଦେଶକ ଭାବରେ କେତୋଟି ନୂତନ ଧାରାର ପ୍ରୟୋଗ କରିଥିଲେ। ତାହାରି ଫଳରେ ପ୍ରାୟ ଶହେଟି ସରକାରୀ ଓ ବେସରକାରୀ କଲେଜ ଅଧ୍ୟକ୍ଷମାନଙ୍କ ସହିତ ସିଧାସଳଖ ଯୋଗାଯୋଗ କରିବାର ଉପାୟମାନ ଅବଲମ୍ବନ କରିଥିଲେ। ଲେସନ୍‌ପ୍ଲାନ, ପ୍ରୋକ୍ଟରିଏଲ ସିଷ୍ଟମ, ଆର୍ଥିକ ବ୍ୟବସ୍ଥା, ଛାତ୍ର ଶୃଙ୍ଖଳା ବିଷୟରେ ତାଙ୍କ ସହିତ ଯୋଗାଯୋଗ କରିବା ପାଇଁ ସେ ପାକ୍ଷିକ ଓ ମାସିକ ଅଧ୍ୟକ୍ଷମାନଙ୍କର ଗୋପନୀୟ ରିପୋର୍ଟ ପଠାଇବାର ଏକ ବ୍ୟବସ୍ଥା ପ୍ରଚଳନ କରିଥିଲେ। ବେଳେବେଳେ ଏଥିପାଇଁ ଭୁବନେଶ୍ୱର ଉଚ୍ଚଶିକ୍ଷା ନିର୍ଦ୍ଦେଶାଳୟକୁ ଆସି କଲେଜର ସମସ୍ୟା ସମାଧାନ କରିବାକୁ ସବୁ ଅଧ୍ୟକ୍ଷ ବାଧ୍ୟ ହେଉଥିଲେ। ଏ ସୁଯୋଗରେ ନିର୍ଦ୍ଦେଶାଳୟର ବହୁ ଅଭିଜ୍ଞତାସଂପନ୍ନ ଉପନିର୍ଦ୍ଦେଶକ ମାନଙ୍କ ସହିତ ବ୍ୟକ୍ତିଗତ ସଂପର୍କ ରଖିବାକୁ ମୋତେ ସୁଯୋଗ ମିଳିଥିଲା।

ମେଜର ଗୁରୁପ୍ରସାଦ ମହାନ୍ତି, ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ, ମେଜର ଧୀରେନ୍ଦ୍ର ସାମନ୍ତରାୟ ଓ ପ୍ରଫେସର ଚନ୍ଦ୍ରଶେଖର ରଥଙ୍କପରି ଶିକ୍ଷାବିତ୍ ପ୍ରଶାସକ ମାନେ ମୋତେ ବହୁଭାବରେ ପ୍ରଭାବିତ କରିଥିଲେ ।

୧୯୭୧ ରୁ ୧୯୮୫ ମସିହା ପର୍ଯ୍ୟନ୍ତ ଟିଟିଲାଗଡ଼ ଡି.ଏ.ଭି. କଲେଜର ଅଧ୍ୟକ୍ଷ, ଭୁବନେଶ୍ୱର ବକ୍ସି ଜଗବନ୍ଧୁ କଲେଜର ଉପାଧ୍ୟକ୍ଷ, ଟେକ୍ସଟ୍ ବୁକ୍ ବୋର୍ଡରେ ସଂପାଦକ ଓ ଉଚ୍ଚଶିକ୍ଷା ବିଭାଗର ଉପନିର୍ଦ୍ଦେଶକ ଭାବରେ ତାଙ୍କର ଭୁବନେଶ୍ୱର ରହଣି ମୋତେ ତାଙ୍କର ନିକଟତର କରିଥିଲା ।

**ମଧୁ ସନ୍ଧାନ :**

ମୋର ଏକମାତ୍ର ବଡ଼ଭଉଣୀଙ୍କ ସ୍ୱାମୀ ଶ୍ରୀ ଧନଞ୍ଜୟ ହୋତା ଓଡ଼ିଶା ସରକାରଙ୍କ ପରିସଂଖ୍ୟାନ ବିଭାଗର ଉପନିର୍ଦ୍ଦେଶକ ଭାବରେ ବହୁଦିନ ଯାଏ ଭୁବନେଶ୍ୱରରେ ଅବସ୍ଥାପିତ ଥିଲେ । ସେ ୟୁନିଟ୍-୯ର ଚାରିଟିକିଆ ଫ୍ଲାଟ ଘରେ ରହୁଥିଲେ । ପ୍ରଫେସର୍ ଚନ୍ଦ୍ରଶେଖର ରଥ ମୋ ଭିଣୋଇ ଘର ଠିକ୍ ପଛପଟ କ୍ୱାଟର୍ସ୍‌ରେ ରହୁଥିଲେ । ଲରମ୍ବା କଲେଜର ଅଧ୍ୟକ୍ଷ ଓ ପରିଚାଳନା ସମିତିର ସଂପାଦକ ଭାବରେ ଭୁବନେଶ୍ୱରକୁ ମାସରେ ଥରେ ଦୁଇଥର କଲେଜ କାମରେ ମୋତେ ଆସିବାକୁ ପଡୁଥିଲା । ତେଣୁ ପ୍ରତ୍ୟେକ ଥର ପ୍ରଫେସର ଚନ୍ଦ୍ରଶେଖର ରଥଙ୍କ ସହିତ ଅନ୍ତରଙ୍ଗ ଆଳାପ କରିବାକୁ ମୋତେ ସୁଯୋଗ ମିଳୁଥିଲା ।

ଏ ସମୟ ମଧ୍ୟରେ ପ୍ରଫେସର ଚନ୍ଦ୍ରଶେଖର ରଥଙ୍କ ଶାରିରୀକ ସ୍ତରର ପହିଲମାନ୍‌ଟି ମୋ ଆଖିରେ ଗୋଟିଏ "ବାର୍ଡ ଅଫ୍ ପାରାଡ଼ାଇଜ"ରେ ପରିଣତ ହୋଇଗଲେ । ସାହିତ୍ୟ, ଜୀବନ ଜିଜ୍ଞାସା, ସାମାଜିକ ଦ୍ୱନ୍ଦ୍ୱ, କଳା, ସ୍ଥାପତ୍ୟ, ସଂସ୍କୃତି, ଦର୍ଶନ ଓ ଆଧ୍ୟାତ୍ମବାଦ ଉପରେ ଖୋଲାଖୋଲି ଆଲୋଚନା କରିବାକୁ ମୋତେ ବହୁ ସୁଯୋଗ ମିଳିଲା । ସେତେବେଳେ ଜାଣିଲି, ପ୍ରଫେସର ରଥ ତାଙ୍କର ନିକଟତର ବ୍ୟକ୍ତିଟି ପାଖରେ ଉଦ୍‌ଘାଟିତ ହୁଅନ୍ତି ମନ୍ଥର ଗତିରେ । ସେ ଜଣେ ପ୍ରଚାରବିମୁଖ ବ୍ୟକ୍ତି । ସ୍ଥାନ, କାଳ, ପାତ୍ରକୁ ଆଧାର କରି ସେ ଆକାଶପରି ବହୁବର୍ଣ୍ଣ ହୋଇଯାଆନ୍ତି । ସ୍ୱର୍ଗୀୟ ପକ୍ଷୀଟିର ବହୁବର୍ଣ୍ଣା ପକ୍ଷ ପରି ଝଲସିଯାଏ ତାଙ୍କର ବୌଦ୍ଧିକତା ଓ ମାନବବାଦୀ ଆତ୍ମୀୟତା ।

**ଉତ୍ତର ଅରଣ୍ୟ :**

ଶିକ୍ଷାବିଭାଗରେ କାର୍ଯ୍ୟରତ ଲୋକମାନଙ୍କୁ ଆମ ପ୍ରଦେଶରେ ଏକ ଭିନ୍ନ ନିକିତିରେ ତଉଲାଯାଏ । ଉଚ୍ଚ ଶିକ୍ଷାବିଭାଗରେ ଯଦିଓ ଅଧ୍ୟାପକମାନେ ରେଡ଼କ୍ରସ୍, ରୋଭର୍ସ, ଏନ୍.ଏସ୍.ଏସ୍ ପରି ସଂସ୍ଥାରେ ଇଚ୍ଛାଧୀନ ଭାବରେ ଯୋଗ ଦିଅନ୍ତି, ସେମାନଙ୍କର

ଆନ୍ତରିକତା ବିଷୟରେ ମୋର ସେତେ ଆସ୍ଥା ଜନ୍ମିନାହିଁ । ଗୋଟିଏ ବ୍ୟତିକ୍ରମ ହେଉଛନ୍ତି ପ୍ରଫେସର ରଥ ।

ସେମିତି ଆଉ ଏକ ସଂସ୍ଥା ହେଉଛି ଜାତୀୟ ସମର ଶିକ୍ଷାର୍ଥୀ ବାହିନୀ । ଅଧ୍ୟାପକ ଚନ୍ଦ୍ରଶେଖର ରଥ ୧୯୫୭ ରୁ ୧୯୬୧ ପର୍ଯ୍ୟନ୍ତ ସମର ଶିକ୍ଷାର୍ଥୀ ବାହିନୀର ଜଣେ ନୌବିଭାଗ ଅଫିସର ଭାବରେ କୋଚିନଠାରେ ଶିକ୍ଷାପାଇ ଅଧିଷ୍ଠିତ ଥିଲେ । ତା'ପରେ ନାଗପୁର ଠାରେ ସମର ଶିକ୍ଷାର୍ଥୀ ବାହିନୀର ପଦାତିକ ବିଭାଗର ଅଫିସର ଭାବରେ ୧୯୬୧ ମସିହାରେ ଶିକ୍ଷାନେଇ ୧୯୬୮ ମସିହା ପର୍ଯ୍ୟନ୍ତ କାର୍ଯ୍ୟରତ ଥିଲେ । ୧୯୬୯ ମସିହାରେ ଦିଲ୍ଲୀର ଗଣତନ୍ତ୍ର ଦିବସ ପ୍ୟାରେଡ଼ ପାଇଁ ସର୍ବଭାରତୀୟ ଶିବିରରେ ଜଣେ ଅଫିସର୍ ଭାବରେ ଯୋଗ ଦେବାର ସୌଭାଗ୍ୟ ତାଙ୍କର ହୋଇଥିଲା । ଦେଶାତ୍ମବୋଧ ଓ ଶୃଙ୍ଖଳା ପ୍ରତି ଆସକ୍ତ ନହେଲେ ଯେକୌଣସି ଅଧ୍ୟାପକ, ଜାତୀୟ ସମରଶିକ୍ଷାର୍ଥୀ ବାହିନୀରେ ଯୋଗଦେଇ ସାହିତ୍ୟ ସେବା ଓ ଅଧ୍ୟାପନା ନିଷ୍ଠାପର ଭାବରେ କରିବା ସମ୍ଭବ ନୁହେଁ । ଏ ଶୃଙ୍ଖଳା ଜ୍ଞାନ ତାଙ୍କ କ୍ଷେତ୍ରରେ କେତେଦୂର ତାଙ୍କର ଗଳ୍ପ, ଲଳିତ ନିବନ୍ଧ ଓ ଉପନ୍ୟାସକୁ ପ୍ରଭାବିତ କରିଛି, ତାହା ତାଙ୍କର ଲେଖାରୁ ଜଣାପଡ଼େ । ୧୯୬୮ ମସିହାରୁ ୧୯୯୬ ମସିହା ପର୍ଯ୍ୟନ୍ତ ପ୍ରକାଶ ପାଇଥିବା ତେରଟି ଗଳ୍ପ ସଂକଳନର ଗଳ୍ପମାନଙ୍କୁ ଅନୁଧ୍ୟାନ କଲେ ପ୍ରଫେସର ରଥଙ୍କର ଭାଷା ବିନ୍ୟାସ, ଚରିତ୍ର ଚିତ୍ରଣ, ଭାବଗତ ଆବେଗ, ଆଙ୍ଗିକ ପ୍ରସାଧନ ଓ ଉପସ୍ଥାପନରୁ ପାରିବାରିକ ଓ ସାମାଜିକ ଜୀବନରେ ସେ କେତେ ଶୃଙ୍ଖଳିତ ତାହାର ଆଭାସ ବିଦଗ୍ଧ ପାଠକଟିଏ ଉପଲବ୍ଧି କରିପାରେ । ଅର୍ଦ୍ଧ ଶତାବ୍ଦୀଯାଏ ସେ ସେମିତି ଜଣେ ଅପରିବର୍ତ୍ତିତ ଶୃଙ୍ଖଳିତ ସାଂସ୍କୃତିକ ପହିଲମାନ ଭାବରେ ତାଙ୍କର ଗୁଣଗ୍ରାହୀ ଛାତ୍ରଛାତ୍ରୀ ଓ ସ୍ତାବକମାନଙ୍କ ପାଖରେ ପରିଚୟ ପାଉଛନ୍ତି ।

**ଅଶ୍ରୁତ ସ୍ୱର :**

ଦୁର୍ଭାଗ୍ୟକୁ ଓଡ଼ିଶାର ଚଳଚ୍ଚିତ୍ର ଓ ନାଟକ କ୍ଷେତ୍ରରେ ଓଡ଼ିଆ ଗଳ୍ପ, ଉପନ୍ୟାସ ଓ ନାଟକ କ୍ଷେତ୍ରରେ ସୃଜନଶୀଳତା ଦେଖା ଯାଉନାହିଁ । ଓଡ଼ିଆ ପାଣିପବନରେ ଗଢ଼ିଉଠୁଥିବା ଜୀବନର ଚରିତ୍ର ଚିତ୍ରଣ ଭିତରେ ଚଳଚ୍ଚିତ୍ର ବା ଟେଲିଭିଜନ ଧାରାବାହିକ ପ୍ରଯୋଜିତ ହେଉନାହିଁ । ପ୍ରଫେସର ରଥଙ୍କର 'ଅସୂର୍ଯ୍ୟ ଉପନିବେଶ' ଓଡ଼ିଆ ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହେବାପରେ ତାହାକୁ ଚଳଚ୍ଚିତ୍ର ରୂପଦେବା ପାଇଁ ତାଙ୍କର ଓ ମୋର ଏକ ଯୋଜନା ପୃଷ୍ଠପୋଷକ ଓ ପ୍ରଯୋଜକ ଅଭାବରୁ ଆଗେଇ ପାରିନାହିଁ । ସେହିପରି 'ପିତୃମେଧ' ଗଳ୍ପଟିକୁ ଟେଲି ସିରିଏଲ କରିବାର ଏକ ପ୍ରସ୍ତାବ ଚଞ୍ଚକତା ଯୋଗୁ ବାଧାପ୍ରାପ୍ତ ହୋଇଛି । ପ୍ରଫେସର ରଥଙ୍କର ବହୁଲେଖା ଭାରତର ଅନ୍ୟାନ୍ୟ ଭାଷାରେ ଅନୁଦିତ ହେଲେ ମଧ୍ୟ ଆଜିଯାଏ ଓଡ଼ିଆ ପ୍ରଯୋଜକ ନିଜ ଭାଷା ଓ ସାହିତ୍ୟ ପ୍ରତି ଅନୁରକ୍ତି ଓ ଆସ୍ଥା

ଦେଖାଇ ନାହାଁନ୍ତି । ଖୁବ୍ ନିକଟରେ ତାଙ୍କର୍ କେତୋଟି ସାହିତ୍ୟ କୃତିକୁ ଟେଲି ସିରିଏଲ ଭାବର ପ୍ରଯୋଜିତ କରାଯାଉଛି । ତଥାପି ପ୍ରତିଷ୍ଠିତ ପ୍ରଯୋଜକ ତାଙ୍କର କୃତିକୁ ଚଳଚ୍ଚିତ୍ରରେ ରୂପାନ୍ତରିତ କରିବାର ସାହସ କରିନାହାଁନ୍ତି । ଉତ୍କୃଷ୍ଟ କଳାର ଦେଶରେ "ଦାରିଦ୍ର୍ୟ"ର ପ୍ରକୃତ ସ୍ୱରୂପ ଏହିଠାରେହିଁ ପ୍ରକାଶ ପାଏ ।

**କ୍ରୀତଦାସର ସ୍ୱପ୍ନ :**

ମୋର୍ ଚବିଶ ବର୍ଷର ଲରମ୍ବା କଲେଜର ଅଧ୍ୟକ୍ଷତା ପରେ ୧୯୯୨ ମସିହାରେ ସରକାର ମୋତେ ଭୁବନେଶ୍ୱରସ୍ଥିତ ସଂଗୀତ ମହାବିଦ୍ୟାଳୟର ଅଧ୍ୟକ୍ଷତା ଦେଲେ । ଚାକିରି ଜୀବନର ଶେଷ ଦୁଇବର୍ଷ ମୋତେ ସରକାରଙ୍କ ଦୟାରୁ ଭୁବନେଶ୍ୱରରେ ଅସ୍ଥାୟୀ ଭାବରେ ସ୍ଥାୟୀ ହୋଇ ରହିବାକୁ ବାଧ୍ୟ କରିଛି । ବିଗତ ଦଶବର୍ଷ ମଧ୍ୟରେ, କଳା ଓ ସଂସ୍କୃତିର ଏପରି କୌଣସି ବିଭାଗ ନାହିଁ ଯେଉଁ ବିଷୟରେ ପ୍ରଫେସର ରଥ ମୋତେ ପ୍ରଭାବିତ କରିନାହାଁନ୍ତି । ଏ ସମୟ ମଧ୍ୟରେ ବହୁ ସଭା, ସମିତି, ସମ୍ମାନ ଓ ଆଲୋଚନାରେ ଭାଗ ନେବାର ସୌଭାଗ୍ୟ ମୋତେ ମିଳିଛି । ଜୟଦେବଙ୍କ ଲଳିତ କୋମଳ ଆଦିରସଧର୍ମୀ କାବ୍ୟ ସୃଷ୍ଟିଠାରୁ ବିବେକାନନ୍ଦଙ୍କ ପ୍ରଗାଢ଼ ଭାରତୀୟ ଆତ୍ମଦର୍ଶନ; ଉତ୍କଳୀୟ ଓଡ଼ିଶୀ ନୃତ୍ୟର ବୈଶିଷ୍ଟ୍ୟଠାରୁ ଦେବୀପ୍ରସାଦ, କାଳୀକିଙ୍କର ଓ ରୋଦାଁଙ୍କର ଆଧୁନିକ ସ୍ଥାପନ୍ୟ କଳାଚର୍ଚ୍ଚା; ପାଶ୍ଚାତ୍ୟ ଜଗତର ସୁବିଖ୍ୟାତ ଗଳ୍ପ ଲେଖକଙ୍କଠାରୁ ଶ୍ରୀଅରବିନ୍ଦ ଓ ଶ୍ରୀମା'ଙ୍କ ଦର୍ଶନର ଗୁଢ଼ ରହସ୍ୟ ପର୍ଯ୍ୟନ୍ତ; ଭାରତୀୟ ଶାସ୍ତ୍ରରେ ବର୍ଣ୍ଣିତ ମର୍ଯ୍ୟାଦା ପୁରୁଷ ଶ୍ରୀରାମଚନ୍ଦ୍ରଙ୍କଠାରୁ ମାଧୁର୍ଯ୍ୟ ପୁରୁଷ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ବିବିଧତା ଓ ଜଗନ୍ନାଥ ସଂସ୍କୃତିରେ ତାହାର ପ୍ରଭାବର ସାରଗର୍ଭକ ଭାଷଣ ମୋତେ ଅଭିଭୂତ କରି ରଖିଛି । ଆଧୁନିକ ଅପସଂସ୍କୃତିର ପ୍ରଚାର ଯୋଗୁଁ ଉତ୍କଳୀୟ ପରଂପରାରେ ଅଭାବନୀୟ ଓଡିଶୀ ପଲ୍ଲୀ ସଂସ୍କୃତିର ଅବକ୍ଷୟ ବିଷୟରେ ସମଭାବାପନ୍ନ ବିତର୍କରେ ଭାଗନେଉଥିବା ଜଣେ ଅନ୍ତରଙ୍ଗ ବନ୍ଧୁ ଭାବରେ ମୁଁ ନିଜକୁ ମୂଲ୍ୟାୟନ କରୁଛି ।

**ରଥ ସପ୍ତକ :**

୧୯୭୧ ମସିହାର ଏକ ଘଟଣା । ଏକ ମହାର୍ଘ ମୁହୂର୍ତ୍ତ । ଏକ ଯୋଗ । ଆମ ଦୁଇଜଣଙ୍କ ମଧ୍ୟରେ ଏକ ଭାବାବେଗ ସୃଷ୍ଟି କରିଥିଲା । ତାହା ଘଟିଥିଲା ଲରମ୍ବା ମହାବିଦ୍ୟାଳୟର ବାର୍ଷିକ ଉତ୍ସବର ସାଂସ୍କୃତିକ ସମାବେଶରେ । ଲରମ୍ବା ମହାବିଦ୍ୟାଳୟ ଛାତ୍ର ସଂସଦର ବାର୍ଷିକ ଉତ୍ସବରେ ପ୍ରଫେସର ରଥ ଟିଟିଲାଗଡ଼ ଡି.ଏ.ଭି. ମହାବିଦ୍ୟାଳୟ ଅଧ୍ୟକ୍ଷ ଭାବରେ ମୁଖ୍ୟ ଅତିଥି ଓ ବକ୍ତା ଭାବରେ ନିମନ୍ତ୍ରିତ ହୋଇ ଆସିଥିଲେ । ସେହି ଉତ୍ସବର ସାଂସ୍କୃତିକ କାର୍ଯ୍ୟକ୍ରମର ମୁଖ୍ୟ ଆକର୍ଷଣ ଥିଲେ ସ୍ୱନାମଧନ୍ୟ ଗାୟକ ଓ ସଂଗୀତ ନିର୍ଦ୍ଦେଶକ ଶ୍ରୀ ପ୍ରଫୁଲ୍ଲ କର ।

ଅଧ୍ୟକ୍ଷ ରଥଙ୍କ ଶ୍ରୀ ଜଗନ୍ନାଥଙ୍କ ପ୍ରତି ପ୍ରଗାଢ଼ ଭକ୍ତି ଓ ଅନୁରକ୍ତି ସେ ସନ୍ଧ୍ୟାରେ ଆମ ଦୁଇଜଣଙ୍କ ମଧ୍ୟରେ ସମଭାବରେ ଭାବାବେଶ ସୃଷ୍ଟି କରିଥିଲା । ସଂଗୀତଜ୍ଞ କର ନିବିଷ୍ଟ ଚିତ୍ତରେ ଯେତେବେଳେ "ମୁଁ କ୍ଷେତ୍ର ଯିବି" ଜଗନ୍ନାଥ ଜଣାଣଟି ସେ ଭରପୁର ସଭାଗୃହରେ ବୋଲିଥିଲେ, ପ୍ରଫେସର ରଥ ଏ ପୁରାତନ ରଚ଼ନା ବିଷୟରେ ଅବଗତ ଥିଲେ ମଧ୍ୟ ଶ୍ରୀକରଙ୍କ ଗାୟନ ପଦ୍ଧତି ମଧ୍ୟରେ ଭୂମିରୁ ଭୂମା ପର୍ଯ୍ୟନ୍ତ, ଅଣୁରୁ ଅନ୍ତରୀକ୍ଷ ପର୍ଯ୍ୟନ୍ତ ଭକ୍ତିରସର ପ୍ରାବଲ୍ୟରେ ସେ ଅଭିଭୂତ ହୋଇ ଯାଇଥିଲେ । ଏହା ଆମ ଦୁଇଜଣଙ୍କୁ ସମଭାବରେ ଆକ୍ରାନ୍ତ କରିଥିଲା । ସେ ଥିଲେ ବାଙ୍ମୟ ଓ ମୁଁ ଥିଲି ମୂକ । ତା'ପରଦିନ ଟିଟିଲାଗଡ଼ ଫେରିଯାଇ ସେ "ରଥସପ୍ତକ"ର ପ୍ରଥମ ସନ୍ଦର୍ଭଟି ରଚ଼ନା କରିଥିଲେ । ତେରବର୍ଷ ଯାଏ ଏ ଭକ୍ତିରସାତ୍ମକ ସଂଗୀତଟି ପ୍ରଫେସର ରଥଙ୍କୁ ଭକ୍ତି ରସରେ ରସାପ୍ଲୁତ କରି ରଖିଥିଲା । ସୃଷ୍ଟି ହୋଇଥିଲା ଏକ ଅନବଦ୍ୟ ଓ ଅମୂଲ୍ୟ ଓଡ଼ିଆ ଗଦ୍ୟ ସାହିତ୍ୟର କୃତି । ପ୍ରଫେସର ରଥ "ରଥସପ୍ତକ" ପାଇଁ ଓଡ଼ିଆ ସାହିତ୍ୟରେ ଅମର ହୋଇ ରହିଗଲେ ।

ମୋର ସମସ୍ତ ମାନସିକ ଚିନ୍ତା ଓ ସମସ୍ୟା ଦୂରକରିବାର ଏକମାତ୍ର ମହୌଷଧି ଭାବରେ "ରଥସପ୍ତକ" ମୋ ପାଖରେ ସବୁବେଳେ ଥାଏ । ଗଦ୍ୟ ରଚନା ମଧ୍ୟରେ ଭକ୍ତିରସକୁ ଏପରି ପ୍ରଭାବଶାଳୀ ଭାବରେ ପରିବେଷଣ କରିବାର ନିଦର୍ଶନ ପ୍ରଫେସର ରଥଙ୍କ ବ୍ୟତୀତ ଆଉ କେହି କରିଥିବେ, ତାହା ବିଶ୍ୱାସ କରି ହେଉନାହିଁ ।

**ହୁକୁମ୍‌ନାମା :**

ସହଜ, ସରଳ, ଖୁସିବାସିଆ, ନିତ୍ୟାନନ୍ଦରେ ବଞ୍ଚୁଥିବା ଲୋକଟି ଭିତରେ ଏବେ ଆଉ ମାଣ୍ଟିଆଗୁଣ କିଛି ନାହିଁ । ବିରାଟ ବପୁର ଗୋଟିଏ ହାତରେ ଗଣ୍ଡେ ପାଞ୍ଚଟା ବେଆଡ଼ା ଟୋକାଙ୍କୁ ସାବାଡ଼ କରିବା କାର୍ଯ୍ୟ ଆଉ କରିବାକୁ ପଡୁନାହିଁ । ଅଥବା ପ୍ରତିଦିନ ଅସମୟରେ କେତେକଣ ବୌଦ୍ଧିକ ଅନ୍ୱେଷଣ କରୁଥିବା ଛାତ୍ରଛାତ୍ରୀଙ୍କୁ ଆନ୍ତରିକ ସ୍ତରରେ ଶିକ୍ଷାଦାନ କରିବାର ଗୁରୁଦାୟିତ୍ୱଟି ସମାପନ କରିବାକୁ ପଡୁନାହିଁ । ତଥାପି, ବହୁ ପୁରାତନ ଛାତ୍ରଛାତ୍ରୀ ଓ ହଜାର ହଜାର ପ୍ରଶଂସକ ଓ ସ୍ତାବକଙ୍କ ଶ୍ରଦ୍ଧା ଓ ସ୍ନେହର ନିମନ୍ତ୍ରଣରେ ସେ କଲିକତା, ଋଷିକେଶ, ପାଟଣା, ଲକ୍ଷ୍ନୌ, ଏପରିକି ଆମେରିକା ଓ କାନଡ଼ାର ବହୁନଗରୀର ସାଂସ୍କୃତିକ ଓ ଆଧ୍ୟାତ୍ମିକ ସମାବେଶର ଦିଗଦର୍ଶନ ଦେବାପାଇଁ ନିମନ୍ତ୍ରିତ ହେଉଛନ୍ତି । ଏବେବି ସେ ଅତ୍ୟନ୍ତ ବ୍ୟସ୍ତ ଓ କର୍ମଠ । ସାହିତ୍ୟ କ୍ଷେତ୍ରରେ ପହିଲମାନ୍‌ଟି ଏବେ ମଧ୍ୟ ଓଡ଼ିଆ ସଂସ୍କୃତି ଓ ଶାସ୍ତ୍ରୀୟତା ଉପରେ ନିଜର ସ୍ୱାଭିମାନକୁ ବଜାୟ ରଖିଛନ୍ତି । ପ୍ରଫେସର ରଥ ଦୀର୍ଘାୟୁ ହୁଅନ୍ତୁ !



# ମେଜର ଜି.ପି.ଙ୍କୁ ସାମରିକ ଅଭିବାଦନ

ମେଜର ଜି.ପି. ମହାନ୍ତିଙ୍କର ମୁଁ କେବେ ଛାତ୍ର ନଥିଲି । ମୋର କଲେଜ ଜୀବନରେ ମୁଁ ତାଙ୍କୁ କେବେ ଦେଖିନଥିଲି । କିନ୍ତୁ ଜଣେ ଏନ୍.ସି.ସି.ର ସାର୍‌ଜେଣ୍ଟ୍ ଭାବରେ ସାରଙ୍କ ବିଷୟରେ ତାଙ୍କର ଛାତ୍ରମାନଙ୍କଠାରୁ ଶୁଣିଥିଲି- ସେ ଜଣେ ଭଲ ଇଂରାଜୀ ଅଧ୍ୟାପକ, କଡ଼ା ଏନ୍.ସି.ସି ଅଫିସର ଓ ଜଣେ ଆଧୁନିକ ଓଡ଼ିଆ କବି । ସାରଙ୍କୁ ସାମରିକ ଅଭିବାଦନ ଜଣାଇବାର ସୁଯୋଗ ମିଳିନାହିଁ ମୋତେ । କବିତା ଅପେକ୍ଷା ଗଳ୍ପ, ଉପନ୍ୟାସ ଓ ନାଟକ ପ୍ରତି ମୋର ଶ୍ରଦ୍ଧା ଟିକିଏ ବେଶୀଥିଲା । ତା'ବାହାରେ ଚିତ୍ର କରିବା, ଅଭିନୟ କରିବା ପରି ସଉକି ମୋର ବେଶୀ ସମୟ ନେଉଥିଲା । ତେଣୁ ଅଧ୍ୟାପନା ଚାକିରି ସମୟରେ ହିଁ ସାର୍‌ଙ୍କର 'ସମୁଦ୍ର ସ୍ନାନ' ଓ 'କାଳପୁରୁଷ'ର ସମ୍ମୁଖୀନ ହୋଇ ଥିଲି ।

ମୋର ପାଠପଢ଼ା ସରିବା ମାତ୍ରେ, "ଭାଗ୍ୟଂ ଫଳତି ସର୍ବତ୍ରଂ, ନଚ଼ବିଦ୍ୟା ନଚ଼ପୌରୁଷମ୍"ର କର୍କଶ ବାସ୍ତବତା ମୋ ବିବାହିତ ଜୀବନର ପ୍ରଥମ ଦଶବର୍ଷକୁ ପରିଚାଳିତ କରିଥିଲା । ବର୍ତ୍ତମାନର ତୀବ୍ର ଘୂର୍ଣ୍ଣାୟମାନ 'କାଳ' ମୋତେ ଅଳ୍ପ ବୟସରେ ପିତୃତ୍ୱର ପଦମର୍ଯ୍ୟାଦାଠାରୁ, ଚଳଚ୍ଚିତ୍ର ଅଭିନୟ, ବ୍ଲକ୍ ଡିଜାଇନର, ସେକ୍ରେଟେରିଏଟ୍‌ର ଅଧସ୍ତନ କର୍ମଚାରୀ, ପରିବାରର ଦଶଟି ଛୋଟଛୋଟ ପ୍ରାଣୀଙ୍କର ଏକମାତ୍ର ଶିକ୍ଷା ଓ ଅନ୍ନସଂସ୍ଥାପକ ଓ ଘରୋଇ ନୂତନ ମହାବିଦ୍ୟାଳୟର ଅଧ୍ୟାପକ ଓ ଅଧ୍ୟକ୍ଷର ଦାୟିତ୍ୱ ନେବାକୁ ବାଧ୍ୟ କରିଥିଲା । ୧୯୫୮ ରୁ ୧୯୬୮ ମଧ୍ୟରେ ଏ ସମସ୍ତ ଅଭିଜ୍ଞତାପାଇଁ ମୋତେ ଗୃହତ୍ୟାଗୀ ହେବାକୁ ପଡ଼ିଥିଲା । ତିନୋଟି ଜାଗାରେ ଦଶଟି ଭଡ଼ାଘରେ ରହିବାର ସୁଯୋଗ ମିଳିଥିଲା । କେବଳ, "ଅନ୍ନଚିନ୍ତା ଚମତ୍କାରା, କାତରେ କବିତା କୁତଃ !" ଏଥିଲା ମୋ ଜୀବନ ।

୧୯୬୮ ମସିହାରେ ସମସ୍ତ ଅବ୍ୟବସ୍ଥା ଓ ଅନିଶ୍ଚିତତା ଭିତରେ ମୁଁ ଏକ ନିଛକ ରୁଗ୍‌ଣ ଗ୍ରାମ୍ୟ ଘରୋଇ ବିଜ୍ଞାନ ମହାବିଦ୍ୟାଳୟର ଅଧ୍ୟକ୍ଷ ପଦବୀ ଗ୍ରହଣ କରିନେଇଥିଲି । ସୌଭାଗ୍ୟକୁ ମୋର ଶିକ୍ଷାଗୁରୁ ପ୍ରଫେସର ଦାସ ଠିକ୍ ସେହି ସମୟରେ ଉଚ୍ଚଶିକ୍ଷା ନିର୍ଦ୍ଦେଶକ ଭାବରେ ଅବସ୍ଥାପିତ ହେଲେ । ପ୍ରଫେସର ବିଧୁଭୂଷଣ ଦାସଙ୍କର ପ୍ରଶାସନିକ ବ୍ୟବସ୍ଥା ମଧ୍ୟରେ ସେ ସମୟର ଘରୋଇ ମହାବିଦ୍ୟାଳୟଗୁଡ଼ିକ ଅନେକାଂଶରେ ପ୍ରଭାବିତ ଓ ଶୃଙ୍ଖଳିତ ହେଉଥିଲେ ।

ଓଡ଼ିଶାର ହଜାର ହଜାର ଗାଁ ପରି ଲରମ୍ବା ଗୋଟିଏ ଛୋଟ ଗାଁ । ଅବିଭକ୍ତ ସମ୍ବଲପୁର ଜିଲ୍ଲାର କେନାଲସେଚିତ ଅଞ୍ଚଳରେ ଏ ଗାଁର ଏକମାତ୍ର ବିଶେଷତ୍ୱ ହେଲା ତା'ର

ଶତାବ୍ଦୀର ଶିକ୍ଷାକ୍ଷେତ୍ରକୁ ଅବଦାନ । ଏଇ ଗାଁ ମାଟିର ପିଲା, ଶିକ୍ଷାବିତ, କୃଷିବିତ୍, ସ୍ୱଭାବକବି ଗଙ୍ଗାଧରଙ୍କୁ ଲୋକଲୋଚନକୁ ଆଣିଥିବା ବନ୍ଧୁ ଓ ଏଠାର ସମସ୍ତ ଶିକ୍ଷାନୁଷ୍ଠାନର ପ୍ରତିଷ୍ଠାତା କବି ବ୍ରଜମୋହନ ପଣ୍ଡାଙ୍କ ସାରା ଜୀବନ ପଶ୍ଚିମ ଓଡ଼ିଶାର ଉଚ୍ଚଶିକ୍ଷାର ଉନ୍ନତି ସକାଶେ ନିୟୋଜିତ ହୋଇଥିଲା । ୧୯୬୪ ମସିହାରେ ପ୍ରତିଷ୍ଠିତ ଲରମ୍ବା ଇଣ୍ଟରମିଡିଏଡ଼ ବିଜ୍ଞାନ କଲେଜଟି, ୧୯୬୫ ମସିହାରେ ପ୍ରତିଷ୍ଠାତାଙ୍କ ଦେହାନ୍ତପରେ ରୁଗ୍ଣ ହୋଇଯାଇଥିଲା । ୧୯୬୮ ମସିହାରେ ମୁଁ କଲେଜର ଅଧ୍ୟକ୍ଷ ପଦରେ ଯୋଗ ଦେବାପରେ ଉଚ୍ଚଶିକ୍ଷା ନିର୍ଦ୍ଦେଶାଳୟ ଉପରେ ସଂପୂର୍ଣ୍ଣ ନିର୍ଭରଶୀଳ ହୋଇ ପଡ଼ିଥିଲି । ଦୀର୍ଘ ଛ/ସାତ ବର୍ଷ ପର୍ଯ୍ୟନ୍ତ ଯେତେ ଜଣ ଅଧ୍ୟାପକ, ପ୍ରାଧ୍ୟାପକ ଓ ଅଧ୍ୟକ୍ଷ ଡେପୁଟି ଡିରେକ୍ଟର୍ ଭାବରେ ଏ ନିର୍ଦ୍ଦେଶାଳୟରେ ସାମୟିକ ଭାବରେ ଅବସ୍ଥାପିତ ହୋଇଥିଲେ ମୁଁ ସେମାନଙ୍କୁ ସମସ୍ତଙ୍କୁ ଖୁବ୍ ନିକଟରୁ ଦେଖିଛି ଓ ସେମାନେ ମୋତେ ଓ ମୋର ଅନୁଷ୍ଠାନଟିକୁ ପ୍ରତିପାଳିତ କରିଛନ୍ତି । ମେଜର ଗୁରୁପ୍ରସାଦ ମହାନ୍ତି ସେହି ସୂତ୍ରରେ ମୋର ସିଧାସଳଖ ପ୍ରଶାସକ ଓ ନିୟନ୍ତ୍ରକ ଥିଲେ । ବହୁ ଘଟଣାମଧ୍ୟରେ ସାରଙ୍କୁ ନେଇ ତିନିଟି ଘଟଣା ମୋର ଅଭୁଲା ସ୍ମୃତି ହୋଇ ରହିଛି ।

ସାଧାରଣ ଭାବରେ ପଚାଶବର୍ଷ ବୟସରେ ଜଣେ ଯୁବ ସାମରିକ ଅଫିସର ତାଙ୍କରେ ତାଙ୍କର ଚାଲିବାର, କଥାକହିବାର ଆଚରଣ, ଖୋଲାହସ ଓ କାପ୍ଷ୍ଟେନ୍ ଟବାକୋ ମୁଣାରୁ ତମାଖୁ ବାହାରକରି ହାତରେ ସିଗାରେଟ ବଳି ପିଇବାର ବେପରୁଆଏ ଅଭ୍ୟାସ ମୋତେ ଅନନ୍ୟ ଲାଗୁଥିଲା । ମୁଁ ଆଜିଯାଏ ସେମିତି ଜଣେ ଆଧୁନିକ ଓଡ଼ିଆ ଅଧ୍ୟାପକଙ୍କୁ ଦେଖିବାକୁ ପାଇନାହିଁ । ସାର୍‌ଙ୍କ ପରି ସୁବେଶ, ପରିଷ୍କାର, ପରିଚ୍ଛନ୍ନ, ତୀବ୍ର ଉତ୍ସାହୀ, ପ୍ରାଣବନ୍ତ, ସ୍ଫୂର୍ତ୍ତିମାନ, ଟାଣୁଆ ଶିକ୍ଷାପ୍ରଶାସକଟିଏ ଖୋଜି ପାଇନାହିଁ ।

ପ୍ରଥମ ଘଟଣାଟି ବଡ଼ ଆକସ୍ମିକ ଭାବରେ ମୋତେ ତାଙ୍କର ନିକଟତର କରିଥିଲା । ସାର, ବୋଧହୁଏ ଓଡ଼ିଆ ଚଳଚ୍ଚିତ୍ର ଦେଖିବାର ସେତେ ରୁଚି ରଖୁନଥିଲେ । ଦୈବାତ୍ କୌଣସି ଏକ କଲେଜର ସାଂସ୍କୃତିକ ଉତ୍ସବର ମୁଖ୍ୟ ଅତିଥି ଭାବରେ, ଲୋକସଂପର୍କ ବିଭାଗ ସୌଜନ୍ୟରୁ ମୋ ଅଭିନୀତ 'ମାଟିର ମଣିଷ' ଚଳଚ୍ଚିତ୍ର ଦେଖିବାର ସେ ସୁଯୋଗ ପାଇଥିଲେ । ଖବର ନେଇ ଜାଣିଥିଲେ ମୁଁ ଲରମ୍ବା କଲେଜର ଅଧ୍ୟକ୍ଷ ଭାବରେ କାର୍ଯ୍ୟରତ ଅଛି । କିଛିଦିନ ପରେ, କଲେଜ କାମରେ ନିର୍ଦ୍ଦେଶାଳୟରେ ପହଞ୍ଚିବା ସଂଗେ ସଂଗେ ବିଭାଗୀୟ କର୍ମଚାରୀମାନେ ମୋତେ ସାରଙ୍କୁ ତତ୍‌କ୍ଷଣାତ୍ ଦେଖାକରିବା ପାଇଁ କହିଥିଲେ । ସଂଶୟ ଓ ସଂଭ୍ରମରେ ମୁଁ ଯାଇ ତାଙ୍କ ଆଗରେ ଛିଡ଼ାହେଲି । ଚଉକିରୁ ଉଠିପଡି ସାର୍ ମୋ ଆଡ଼କୁ ହାତ ବଢ଼ାଇ ଉଚ୍ଛ୍ୱସିତ କଣ୍ଠରେ କହିଲେ, "କଂଗ୍ରାଚୁଲେସନ୍‌ସ ମିଷ୍ଟର ପୂଜାରୀ, ଫର୍ ୟୋର୍ ମାର୍ଭଲସ୍ ଏକ୍ଟିଂ ଇନ୍ 'ମାଟିର ମଣିଷ' । ଆଇ ଆମ୍ ମୁଭଡ୍ ବାଇ ୟୋର

ପରଫରମେନ୍‌ସ ।" ମୋର ସମସ୍ତ ଚେତନା ସେତେବେଳେ ବିଗଳିତ ହୋଇ ଯାଇଥିଲା । ଇଂରାଜୀ ବିଭାଗର ପ୍ରଫେସର, ଓଡ଼ିଶାର ଜଣେ ପ୍ରଥିତଯଶା କବି ଓ ଶିକ୍ଷାପ୍ରଶାସକଙ୍କ ଠାରୁ ଏପରି ଏକ ଆନ୍ତରିକ ସମ୍ବର୍ଦ୍ଧନା ପାଇବାର ସ୍ୱପ୍ନ କେବେ ଦେଖିନଥିଲି । ମୋର ମନେପଡି ଯାଇଥିଲା, ୧୯୬୬ ମସିହାରେ 'ମାଟିର ମଣିଷ' ଓଡ଼ିଶାରେ ମୁକ୍ତି ପାଇବାର ଅବ୍ୟବହିତ ପୂର୍ବର କଲିକତାର ସାମ୍ବାଦିକ ସମ୍ମିଳନୀର ଘଟଣା । ଚଳଚ୍ଚିତ୍ରଟି ଦେଖି ସାରିବା ପରେ ପ୍ରଖ୍ୟାତ ନିର୍ଦ୍ଦେଶକ ସତ୍ୟଜିତ ରାୟ୍ ଠିକ୍ ଏହିପରି ଭାବରେ ଭାବବିହ୍ୱଳିତ ବଧେଇ ମୋତେ ଜଣେଇ ଥିଲେ । କହିବା ବାହୁଲ୍ୟ ମେଜର ମହାନ୍ତି ସେହିଦିନଠାରୁ ମୋତେ ଜଣେ ସୃଜନଶୀଳ କଳାକାର ଭାବରେ ଗ୍ରହଣ କରିନେଇଥିଲେ ।

ଅନେକ ସମୟରେ ସାରଙ୍କର ଅମାୟିକ ବ୍ୟବହାର, ପ୍ରତ୍ୟୁତ୍ପନ୍ନମତି ଓ କ୍ଷିପ୍ର ନିଷ୍ପତ୍ତି ନେବାର ଗୁଣ ମୋତେ ଅଭିଭୂତ କରିଦେଉଥିଲା । ଦ୍ୱିତୀୟ ଘଟଣାଟି ଘଟିଥିଲା ମେଜର ମହାନ୍ତିଙ୍କ ଅଫିସ୍ ଭିତରେ । ଲରମ୍ବା ପରି ଗ୍ରାମ୍ୟ କଲେଜରେ ବିଜ୍ଞାନ ଅଧ୍ୟାପକଟିଏ ଖୋଜି ପାଇବା ସେତେ ସହଜ ନଥିଲା । ମୋପରି ଅଧ୍ୟକ୍ଷମାନେ ସେତେବେଳେ ନିର୍ଦ୍ଦେଶାଳୟର ଆଡ଼ହକ୍ ନାମ ତାଲିକାରୁ ଅଧ୍ୟାପକମାନଙ୍କୁ ଡି.ପି.ଆଇଙ୍କ ଅନୁମୋଦନରେ ନିଜ ନିଜ କଲେଜରେ ନିଯୁକ୍ତି ଦେଉଥିଲେ । ଥରେ ସାର୍‌ଙ୍କ କୋଠରୀକୁ ପଶିଯାଇ ମୁଁ ବଡ଼ବ୍ୟସ୍ତ ହୋଇ ଜଣେ ରସାୟନ ବିଜ୍ଞାନ ଅଧ୍ୟାପକଙ୍କୁ ମୋ କଲେଜକୁ ପଠେଇବାକୁ ଅନୁରୋଧ କରିବାକୁ ଗଲି । ସାର୍‌ଙ୍କ ଟେବୁଲ ଆରପାଖରେ ସେତେବେଳେ ଜଣେ ଭଦ୍ରମହିଳା ବସିଥିବାର ଦେଖିଲି । ଭଦ୍ରମହିଳା ସାମାନ୍ୟ ବିବ୍ରତ ଥିବାପରି ଜଣା ପଡୁଥିଲେ । ସାର ମୋତେ ଆସିବାର କାରଣ ପଚାରିଲେ । ମୁଁ ସିଧାସଳଖ ଅଧ୍ୟାପକ ଅଭାବରୁ ବିଜ୍ଞାନ ଶ୍ରେଣୀରେ ପାଠ୍ୟକ୍ରମ ସରୁନଥିବା ଉପାଖ୍ୟାନ ଆରମ୍ଭ କରିଦେଲି । ସାର ମୋତେ ହଠାତ୍ ଦେଖାଇ କହିଲେ, "ୱେଟ୍, ୱେଟ୍ । ଆପଣଙ୍କ କଲେଜରେ କଣ ଅଧ୍ୟାପିକା ଚାକିରୀ କରନ୍ତି ? ତାଙ୍କ ପାଇଁ ସ୍ୱତନ୍ତ୍ର କ୍ୱାଟର୍ସ୍‌ର ବ୍ୟବସ୍ଥା ଆପଣ କରି ପାରିବେ ?" ମୋର ଉତ୍ତର ଥିଲା, "ସାର ବର୍ତ୍ତମାନ ନାହାଁନ୍ତି, ତେବେ ସେମାନଙ୍କୁ ସରକାର ଡେପ୍ୟୁଟ କଲେ, ଆମେ କ୍ୱାଟର୍ସ୍ ଯୋଗାଇ ଦେବୁ ।" ସାର ପୁଣିଥରେ ପଚାରିଲେ, "ଆର ୟୁ ସିଓ୍ୟୋର ? ଉଇଲ ୟୁ ଟେକ୍ ଦି ରିସ୍କ ?" ମୁଁ କହିଲି, "ସାର, ଏଇ ମୁହୂର୍ତ୍ତରେ ମୁଁ ସେ ଦାୟିତ୍ୱ ନେଲି ।" ତା'ପରେ ସାର ତାଙ୍କର ସାମରିକ କାଇଦାରେ, ମୋ ସହିତ ସାରଙ୍କ ସାମନାରେ ବସିଥିବା ଭଦ୍ରମହିଳାଙ୍କୁ ପରିଚୟ କରାଇ ଦେଇଥିଲେ, "ମିଟ୍ ମିସ୍ ପ୍ରତିଭା ସାମନ୍ତରାୟ, ରିଟ୍ରେନ୍‌ଚଡ୍ ଆଡ଼ହକ ଲେକ୍‌ଚରାର ଇନ୍ କେମିଷ୍ଟ୍ରି ଅଫ୍ ଖଲ୍ଲିକୋଟ କଲେଜ, ବ୍ରହ୍ମପୁର । ଏଣ୍ଡ ମାଡ଼ାମ୍, ମିଟ୍ ମିଷ୍ଟର ପୂଜାରୀ, ପ୍ରିନ୍‌ସିପାଲ/ସେକ୍ରେଟାରି ଅଫ୍ ଲରମ୍ବା କଲେଜ । ଉଡ୍ ୟୁ ଲାଇକ ଟୁ ଜଏନ ଦିସ୍ କଲେଜ ?" ମହିଳା ଜଣକ ମୋତେ ପ୍ରଣାମ ଜଣାଇ, ସାରଙ୍କୁ କୃତଜ୍ଞତା ଜଣାଇଲେ । ମୁଁ ସଂପୂର୍ଣ୍ଣ ଆଶ୍ୱସ୍ତ ହେଲି । ସେଦିନ ସଂଧ୍ୟାରେ ହିଁ ପ୍ରତିଭା ମାଡ଼ାମଙ୍କ ନିଯୁକ୍ତିପତ୍ର ଟାଇପ୍

ହୋଇ ମୋ କଲେଜକୁ ପଠେଇ ଦିଆଗଲା । ସାତଦିନ ପରେ ପ୍ରତିଭା ମାଡ଼ାମ୍ ଲରମ୍ବା ମହାବିଦ୍ୟାଳୟର ଅଧ୍ୟାପିକା ହିସାବରେ ମୋ କ୍ୱାଟର୍ସ ପାଖ ଗୋଟିଏ ମାଟି ଓ ଖପର ଘରେ ଆସି ରହିଲେ । ଦୀର୍ଘ ୧୩ ବର୍ଷ ପର୍ଯ୍ୟନ୍ତ ସେ ମୋ କଲେଜର ଅଧ୍ୟାପିକା ରହିଲେ-ମିସ୍‌ରୁ ମିସେସ୍ ହେବା ପର୍ଯ୍ୟନ୍ତ ! ଆଜିଯାଏ ସେ ମୋର ପରିବାରର ଜଣେ ସଦସ୍ୟା ଭାବରେ ଅଛନ୍ତି । ଯଦିଓ ବିବାହପରେ ସେ ମୁମ୍ବାଇବାସିନୀ ଜଣେ ଚଳଚ୍ଚିତ୍ର ପ୍ରଯୋଜିକା ଓ ସମାଜସେବିକା । ଶ୍ରୀମତୀ ପ୍ରତିଭା ବୀର ମୁମ୍ବାଇର ପ୍ରଖ୍ୟାତ ଚିତ୍ରଉତ୍ତୋଳକ ଓ ନିର୍ଦ୍ଦେଶକ ଶ୍ରୀ ଅପୂର୍ବ କୁମାର ବୀରଙ୍କ ସହଧର୍ମିଣୀ ।

ଲରମ୍ବା କଲେଜର ଶିକ୍ଷକ-ଛାତ୍ର ସଂପର୍କ ପରିବେଶ ସଂପୂର୍ଣ୍ଣ ଭିନ୍ନ ଓ ଆଦର୍ଶ ସ୍ଥାନୀୟ ଥିଲା । ଓଡ଼ିଶାର ଅନ୍ୟ ଘରୋଇ ମହାବିଦ୍ୟାଳୟ ପରି ଏହା ପରିଚାଳିତ ହେଉନଥିଲା । ମୋର ଅଧ୍ୟକ୍ଷ ପଦବୀରେ ରହିବାର ୨୭ ବର୍ଷର ଅନୁଭୂତି, ଶିକ୍ଷାବିଭାଗର ବହୁ ପ୍ରଶାସନିକ ହଟଚ୍‌ମଟ ମଧ୍ୟ ଦେଇ ଗତି କରିଛି । ଏହିପରି ଏକ ନାଟକର ମୁଖ୍ୟ ଭୂମିକାରେ ସାର୍‌ଙ୍କୁ ଅଭିନୟ କରିବାକୁ ପଡିଥିଲା । ମୁଁ ତାହାର ମୂକ ଦର୍ଶକ ! ଘଟଣାଟି ଏହିପରି-

ଓଡ଼ିଶାର ଶହଶହ କଲେଜର ଅଧ୍ୟକ୍ଷମାନଙ୍କ ବିରୁଦ୍ଧରେ ସରକାରଙ୍କ ପାଖରେ ବହୁ ନାମୀ ଓ ବେନାମୀ ଅଭିଯୋଗସବୁ ପହଞ୍ଚିଥାଏ । ତା'ର ସରଜମିନ୍ ତଦନ୍ତର ଗୁରୁଭାର ପଡିଥିଲା ମେଜର ଗୁରୁପ୍ରସାଦଙ୍କ ଉପରେ । ପଶ୍ଚିମାଞ୍ଚଳର ଚାରିପାଞ୍ଚୋଟି କଲେଜ ଅଧ୍ୟକ୍ଷଙ୍କ ବିରୁଦ୍ଧରେ ଗୁପ୍ତ ତଦନ୍ତ କରିବାକୁ ସାର ଥରେ ମାର୍ଚ୍ଚ ମାସରେ ଅପ୍ରତ୍ୟାଶିତ ପରିଦର୍ଶନରେ ଲରମ୍ବା କଲେଜରେ ପହଞ୍ଚିଥିଲେ । ଲରମ୍ବା କଲେଜ ଅଧ୍ୟକ୍ଷଙ୍କ ବିରୁଦ୍ଧରେ ବୋଧହୁଏ ଅଭିଯୋଗ ଥିଲା- ସେ ଜଣେ ଚଳଚ୍ଚିତ୍ର ଅଭିନେତା । ଫିଲ୍ମ ସୁଟିଂରେ ବ୍ୟସ୍ତରହି ଅଧିକାଂଶ ସମୟ ବାହାରେ ରହନ୍ତି । ସେଥିପାଇଁ କଲେଜରେ ପାଠପଢ଼ା ହୁଏନାହିଁ । ପ୍ରଶାସନ ହୁଗୁଳି ଗଲାଣି । ଛାତ୍ର ବିଶୃଙ୍ଖଳା ଦେଖାଯିବାର ସମ୍ଭାବନା ଅଛି ।

ସାର ନିଜ ଗାଡ଼ିରେ ଲରମ୍ବା କଲେଜ ପରିସର ମଧ୍ୟରେ ପ୍ରବେଶ କରିବା ବେଳକୁ ଦିନ ଦେଢ଼ଟା ବାଜିଛି । ଷୋହଳ ଏକର ଏକଚ୍‌କଡ଼ା ଜମିର ମଧ୍ୟ ଭାଗରେ ଦକ୍ଷିଣକୁ ଖେଳପଡ଼ିଆ ଓ କଲେଜ୍‌ର ଶ୍ରେଣୀଗୃହ । ଉତ୍ତର ଦିଗକୁ ଦେଢ଼ଶହ ଛାତ୍ରଙ୍କ ଛାତ୍ରାବାସ ଓ ତାକୁ ଘେରି ରହିଛି ପ୍ରାୟ କୋଡ଼ିଏଜଣ ଅଧ୍ୟାପକଙ୍କ କାମଚ଼ଳା ବାସଗୃହ । ଛାତ୍ରାବାସର ଗେଟ୍ ଠିକ ସାମନାରେ କଲେଜ ଅଫିସକୁ ଯିବାର ମୁଖ୍ୟ ଫାଟକ । ଗାଡ଼ି ଅଟକାଇ ମେଜର ମହାନ୍ତି କଲେଜ ପରିସରକୁ ପଶିବା ସମୟରେ ଅନୁମାନ କରିନେଲେ କେନାଲ ଓ ସବୁଜ ଖେତଖଳା ବିଶିଷ୍ଟ ଏ ପରିସରକୁ ଏକମାତ୍ର ପୂର୍ବରୁ ପଶ୍ଚିମକୁ ଦେଢ଼ କିଲୋମିଟର ଗ୍ରାମ୍ୟ ରାସ୍ତା ପୂର୍ତ୍ତବିଭାଗ ରାସ୍ତାରୁ ଲରମ୍ବା ଗ୍ରାମକୁ ଯୋଗ ସୂତ୍ର ଭାବରେ କାର୍ଯ୍ୟ କରୁଛି । ସଂପୂର୍ଣ୍ଣ

ଶାନ୍ତ ପରିବେଶ । ଖୋଲା ମୁଖ୍ୟ ଫାଟକ ଜନଶୂନ୍ୟ । ଫାଟକ ସମ୍ମୁଖରେ କଲେଜର ମୁଖ୍ୟ ସଭା ମଣ୍ଡପ ଓ ତାହାର ପୂର୍ବଭାଗରେ ଅଧ୍ୟକ୍ଷଙ୍କ ଅଫିସ । ସେଠାରେ କାର୍ଯ୍ୟରତ କର୍ମଚାରୀ ଓ ପିଅନମାନଙ୍କ ଅନୁଚ୍ଚ କଥାବାର୍ତ୍ତା ଓ ଟାଇପର ଶବ୍ଦ । ମେଜର ମହାନ୍ତିଙ୍କ ଗାଡ଼ି ଶବ୍ଦରେ ଅଫିସର ଜଣେ ଚତୁର୍ଥଶ୍ରେଣୀ କର୍ମଚାରୀ ବାହାରକୁ ବାହାରି ଆସିବାର ଦେଖି ସାର୍ ତାକୁ ପଚାରିଲେ, "ପ୍ରିନ୍‌ସିପାଲ କେଉଁଠି ଅଛନ୍ତି ?" କର୍ମଚାରୀର ଉତ୍ତର ଥିଲା, "ପ୍ରିନ୍‌ସିପାଲ ନାହାନ୍ତି । ଇନ୍‌ଚାର୍ଯ୍ୟ ପ୍ରିନ୍‌ସିପାଲ ଅଛନ୍ତି । ସେ ବର୍ତ୍ତମାନ ଅଫିସରୁ ତାଙ୍କ ଘରକୁ ଖାଇବାକୁ ଗଲେ ।" ସାର ଗମ୍ଭୀର ଭାବରେ କହିଲେ, "ତାଙ୍କୁ ଖବର ଦିଅ । ଡେପୁଟି ଡି.ପି.ଆଇ ଆସିଛନ୍ତି ।" ମୋଟେ ପଚାଶ ଗଜ ଦୂରରେ ଅବସ୍ଥାପିତ ପ୍ରାଣୀବିଜ୍ଞାନ ବିଭାଗର ମୁଖ୍ୟ ଓ ଏନ୍.ସି.ସି. ଅଫିସର ଶ୍ରୀ ପି.କେ. ମିଶ୍ରଙ୍କ କ୍ୱାଟର୍ସକୁ ପିଅନଟି ଯାଇ ଖବର ଦେଲା । ଶ୍ରୀ ମିଶ୍ର ତତ୍‌କ୍ଷଣାତ୍ ବାହାରି ଆସି ମେଜର ମହାନ୍ତିଙ୍କୁ ନିଜର ପରିଚୟ ଦେଲେ ଓ ସମ୍ମାନ ଜଣାଇଲେ । ସାରଙ୍କ ପ୍ରଶ୍ନଥିଲା, "ପ୍ରିନ୍‌ସିପାଲ୍ କୁଆଡ଼େ ଗଲେ ?" ଅଧ୍ୟାପକ ମିଶ୍ର ଜଣାଇଲେ, "ସାର କଲେଜ କାମରେ ଗତ କାଲିଠାରୁ ଭୁବନେଶ୍ୱର ଯାଇଛନ୍ତି । ଦୁଇତିନି ଦିନ ପରେ ଫେରିବେ । ଆଉ ଆମେ ସାର, ଆପଣଙ୍କ ଟୁର୍ ଖବର ପାଇନାହୁଁ ।" ସାର୍, ଶ୍ରୀ ମିଶ୍ରଙ୍କୁ କଲେଜ ବୁଲେଇ ଦେଖିବାକୁ କହିଲେ । କଲେଜର ଖେଳ ପଡିଆ ଓ ଶ୍ରେଣୀଗୃହ ଗୁଡ଼ିକର କେତେକ ଅଂଶ ଦୂରରୁ ଦେଖାଇଲେ । କେତୋଟି ଶ୍ରେଣୀରେ ସେତେବେଳେ କ୍ଲାସ୍ ଚାଲିଥିବାର ମେଜର ମହାନ୍ତି ଲକ୍ଷ୍ୟ କରିଛନ୍ତି । ତା'ପରେ ଛାତ୍ରାବାସ ଓ ଅଧ୍ୟାପକ ମାନଙ୍କ ବାସଗୃହର ଅବସ୍ଥିତି ବିଷୟରେ ପଚାରି ବୁଝିବାପରେ ଅଧ୍ୟାପକ ମିଶ୍ରଙ୍କୁ ଅଧ୍ୟକ୍ଷଙ୍କ କାର୍ଯ୍ୟକ୍ଷମତା ବିଷୟରେ ପଚାରି ବୁଝିଥିଲେ । "ଅଧ୍ୟକ୍ଷ କଲେଜ ନଆସି ବେଶି ସମୟ ମିଟିଂରେ ବ୍ୟସ୍ତ ରହନ୍ତି କି ? ତାଙ୍କ ଅନୁପସ୍ଥିତିରେ କଲେଜରେ କିଛି ଅସୁବିଧା ହୁଏ କି ? ଅଧ୍ୟାପକ, କର୍ମଚାରୀମାନଙ୍କ ପ୍ରତି ତାଙ୍କର ବ୍ୟବହାର କେମିତି ? ତାଙ୍କ ଅନୁପସ୍ଥିତିରେ କଲେଜରେ କିଛି ଛାତ୍ର ବିଶୃଙ୍ଖଳା ହୁଏ କି ?" ସବୁ ପ୍ରକାର ପ୍ରଶ୍ନର ଉତ୍ତର ସକାରାତ୍ମକ ହେବାପରେ, ମେଜର ମହାନ୍ତି, ହଠାତ୍ ପଚାରିଲେ, "ଆପଣଙ୍କ କଲେଜ ଚାରିପାଖରେ ତ କେବଳ ଖେତଖଳା ଦେଖାଯାଉଛି । ଦୋକାନ ବଜାର କିଛି ନାହିଁ । ଆପଣଙ୍କ ଘରକୁ ହଠାତ୍ କୁଣିଆ ଆସିଲେ ତାଙ୍କୁ ଖାଇବାକୁ କଣ ଦିଅନ୍ତି ?" ଅଧ୍ୟାପକ ମିଶ୍ର ତତ୍‌କ୍ଷଣାତ୍ ଉତ୍ତର ଦେଲେ, "ସାର୍, ଆମେ ଏଠି କୋଡ଼ିଏ ଜଣ ଅଧ୍ୟାପକ ଅଛୁ । ସେମାନଙ୍କ ଭିତରୁ ଦଶବାର ଜଣ ପରିବାର ନେଇ ରହୁ । ଦେଢ଼ଶହ ପିଲାଙ୍କର ସ୍ୱଚାଳିତ ମେସ୍ ଚାଲିଛି । କୁଣିଆଙ୍କୁ ଆପ୍ୟାୟିତ କରିବାକୁ ଆମକୁ ବାହାରକୁ ଯିବାକୁ ପଡ଼େନାହିଁ । କଲେଜର ଦୁଇଚାରି କିଲୋମିଟର ଦୂରରେ ସପ୍ତାହକୁ ତିନୋଟି ହାଟ ବସେ । ସେଠାରେ ଉପରଓଳି ଆମେ ସବୁ କିଣିବାକୁ ପାଉ । ଆମ କଲେଜର ଖେଳକୁଦ, ନାଟକ, ଚଳଚ୍ଚିତ୍ର ପ୍ରଦର୍ଶନ, ବକ୍ତୃତା, ସଂଗୀତ ଓ ଚିତ୍ର ପ୍ରତିଯୋଗିତାରେ ଅଧ୍ୟାପକ ଓ ଛାତ୍ରଛାତ୍ରୀ ସମାନ ଭାବରେ

ଭାଗନେଉ। ଗୋଟାଏ ପରିବାରର ସଦସ୍ୟ ଭାବରେ ଚଳୁ।'' ହଠାତ୍ ଅଧ୍ୟାପିକ ମିଶ୍ର ପ୍ରକୃତିସ୍ଥ ହେଲେ, କହିଲେ, ''ସାର୍, ମୋତେ କ୍ଷମା କରିବେ। ବର୍ତ୍ତମାନ ଦିନ ଦୁଇଟା ବାଜି ସାରିଲାଣି। ଆପଣ ନିଶ୍ଚେ ଖାଇ ନଥିବେ। ମୁଁ ମଧ୍ୟ ଖାଇନାହିଁ ସାର। ଚାଲନ୍ତୁ ସାର ମୋ କ୍ୱାଟର୍ସକୁ। ମୋ ସ୍ତ୍ରୀ ଜଣେ ଭଲ ରାନ୍ଧୁଣୀ। ଆମେ ସେଠି ଖାଇବା। ପ୍ରିନ୍‌ସିପାଲ ଥିଲେ, ସେ ତାଙ୍କ ଘରେ ଆପଣଙ୍କୁ ନଖୁଆଇ କେବେ ଏଠାରୁ ବିଦାୟ ଦେଇ ନଥାନ୍ତେ। ସାର୍, ପ୍ଲିଜ୍-ମନା କରନ୍ତୁ ନାହିଁ।'' ତା'ପରେ ମେଜର ମହାନ୍ତି ଅଧ୍ୟାପକ ମିଶ୍ରଙ୍କ ଆତିଥ୍ୟ ସ୍ୱୀକାର କରି ପ୍ରାୟ ଘଣ୍ଟାଏ କାଳ ଲରମ୍ବା କଲେଜ ପରିସରରେ ରହି ସିଧା ଭୁବନେଶ୍ୱର ଫେରି ଯାଇଥିଲେ।

ତା'ପରଦିନ ଅପରାହ୍ନରେ ମୁଁ କଲେଜ କାମରେ ମେଜର ମହାନ୍ତିଙ୍କୁ ସାକ୍ଷାତ କରିବାକୁ ଗଲି। ମେଜର ମହାନ୍ତି ମୋତେ ଦେଖିବା ସାଂଗେ ସାଂଗେ ଆରମ୍ଭ କରିଦେଲେ, ''ଆମେ ଜଣେ ଅଧ୍ୟକ୍ଷଙ୍କ କଲେଜ ପରିଦର୍ଶନ କରିବାକୁ ଗଲାବେଳେ ଅଧ୍ୟକ୍ଷ ସେଠାରେ ଉପସ୍ଥିତ ନରହିବା ସତରେ ବଡ଼ ଅନ୍ୟାୟ।'' ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି, ''ସାର, ଆପଣ କଣ ଲରମ୍ବା ଯାଇଥିଲେ ? ମୁଁ ତ ଆପଣଙ୍କ ଟୁର୍ ପ୍ରୋଗ୍ରାମ ପାଇନାହିଁ।'' ଚିରାଚରିତ ଭାବରେ ଆଖିମିଟିକା ମାରି ସାରଙ୍କ ଉତ୍ତର ଥିଲା, ''ଇଟ୍ ୱାଜ ଓ ସରପ୍ରାଇଜ ଭିଜିଟ୍। ଲକ୍ଲିଲି ଇଟ୍ କେମ୍ ଆଉଟ୍ ଟୁ ବି ଏ ରିଏଲ ସରପ୍ରାଇଜ ଫର ମି। ୟୋର ପ୍ରିନିସପାଲ ଇନଚାର୍ଯ ମେନେଜଡ୍ ଦି ଏଫେୟାର ସୋ ନାଇସଲି। ଇଜ୍ ହି ଏ ରିଲେଟିଭ ଅଫ୍ ୟୋରସ୍ ?'' ମୋର ଉତ୍ତର ଥିଲା, ''ସାର, ଅଧ୍ୟାପକ ମିଶ୍ର, ମୋ ଆଗରୁ ଲରମ୍ବା କଲେଜରେ ଯୋଗ ଦେଇଛନ୍ତି। ମୁଁ ତାଙ୍କ ପରେ କଲେଜର ଅଧ୍ୟକ୍ଷ ଭାବରେ ଯୋଗ ଦେଇଛି। ସେ ମେଦିନୀପୁରର ବଙ୍ଗାଳୀ ମିଶ୍ର ବ୍ରାହ୍ମଣ। ମୁଁ ସମ୍ବଲପୁରର ଆରଣ୍ୟକ ବ୍ରାହ୍ମଣ। ସେ ମୋର ରିଲେଟିଭ ହେବେ କାହିଁକି ?''

ମେଜର ମହାନ୍ତି ତା'ପରେ ହସିହସି, ହାତରେ ସିଗାରେଟ ବଳି ଧୂଆଁର କୁହେଳିକା ସୃଷ୍ଟିକରି ପୂର୍ବଦିନର ଘଟଣାସବୁ ବର୍ଣ୍ଣନା କରିଥିଲେ। ମୋ ଛାତିରୁ ଦମ୍‌କାଏ ଥଣ୍ଡାପବନ ବାହାରି ଯାଇଥିଲା। ମୁଁ ଲରମ୍ବା ଫେରି ଅଧ୍ୟାପକ ପି.କେ. ମିଶ୍ରଙ୍କୁ ମୋର କୃତଜ୍ଞତା ଜଣାଇଥିଲି। କିଛିଦିନ ପରେ ମେଜର ମହାନ୍ତି ଡେପୁଟି ଡିରେକ୍ଟର ପଦବୀରୁ ବିଦାୟ ନେଇଥିଲେ। ଅନେକ ଦିନଯାଏ ସାର୍‌ଙ୍କ ସହିତ ଆଉ ଦେଖା ହୋଇନାହିଁ।

୧୯୯୨ ମସିହାରେ ମୁଁ ଲରମ୍ବା କଲେଜରେ ଚବିଶ ବର୍ଷ ରହିବାପରେ, ସରକାର ମୋତେ ଡେପୁଟେସନ୍‌ରେ ଆଣି ଭୁବନେଶ୍ୱରର ସରକାରୀ ସଂଗୀତ ମହାବିଦ୍ୟାଳୟରେ ଅଧ୍ୟକ୍ଷ ପଦବୀରେ ରଖିଲେ। ପ୍ରିୟଦର୍ଶନୀ ମାର୍କେଟ ପାଖ ଆଠନମ୍ବରରେ ସରକାରୀ କ୍ୱାଟର୍ସରେ ରହିଲି। ସେଇ ପାଖରେ ବ୍ରୀଟ୍ କଲୋନୀରେ ମେଜର ମହାନ୍ତି ନିଜ ଘରେ

ରହିବାର ଖବର ପାଇଲି । ସେଠି ଆଉ ଦୁଇଜଣ ପୂର୍ବତନ ଡେପୁଟି ଡିରେକ୍ଟର ପ୍ରଫେସର ଚନ୍ଦ୍ରଶେଖର ରଥ ଓ ମେଜର ଧୀରେନ୍ଦ୍ର ସାମନ୍ତରାୟ ଆଇ.ଆର.ସି. ଭିଲେଜରେ ରହୁଥିଲେ । ପ୍ରାତଃ ଭ୍ରମଣ ବା ସକାଳର ତାଜା ପରିବା କିଣିବାକୁ ଆସିଲେ, ଏ ସମସ୍ତ ସାରମାନଙ୍କ ସହିତ ଦେଖା ହେଉଥିଲା । ମେଜର ମହାନ୍ତି ଅବସର ନେବାପରେ ସାମାନ୍ୟ ଦୁର୍ବଳ ଜଣାପଡୁଥିଲେ । କିନ୍ତୁ ମୁହଁରେ ସେ ଖୋଲାହସ ଓ ଆଖିମିଟିକା ଠିକ୍ ସେମିତି ଥିଲା । ଯେତେବେଳେ ଦେଖିଲେ, "ହେ ୟଙ୍ଗ୍‌ମେନ୍" ସମ୍ବୋଧନ କରି ମୋ ବିଷୟରେ ସବୁ ଭଲମନ୍ଦ ଖବର ରଖୁଥିଲେ । ଏ କୋଡ଼ିଏ ବର୍ଷ ଭିତରେ ମୁଁ କେବେ ସାର ନିଜର କାବ୍ୟକୃତି ବିଷୟରେ ମୋ ସହିତ ଚର୍ଚ୍ଚା କରିବାର ଦେଖିନାହିଁ । ନିଜର ଛାତ୍ର ଓ ଘନିଷ୍ଠ ଲେଖକ ବା କବି ବନ୍ଧୁମାନଙ୍କ ସହିତ ବୋଧହୁଏ ଏ ବିଷୟରେ କଥାବାର୍ତ୍ତା କରୁଥିଲେ । ଜଣେ ଯୁଗସ୍ରଷ୍ଟା କବିଭାବରେ ସେ କେବେ ସଭାସମିତିରେ ଯୋଗଦାନ କରୁନଥିଲେ । ମୋର ମନେ ହୋଇଛିସେ ଯେମିତି ସଂପୂର୍ଣ୍ଣ ପ୍ରଚାରବିମୂଖ ହୋଇଯାଇଥିଲେ । ସେପରି ସାମାଜିକତା ସେ ପସନ୍ଦ କରୁନଥିଲେ । କର୍ମମୟ ସାରାଜୀବନ ସମୁଦ୍ର ସ୍ନାନ କରିଥିବା ଉତ୍ତରିତ ପୁରୁଷଟିଏ ଯେମିତି ବାନପ୍ରସ୍ଥ ପାଳନ କରୁଛନ୍ତି । ନିର୍ବାଣ ଅପେକ୍ଷାରେ ଅଛନ୍ତି ।

ସାରଙ୍କୁ ଯେତେ ନିକଟରୁ ଦେଖିଥିଲି ଓ ଜାଣିଥିଲି, ତାଙ୍କର ପ୍ରିୟଜନ ମାନଙ୍କୁ ଜାଣିବାର ସୌଭାଗ୍ୟ ମୋର ହୋଇନାହିଁ । ମୋର ନିଜର ଅସୁସ୍ଥତାବଶତଃ ମୁଁ ଆଉ ପ୍ରାତଃ ଭ୍ରମଣ କରିପାରିଲି ନାହିଁ । ଆଠ ନମ୍ବରରୁ ଚନ୍ଦ୍ରଶେଖରପୁରକୁ ଚାଲି ଆସିଲି ୨୦୦୦ ମସିହାରେ । ସାର୍ ଅସୁସ୍ଥ ହେବାର ଖବର ମିଳିଲା । ସବୁବେଳେ ତାଙ୍କୁ ଉଚ୍ଚଦରର କବି, ପ୍ରଶାସକ, ଶିକ୍ଷକ, ଅନ୍ତରଂଗ ବନ୍ଧୁ ଓ ଉଦାର କର୍ମୀ ଭାବରେ ଲୋକେ ଜାଣିଥିଲେ ମଧ୍ୟ ମୋ ଆଖିରେ ସେ ଜଣେ ଅତି ଆଧୁନିକ ଓଡ଼ିଆ ଥିଲେ । କ୍ଷୁଦ୍ରତା ତାଙ୍କ ଭିତରେ ଲେଶ ମାତ୍ର ନଥିଲା । ସେମିତି ମଣିଷ ଓଡ଼ିଶାରେ ମିଳିବେ ନାହିଁ । ମୋର ଆନ୍ତରିକ ସମବେଦନା ଜଣାଉଛି ତାଙ୍କର ସମସ୍ତ ପ୍ରିୟଜନ ମାନଙ୍କୁ ।



# ମଞ୍ଚ ପ୍ରବେଶ ଓ ପ୍ରସ୍ଥାନର ଦୃଶ୍ୟ

ବୟସ ଅଧିକ ହେଲେ ସ୍ମରଣଶକ୍ତି : କମିଯାଏ ବୋଲି ଲୋକେ କହନ୍ତି । ସୌଭାଗ୍ୟକୁ ମୋ କ୍ଷେତ୍ରରେ ତାହା ହୋଇନାହିଁ । କୁହାଯାଏ, ଅଭିନୟ କଳା କେବଳ ଦଶ ପ୍ରତିଶତ ଜନ୍ମଗତ ଓ ନବେ ପ୍ରତିଶତ ଝାଳବୁହା ସାଧନା !

ସାଂସ୍କୃତିକ ସଚ୍ଚେତନତା ଦୃଷ୍ଟିରୁ, ମୋର ପଚାଶବର୍ଷର ନାଟ୍ୟାନୁଭୂତିର 'ଆଦି' ଓ 'ଅନ୍ତ'- ଦୁଇଟି ଦିଗର କେତୋଟି ମୁଖ୍ୟ ଘଟଣା ଏଠାରେ ଉପସ୍ଥାପନା କରୁଛି । ଯେହେତୁ ଏହା କେବଳ ଶିକ୍ଷା ଓ ଶିକ୍ଷାୟତନ ସହିତ ସଂପୃକ୍ତ, ବର୍ତ୍ତମାନର କଳାକାର ମାନଙ୍କ ପାଇଁ ଏହା ଅନୁଧ୍ୟାନର ବିଷୟ । ଆତ୍ମସମୀକ୍ଷାର ବିଷୟ ।

ପ୍ରଥମଟି ହେଲା, ପଞ୍ଚମ ଶ୍ରେଣୀର ଜଣେ ସାଧାରଣ ଶିଶୁର ପ୍ରଥମ 'ମଞ୍ଚ ପ୍ରବେଶ'ର ଅଭିଜ୍ଞତା ଓ ଦ୍ୱିତୀୟ ପର୍ଯ୍ୟାୟରେ ପଚାଶବର୍ଷ ପରେ; ଜଣେ ସ୍ୱୀକୃତିପ୍ରାପ୍ତ ଅର୍ଥନୀତି ଅଧ୍ୟାପକ ତଥା ଗୋଟିଏ ମହାବିଦ୍ୟାଳୟରେ ଚବିଶବର୍ଷରୁ ଅଧିକକାଳ ଅଧ୍ୟକ୍ଷ ଥିବା ବ୍ୟକ୍ତିଟିର ଅଭିନୟ କଳା ଓ କଳାକୌଶଳପ୍ରତି ଆଗ୍ରହର ଶେଷ ପରିଣତି । ଓଡ଼ିଶାର ବୁଦ୍ଧିଜୀବୀ, ସମ୍ମାନନୀୟ ପଦପଦବୀର ଅଧିକାରୀ ଓ ଶିକ୍ଷାବିତ୍ ମାନଙ୍କର "ମନୋଭାବ"। ସାମୁହିକ ଭାବରେ ସାଂସ୍କୃତିକ ସଚ୍ଚେତନତାର ଏକ ନିଦର୍ଶନ ।

ମୋର ମଞ୍ଚପ୍ରବେଶର ଶ୍ରେୟ କିନ୍ତୁ ଯିବ ସ୍ୱାଧୀନତା ପୂର୍ବ ଯୁଗର ସ୍ୱନାମଧନ୍ୟ କଟକ ପ୍ୟାରୀମୋହନ ଏକାଡ଼େମୀର ପ୍ରଧାନ ଶିକ୍ଷକ ୰ ବସନ୍ତ କୁମାର ଦାସଙ୍କୁ । ଏ ହାଇସ୍କୁଲର ଦୀର୍ଘଦିନ ଧରି ଜଣେ ପ୍ରଭାବଶାଳୀ କର୍ମଠ, ନିଷ୍ଠାପର, କଳାପ୍ରେମୀ ପ୍ରଧାନ ଶିକ୍ଷକ ଭାବରେ ତାଙ୍କୁ ମୋ'ପରି ବହୁ ଛାତ୍ରଛାତ୍ରୀ ସ୍ମରଣ କରୁଥିବେ ।

୧୯୪୩ ମସିହାର କଥା । ଓଡ଼ିଶାର ମହାମାନ୍ୟ ଗଭର୍ଣ୍ଣର ସାର୍ ଜନ୍ ଅଷ୍ଟିନ୍ ହବାକ୍ ଓ ତାଙ୍କ ସହଧର୍ମିଣୀଙ୍କୁ ପ୍ୟାରୀମୋହନ ଏକାଡ଼େମୀର ବାର୍ଷିକ ପୁରସ୍କାର ବିତରଣୀ ଉତ୍ସବର ମୁଖ୍ୟ ଅତିଥି ଭାବରେ ନିମନ୍ତ୍ରଣ କରା ଯାଇଥାଏ । ବସନ୍ତବାବୁ ନିଜେ ପଞ୍ଚମ, ଷଷ୍ଠ ଓ ସପ୍ତମ ଶ୍ରେଣୀରୁ ସାତଜଣ ପ୍ରଦର୍ଶନ ଯୋଗ୍ୟ ଛାତ୍ରଙ୍କୁ ନିର୍ବାଚିତ କରି, ତାଙ୍କ ମୁହଁରେ ନିଜ ଲିଖିତ ମହାମାନ୍ୟ ଗଭର୍ଣ୍ଣରଙ୍କ ଉଦ୍ଦେଶ୍ୟରେ ଏକ ସ୍ୱାଗତିକା ବା ପ୍ରଶସ୍ତି କବିତା ବୋଲାଇବାର ଆୟୋଜନ କରିଥାଆନ୍ତି । ନିଜ ଅଫିସ କୋଠରୀରେ ଏ ସାତଜଣ ଛାତ୍ରଙ୍କୁ ଚୟନ କରିବା, ସେମାନଙ୍କୁ ଶୁଦ୍ଧ ଇଂରାଜୀ ଉଚ୍ଚାରଣ ଅଭ୍ୟାସ କରାଇବା ଇତ୍ୟାଦି କାର୍ଯ୍ୟପାଇଁ ଦଶବାର ଦିନଯାଏ ସ୍କୁଲ ସମୟରେ ସେ ପରିଶ୍ରମ କରୁଥିଲେ । ନିଜର ଏକମାତ୍ର

ଅଲିଅଳ କନ୍ୟା, ସେଇ ବିଦ୍ୟାପୀଠର ସପ୍ତମ ଶ୍ରେଣୀର ଛାତ୍ରୀ କୁମାରୀ ମିନତୀ ଦାସଙ୍କୁ ଆଲୁଳାୟିତ କେଶା, କିରୀଟ ମଣ୍ଡନୀ, ତ୍ରିଶୂଳଧାରିଣୀ ଭାରତମାତା ଭାବରେ ଉଚ୍ଚ ଟେବୁଲ ଉପରେ ଦଣ୍ଡାୟମାନ କରାଯାଇଥାଏ। ହିମାଳୟ ପର୍ବତର କଟା 'କାର୍ଡ୍‌ବୋର୍ଡ୍' ସେଟ୍‌ରେ ଧଳା, ନୀଳ ରଂଗର ପ୍ରଲେପ ଉପରେ ଅଭ୍ରର ଛିଟା। ଭାରତମାତାଙ୍କ ଚାରିପାଖରେ ଏ ସେଟ ଏପରି ଭାବରେ ସଜ୍ଜିତ ହୋଇଥାଏ ଯେ ତାହା ଏକ ସ୍ୱପ୍ନିଳ ପରିବେଶ ସୃଷ୍ଟି କରୁଥାଏ। ମାତାଙ୍କ ପାଦଦେଶରେ ବିଭିନ୍ନ ପ୍ରାନ୍ତର ସାତଟି ସନ୍ତାନ ସ୍ତୁତିଗାନ କରିବାପାଇଁ ଦଣ୍ଡାୟମାନ। ସାତଜଣଙ୍କର ଦୁଇହାତ ପଛରେ ଲୁକ୍କାୟିତ। ସାବଧାନ ଭଙ୍ଗୀରେ, ଛାତିଡ଼େରି, ମୁଣ୍ଡଟେକି ଦର୍ଶକଙ୍କୁ ଏକନିଷ୍ଠ ଭାବରେ ଚାହିଁ ରହିବାର ନିର୍ଦ୍ଦେଶନା ବସନ୍ତବାବୁ ଏ ସାତଟି ଶିଶୁଙ୍କୁ ଅଭ୍ୟାସ କରାଇଥିଲେ ଦଶଦିନ ଯାଏ।

ସାତଜଣଙ୍କ ହାତ ପଛପଟକୁ ଇଂରାଜି ସ୍ୱାଗତ W.E.L.C.O.M.E ର କଟା କାର୍ଡ୍‌ବୋର୍ଡ୍‌ର ଦେଢ଼ଫୁଟିଆ ସାତଟି ଅକ୍ଷର ଗୋଟିଗୋଟି କରି ଲୁଚାଇ ଧରାଯାଇଛି। ସାମନାକୁ ଏହା ଯେପରି ଦେଖାନଯିବ ସେଥିପ୍ରତି ବିଶେଷ ଦୃଷ୍ଟି ଦିଆଯାଇଥିଲା। ଏ ଅକ୍ଷର ଗୁଡ଼ିକ ମଧ୍ୟ ଧଳା ଓ ନୀଳ ରଂଗ ଓ ଅଭ୍ରରେ ଚିତ୍ରିତ ହୋଇଥିଲା। ଏହି ସାତଜଣଙ୍କ ମଧ୍ୟରେ 'C' ଅକ୍ଷରଧାରୀ ଛାତ୍ରଟି ସେତେବେଳର ସ୍ୱଳ୍ପଭାଷୀ, ଭୟାତୁର, ଲାଜକୁଳା ପଞ୍ଚମ ଶ୍ରେଣୀର ଛାତ୍ର ଶରତ ଚନ୍ଦ୍ର ପୂଜାରୀ।

ଶୁଦ୍ଧ ଇଂରାଜୀ ଉଚ୍ଚାରଣ କରି ପଦଟିଏ ତାଳ ଓ ଲୟରେ ବୋଲିବା ପରେ, ପଛପଟେ ଲୁକ୍କାୟିତ ଅକ୍ଷରଟିକୁ ଏକ ବିଶେଷ କାଇଦାରେ ସାମନାପଟକୁ ଆଣି ନିଜନିଜର ବେକତଳେ ଧରି ଦର୍ଶକଙ୍କୁ ପ୍ରଦର୍ଶନ କରିବା ଓ ନିଶ୍ଚଳ ଭାବରେ ଛିଡ଼ାହୋଇ ରହିବାର ବାଚିକ ଓ ଆଙ୍ଗିକ ଅଭିନୟ ଏହି ବିଦ୍ୟାଗୁରୁଙ୍କ ପାଖରୁ ଶିଖିବାକୁ ପଡ଼ିଥିଲା ସେ ଶିଶୁଟିକୁ। ସଂପୂର୍ଣ୍ଣ ସାତଟିଯାକ ପଦ ନିର୍ଭୁଲ ଭାବରେ ବୋଲା ସରିବା ପର୍ଯ୍ୟନ୍ତ ନିଶ୍ଚଳ ଭାବରେ, ନଭେମ୍ବର ମାସର ଫ୍ଲଡ୍‌ଲାଇଟ୍ ଆଲୋକରେ ଦୀପାବଳୀ ପୋକ ଓ ପାଦ ପ୍ରଦୀପମାନଙ୍କର ଉତ୍ତାପକୁ ଭ୍ରୂକ୍ଷେପ ନକରିବାର ଏ ଯେଉଁ କୃଚ୍ଛ୍ର ସାଧନାର ମହାମନ୍ତ୍ର, ଆଜିଯାଏ ଶିଶୁଟିର ସ୍ମୃତିରୁ ଯାଇନାହିଁ। କହିବା ବାହୁଲ୍ୟ, ଏ ଅଭିଜ୍ଞତା ଓ ସାଧନା ପରେ ପରଦା ପତନ ହେବା ସଂଗେ ସଂଗେ, ବ୍ୟତିବ୍ୟସ୍ତ ହୋଇ ଶିଶୁଟି ଶୌଚାଳୟକୁ ଦଉଡ଼ିବା କାର୍ଯ୍ୟଟିକୁ ମଧ୍ୟ ସେ ଭୁଲିପାରି ନାହିଁ।

ଏ ଅଭିଜ୍ଞତା ଦୃଷ୍ଟିରୁ ଶିଶୁଟି ଯେ ଭବିଷ୍ୟତ ଜୀବନରେ ଜଣେ ଅଭିନେତା ହେବାପାଇଁ ସ୍ୱପ୍ନ ଦେଖିଥିବ ବା କଳ୍ପନା କରିଥିବ, ଏହା କେବେହେଲେ ବିଶ୍ୱାସ କରାଯାଇ ପାରେନା। କିନ୍ତୁ ବଂଶଗତ ଗୁଣ ଯୋଗୁ ଏକକ ଭାବରେ ହାଇସ୍କୁଲ, କଲେଜ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ସାଙ୍ଗସାଥୀ ଓ ଶିକ୍ଷକମାନଙ୍କ ଉତ୍ସାହ ଯୋଗୁ ସେ ଏକକ ଅଭିନୟ ମାଧ୍ୟମରେ ନିଜକୁ

ପ୍ରକାଶ କରି ପ୍ରଶଂସାଭାଜନ ହୋଇଥିଲା । କେବଳ ସମ୍ବଲପୁର, କଟକରେ ନୁହଁ ସୁଦୂର ପ୍ରୟାଗ ବିଶ୍ୱବିଦ୍ୟାଳୟରେ ମଧ୍ୟ । ଅଲିଅଳ କନ୍ୟା କୁମାରୀ ମିନତୀ ଦାସ ସ୍ନାତକୋତ୍ତର ଡିଗ୍ରୀପରେ ଜର୍ମାନୀରେ "ଇଣ୍ଡୋଲଜି" ବିଦ୍ୟାରେ ଗବେଷଣା କରିବାକୁ ଗଲେ । ସେତେବେଳେ ସେ ଓଡ଼ିଶୀ ନୃତ୍ୟ ଶିକ୍ଷା ଆରମ୍ଭ କରିସାରିଥିଲେ ।

ଦୈବୀ ଦୁର୍ଘଟଣାରେ ପଡ଼ି, ସେହି ବାଳକଟି (ବ୍ୟକ୍ତିଟି) ୧୯୬୦ ମସିହାରେ ଅଧ୍ୟାପକ ଓ ଅଧ୍ୟକ୍ଷ ହେବା ପୂର୍ବରୁ ଆକସ୍ମିକ ଭାବରେ ବଞ୍ଚିରହିବାର ଆଶ୍ରା ଖୋଜୁ ଖୋଜୁ ଚଳଚ୍ଚିତ୍ରରେ ଅଭିନୟ କରିବାପାଇଁ ଆହ୍ୱାନ ପାଇଲା ଓ ପ୍ରଥମ ଚଳଚ୍ଚିତ୍ର ମୁକ୍ତି ପାଇବା ସଂଗେ ସଂଗେ ୧୯୫୯ ମସିହାରେ ଓଡ଼ିଶାରେ ଅଭିନେତା ଭାବରେ ସମ୍ମାନିତ ହୋଇଗଲା । ଅଧ୍ୟାପକ ହେବା ସହିତ ଚଳଚ୍ଚିତ୍ରର କଳାତ୍ମକ ଓ କଳାକୌଶଳ ଦିଗପ୍ରତି ଆକର୍ଷଣ ତାକୁ ଛୁଟିସମୟ ସବୁ ବିତେଇବାକୁ ସୁଯୋଗ ଦେଉଥିଲା । ଚାକିରି କରିବା ସଂଗେ ସଂଗେ ପାଞ୍ଚ ବର୍ଷ ମଧ୍ୟରେ ସେ ଯେଉଁ ପାଞ୍ଚଟି ଚଳଚ୍ଚିତ୍ରରେ ଅଭିନୟ କରିଥିଲା, ତା'ର ଦୁଇଟି ଚଳଚ୍ଚିତ୍ରର ନାୟିକା ଭାବରେ ସେହି ମିନତୀ ଦାସ ଡକ୍ଟର ମିନତୀ ମିଶ୍ର ଭାବରେ ତା' ବିପରୀତରେ ଅଭିନୟ କରିଥିଲେ । ୧୯୬୪ ମସିହାରେ ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ ଚଳଚ୍ଚିତ୍ର 'ସାଧନା'ର ମୁଖ୍ୟ ନାୟକ ନାୟିକା ଭାବରେ ଓଡ଼ିଶାର ଦୁଇଟି ଅଧ୍ୟକ୍ଷ ଅଭିନୟ କରିଥିଲେ ଏହା କାହାରି ଦୃଷ୍ଟିକୁ ଆସେ ନାହିଁ । ଏହି ସମୟରେ ମିନତୀ ଦେବୀ ବିବାହ କରିଥିଲେ ଓ ତାଙ୍କର ଜର୍ମାନସ୍ଥିତ ସ୍ୱାମୀଙ୍କ ପାଖକୁ ଯାଇ ଛୁଟି ବିତାଉଥିଲେ । ଏହାପରେ ସେ ୧୯୬୭ ମସିହାରେ 'ଅରୁନ୍ଧତୀ' ଚଳଚ୍ଚିତ୍ରରେ ମୁଖ୍ୟ ଦ୍ୱୈତ ଭୂମିକାରେ ଅଭିନୟ କରିବା ସମୟରେ ଭୁବନେଶ୍ୱର ସଂଗୀତ ମହାବିଦ୍ୟାଳୟର ଅଧ୍ୟକ୍ଷା ଥିଲେ । ଉଲ୍ଲେଖନୀୟ ଏହା ଯେ ୧୯୬୩ର 'ଜୀବନସାଥୀ', ୧୯୬୪ର 'ସାଧନା' ଓ ୧୯୬୭ର 'ଅରୁନ୍ଧତୀ' ଚଳଚ୍ଚିତ୍ର ରାଷ୍ଟ୍ରପତିଙ୍କ ରୌପ୍ୟ ପଦକରେ ସମ୍ମାନିତ ହୋଇଥିଲା ।

ପ୍ରାୟ ତିରିଶ ବର୍ଷ ପରେ ସେହି ବ୍ୟକ୍ତିଟି ଦୁଇଟି ବିଶ୍ୱବିଦ୍ୟାଳୟର ଅର୍ଥନୀତିର ଅଧ୍ୟାପକ ଭାବରେ ସ୍ୱୀକୃତି ପାଇ ସାରିଥିଲା । ଗୋଟିଏ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ସମୟରୁ ତାହାର ନିୟନ୍ତ୍ରଣାଧୀନ ଏକ ମହାବିଦ୍ୟାଳୟରେ କୋଡିଏ ବର୍ଷରୁ ବେଶୀ ସମୟ ଅଧ୍ୟକ୍ଷ ହୋଇ ସାରିଥିଲା । ଆବେଦନ, ନିବେଦନ ପରିବର୍ତ୍ତେ "ଆହ୍ୱାନ" ହିଁ ଥିଲା ତା'ର "ଆଦର୍ଶ" ।

ନିଜସ୍ୱ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ପ୍ରଶାସନିକ ଅଧିକାରୀ ଅନୁମୋଦିତ ନୂତନ ଭାବରେ ପ୍ରତିଷ୍ଠା କରାଯାଇଥିବା ଏକ ସଂଗୀତ, ନାଟକ, ନୃତ୍ୟ, ବାଦ୍ୟ ଓ ଚିତ୍ରକଳା ମହାବିଦ୍ୟାଳୟକୁ (ସୁନ୍ଦରଗଡ଼ର 'ବିଭାପା' ମହାବିଦ୍ୟାଳୟ) ଅଭିନେତାଟିକୁ ଡେପୁଟେସନ୍‌ରେ ଆଣି ଅଧ୍ୟକ୍ଷ ଭାବରେ ଅଧିଷ୍ଠିତ କରାଗଲା ତାକୁ ୧୯୮୯ ମସିହାରେ ।

ବିଡ଼ମ୍ବନା ଏହା ଯେ, ମାତ୍ର ଛ'ମାସ ମଧ୍ୟରେ ଉତ୍କୃଷ୍ଟ କଳାର ଦେଶରେ ଉଚ୍ଚ ଧୀସମ୍ପନ୍ନ ମହାମନା ବୁଦ୍ଧିଜୀବୀ ଓ ପ୍ରଫେସର ପଦାଧିକାରୀ ଶିକ୍ଷାବିତ୍ ଗଣ ଏକ ସିଣ୍ଡିକେଟ୍ ମିଟିଂରେ ଉଚ୍ଚପଦାଧିକାରୀ ମହାମାନ୍ୟ ପ୍ରଫେସରଙ୍କର ଅଲିଖିତ ତାଚ୍ଛଲ୍ୟ ମନ୍ତବ୍ୟ ଦେଲେ, "ଆମେ ପିଲାବେଳେ ସାଇମାଇପଙ୍କ ଆଗରେ ଶାଢ଼ୀ ଘେର ଦେଇ ସେମିତି କେତେ ନାଟ କରିଛୁ ମ- । ନାଟ ତାମସାକୁ ନେଇ ମହାବିଦ୍ୟାଳୟ କଣ ହୋ- । ସେଠି ପୁଣି ଗୋଟାଏ ଅଧ୍ୟକ୍ଷ ? କେବଳ ଚଳଚ୍ଚିତ୍ର ଅଭିନେତା ହୋଇଗଲେ କଣ ସବୁ ହୋଇଯିବ ?" ପରିଣାମରେ ସେ ମହାବିଦ୍ୟାଳୟଟିକୁ ଓ ତା'ର ଅଧ୍ୟକ୍ଷଟିକୁ ସମୂଳେ ଧ୍ୱଂସ କରିଦିଆଗଲା । ସରକାର, ପ୍ରଶାସନ, ବିଧାନସଭା, ଜିଲ୍ଲାର ବିଧାୟକଗଣ ନୀରବ ଦ୍ରଷ୍ଟା ହୋଇ ଏହି ତାଚ୍ଛଲ୍ୟ ମନ୍ତବ୍ୟକୁ ଅନୁମୋଦନ କେବଳ କଲେ ।

ମୋ' ପାଇଁ ଏ 'ସମ୍ମାନ' ଏକ ଅଭୁଲା ସ୍ମୃତି ହୋଇ ରହିଲା !

ମାନସିକସ୍ତରରେ ପ୍ରୟୋଗାତ୍ମକ କଳାପ୍ରତି ଶିକ୍ଷିତବର୍ଗଙ୍କର ଏ ମନୋଭାବକୁ ଆତ୍ମପ୍ରବଞ୍ଚନା ଛଡ଼ା ଆଉ କଣ କୁହାଯାଇପାରେ ? ଏହାଦ୍ୱାରା ସଂସ୍କୃତିକୁ ଶିକ୍ଷାକ୍ଷେତ୍ରରୁ ବିତାଡ଼ିତ କରିଦେଲେ ଏକ ସଂପୂର୍ଣ୍ଣ ପରିଚୟ ମିଳିବ କି ?

ଏପରି ଏକ 'ସମ୍ମାନ'ର ଅଧିକାରୀ ହେବାପରେ, ମାତ୍ର ଦୁଇବର୍ଷପରେ ଓଡ଼ିଶାର ସଂସ୍କୃତି ବିଭାଗ ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶରେ ସେହି ବ୍ୟକ୍ତିଟିକୁ, ଓଡ଼ିଶାର ଏକମାତ୍ର ତିରିଶବର୍ଷର ପୁରାତନ ଭୁବନେଶ୍ୱରସ୍ଥିତ ସଂଗୀତ ନାଟକ ମହାବିଦ୍ୟାଳୟକୁ ଡେପୁଟେସନରେ ଅତିଶୀଘ୍ର ଯୋଗଦେବାପାଇଁ ପୋଲିସ ବେତାର ଯନ୍ତ୍ରରେ ନିର୍ଦ୍ଦେଶ ଦିଆଗଲା । କାରଣ ସେତେବେଳେ ମହାବିଦ୍ୟାଳୟରେ ଛ' ମାସପାଇଁ ଛାତ୍ର ଅଶାନ୍ତି ଲାଗିରହିଥିଲା । ଦୁଇବର୍ଷଯାଏ ଏ ମହାବିଦ୍ୟାଳୟର ଅଧ୍ୟକ୍ଷ ରହିବାପରେ ଅବସର ବୟସ ଉପନୀତ ହେବାରୁ ନିଜେ ସଂସ୍କୃତି ନିର୍ଦ୍ଦେଶକ ସେ ଚଳଚ୍ଚିତ୍ର ଅଭିନେତାଠାରୁ 'ଅଧ୍ୟକ୍ଷ' ପଦବୀର ଭାରଗ୍ରହଣ କରି ଚଉକିରେ ବସିଲେ । ଚଳଚ୍ଚିତ୍ର ଅଭିନେତାର ଚାକିରୀକାଳ ନିର୍ଦ୍ଧାରଣ ହୋଇ ନପାରିବାରୁ ୧୯୯୪ ମସିହାରୁ ୨୦୦୫ ମସିହା ପର୍ଯ୍ୟନ୍ତ ସ୍ଥାୟୀ ପେନ୍‌ସନ୍ ମଞ୍ଜୁରୀ ହୋଇ ପାରିନାହିଁ । ସରକାରୀ ସ୍ତରରେ ଶିକ୍ଷା ଓ ସଂସ୍କୃତିର ପ୍ରସାର ଓ ପ୍ରଚାର ଯେ କେତେ ଆତ୍ମପ୍ରବଞ୍ଚନାଧର୍ମୀ ତାହାହିଁ ମୋର ଅନୁଭୂତି ହୋଇ ରହିଲା ଆଜିଯାଏ । ମୋପରି ଦ୍ୱିତୀୟ ଶ୍ରେଣୀର ଓଡ଼ିଆ ନାଗରିକଟିଏ ଓଡ଼ିଶାରେ ଆଉ ମିଳିବେକି ?

ଉତ୍କୃଷ୍ଟ କଳାର ଦେଶରେ ଆଉ ଏକ ସମ୍ମାନ ପାଇବାକୁ ବାକୀ ଥିଲା, ଯାହା ଅବସର ପାଇବାପରେ ମୋର ପ୍ରାପ୍ୟ ହେଲା ୧୯୯୬ ମସିହାରେ । ଓଡ଼ିଶା ଚଳଚ୍ଚିତ୍ର ନିଗମ ଓ ସଂସ୍କୃତି ବିଭାଗ ଆୟୋଜନ କରିଥିଲେ "ଓଡ଼ିଆ ଚଳଚ୍ଚିତ୍ରର ହୀରକ ଜୟନ୍ତୀ" । କଟକର

ଉତ୍ସବ ପରେ ଭୁବନେଶ୍ୱରଠାରେ ଉତ୍ସବ ପାଳିତ ହୋଇଥିଲା ସଂଗୀତ ମହାବିଦ୍ୟାଳୟର ପରିସର ମଧ୍ୟରେ । ପ୍ରାୟ ଦୁଇହଜାର ଦର୍ଶକ, ଚଳଚ୍ଚିତ୍ର କଳାକାର ଓ କଳାକୁଶଳୀଙ୍କ ଗହଣର ମନ୍ତ୍ରୀ, ପ୍ରଶାସନିକ ଅଧିକାରୀ, ମହାବିଦ୍ୟାଳୟ ଅଧ୍ୟକ୍ଷ, ଅଧ୍ୟାପକ ଉପସ୍ଥିତ ରହି ପୁରାତନ ନାଟ୍ୟ କଳାକାର ମାନଙ୍କୁ ସ୍ମରଣକରି ସଂଗୀତର ତାଳରେ ନୃତ୍ୟ କରିବା ବେଳେ ସେ ମହାବିଦ୍ୟାଳୟର ପୁରାତନ ଦୁଇଜଣ ଅଧ୍ୟକ୍ଷଙ୍କ ନାମ ଉଚ୍ଚାରଣ କରିବା ପାଇଁ ସଂପୂର୍ଣ୍ଣ ଭୁଲିଗଲେ ଯେଉଁମାନେ ଷାଠିଏ ଦଶକର ତିନୋଟି ରାଷ୍ଟ୍ରପତି ରୌପ୍ୟପଦକ ପ୍ରାପ୍ତ ଓଡ଼ିଆ ଚଳଚ୍ଚିତ୍ରର ନାୟକ ନାୟିକା ଥିଲେ । ମହାବିଦ୍ୟାଳୟ ପରିସର ପାଖରେ ଦୁଇଜଣ ଉପସ୍ଥିତ ଥିବା ସତ୍ତ୍ୱେ ସେମାନଙ୍କୁ ନିମନ୍ତ୍ରଣ ମଧ୍ୟ କରାଯାଇ ନଥିଲା । ପ୍ରାୟ ତିନିଲକ୍ଷ ଟଙ୍କା ଖର୍ଚ୍ଚର ଆୟୋଜନ ମଧ୍ୟରେ ହୀରକ ଜୟନ୍ତୀ ପାଳନର ଏ ଉତ୍ସବ ଉତ୍କଳୀୟ ସମସ୍ତ କଳାକାର ମାନଙ୍କପାଇଁ ଏକ ଦୃଷ୍ଟାନ୍ତ ହୋଇରହିଲା ।

ଏହାକୁ ମଧ୍ୟ ମୁଁ ଏକ "ସମ୍ମାନ" ଭାବରେ ଗ୍ରହଣ କରିନେଇଛି । ଚରୈବେତି-ଚରୈବେତି । ସ୍ମୃତି ତୁମେ ବିସ୍ମୃତି ହୁଅନାହିଁ ! ଭବିଷ୍ୟତ ତୁମେ ଆଲୋକିତ ହୁଅ । "ସଂସ୍କୃତି" ତୁମେ ରାଜନୀତିର କ୍ରୀତଦାସ ହୁଅ ନାହିଁ ।



# ବିଜୟାନନ୍ଦ

ସେପ୍‌ଟେମ୍ବର ୧୯୬୮ ମସିହାନ ମୁଇଁ ଲରମ୍ବା ସ୍କୁଲର ପ୍ରଥମ ହେଡ଼ମାଷ୍ଟ୍ରେ ଆର ଲରମ୍ବା କଲେଜର ପ୍ରଥମ ପ୍ରିନ୍‌ସିପାଲଙ୍କର ଠାନୁ ଚାର୍ଯ ନେଲି। ମୋର ସ୍କୁଲପଢ଼ା ବେଲର ଖପର ଘର, ତା'ର ଆଘେ ତିଆର ହୋଇଥିବାର ମିଳନ ମଣ୍ଡପ ଟିନଛାତର ହଲ, ଆର ଏକବେଷ୍ଟସ୍ ଛାତର ବିଜ୍ଞାନ ପଢ଼ାବାର ଲେବରେଟୋରୀ ଘର ଛଡ଼ା ବଡ଼େଟେ ଖୁଲା ପଡ଼ିଆ। ସବୁ ହେଇକରି ଷୁହୁଲ ଏକର ଜାଗା। ପିଲା ଅଛନ ୬୭। ମାଷ୍ଟର ଅଛନ ଦଶ ଜନ। ବାକି ଦଶଜନ କର୍ମଚାରୀ। କଲେଜନ ସବୁଅଛେ ହେଲେ ପଏସା ଲାଇଁନ। ବଡ଼େଟେ ଲୁହାର ଟ୍ରେଜେରୀ ଅଛେ, ବାକି ହେଡ଼କ୍ଲାର୍କଙ୍କ ଟେବୁଲ ଉପରେ ଥୁଆ ହେଇଥିବାର ଲୁହାର ହାତବାକସ୍‌ଥି ସବୁମିଶି କରି ହଜାରେ ଟଙ୍କା। ଇଟା ସବୁ ମୋର। ଆର ପରିଚାଳନା ସମିତି ମତେ ଦରମା ଚାରଶ' ଟଙ୍କାନୁ ବେଶୀ ନେଇ ନାଇଁ ପାରନ୍ ବଲି କହେଲେ। ଲରମ୍ବା ପଞ୍ଚାୟତନ ହାଟ୍, ବାଟ୍, ନଏଦ୍‌ଘାଟ୍, ଚେକ୍‌ଗେଟ୍, ମଦ୍‌ଭାଟି, ଚାଉଲକଲ, ଶିଳ୍ପପତି କିଛି ନାଇଁନ। ତିରିଶ ଚାଲିସ ହଜାରର ଖରଚା ମତେ ଯୁଗାଡ଼ କରବାକେ ପଡ଼ବା। ତା'ର ଉପରେ ଲରମ୍ବା କଲେଜ ଡ଼େଭେଲପମେଣ୍ଟ ଚିନ୍ତା ମୋର। ପହେଲାନୁ ତିନ୍ ବରଷତକ ମୁଇଁ ଫିଲ୍ମି ଏକ୍ଟିଂ ନାଇଁ କରିପାରେ ! ଚବିଶଘଣ୍ଟା କଲେଜର କଥା ଭାବମି ଆର କରମି। ବରଗଡ଼ର ସହର କଲେଜ ଆର ଲରମ୍ବାର ଗଅଁଲି କଲେଜ ଭିତ୍ତିମୂଲର ତଫାତ୍ ଥିଲା କେତେ କେତେ। ସେନ ସବୁଥାଇ କରି ନିକର ଭିତରି ଉପାଦାନ କେ (ରିସୋର୍ସକେ) ଚିହ୍ନିବାର ଲୋକ ନାଇନ। ଇଠାନେ ପରିଚାଲନା ସମିତିଥି ହେନ୍ତା ଚିହ୍ନବାର ଆର ପରଖିବାର ଲୋକ ବେଶୀଥିଲେ। ବିଧିବଦ୍ଧ ପ୍ରିନ୍‌ସିପାଲର ସେକ୍ରେଟେରୀ ପାଓ୍ୱାର ପାଏବାର ଉତାଗୁ ମୁଇଁ ଲତିଗଲି। ମୋର ଘରର ଲୁକେ ତଥାପି ଖୁସ୍ ନାଇଁଥାଇ। କଟକ ସହରେ ରହି ଯାନିଥିଲେ ତ- ।

କାଣା କଲି, କେନ୍ତେଇ କଲି, କେତେ ରାଜନୀତି କଲି, କେତେ ଝାଲ ବୁହାଲି, କେତେ ଛାତ୍ରହନ୍ତା ହେଲି ନାଇଁ ଜାନି, ହେଲେ ଚବିଶବରଷ ତକ୍ ଲରମ୍ବାନ ରହିଗଲି। ହେଟା ମୋର ପିତୃପୁରୁଷର ଦାନ।

ତିନିବରଷ ନାଇଁ ଯାଇଥାଇ, ଅକଲିଆ ଚଡ଼କଟେ ପଡ଼ଲା। ସେହି ଛ'ଫୁଟିଆ ଲୋକଟା ଯେ ମୋ'ର ସଂଗେ ବରଗଡ଼ କଲେଜନ ହାତ ମିଲେଇକରି "ଭେରିଗୁଡ୍, ଭେରିଗୁଡ୍" କହିଥିଲା, ତା'ର ନଜରନ ପଡିଗଲି। କଂଗ୍ରେସ ପାର୍ଟିର ରାୟରକମଥି ବିତ୍‌ବିତା ହୋଇକରି ବିଜୁ ପଟ୍ଟନାୟକର ମୁଡେ "ଉତ୍କଳ କଂଗ୍ରେସ"ର ଭୂତ ସବାର

ହେଇଥାଏ । ଉଡ଼ିଷାସାରା ଲୁକଙ୍କୁ ମତେଇକରି, ଅଲଗ ଉତ୍କଳ କଂଗ୍ରେସ ବନାବାର୍ ଆର ଇଲେକସନ ଲଢ଼ବାର୍ ରାଜନୀତି ଭିତରେ ସାରା ଉଡ଼ିଷାର୍ ଶହେ ଚାଳିଶଟା ନିର୍ବାଚନ ମଣ୍ଡଳୀର୍ ଶହେ ଚାଳିଶଟା "ୟଙ୍ଗ ଏଣ୍ଡ ଏନାର୍‌ଜେଟିକ" ଲୁକକୁ ରାଜନୀତିରେ ନୂଆଁ ରକତ ଭାବେ ଇଂଜେକସନ ଦେବାର୍ ଯୋଜନା ନେଇକରି ସେ ତାଙ୍କର୍ ରାଜନୈତିକ ଗୋଷ୍ଠୀ ଭିତରେ ସମ୍ବଲପୁରେ ଆଲୋଚନା କରବାର୍ ନତିଜା ହେଲା, ପଇଁତିରିଶ୍ ବର୍ଷର୍ ସମ୍ବଲପୁରିଆ କରମ୍‌ଛଡ଼ା ଏକଟିଂ ପ୍ରିନ୍‌ସିପାଲ । ରାଜନୀତି କଲା ଲୁକେ କେନ୍ତା ଜାଲ ବିଛାସନ୍ ଆର ଝୁରିକେ କାଦୋ ଭିତରୁ ଘେରେଇକରି ଧରସନ୍ ସେଟା ନିଜେ ଭୁଗଲି । ମତେ ଘେରାବାର୍ ଲୋକ ସଭେ ସମ୍ବଲପୁର୍ କିଲ୍ଲାର୍ ଲୋକ, ସମ୍ବଲପୁରର୍ ଲୋକ । ବିଜୁ ପଟ୍ଟନାୟକକେ ଇମାନେ କାଣା କହେଲେ ମୁଇଁ ନାଇଁ ଜାନି, ବାକି ଗଛକେ ଚଢ଼େଇକରି ତାଲିପିଟିକରି ମଜାକରବାର୍ ଉପେଟେ କଲେ ବାଗିର୍ ଲାଗସି ମତେ । ମତେ ଲାଗଲା ସାରା ସମ୍ବଲପୁରର୍ ରାଜନୀତି କରନେ ବାଲେ ବିଜୁପଟ୍ଟନାୟକଙ୍କର୍ କଥାତି ଚଲୁଛନ !

ବରଗଡ଼ କଲେଜର୍ ମୋର୍ ଷାଢ଼େ ପାଞ୍ଚବରସର୍ ଚାକିରି ଗଲା ଇ' ବିଜୁ ପଟ୍ଟନାୟକର୍ ସରକାର୍ ବଁଚାବାର୍ ଲାଗି । ଇହାଦେ ଅଢ଼େଇ ବରଷର୍ ଲରମ୍ବା କଲେଜର୍ ଚାକରି ଲୋକଟା ଖାଏବାର୍ ଲାଗି ମୋର୍ ପଛେ ଲାଗିଛେ ! ସମ୍ବଲପୁରର୍ ବଡ଼ବଡ଼ ନେତା ଆର୍ ମୋର୍ ସାଙ୍ଗମାନେ ସଭେ ବିଜୁପଟ୍ଟନାୟକକେ ଉସକାଲେ । ଦିନେ ରାତି ମୋର୍ ଲରମ୍ବାର୍ କ୍ୱାଟର୍ସନୁ ଗାଡିଥି ବୁହିନେଇଗଲେ, କଟକର୍ ବିଜୁପଟ୍ଟନାୟକଙ୍କ ଘର୍ "ଆନନ୍ଦ ଭବନ"କେ । ରାତିସାରା କହୁଥାନ, କିଛି ଚିନ୍ତାନାଇଁ ଆମେ ସଭେଁ ତମର୍ ପଛେ ଅଛୁଁ । ବିଜୁବାବୁ ତୁମର୍ ମୁହୁଁ ଶୁନବାକେ ଚାହୁଁଛନ ।

ଏମ୍ବାସେଡ଼ର୍ ଗାଡଥି ଡ୍ରାଇଭର୍ ସିଟ୍ ପାଖେ ବସିକରି ରାତିଥି ଯିବାର୍ ମୋର୍ ଗୁଟେ ଆଦତ୍ । ମତେ ଝୁମରା ନାଇଁଲାଗେ । ବସିବସି ହେ ଛ'ଫୁଟିଆ ଲୁକର୍ କଥା ଘୋର୍ ପଡ଼ଲା । କେତେ ଜାଗାଥି ମୁଇଁ ଦୂରୁ ଇତାକେ ଦେଖିଛେଁ । ସବୁଠାନେ ଦଗୋ କରସି । କାହାକେ ନାଇଁ ଡ଼ରେ । ସବକର୍ ଭିତରୁ ମୁସଡ଼େଇକରି ସବକର୍ ଲିଡ଼ର୍ ବନବାକେ ବଢ଼େଟେ କାମବାଗିର୍ ଲାଗସି ଇ'ଲୋକ୍‌ଟାକେ । ଗୁଲଗୁଲିଆ, ଦୁର୍‌ବଲିଆ ଲୋକଟେ ସାମନେ ଆସିଗଲେ, ବୁଝଲାତ ତା'ର୍ ସବୁ କଥା ଶୁନସି । ତାକେ ଯାହାପାରବା ଦେଇ ଦେସି, ନହେଲେ 'ଭାଗ' ବଲି ଭଗେଇ ଦେସି । ମୋରଠାନୁ ଇଏ କଣା ଚାହୁଁଛେ ? ମୋର୍ ତ କେହି ପିଠି ନାଇଁ ପଡ଼ନ୍ । ଇଲେକସନ୍ କେନ୍ତାଟା ଭଲକରି ମୁଇଁ ନୁହେଁ ଦେଖେ । ଇଲେକସନ୍ ଲଢ଼ମି କେନ୍ତେଇ ? କେତେ ପଏସା ମୋର୍ ଲାଗି ଖରଚ୍ କରବାକେ ରଖିଥିବା ? ଧରେଇ ଦେବା କାଏଁ ଲାଖେ, ଦୁଇଲାଖ ଟଙ୍କା ? ଯାହା ହେଉ ଦେଖାଯିବା । ମୋର୍ କଥା ଲୁକେ ଯାହା କହିଥିଲେ ବି, ମୁଇଁ ସବୁ ସତକଥା କହମି, ସେ ଯାହା ପଚାରୁ

ମତେ। କାଣା ଅଧିକା ହେବା ? ମୋର ଚାକିରିଟା ବଁଚ୍ଲେ ହେଲା। ସହଯେ ମୋର ବାପା ମୋତେ ପାଠ ନଇଁ ପଢ଼େଇ, ଆର ମାହାପୁରୁ ମତେ କିନ୍ଦରେଇ ବୁଲେଇ ସେହି ମାଷ୍ଟର ଚାକିରିର, ଆପେ ହବଡେଇ ଦେଉଛେ କାଏଁଥିର ଲାଗି ? ମୋର ଚାକିରିଟା ରହେଲେ ସିନା ମୁଇଁ ନିସଫିକର ହେମି ! ରାତିର ପାଂଚ୍ ବଜେ ଆମର ସଂଗେ ସମ୍ବଲପୁର ଯାଇଥିବାର ଯୁଡ଼େ ଗାଡ଼ି ବିଜୁବାବୁଙ୍କର କଟକର ଘରର ଗେଟନ୍ ତୁକଲା। ଚାରିଆଡ଼େ ଉକିଆ। ଗହଗହ ଲୋକ। "ହେଇ ଆସିଗଲେ। ସମ୍ବଲପୁର କେଣ୍ଡିଡ଼େଟ୍ ଆସିଗଲେ !" ମୋର କେତେକେତେ ଚିହ୍ନାର ଲୁକେ ମୋତେ ଘେରିଗଲେ। ବଧେଇ ଜନାଲେ। ଆମର ସାଂଗର ଲୁକେ କେତେଜନ୍ ଆନନ୍ଦଭବନକେ ତୁକିକରି ବିଜୁପଟ୍ଟନାୟକଙ୍କୁ ଖବର ଦେଲେ। ଓଡ଼ିଶାର ସବୁ ଜିଲ୍ଲାର ଦଲଦଲ ଲୋକ ତାଙ୍କର କେଣ୍ଡିଡେଟ୍ ନେଇକରି ହାଜର ହେଇଥାନ ଆନନ୍ଦଭବନର ବାଉଣ୍ଡ୍ରି ଭିତରେ। ଦୁଇଦିନତକ ଇଠାନେ ଖାଇପିଇ ନିଜର କେଣ୍ଡିଡ଼େଟ୍‌କେ ବିଜୁବାବୁଙ୍କର ଆଗେ ପେସ୍ କରିସାରିଥିଲେ। ମୁଇଁ ଶେଷବେଲେ ପହଞ୍ଚିଲି। ବିଜୁବାବୁଙ୍କର ଏକଦମ୍ ପାଖର ପାଞ୍ଚସାତଜନ ପୁରୁଖା ନେତା ଗୁଟେ କୁଠିନ ବସିକରି ଫାଇନାଲ ଲିଷ୍ଟ ବନଉଥିଲେ। ମତେ କେତେଜନ କର୍ମୀ ଡ଼ାକିନେଇ ଆନନ୍ଦଭବନର ବୈଠକ ଖାନାଥି ବସାଲେ। ବଡ଼େଟେ କୁଠି। ମଝାନ୍ ଗୁଟେ ଅଣ୍ଡା ଆକାରରେ ବଡ଼େଟେ ଟେବୁଲ। ଚାରିଆଡ଼େ କାଠର ଚଉକି। ଆରାମି ଚଉକି, ଫ୍ରିଜ୍ ଆଉ ବିଜୁବାବୁର ଛୁଆବେଲୁ ସେଦିନତକ୍ ନାଁ ଅର୍ଜିଥିବାର ଗୁଡାଦୁ ମାନପତ୍ର ଆର ବଡ଼ବଡ଼ ଫଟୋ। ମତେ ଟିକେ ବେଲତଜ ଟାକବାକେ ପଡ଼ଲା।

ମୋର ସଂଗେ ଯେନଲୁକେ ଯାଇଥିଲେ, ସେମାନେ କେହି ମୋର ପାଖେ ନାଇଁଥାଇ। ମୁଇଁ ଏକଲା ଚଉକିନ ବସିରହିଲି। ଇଟା ଆମର ଦୁହିଜନଙ୍କର ପହେଲା ସାକ୍ଷାତକାର। ମତେ ଡର ନାଇଁ ଲାଗୁଥାଇ। ମୋର ପଛାଡ଼େ କିଏ କିଏ ଥିଲେ ମୁଇଁ ନାଇଁ କାନି। ଶେଷେ କା ବିଜୁବାବୁ ଆଏଲେ ଷାଢ଼େ ଚାରବଜେ। ହାତେ କୋକା କୋଲା ଭରା ଗିଲାସଟେ ଧରିକରି। ତାଙ୍କର ପଛେ ପଛେ ସାତଆଠଜନ ଉଡ଼ିଷାର ନାମଜାଦା ନେତା ଯେନମାନେ ବିଜୁ ବାବୁଙ୍କର ସଂଗେ ବହୁତଦିନତକ୍ ରହେଲେ। ମୁଇଁ ଉଠିକରି ନମସ୍କାର କଲି। ବିଜୁବାବୁର ପହେଲା ପ୍ରଶ୍ନ। "ଆଉ କଣ ଖବର ଏକ୍ଟର ପ୍ରିନ୍‌ସିପାଲ ? ଲଢ଼େଇ ପାଇଁ ତିଆର ହେଇଛତ ?" ମୋର ଉତର, "ମୋର କେତେଟା ସମସ୍ୟା ଅଛି ସାର୍। ମୋର ରାଜନୀତିର କିଛି ଜ୍ଞାନ ନାହିଁ। ଏବଂ ମୋର କିଛି ସମ୍ପତ୍ତି ବାଡ଼ି ନାହିଁ। କହିବାକୁ ଗଲେ ମୁଁ ଜଣେ 'ପପର'। ଚାକିରି, ସେପୁଣି ମାଷ୍ଟ୍ର ଚାକିରିରେ ମୋର କେବଳ ଅଭିଜ୍ଞତା। ମୁଁ ଚାକିରି ଛାଡ଼ିପାରିବି ନାହିଁ। ବହୁ ଅସୁବିଧା ଭିତରେ ମୁଁ ଏବେ ଗୋଟିଏ କଲେଜର ଅଧ୍ୟକ୍ଷ, ଯାହାକୁ ମୋ ନିଜ ହାତରେ ଗଢ଼ିବାର ସୁଯୋଗ ପାଇଛି। ରାଜନୀତିକୁ ପସିଗଲେ ମୁଁ ସେସବୁ

କରିପାରିବି ନାହିଁ ।" ମୋର ଆଘର ସଭେ ତୁନ୍‌ପଡିକରି ମୋର କଥା ଶୁନ୍‌ଲେ । ବିଜୁବାବୁ ହଠାତ୍ ଆରମ୍ଭ କଲେ, "ହ୍ୱାଟ ଡୁ ୟୁ ମିନ୍ ? ବିଜୁପଟ୍ଟନାୟକ ଇଜ ସିଲେକ୍ଟିଂ ୟୁ, ମିନ୍‌ସ ଆଇ ଅଣ୍ଡର୍ଷ୍ଟାଣ୍ଡ ୟୋର ପ୍ରବ୍ଲେମ୍‌ସ । ୟୁ ଡ଼ୋଣ୍ଟ ହାଭ ଟୁ ସ୍ପେଣ୍ଡ ଏ ପାଏ ଫର ୟୋର ଇଲେକସନ । ୟୁର ଆର ବିଜୁପଟ୍ଟନାୟକ୍ସ ମେନ୍ । ୟୁନୋ, ଆଇ ହେଭ ସିଲେକ୍ଟେଡ୍ ହଣ୍ଡ୍ରେଡ ଏଣ୍ଡ ଫଟି କାଣ୍ଡିଡ଼େଟ୍‌ସ ଅଫ ଓରିଷା । ଦେ' ଆର ନଟ୍ ସ୍ପେଣ୍ଡିଂ ଦେୟାର ମନି । ଇଟ୍‌ସ୍ ବିଜୁପଟ୍ଟନାୟକ୍ସ-ଉକ୍‌ଳ କଂଗ୍ରେସ୍ । ଇଟ୍ ଇଜ୍ ମାଇଁ ଲୁକ୍ ଆଉଟ । ଆଉଟ ଅଫ ହଣ୍ଡ୍ରେଡ୍‌ସ ଏଣ୍ଡ ଫର୍ଟି, ୟୁ ଆର୍ ଓ୍ୱାନ୍ । ଓ୍ୱାନ୍‌ସ ୟୁ ଆର ଇଲେକ୍ଟେଡ୍, ୟୁ' ଆର ଫ୍ରି ଟୁ ଡିସାଇଡ୍ ହ୍ୱାଟ୍ ଏଭରୟୁ ଲାଇକ ଟୁ ଡୁ । ୟୁ ଉଇଲ୍ ବି ମିନିଷ୍ଟର କଲଚର, ଅର୍ ବେକଟୁ ୟୋର ଅରିଜିନାଲ ଜବ୍ । ବେକ୍ ଟୁ ଲରମ୍ବା କଲେଜ ।" ମୋର ଜବାବ୍, "ସାର ମୁଁ ରିଜାଇନ ନକଲେ ଇଲେକସନ୍‌ରେ ଠିଆ ହେଇ ପାରିବି ନାହିଁ । ଆଉ ଥରେ ହାରିଗଲେ ଚାକିରିଟା ଫେରି ପାଇବି ନାହିଁ ।" ବିଜୁବାବୁ ଗୁମ୍ ହେଇଗଲେ । ପାଖର ଲୁକେ ତାଙ୍କୁ ମୁଇଁ ଠିକ୍ କହୁଛେଁ ବଲକରି ବୁଝେଇ ଦେଲେ । ବିଜୁବାବୁର ଯୁକ୍ତିଥିଲା, "ଆରେ ସେ ତିନିମାସ ଛୁଟିନେଇ ଇଲେକସନ୍ ଲଢ଼ିବ । ହାରିଗଲେ ଫେର ଚାକିରିକୁ ଫେରିଯିବ ।" ମୋର ଜବାବ ଥିଲା, "ସେଇଟା ଓଡ଼ିଶାରେ ସମ୍ଭବ ନୁହେଁ, ସାର୍ । କେବଳ ବଙ୍ଗଳାର ସରକାର ସେ ସୁବିଧାଟି କେଣ୍ଡିଡେଟ୍ ମାନଙ୍କ ପାଇଁ ରଖିଛନ୍ତି ।" ବିଜୁବାବୁ ଫେର ଗୁମ ହେଲେ । ହଠାତ୍ ସ୍ୱର ଉଚ୍ଚା କରି କହେଲେ, "ଦିଜ୍ ଓଲ୍‌ଡ ଫୁଲ୍‌ସ ଡୋଣ୍ଟ ଓ୍ୱାଣ୍ଟ ଏନି ୟଙ୍ଗ ପିପଲ ଟୁ ଫାଇଟ୍ । ତମେ ଦେଖୁଛ ଶରତ୍; ଦେଶଟା କେମିତି ଆଗେଇବ ? ଦେ, ଡ଼ୋଣ୍ଟ୍ ଓ୍ୱାଣ୍ଟ ୟଙ୍ଗ ପିପଲ୍ ଟୁ ଫାଇଟ୍ ? ଗିଭ୍ ଦେମ୍ ଏ ଫାଇଟ୍ ମେନ୍ ।"

ବିଜୁବାବୁଙ୍କର ଇ' ଶେଷକଥାଟା ମୋର୍ ଆଜିବି ମନେ ପଡୁଛେ । ମୁଇଁ କଲେଁ କଲେଁ କହିଲି । ମୋର ଇଲେକସନ୍ ରିଜଲ୍‌ଟ ବାହାରିବା ଯାଏ ଯଦି ମୋର ଲରମ୍ବା କଲେଜର ଚାକିରିଟା ଖାଲି ରହିଥିବ, ତେବେ ଆଇ ଉଇଲ ଗିଭ୍ ଏ ଫାଇଟ୍, ସାର୍ । ବିଜୁବାବୁର ଦଲଟା ଯାକ ଖୁସି ହେଇ କରି ଉଠିପଡ଼ଲେ । ବିଜୁବାବୁ ଉଠିକରି କହେଲେ, "ଆଇ ଉଇଲ ସି ଦେଟ୍ ।" ମତେ ଆଉ କିଛି କରବାକେ ନାଇଁପଡ଼ି । ମୋର ନାଁଟା ଖାଲି ବିଜୁପଟ୍ଟନାୟକଙ୍କର ଦରକାର । ମୁଁ ଉକ୍‌ଳ କଂଗ୍ରେସର ବିଧିବଦ୍ଧ ମେମ୍ବର ନାଇଁ ହେଇକରି ଇଲେକସନ୍ ଲଢ଼ମି । ମୋର ଘର, ଦୁଆର, ଚାକରିକେ କିଛି ଆଁଚ ନାଇଁ ଆସେ । ମୋର ଇଲେକସନ୍ ଅଫିସ, କର୍ମୀ, କର୍ମକର୍ତ୍ତା, ଗାଡି ମଟର, ପ୍ଲାନିଂ, ପଇସା ଯୁଗାଡ଼ ଆଉ ଖର୍ଚ୍ଚା, ହିସାବ, ସବୁ ବିଜୁ ପଟ୍ଟନାୟକଙ୍କର ଲୁକେ କରବେ । ମୁଇଁ ଖାଲି ସମିଆ ଦେମି, ଆଉ ଭାଷଣ ଦେମି । ଇଲେକସନ୍ ବେଲେଁ ଗୁଟେ ଷ୍ଟ୍ରାଟାଜି କରାହେସି । ସେଟା ମୋର ଆଘେ ଚର୍ଚ୍ଚାକଲା ବେଲେ ମତେ ହସା ଲାଗସି । ଆଏଜତକ ଇଲେକସନ୍ ଷ୍ଟ୍ରାଟାଜି କରି କେନ ଦଲ ଫାଏଦା

ପାଇଛନ୍, ମୁଇଁ ନାଇଁ ଦେଖି । ସବୁ ବେଲେ ଇ ଷ୍ଟାଟାକିର୍ ମତଲବ ହେଲା "ବ୍ୟକ୍ତିସ୍ୱାର୍ଥ"-ଟୁ'ପାଇସ୍ । ମୋର ଇସବୁଥି କିଛି ହାତ ନାଇଁ ରହେ । ମୁଇଁ ଗୁଟେ 'ଏକ୍ଟିଂ ପ୍ରିନ୍‌ସିପାଲ୍' ବାଗିର ଲୋକେଟ । ମୋତେ ଏକ୍ଟିଂ କରବାକେ ପଡ଼ବା । ଲରମ୍ବା କଲେକର ପରିଚାଲନା ସମିତି ଯେନ୍ତା ତାଙ୍କର ଏଗ୍ରିମେଣ୍ଟ ଚବିଶ ବରଷତକ୍ ରଖଲେ । ବିଜୁବାବୁର ସଂଗେ ମୋର ପହେଲା ଯାହା କଥାହେଲା ସେଥିର ସବୁ, ସେ ମୋର ଲରମ୍ବା କଲେକନୁ ରିଜାଇନ୍ କରବାର୍ ଆଘୁ କରେଇ ଦେଲେ । ମୋତେ ଆଶ୍ଚର୍ଯ୍ୟ ଲାଗିଲା ; ଶହେ ଚାଲିଶଟା ଲୁକରଇ ବ୍ୟକ୍ତିଗତ ଅସୁବିଧାକେ କେଛେଇ ଇ ସମାଧାନ କରି ଦେଉଛନ୍ । ଲୋକଟା କେଡ଼େଟେ ସାହାସ କରୁଛେ ! ଅଲଗା ଲୁକ୍‌କୁ "ସାହାସ" ଦେବାର କେତେ ତାକ୍ ଇମୁନୁଷଟାର ମୋର ସୋର ପଡ୍‌ଲା, ବରଗଡ଼ର ଛାତ୍ର ଅଶାନ୍ତିର କଥା । ବିଜୁ ବାବୁ ତାଙ୍କର କଂଗ୍ରେସ ପାର୍ଟିର ଲୁକଙ୍କର ସଂଗେ ଆନ୍ଦୋଳନର ସମାଧାନ କଥା ବିଚ୍ଚାର କରିବାକେ ବରଗଡ଼ ସହର ମଝାନ ଥିବାର୍ ଡାକବଂଗଳାର କର୍ମୀସଭାକେ ଆସିଥିଲେ ଦିନେ ଛୁଟିଦିନେ । ସେତେବେଲେ ସେ ମୁଖ୍ୟମନ୍ତ୍ରୀ ପଦବୀନ ନାଇଁ ଥାଇ । ପୁଲିସ ବାଲେ ଡ଼ାକବଙ୍ଗଲାକେ ଘେରେଇ ଦେଇଥାନ୍ । ରାସ୍ତାଥି ଗାଡ଼ିମଟର ଯିବାର ତଦାରଖ କରୁଥାନ୍ । ସେତେବେଲେ ଡାକବଙ୍ଗଲା ଆଘର ରାସ୍ତାନୁ ଡାକ୍ତର ପାଢ଼ୀଙ୍କର ଘର ଆର ଡାକ୍ତରଖାନାତକ ଘରଦୁଆର କିଛି ନାଇଁ ଥାଇ । ମୁଁ ଘରଭଡ଼ା ନେଇକରି ଡାକ୍ତର ପାଢ଼ୀଙ୍କର ଖପରିଲି ଘରେ ରହୁଥାଏଁ । ମୋର ଘରର ବରଣ୍ଡାନୁ ରାସ୍ତାତକ୍ କାହାକେ ଠିଆହେବାକେ ପୁଲିସ୍‌ବାଲେ ନାଇଁ ଦେଉଥାଇ । ସେଠାନେ ଠିଆ ହେଲେ ଡ଼ାକବଙ୍ଗଲାର ଭିତରତକ ସବୁ ପରଛା ଦିଶୁଥାଏ ।

ବିଜୁବାବୁ ଅଶୋକ ନିବାସନୁ ଆଏଲେ । କଂଗ୍ରେସକର୍ମୀମାନେ ଗୋଶାଲା ଛକନୁ ତାଙ୍କର ଗାଡିନୁ ଭିତରେଇ କରି ଫୁଲମାଲ ପିନ୍ଧେଇକରି ଗୁଟେ ନୂଆଁ ଖୁଲା ଜିପ୍‌ଥି ଠିଆ କରେଇକରି ଗାଡ଼ି ଚାରହିଆଡ଼େ ଘେରିକରି ବିଜୁବାବୁ "ଜିନ୍ଦାବାଦ୍ ଜିନ୍ଦାବାଦ୍" ନାରା ଦେଇକରି ଆନଲେ । ପୁଲିସବାଲେ ରାସ୍ତାର ଦୁଇଆଡ଼େ ପହରା ଦେଉଥାନ୍ । ଭିଡ଼ ଭିତରେ ବିଜୁବାବୁ ଜିପ ଉପରେ ଠିଆ ହେଇକରି ସବୁଆଡ଼କେ ଦେଖୁଥାନ୍ । ବହୁତ ଦୂରତକ ଲୁକେ ତାଙ୍କୁ ଦେଖିପାରୁଥିଲେ । ଜିପ ଚାରହିଆଡ଼େ କଂଗ୍ରେସକର୍ମୀ ଦୁଇଶହ ତିନିଶହ ଘେରିକରି ଜିନ୍ଦାବାଦ ନାରା ଦେଉଥାନ୍ । ପୁଲିସ ବାଲେ ରାସ୍ତାର ଦୁହି ତରାନ ଠିଆ ହେଇଥାନ୍ । ଆସ୍ତେ ଆସ୍ତେ ଜିପ ଚାଲୁଥାଏ । ଡ଼ାକବଙ୍ଗଲାର ଗେଟ୍ ପାଖେ ଟିକେ ବେଶୀ ଭିଡ଼ ହେଇଥାଏ କଂଗ୍ରେସକର୍ମୀ ମାନଙ୍କର । ହଠାତ ସେ ଭିତରୁ ଢ଼େକ୍‌ଲଟେ ଆସିକରି ବିଜୁବାବୁଙ୍କର ମୁଢ଼େ ବାଜଲା । ବିଜୁବାବୁ ମୁଡ଼କେ ଗୁଟେ ହାତେ ଛାପକି କରି, ଯେନଆଡୁ ପଥର ଆସିଥିଲା ସେ ଆଡ଼କେ ଦେଖଲେ । କିପ୍ ଅଟକିଗଲା । ଉଚ୍ଚାନଥିଲେ ବଲିକରି, ଗୁଟେ ପିଲା ଭିଡଭିତରୁ ମୁସଡିକରି ପଲାବାରଟା ସେ ଦେଖିପାରିଲେ । କିଲେଇକରି ଆଙ୍ଗଠି ଦେଖେଇ କରି

କହୁଥିଲେ, "ହେଇ ଗଲା, ଗଲା, ଧର ତାକୁ। ଧର ତାକୁ। ଆଣ ତାକୁ ଏଠିକି।" ବାକି ସେ ସେନ୍‌ତା ଠିଆ ହେଇଥାନ। ପୁଲିସ ବାଲେ ଦଉଡ଼ି ଦଉଡ଼ି କରି ବସଷ୍ଟାଣ୍ଡ ଆଡ଼େ ପଲଉଥିବାର ସତର ଅଠର ବରଷର ପିଲାଟାକେ ଧରି ଆନଲେ। ବିଜୁବାବୁ, କହୁଥାନ୍ "ଆଣ ତାକୁ, ମୋ ପାଖକୁ।" ପୁଲିସବାଲେ ପିଲାର ଦୁହିଡ଼େନାକେ ଜବର ଧରିକରି ବିଜୁବାବୁର ପାଖକେ ନେଲେ। ବିଜୁବାବୁ ସିଟନ୍ ବସି ପଡ଼ଲେ, ପିଲାର ମୁହଁ ପାଖକେ ହାତନେଇକରି ପଚରାଲେ, "ହେଇବେ, କାହିଁକି ଡେଲା ମାରିଲୁ ? କିଏ କହିଲା ଯେ ଢ଼େଲା ମାରିଲୁ ? ତୁ ମାଇଲେ ମୁଁ ମାରି ପାରିବିନି ତତେ ? ତୋ' ନାଁ କଣ ?" ପିଲାଟା ସେତିକି ବେଲେ ଡ଼ରିଯାଇ ଥିଲାନା। "ଏ ପୁଲିସବାଲା ତୋତେ ମାରିପାରିବେନି ? ତୋ'ର ଏଡ଼େ ସାହସ ? ମୁଖ୍ୟମନ୍ତ୍ରୀକୁ ଡେଲା ମାରିବୁ ? ତୁ ଜାଣିଛୁ ମୁଁ କିଏ ? ଗୁଳିରେ ଉଡ଼େଇ ଦେବି ତତେ। କହ କାହିଁକି ମାରିଲୁ ?" ହେତକି ବେଲେ ପିଲାଟା ଡ଼ରିକରି କାନ୍ଦଲାନ। ବିଜୁବାବୁ କହେଲେ, "ଆବେ କାନ୍ଦୁଛ କଣ ? କହୁନୁ ତୋ ନାଁ କଣ ? ଘର କେଉଁଠି ?" କାନ୍ଦିକାନ୍ଦି କରି ସେ ନାଁ କହେଲା, ତା'ର ଗାଁର ନାଁ କହେଲା। "ଗାଁରୁ ଆସି ବରଗଡ଼ ସହରରେ କଣ କରୁଛୁ ? ପାଠ ପଡୁଛୁ ?" "ନାଇଁ ଆଜ୍ଞା ପାଠ ନାଇଁ ପଢ଼ି। ଚାକିରି କରି ଆସିଥିଲି।" "ପାଠ ପଡିନୁ, କି ଚାକିରି କରିବୁ ବେ ମୁର୍ଖ ? ମୁଖ୍ୟମନ୍ତ୍ରୀକୁ ଡେଲା ମାରିବା ଚାକିରି।" "ନାଇଁ ଆଜ୍ଞା, ମୋର ମା ବାପା ଗାଁନ ରହେସନ୍। ଆମେ ଗରିବ ଲୋକ। କାମବୁତା ନାଇଁ ପାଏଲି ବଲି ବରଗଡ଼କେ ଆସିଥିଲି।" "ଆବେ, ସେଇଥିପାଇଁ ବିଜୁପଟ୍ଟନାୟକକୁ ଡେଲା ମାରିବା କାମ କରୁଛୁ ?" ତା'ର ଉତାରୁ ହଠାତ, ପୁଲିସବାବାଲୁକ କହେଲେ, "ତା' ହାତ ଛାଡ଼ିଦିଅ। ପି.ଡବ୍ଲ୍ୟୁ.ଡି ଇଂଜିନିୟରଙ୍କୁ ଡାକ। ତହସିଲଦାରଙ୍କୁ ଡାକ।" ଦୁହିଜନ ଦଉଡ଼ିକରି ସେ ପିଲାର ପାଖକେ ଗଲେ। ବିଜୁପଟ୍ଟନାୟକ ସେମାନକୁ କହେଲେ, "ଫାଇଣ୍ଡ ଆଉଟ୍ ଦି ଡିଟେଲ୍‌ସ ଏବାଉଟ୍ ହିମ୍, ଏଣ୍ଡ ଏପଏଣ୍ଟ ହିମ୍ ଏଜ ଏନ୍.ଏମ.ଋ. ଡେଲି ଲେବରର ଅଫ୍ ଓ୍ୱାର୍କ୍ସ ଡିପାର୍ଟମେଣ୍ଟ ଫ୍ରମ ଟୁଡ଼େ।" ପୁଲିସବାବୁମାନଙ୍କୁ ଦେଖିକରି ବଇଲେ, "ତା' ନାଁରେ କିଛି କେସ୍‌ଫେସ୍ କରିବନି। ଲେଟ ହିମ୍ ମୁଭ ଫ୍ରିଲି।" ତା'ର ଉତ୍ତାରୁ ସେ ପିଲାକେ ଦେଖିକରି ବଏଲେ, "ଆବେ, ତୁ ମୁଖ୍ୟମନ୍ତ୍ରୀକୁ ଢ଼େଲା ଫୋପାଡିଲୁ, ସେ ତୋତେ ଚାକିରି ଦେଲା। ଆଉ ଏମିତି କାମ କେବେ କରିବୁନି। ଯା, ପଳା ଏଠୁ।" ସଞ୍ଜ ବେଲତକ, ସେ ପିଲା ଓ୍ୱାର୍କ୍ସ ଡିପାର୍ଟମେଣ୍ଟର ବରଣ୍ଡାନ ବସିକରି ଗେଟି ଆର ପଥର ଅଲଗ ଅଲଗ ରଖୁଥିଲା। ଛୋଟ କଥାଟେ, ବାକି ସେଦିନ ସାମନା ସାମନି ଆନନ୍ଦ ଭବନନ କଥା ହେଲା ବେଲକେ ସେ ମୁଖ୍ୟମନ୍ତ୍ରୀ ନାଇଁଥାଇ। ବାକୀ ବିଜୁପଟ୍ଟନାୟକର ସ୍ୱାଭିମାନ ଟିକେ ହେଲେ ଊନା ନାଇଁ ହେଇଥାଇ। ମରଦ୍ କା ବଚ୍ଚା !

କଟକକୁ ଫିରିକରି ମୁଇଁ ମୋର ପରିଚାଳନା ସମିତିକେ ଭେଟଲି। ସେମାନଙ୍କର

ସଙ୍ଗେ ବରଗଡ଼ର ଏସ୍.ଡ଼ି.ଓ. ଯେ ପରିଚ଼ାଳନା ସମିତିର ସବାପତି, ତାଙ୍କୁ ଭେଟିଲି। ମୋର ଇସ୍ତଫା ଦେଲି। କଲେଜର ବରିଷ୍ଠ ଅଧ୍ୟାପକ, ଭାରପ୍ରାପ୍ତ ଅଧ୍ୟକ୍ଷ ଭାବେ ଅଢ଼େଇ ମାସତକ୍ କଲେଜଚଲାବାକେ ଗୁଟେ ନୋଟିସ୍ ବାହାର କରାଲି। ଅଢ଼େଇ ମାସତକ ଝାଡୁଆପଡ଼ାର୍ ଆମର ଘରେ ରହିଲି। କୁଞ୍ଜେଲ ପଡ଼ାନ ଉତ୍କଳ କଂଗ୍ରେସ ଅଫିସ ଖୁଲଲା। ଇଲେକସନ୍ କାଗଜପତର, ବେନର ପୋଷ୍ଟର, ଟେଲିଫୋନ୍, ସବୁ ପଞ୍ଚାୟତ କର୍ମୀ, ମୁଖିଆ ମାନଙ୍କର ନାଆଁର ଲିଷ୍ଟ ତିଆର୍ ହେଲା। ରାତିଥି ଉତ୍କଳ କଂଗ୍ରେସର ଆଭିମୁଖ୍ୟ, ଲକ୍ଷ୍ୟ ଆର୍ ଆଦର୍ଶ, ମେନିଫେଷ୍ଟୋ ସବୁଯାକ ପଢ଼ି ପଢ଼ି ମୁଖସ୍ଥ କଲି। ଶହ୍ଶହ୍ ସମ୍ବଲପୁର୍ କିଲ୍ଲାର ରାଜନୀତିକ ନେତା ଆର୍ ସାମ୍ବାଦିକ ମାନେ ମତେ ଆସିକରି ଭେଟଲେ। ଉତ୍କଳ କଂଗ୍ରେସ ଅଫିସନ୍ ଜନେ ଚିହ୍ନାର୍ ଜନାର ଉକିଲ ଅଫିସର ସବୁକଥାକେ କୋଅର୍ଡିନେଟ୍ କଲେ। ହେଡ଼ ଅଫିସକୁ ଜେନ୍ ନିୟମେ ଆର୍ ପଇସା ଆଏଲା, ତାଙ୍କର କହେବାର ହିସାବେ ଖରଚାହେଲା ସେଣ୍ଟ୍ରାଲ ପାର୍ଟି ଅଫିସର ନିର୍ଦ୍ଦେଶ ଅନୁସାରେ ସମ୍ବଲପୁରର ଶିଳ୍ପପତି ମାନଙ୍କଠାନୁ ଚାନ୍ଦା ମଗାଗଲା। ଇ ଚାନ୍ଦାମଗା କାମ, ପ୍ରାୟ୍ ରାତିନ ହେସି। ଇଠାନେ, ଯେତିକି ଭିତରି କଥା ଜନା ପଡ଼ଲା। ଯେକେହି ଥରେ ଇଲେକସନ୍ର କେଣ୍ଡିଡ଼େଟ୍ ହେଇଗଲେ ସଭେ ଇ' ଶିଳ୍ପପତି ମାନଙ୍କର ନିକ୍କେ ଚାନ୍ଦା ମାଗି ଯାଇସନ। ଏନ୍ତା କେହି ନାଏନ ଆର୍, ଏନ୍ତା କେନସି ଭାରତୀୟ ପାର୍ଟି ନାଇଁନ ଯେ ଇ' କାମ ନାଇଁ କରେ। ବେଲେ ବେଲେ ବାମପନ୍ଥୀ ଦଲର ଚାନ୍ଦା ଅସୁଲି, ଆର୍ ଉତ୍କଳ କଂଗ୍ରେସର ଚନ୍ଦାମଗା ଦଲ ଅଧାରାତି ଗୁଟେ ଘାଟେ ଭେଟ ପଡିଯାଉଥିଲୁଁ। ସ୍ୱାଧୀନ ପ୍ରାର୍ଥୀ ବି ଲାଇନ୍ ଧରିଥିସନ୍। କୁମ୍ଭମେଲାନ ଗଙ୍ଗାସ୍ନାନ ବାଗିର୍ କଥାଟେ ଇଟା। ଏଭେ ଯେନ ମିଡିଆନ ଫଟୁ କରିକରି ତେହେଲକା ଦେଖେଇ ଦେଲେ, ସେଟା କିଛି ନୂଆଁ କାରବାର ନୁହେଁ, ହେଟା ଆମର ଗଣତନ୍ତ୍ରର ପରିଚ଼ୟ୍ ଆଏ। ହେନ୍ତେଇ ଆମେ ଚ଼ାନ୍ଦା ମଗା, ଭିକ୍ ମଗା, ଦାଦାବଟି, ହପ୍ତା, ଡ଼ରାଧମକା, କଲେଯାଇ ଇ' ମହାନ୍ ଦେଶଟାକେ ଚଲେଇ ପାରୁଛୁଁ। ସତ୍ୟ ମେବ ଜୟତେ !

ସଖାଲୁ ଗାଧିପାଧିକରି ମୁଇଁ ରେଡି ହେଇଯାଉଥିଲି। ମୋର୍ ଠାନକେ କର୍ମୀମାନେ ଦିନଯାକର୍ ପ୍ରୋଗ୍ରାମ ଧରିକରି, ଜିପ୍ନ ପେଟ୍ରୋଲ ପକେଇ କରି, ଚାରପାଞ୍ଚଟା ଗାଁର ମୁଖିଆଙ୍କୁ ଧରିକରି ହାଜର ହେଉଥିଲେ। ଗାଡିଥି ପାର୍ଟି ଅଫିସ ଯାଇକରି ଲିଖିତ ପ୍ରୋଗ୍ରାମକେ ଅନୁମୋଦନ କରେଇକରି ଆମେ ଜନତାଙ୍କୁ ସମ୍ମୁଖୀନ ହେବାକେ ବାହାରି ପଡୁଥିଲୁଁ। ମୁଇଁ ନୂଆଁ ନେତା ହଇଛେଁ ହେଥିରଲାଗି ମୋର୍ ଭାଗେ ଫୁଲମାଲ ନାଇଁଥାଇ। ଖାଲି ଗାଲିମାଲା ମୁହଁ ଉପରେ, ଆଘାଡେ, ପଛାଡ଼େ, ଶୁନେଇକରି, ନାଇଁଜାନଲା ବାଗିର, ଅବଶ୍ୟ-ଅସକଟିଆ କଥାର ଶବ୍ଦସମ୍ଭାର ଭିତରେ ସଭା ସମିତିମାନକେ ଶାନ୍ତ ଶିଷ୍ଟ ଭାବେ, ଦାନ୍ତ ଦେଖେଇକରି, କାନ୍ଧେ ହାତ ଦେଇକରି ଆମେ ଗାଁ ଗାଁ ପଡ଼ାପଡ଼ା ବୁଲୁଥିଲୁଁ। ଉତ୍କଳ

କଂଗ୍ରେସର ପ୍ରଚାର କରୁଥିଲୁଁ। ଇ ଗାଲି ଦେବାର ଲୁକକୁ ମୁଁ ସବକୁ ଜାନିଛେଁ, ଚିହ୍ନିଛେଁ। ମୋର ଚାକିରି କଲାବେଳେ ଇନ୍ତା ମୁହୁଁହୁଡ଼ା ଲୁକକୁମୁଇଁ କେଭେଁ ନାଇଁ ଛାଡିଥିତି।

ସମ୍ବଲପୁରେ ଦୁଇତିନ୍‌ଦିନ ବିଜୁବାବୁର ସଙ୍ଗେ ରହେବାକେ ପଡଲା। ଏକା ସଂଗେ କେତେଟା ସଭାକଲୁଁ। ନାରୀସେବା ସଦନର ଖୁଲାପେଣ୍ଡଲନ ଆମର ଉକ୍‌ଲ କଂଗ୍ରେସର ବଡ଼ନେତା ମାନଙ୍କର ଭିତରେ ବିଜୁବାବୁ ବସିଆଥନ, ସେମାନେ କହି ସାରିଲା ଉତାରୁ ମୋର ପାଲି ପଡଲା। ବିଜୁବାବୁ ମୋର ପରିଚୟ୍ ଦେଇକରି ମୋତେ ମାଇକ୍ ପାଖକେ ଡାକଲେ। ପେଣ୍ଡେଲ ଆଡୁ ମ୍ୟୁନିସପାଲଟି ଅଫିସତକ ଠାଟପଟୁଆ ଲୋକ। ନାରୀ ସେବାସଦନ ଆର ଟାଉନ୍ ହଲ କାଛିକେ ଲାଗିକରି କେତେଟା ପ୍ଲାକାର୍ଡ ଆର ବେନର ଉପରକେ ଟେକି ହେଇଗଲା। ଆର ସ୍ଲୋଗାନ ବାଜି ସୁରୁହେଲା। ଶରତ୍ ପୂଜାରୀ ଡ଼ାଉନ୍ ଡ଼ାଉନ୍, ଉକ୍‌ଲ କଂଗ୍ରେସ ମୁର୍ଦାବାଦ। ଛାତ୍ରହନ୍ତା ପ୍ରିନ୍‌ସିପାଲ, ମୁର୍ଦାବାଦ ! ମୁଇଁ ମୋର ଭାଷଣ ଆରମ୍ଭ କରିଦେଲି। ସେମାନେ କିର୍ଲୋଉଥାନ୍। ମୁଇଁ କହେବାର ବନ୍ଦନାଇଁ କଲି। ହଠାତ୍ ବିଜୁବାବୁର ଟୁଁଡ଼୍ ମୋତେ ଶୁଭିଲା, "ଶରତ, ଗିଭ୍ ଦେମ୍ ଏ ରିପ୍ଲାଏ।" ମୁଇଁ ଟିକିଏ ଅଟକିଗଲି, ସେ ପିଲାମାନଙ୍କର ଆଡ଼କେ ଦେଖଲି। ମୋର କବାବଥିଲା, "ଆମର ଛାତ୍ର ବନ୍ଧୁମାନେ, ମତେ ଛାତ୍ରହନ୍ତା ବଲୁଛନ୍। ମୁଇଁ ନାଇଁଜାନି ହେମାନେ କେତେ କନ ଛାତ୍ର ଆନ୍। କି ଆର କାଣା ଆନ୍ ? ହେମାନଙ୍କର ପାସେ ତାଙ୍କର ଆଇଡେଣ୍ଟିଟି କାର୍ଡ ଅଛେ କି ନାଇଁ। ସେମାନେ କହିପାରବେ କାଏଁ, କେନ୍ ଛାତ୍ରକେ ମୁଇଁ ହାନିଛେ, କି ତା'ର କିନ୍ଦେଗୀ ବରବାଦ୍ କରିଛେ ? ତା'ର ନାଁ କାଣା ? ଇହାଦେ ମୁଇଁ ଆପଣଙ୍କର ଲେଖେ ଗୁଟେ ନାଗରିକ। ଦିନେ ମୁଇଁ ପ୍ରିନ୍‌ସିପାଲ ଥିଲି। ସେତେବେଳେ ସଂବିଧାନ ଆର ଆଇନ୍ ଅନୁସାରେ ମୁଇଁ କାରବାଇ କରବାକେ କସମ୍ ଖାଇଥିଲି। ଯେନମାନେ ବେଆଇନ୍ କାମକଲେ ସେମାନେ ଆଇନ ଅନୁସାରେ ଦଣ୍ଡ ପାଏଲେ। ମତେ ଆପଣମାନେ ଜିତାଲେ ମୁଇଁ ସେହି ଆଇନକେ ଦେଖିକରି କାମ କରମି। ମୋର କଲେଜର ଛାତ୍ର କି ପୁଓ ବଲିକରି କୁଲେ ନାଇଁବସାଏଁ।" ପୁଲିସ୍ ବାଲେ ତା'ର ଉତ୍ତାରୁ, ପିଲାମାନଙ୍କୁ ଘେରେଇ ଦେଲେ। ନାରା ବନ୍ଦହେଲା। ମୁଁ ଉକ୍‌ଳ କଂଗ୍ରେସର ପ୍ରଚାର କଲି। ଚକ ଆର ନଙ୍ଗଲର କଥାନି। ସଭା ଶେଷ ହେଲା। ପେଣ୍ଡେଲନୁ ଉତରିଲା ବେଲେ ମୋର କାନ ପାଖକେ ଆସିକରି ବିଜୁବାବୁ କହେଲେ "ହ୍ୱାଟ୍ ଏ ବିଫିଟିଂ ରିପ୍ଲାଏ, କଂଗ୍ରାଚୁଲେସନ୍‌ସ।" ମାସେତକ ମୋର କିଛି ଆର ସୋର ନାଇଁଥାଇ। ଇ' ଭିତରେ ଇନ୍ଦିରା ଗାନ୍ଧୀ ଦୁଇଥର ସମ୍ବଲପୁର ଆସିକରି ଭାଷଣ ଦେଇକରି ଉଡିଗଲେ। ଭୋଟ ସଲା, ଗନତି ହେଲା। ମୁଇଁ ହାରଲି। ମତେ ଉସାସ୍‌ଟେ ଲାଗଲା। ବଡେଟେ ଫାଣ୍ଟାସି ସିନେମାଟେ ଦେଖଲା ବାଗିର ଲାଗିଲା। ନୋଟ୍ କେନ୍ତା ଉଡସୀ। ଦିଶୁଥିସି ଛିଁ ନେଇ ହୁଏ। ମୁନୁଷମାନେ ଅନ୍‌ମୁନକ୍ଷିଆ ହେଇ ଯାଏସନ୍। ସର୍ଦ୍ଦଙ୍ଗୀ

ନଙ୍ଗଲା ଜିନ୍ଦେଗୀ ଯାକ ଇ କାମନେ ଯେନ୍‌ମାନେ ଖେଲାସନ୍ ସେମାନଙ୍କର ରକତ ମୋରଠାନୁ ଅଲଗ୍ ଆଏ । ଇ'ଟା ମୋର୍ ଲେଖେ ଏକମାତ୍ର ସତ ହେଇଗଲା ।

ଲରମ୍ବା ପରିଚାଳନା ସମିତିକେ ମୋର୍ ଅଧ୍ୟକ୍ଷ ଚାକିରିର ଦରଖାସ୍ତଟା ପଠେଇଦେଲି । ଉତ୍କଳ କଂଗ୍ରେସ ଅଫିସର କର୍ମକର୍ତ୍ତା ମାନଙ୍କୁ ଜନେଇଦେଲି ମୁଇଁ ତାଙ୍କର ପାର୍ଟିର ଚାରଅନିଆ ମେମ୍ବରଟେବି ନାଇଁ ହୁଏଁ । ଉତ୍କଳ କଂଗ୍ରେସର କର୍ମୀ ମାନେ ମତେ ତଥାପି ଘେରେଇ ଥାନ୍ । ବିଜୁବାବୁ ଭୋଟର ଫଏସଲା ଉତ୍ତାରୁ ସବୁ ଶହେ ଚାଲିଶଟା କେଣ୍ଡିଡ଼େଟକେ ଡ଼କେଇ ପଠାଲେ ଆନନ୍ଦଭବନକେ । ଶହେ ଚାଲିଶନୁ ତିରିଶ ବତିଶ ଜନ ଜିତିଥିଲେ । ଆମେ ହାର୍‌ଲା ଲୁକକୁ ପଚ଼ରାଗଲା ପାର୍ଟିଥି ରହିକରି କାମ କରବ କାଏଁ। ବେଶୀ ଭାଗ ହରାମାନେ ପାର୍ଟିଥି ରହେଲେ । ମୁଇଁ ସଫାସଫା, କହିଦେଲି, "ସାର୍, ମୁଁ ଲରମ୍ବା କଲେଜକୁ ଫେରିଯିବି । ରାଜନୀତିରେ ପଶିବିନାହିଁ ।" ମୋର ଘରର ପଏସାନୁ ମୁଇଁ କେନ ଭୋଟ ଲଢ଼ିଥିଲି ଯେ ? ନାଁ ଲାଗ କରିଛେଁ, ବନ୍ଧା ଦେଇଛେଁ, ଜିଭିକ୍ ମାଗିଛେଁ । ଯାହା ଖରଚ଼ା ହେଲା, ବିଜୁବାବୁ ଆଉ ଉତ୍କଳ କଂଗ୍ରେସର ଖାତାନ ଲେଖାହେଲା । ବିଜୁବାବୁ ଠାନେ ମୁଇଁ ରାଜନୀତିଥି ନାଇଁଚୁକେଁ ବଲି କହେଲା ଉତାରୁ, ସେ ଲରମ୍ବାର କଲେଜ କଥା ପଚରାଲେ । ମୋର ଠାନୁଁ ସବୁ ଶୁନଲା ଉତ୍ତାରୁ ବୋଧହୁଏ ତାଙ୍କର ମୋର ଉପରେ ଆରଟିକେ ବେଶୀ ବିଶ୍ୱାସ ଆସଲା । ମୁଇଁ ତାଙ୍କୁ ମୋର ଅଭିଜ୍ଞତାର ଲାଗି ଧନ୍ୟବାଦଟେ ଦେଇକରି, ଲରମ୍ବା କଲେଜନ ବିଧିବଦ୍ଧ ଦରମା ଆର୍ ସ୍କେଲ ଅଫ ପେ' ପାଇକରି ଫେର୍ ନିଯୁକ୍ତି ପାଇଲି । ଫେର୍ ଖାଲି କଲେଜର ଚିନ୍ତା, କଲେଜର ଡେଭଲପମେଣ୍ଟର ଚିନ୍ତା । ବି.ଏ. କ୍ଲାସ ଆର ଅନର୍ସର ଚିନ୍ତା । ମଝି ମଝିଥି ଛୁଟି ଭିତରେ ସିନେମାର ଏକଟିଂ ଲାଗି ପରିଚାଲନା ସମିତି ମୋତେ ଅନୁମତି ଦେଲେ । କଲେଜର ଉନ୍ନତିର ଲାଗି ସରକାର୍ ଆର ୟୁଜିସି ଠାରୁ ସାହାଯ୍ୟ ମିଳିଲା । ଘର ଦୁଆର ତିଆର ହେଲା । କଲେଜ ଚାରିହିଆଡ଼େ ବାଡ଼ାଦେଇକରି ଗଛ ଲାଗଲା । କଲେଜ ଭିତର୍ କେ ବାହାରର କାହାକେ ପସେଇ ନାଇଁ ଦିଆହେଲା । କଲେକର ମାଷ୍ଟର, ପିଲା ଆର ପରିଚାଲନା ସମିତି ସ୍‌ବୁଥି ଭାଗନେଲେ । ତାଙ୍କର ବୁତେ ଯେତକି ଜାନଲେ ସେତକି କଲେ । କାହାକେ "କପି" ନାଇଁ କରି ! ରେଭେନ୍‌ସା କଲେଜ ବାଗିର କଲେଜଟେ କର୍‌ବାର ଲାଗି ସପନ ନାଇଁ ଦେଖି । ଲରମ୍ବା କଲେଜର ପଚିଶବରଷ ପୁରଲା । ରୌପ୍ୟଜୟନ୍ତୀ ହେବାର ପ୍ରୋଗ୍ରାମ ହେଲା । ସେଥିର ସଂଗେ ହାଇସ୍କୁଲର ପଚାଶବରଷ ଆର ପ୍ରତିଷ୍ଠାତା ବ୍ରଜମୋହନ ପଣ୍ଡାଙ୍କର ଶତବାର୍ଷିକୀର ବି ଆୟୋଜନ ହେଲା । ମୁଖ୍ୟମନ୍ତ୍ରୀ, ମନ୍ତ୍ରୀ, ସାଂସଦ, ବିଧାୟକ ସଭେ ନିଉତା ପାଏଲେ । ଲରମ୍ବା ଆସଲେ । ଦେଖଲେ । ଭାଷଣ ଦେଲେ । କେହି ଅର୍କଲେ ନାଇଁ ପଡ଼ି । ହଏରାନ ନାଇଁ ହେଇ । ହେ ଭିତରୁ ଜନେ ନେତା, ଯେ ମୋର "ଉତ୍କଳ କଂଗ୍ରେସ" ବେଲୁ ଚିହ୍ନାଥିଲେ, ଯେ

ପଶ୍ଚିମ ଉଡ଼ିଷାର ବହୁତ କମ୍ ଜାଗା ଦେଖିଛନ୍, କଲେଜର ଜୟନ୍ତୀର ଗୁଟେଦିନର ପ୍ରୋଗ୍ରାମ ଦେଖଲା ଉତାରୁ ମତେ ପାଖକେ ଡାକିକରି କାନପାଖେ କହେଲେ, "ଶରତବାବୁ, ସତରେ ଆପଣ ଗଭର୍ଣ୍ଣିବଡ଼ିଟାକୁ ପକେଟରେ ଧରି ବୁଲୁଛନ୍ତି। କଂଗ୍ରାଚୁଲେସନ୍ସ !" ଇଟାମୋର ଲେଖେ କାଳ ହେଲା। ଇଟା ବୋଧହୁଏ ରାଜନୀତି ! ସେତେବେଲେ ମୁଇଁ କଥାର ମରମ୍‌ଟା ବୁଝି ନାଇଁପାରି।

ପଛେକା ମୋର୍ ସୋର୍ ପଡ଼ଲା କେତେଟା ଘଟନା। ସତୁର୍ ଦଶକର ମଝାମଝି ବିଜୁବାବୁଙ୍କର୍ ଅଚ୍ଛାନକ ବିରୋଧିଦଳର ନେତା ଭାବେ ଦିନେ ଛୁଟିଦିନେ ହଠାତ୍ କଲେଜ ପରିଦର୍ଶନ। ଗୁଟେ ରାତିଭିତରେ ମୁଇଁ ତାଙ୍କର ଲାଗି କଲେଜ ଭିତରେ ସଭାର ଆୟୋଜନ କରିଥିଲି। ତା'ର ଉତ୍ତାରୁ ଡ଼େପୁଟି ଡିରେକ୍ଟରଙ୍କର ମାର୍ଚ୍ଚ ମାସର ଶେଷେ ଅଚ୍ଛାନକ ପରିଦର୍ଶନ। ଅଶୀଦଶକର ଶେଷଆଡ଼କେ ଶିକ୍ଷା ବିଭାଗର ଜନେ ବଡ଼ ଅଫିସରଙ୍କର ପରିଦର୍ଶନ। ପହେଲା ଜୁଡ଼େକେ ମୁଇଁ ସାମନା କରିକରି ପାରକରି ଦେଇଥିଲି। ଆମର ନେତାମାନେ ଶିକ୍ଷାବିଭାଗଟାକେ ନିଜର ଇସ୍ତମରାରି ପଟ୍ଟା ବାଗିର ଭାବସନ। ପ୍ରିନ୍ସିପାଲକେ ସବୁଆଡୁ ଘେରେଇ କରି ଆନ୍ଦୋଲନଟେ ଚଲାବାରଟା ଗୁଟେ ସହଜ ଉପେ। ହେ ଦୃଷ୍ଟିରୁ ମୁଇଁ କାହାକେ ପକେଟଥି ଭର୍ତ୍ତି କରବାର ଏତେ ସହଜକାଏଁ ? ମୋର ଜିନ୍ଦେଗୀଯାକ ମୋର୍ ଚାକରି ବଞ୍ଚାବାର ଛଡ଼ା, କିଛି ନାଇଁ କରି ! ହେଟା ମୁହେଁ କହେବାକେ ମତେ ଲାଜ ନାଇଁ ଲାଗେ। ସରକାରୀ ଶିକ୍ଷାବିଭାଗ ମୋର୍ ଲରମ୍ଭା କଲେଜ ଶେଷବେଲକେ ଯେନ୍ ଅଚ୍ଛାନକ ପରିଦର୍ଶନ କରେଇଥିଲେ ସେ ତାର ମତଲବଟା ଥିଲା, ଇ ଲୋକଟା କଲେଜ ଚଲଉଛେ ଫେର୍ ଏତେ ଜାଗା ବୁଲୁଛେଁ କେନ୍ତେଇ ? ଚଉକିନ କେତେବେଲତକ ବସୁଛେ ? ଦଶବଜେନୁ ପାଞ୍ଚବଜେତିକ ବସଲେ ତ ସବୁ ଫାଇଲର କାମ ନାଇଁସରେ, ଇତାକେ ହେତକିବେଲେ ଘେରାଲେ ଠିକ ଧରି ହେବା !

ଦିନର ସାଢ଼େ ତିନ/ଚାର୍ ବଜେ ଚଉକିନ ବସିଥିଲା ବେଲେ ଘେରାଲେ ଠିକ ଧରାପଡ଼ବା। ହେ ଯୋଜନାଥି ଲରମ୍ଭା କଲେଜକେ ଅଚ୍ଛାନକ ପରିଦର୍ଶନ କରାଗଲା ଶୀତଦିନଟାକେ। କଲେଜର ପଡିଆନ କେତେଟା ପିଲା ଖେଲୁଛନ। ଜେନେରାଲ କ୍ଲାସ ନ'ବଜେନୁ, ଦୁଇବଜେତକ ସରିଯାଇସି, ଦୁଇନୁ ପାଞ୍ଚ ବଜେତକ୍ ପ୍ରାକ୍ଟିକାଲ କ୍ଲାସ ଆର ଅନର୍ସ, ଟ୍ୟୁଟୋରିଏଲ କ୍ଲାସ ଗୁଟେ ଅଧେ ହେଉଥିସି। କଲେଜ ଭିତରେ ଗହଲଚହଲ ନାଇଁ ଥାଏ। ଅଫିସର ହିସାବପତର ଆର ଟାଇପ୍‌କାମ ଲାଗି କ୍ଲାର୍କ ଆର ପିଅନ ଚାରପାଞ୍ଚଜନ କାମ କରୁଥିସନ୍। କଲେଜ ଗେଟ୍, ହଲ ଆର ଷ୍ଟାଫ କମନ୍‌ରୁମ ଏକଦମ୍ ଖାଲି ହେଇଥିସି। କଲେଜର ପ୍ରିନ୍ସିପାଲ କୁଠିର ଲାଇଟ ଜଲୁଥିସି, ପଙ୍ଖା ଚଲୁଥିସି, ବାକି ପ୍ରିନ୍ସିପାଲ ସେଠାନେ ନାଇଁ ବସିଥାଏ। ଇଟା ଲରମ୍ଭା କଲେଜର ଅବସ୍ଥା। ପରିଦର୍ଶନ ଦିନଭି ପ୍ରିନ୍ସିପାଲ ନାଇଁ ବସିଥାଇ ଚଉକିନ।

ଗାଡ଼ି ଗେଟ ପାଖେ ରଖିକରି ଅଫିସର ପଚାର୍‌ଲେ, ପ୍ରିନ୍‌ସିପାଲଙ୍କ ରୁମ୍ କେଉଁଠି ? ହଷ୍ଟେଲ ପିଲାଟେ ଦେଖେଇଦେଲା । ଟଡ଼ୋ ଟଡ଼ୋ ଭିତରକେ ସମିଗଲେ । କୁଠିର ଇକୁତି ସେକୁତି ଦେଖଲେ । କେହି ନାଇଁନ, କିର୍ଲେଇକରି କହେଲେ, "ଏ, କିଏ ଅଛି ?" ପାଖର କୁଠିର କ୍ଲାର୍କ ଆର ପିଅନ୍‌ମାନେ ବାହାରି ଆଏଲେ । ସୁଟ୍‌ପିନ୍ଧା ସାହେବକେ ଦେଖିକରି ସହମିଗଲେ । ପ୍ରିନ୍‌ସିପାଲ କୁଆଡ଼େ ଗଲେ ? ସେ କେମିତି ତାଙ୍କ ରୁମରେ ନାହାଁନ୍ତି ? ଅଫିସର ପିଅନଟେ କହେଲା, "ଆଜ୍ଞା, ପ୍ରିନ୍‌ସିପାଲ ଅଛନ । କେନ୍ କ୍ଲାସକେ ଯାଇଥିବେ । ସାଇନ୍‌ସ ବିଲଡିଂ ଆଡ଼େ ଥିବେ । ମୁଇଁ ଦେଖୁଛେଁ ।" ଅଫିସର ପଚାରିଲେ, ସେ କଣ କ୍ଲାସ କରନ୍ତି ? ସେ ତ ଚଉକିରେ ବସିବା ଲୋକ । ପିଅନ୍ ବିଚରା ଦଉଡିଦଉଡି କରି ସାଇନ୍‌ସ ବିଲ୍‌ଡିଂ, ଯେନଟା ପ୍ରିନ୍‌ସିପାଲ କୁଠିନୁ ଟିକେ ଦୂର ଆଏ ସେଠାନେ ଜୁଲୋଜି ଲାବରେଟରୀର ସେମିନାର କ୍ଲାସ ନ ଭେଟଲା । ସେମିନାର ଚଲୁଛେ । ବୁର୍ଲାର ପ୍ରଫେସର ମୁଖ୍ୟ ଅତିଥି ଆର ମୁଇଁ ପ୍ରେସିଡ଼େଣ୍ଟ ହିସାବେ ବସିଛୁଁ । ମୋତେ କହେବାର ସାଂଗେ ସାଂଗେ ମୁଇଁ କ୍ଷମା ମାଗିକରି ଉଠିଆଏଲି । ପିଅନ୍ ଅଫିସର ଯାହା କହେଲେ ମତେ କହେଲା । ମୁଇଁ ଜାନଲି ସରକାରୀ ଅଫିସର କେହି ଭୁବନେଶ୍ୱରୁ ଆସିଛନ । ମୋର କୁଠିକେ ଡୁକଲି । ମୁଇଁ ଜୁହାର ହେଇକରି କହିଲି, "ଆଇ, ଆମ୍ ସରି ସାର, ଆଇ ୱାକ ଏଟେଡିଂ ଏ ସେମିନାର ।" ମୋର କଥା ନାଇଁ ସରିଥାଇ, ଅଫିସର ରଟଲା ବାଗିର କହେଲେ, "ଦେଟସ୍ ଅଲରାଇଟ, ବଟ୍ ହ୍ୱେନ ଆଇ ଏଣ୍ଟର୍ଡ ପ୍ରିନ୍‌ସିପାଲସ୍ ରୁମ୍, ୟୁ' ଆର ନଟ ସିଟିଂ ଇନ୍ ୟୋର ଚେୟାର, ଏଣ୍ଡ ଇଟ ଇଜ୍ ନଟ ୟେଟ୍ ଫୋର ଓ'କ୍ଲକ ।" ମତେ ଆଶ୍ଚର୍ଯ୍ୟ ଆର ବିରକ୍ତି ବି ଲାଗଲା । ମୋର ଟୁଣ୍ଡୁଁ ବାହାରି ପଡ଼ିଲା, "ସାର, ମାଯ୍ ଜବ ଇଜ୍ ନଟ ଟୁ ସିଟ୍ ଇନ୍ ଏ ଚେୟାର । ଆଇ ଆମ ଇନଚାର୍ଜ ଅଫ୍ ଦିସ କେମ୍ପସ୍ । ଏଣ୍ଡ ମାୟ୍ ଡ୍ୟୁଟି ଇଜଟୁ, ଅବଜର୍ଭ ଏଭ୍ରି କରିକୁଲାର ଏଣ୍ଡ ଏକ୍ସଟ୍ରାକରିକୁଲାର ଏକ୍ଟିଭିଟିଜ୍ ଦେଟ୍ ଗୋଜ୍ ଅନ୍ ଇନସାଇଡ୍ ଦି କେମ୍ପସ । ହାଉ କେନ୍ ଆଇ ସିଟ୍ ଇନ୍ ଏ ଚେୟାର ଏଣ୍ଡ ହେଭ ନଲେଜ ଏବାଉଟ୍ ଦି କମ୍ପ୍ଲେକ୍ସ ? ଆଇ ଟୋଲ୍‌ଡ ୟୁ ଇନଦି ବିଗନିଂ, ଦେଟ ଆଇ ୱାକ୍ ଏଟେଣ୍ଡିଂଦି ଜୁଲୋଜି ସେମିନାର ଅଫଦି କଲେଜ ଏକ ଦି ପ୍ରେସିଡେଣ୍ଟ ।" ତାର ଉତ୍ତାରୁ ଆର ଜବାବ ଦେବାକେ ନାଇଁ ପଡ଼ଲା । "ଆପଣଙ୍କର କେସ୍ ବୁକଟା ଆଣନ୍ତୁ ।" ଏକାଉଣ୍ଟେଟେଣ୍ଟ କେସ୍‌ବୁକ ଆନ୍‌ଲେ । ସାହେବ ଉଲଟେଇ ପୁଲଟେଇ ଦେଖଲେ ଆର ଠିକ୍ ଜାଗାନ ଦସ୍ତଖତଟେ କରିକରି ଫିରେଇ ଦେଲେ । ମୁଇଁ ଚଉକିନୁ ଉଠିକରି ତାଙ୍କୁ ଅନୁରୋଧ କଲି, "ସାର ଚାଲନ୍ତୁ ଆମ କଲେଜର ଷୋହଳ ଏକର କେମ୍ପସଟା ଦେଖିବେ । ଜୁଲୋଜି ସେମିନାରଟା ଚାଲିଛି ଟିକିଏ ଗେଷ୍ଟ ଭାବରେ ଏଟେଣ୍ଡ କରିବେ ।" "ନାଁ, ନାଁ, ଥାଉ । ମୋର ଅନ୍ୟ ପ୍ରୋଗ୍ରାମ ଅଛି ।" ସେ ଉଠଲେ, ମୁଇଁ ବି ଉଠଲି । ମୋର କୁଠିର ଆଗର ବଉଲ ଗଛର ବୁରେଇ ତଲେ ସେ ଟିକିଏ ଅଟକି ଗଲେ । ମୁଇଁ ତାଙ୍କୁ

ଫେର୍ ବଉଲତଳେ ବସିକରି ଚାହା କପେ ପିଇବାର୍ ଲାଗି ଅନୁରୋଧ କଲି । ତାଙ୍କର୍ "ମୁଡ୍" ଟିକେ ବଦଲି ଥିଲା । ସେ ଚାରହିଆଡେ ଟିକିଏ ଦେଖଲେ । ମୁଇଁ ଠିଆଡୁ ଠିଆଡୁ କଲେଜର୍ ବାଉଣ୍ଡ୍ରି କଥା ବୁଝେଇ ଦେଲି । ତାଙ୍କର୍ ବିଦାୟ୍ କାଲିନ୍ କଥାପଦକେତେ ଥିଲା, "ରିଏଲି, ଇଟସ ଏ କ୍ୟୁଏଟ୍ ପ୍ଲେସ୍ । ସିଲଭାନ୍ ଏଟ୍‌ମସ୍‌ଫିଅର୍ । ହଉ, ମୁଁ ତା'ହେଲେ ଆସୁଛି ।" ଇଟା ରାଜନୀତି ଭିତରେ ଗଲା କି ଅମଲାତନ୍ତ୍ରୀ ଭିତରେ ଗଲା ମୁଇଁ ନୁହେଁ ବୁଝିପାରେଁ ।

ଲରମ୍ବା କଲେଜ ଭିତରଟା ସଥେ ଶାନ୍ତ ଆଏ । ସୁଶୀତଲ ଆଏ । ଗ୍ରାମିଣ ଆଏ । ବାକୀ ଆଧୁନିକ ଯୁଗେ ଇଟା କିଏ କେଭେ ବିଚାର୍ କରସି କାଏଁ ? ଯେନଠାନେ ଯୁଆନ ପିଲାଟୁକେଲ୍ ପାଠପଡ଼୍‌ବେ ସେଠାନେ ଆନ୍ଦୋଲନ ନାଇଁ ହେଲେ ଚଲବା କେଛେଇ ? ଚଉଷଠି ମସିହା ଉତ୍ତରୁ ଯେତେ ଛୋଟ, ବଡ଼ ଷ୍ଟୁଡ଼େଣ୍ଟ ଏଜିଟେସନ୍ ହେଇଛେ, ଯେତେଥର ଷ୍ଟୁଡ଼େଣ୍ଟ ୟୁନିୟନ ଇଲେକସନ୍ ହେଇଛେ ସବୁବେଲେ ହରେକ ରକମ୍‌ର ଦାବି, ଉତ୍ତେଜନା, ଆହ୍ୱାନ ପସାବାକେ କେହି ପଛଘୁଂଚା ନାଇଁ ମାରି । ଯେନ୍ ଦଲ୍ ହେଲେ ବି ସେମାନେ ଇକାର୍‌ଦାର୍ କର୍‌ବାରଟା ନାଇଁ ଛାଡ଼ି । ପରୀକ୍ଷା ବେଲକେ ପିଲା ଆର୍ ତାଙ୍କର୍ ସହଯୋଗୀ ଗୋଷ୍ଠୀ କିଛି ଗୁଟେ ନାଇଁ କଲେ, ସେମାନଙ୍କୁ ଭଲ ନାଇଁ ଲାଗେ । ବାପ ମା'ମାନେ ଇ'କଥା ନାଇଁ ବୁଝନ୍ । ସବୁଯାକ ପ୍ରିନ୍‌ସିପାଲକେ କର୍‌ବାକେ ପଡ଼ସି । ସେଥିର୍ ଭିତରେ ବଦମାସିଆ ପିଲାଠାନୁ, ରାଜନୈତିକ ନେତା, ଅସାମାଜିକ ଲୁକେ ସଭେ ଯୋଟ ଖାଏସନ୍ । ହେନ୍ତା ଜିନିଷମାନଙ୍କୁ ଶୁଂଘିକରି, ହାଓ୍ୱା ଦେଖିକରି ନିଜକୁ ତିଆର୍ କର୍‌ବାକେ ପଡ଼ସି । ଆଘୁ ତିଆର୍ ନାଇଁହେଲେ ପ୍ରିନ୍‌ସିପାଲ ସହିତ କଲେଜଟା ଦି ଦାଗୀ ହୋଇଯାଏସି । ସଭେ "ଛାତ୍ରହନ୍ତା" ହେଇ ଯାଇସନ୍ । କେସ୍ ପାତି ଚଲ୍‌ସି । ଡ଼ରାନି ଧମକାନି ଚଲସି । ଲରମ୍ବା କଲେଜର୍ ମୋର୍ ଚବିଶ ବର୍ଷର୍ ରହେବାରଟି ଇ କିତାପଟ୍‌ର୍ କଥାନୀ । ହେଟା ଖାଲି ବିଜୟାନନ୍ଦ ଟେ ସିନା ବୁଝ୍‌ବା ! କେସ୍ ପତା କର୍‌ବାର୍ ମୋର୍ କ୍ଷମତା ନାଇଁଥାଇ । ଠିକ୍ ବେଲେ ଠିକ୍ କଥା । ସିଧା ସଳଖ ।

ଶେଷ କେ ୨୦୦୫ ମସିହାନ ମୋର୍ ନବୀନ ବାବୁଙ୍କର୍ ପାଖକେ ଖୁଲା ଆଉ ସତ୍ କଥା ଲେଖାଟା କାମ ଦେଲା । ଓଡିଶା ସରକାର୍ ଷ୍ଟେଟ୍ ବ୍ୟାଙ୍କ କରିଆରେ ମୋର୍ ବାକିଆ ୟୁଜିସି ପେନ୍‌ସନ ଦେବାର୍ ପ୍ରାବଧାନ କରିଦେଲେ । ବିଜୟାନନ୍ଦଙ୍କର୍ କଥା ରହେଲା । ମୋତେ କୋର୍ଟ କଚିରି ଯିବାକେ ନାଇଁ ପଡି ।



# ସଂପର୍କର ସୂତ୍ର

କାହିଁକି ମୋ ସାଂଗରେ ଏମିତି ସଂପର୍କର ସୂତ୍ର ଲଗେଇଛ ? "ଯ୍ୟପ ପଷ୍ଟିମାଟାଏ" ବୋଲି ବଡ଼ଦାଣ୍ଡରୁ ଶ୍ରୀମନ୍ଦିର ଯାଏ ତୁହାକୁ ତୁହା ଆମନଣ୍ଡା ମୁଣ୍ଡରେ ପଣ୍ଡାଙ୍କ ବେତମାଡ଼ ଖୁଆଇ ଆମ ଚଉଦ ପୁରୁଷଙ୍କୁ ଯେମିତି ବିଦା କରଛ ସେମିତି ତ କରି ପାରି ଥାଆନ୍ତ । ମୋ' ସାଂଗରେ କାହିଁକି ଏ ନୀଳା ଲଗେଇଛ । ତମର କୋଟୀ କୋଟୀ ଭଗତଙ୍କ ଭିତରେ ମୁଁ ବା କି ଛାର ।

ଆମେତ ନିଜ ଘରେ "ପଖାଳ ଗରସେ ପାତଲଘଣ୍ଟ ହେଣ୍ଡୁଁଆ ଚୁଟଚୁଟା" ଖାଇ କରି ମଜାରେ ଶୋଇ ଥାଆନ୍ତୁ । ତମର ଏ ମହାର୍ଘ ବାସେନା ଆମ ନାକରେ ବାଜି ଥାଆନ୍ତା କି ? ମୋ' ବାପା ତମ ପାଖରେ ଅଧିଆ ପଡିଥିଲେ କି ? ବ୍ରିଟିଶ ସରକାର ଅମଳରେ ସବଡ଼େପୁଟି କଲେକ୍ଟର/ ମାଜିଷ୍ଟ୍ରେଟ କରି ମୋ ବାପାଙ୍କୁ କାହିଁକି ପୁରୀ କିଲ୍ଲାର, ଖୋରଧା ସବଡିଭିଜନ ଆଉ ନୟାଗଡ଼ ରାଇଜର ବନ୍ଦୋବସ୍ତ ଓ ଟ୍ରେଜେରି ଅଫିସର କରି ରଖିଲ ? ସେ ପୁଣି ଦଶବର୍ଷ ଯାଏ । ମୁଁ ତୁମକୁ କହିଥିଲି କି ? ମୋ' ବାପାଙ୍କ ଦଶଟି ସନ୍ତାନ ଭିତରେ ମୋତେ ଜ୍ୟେଷ୍ଠ ପୁତ୍ର ଭାବରେ ନୟାଗଡ଼ରେ ରଜାମାର୍ଗେ ଜନ୍ମ ଦେଲ ୧୯୩୪ ମସିହାରେ । ଖୋରଧାଗଡ଼ରେ ଖଡ଼ି ଛୁଏଁଇଲ । ପୁରୀ ବାଲିସାହି ନି.ପ୍ରା. ସ୍କୁଲରେ ଛାତ୍ରଥାଇ ତିନିବର୍ଷ ଯାଏ ତମର ଲୀଳା, ଖେଳା, ଜାନିଯାତ, ମଉଜ ଗମାତ, ବାର ମାସର ତେର ଜାତର ସବୁ ମଜା ଚଖେଇ ଦେଲ । କାହିଁକି ? ତମକୁ କଣ ଓଡ଼ିଶାର ଆଉ କେଉଁ ଭକ୍ତ ମିଳିଲେ ନାହିଁ ?

ବାପାଙ୍କ କଡ଼ା ଶାସନ ଆଉ ମାଙ୍କ ଭକ୍ତି ମାର୍ଗର ଉବୁଟୁବୁ ହୃଦୟ ଦେଇ ଛୋଟବେଳୁ ତମ ଶ୍ରୀକ୍ଷେତ୍ରର ଗଳିକନ୍ଦି, ମନ୍ଦିର, ମଠ, ସମୁଦ୍ରକୂଳ କିଛି କାଗା ଅଦେଖା ରହିଲା ନାହିଁ । ୧୯୩୫ ମସିହାରୁ ୧୯୪୧ ମସିହାଯାଏ ତମ ସଫାସୁତୁରା ନିର୍ମଳ ପୁରୀ ସହରଟାକୁ ମାନସ ପଟରୁ ଭୁଲାଇ ପାରୁନାହିଁ । ତମ ଭକ୍ତ କହନ୍ତି, ତମେ କୁଆଡ଼େ ଖାଇବା, ଖୁଏଇବା ଠାକୁର । ଅନ୍ନ, ବ୍ୟଞ୍ଜନ, କାନିକା, ଡ଼ାଲି, ଡ଼ାଲେମା ସଂଗେ କ୍ଷୀରା ରାବିଡ଼ି, ସରପୁଳି, ଘିଅସରସର ପିଠା ଆଉ ମଗଜନଡୁ ତମ ଭୋଗରେ ଚଖେଇଲ । ସମୁଦ୍ରକୂଳର ଲେଡିକେନି, ପାନତୁଆ, ରାଜଭୋଗ ସାଙ୍ଗକୁ ସିଂଘଡ଼ା କଚୁଡି ଦିବ୍ୟ ଭୋଜନ । ବ୍ରାହ୍ମଣ ଘରେ ଜନ୍ମ ଦେଲ ବୋଲି ବଡ଼ ପେଟିଆ ହେଲି । ତମ ଶ୍ରୀକ୍ଷେତ୍ରବାସୀ ହୋଇ ଦଶବର୍ଷ ଭିତରେ ଗିଳିବା ବିଦ୍ୟାଟି ଶିଖେଇ ଦେଲ । ଗୋଡ଼ ହାତ କଚାଡ଼ିଲେବି ରୋଜଗାର କଥାକେବେ ମୁଣ୍ଡକୁ ପଶିଲା ନାହିଁ । କଉ କାମ ପାଇଁ, ଅର୍ଥ ଉପାର୍ଜନ ପାଇଁ ଏ ବ୍ୟକ୍ତିଟି ଯୋଗ୍ୟ ନୁହେଁ ବୋଲି ମୋ' କପାଳରେ ସେଇ ଦିନରୁ ଲେଖି ଦେଇଛ ।

ମୋତେ ବଡ଼ପୁଅ କରି ଜନ୍ମ ଦେଇଥିଲ ପରା । କି ବଡ଼ ପୁଅ ହୋ- । ଆଠୁଟା ଭାଇଙ୍କ ପାଇଁ କି ସମ୍ପତ୍ତି ଥାପି ଦେଇଥିଲ ? ସତୁରି ବର୍ଷ ଯାଏ ନିକର ବାସ ଖଣ୍ଡେ କରି ପାରିଲି ନାହିଁ । ବ୍ରାହ୍ମଣ ପେଟଟା ଖାଲି ଖାଇବି ଖାଇବି ବୋଲି ହମହମ ହଉଛି । ମାନୁଛି; ଜୀବନଯାକ ମୋ ଦାନା-ନାଇଁ ନାଇଁ ଖାନାରେ ନାଁ ଲେଖି ଦେଇଛ । ସେଥିରେ ଊଣା କରିନ । ଆକଣ୍ଠ, ସୁସ୍ୱାଦୁ ଭୋଜନ ଯୋଗାଇ ଦେଇଛ । ଝଡ଼ି, ମରୁଡ଼ି ହେଇଥାଉ । ଜଙ୍ଗଲ, ପାହାଡ଼, ଅଚିହ୍ନା ଜାଗା, ରାତି ଅଧରେ, ପାଖରେ କେହି ନଥିଲେ ବି ଚଉକସ ଭୋଜନଟେ କେହି ନା କେହି ମୋ' ଆଗରେ ଆଣି ପରସି ଦେଉଛି । ଏଇଟା ମୋ ଜାତକରେ ତେମେ ଲେଖି ଦେଇଛ । ଏଇଟା ତମର କି ପେରେମ ? ଆଠବର୍ଷ ବୟସରେ ପଡ଼ିଶା ଘରେ ତମେ ମୋତେ ପ୍ରେମର ପ୍ରଥମ କୁତୁକୁତୁ ଚଖେଇଛ ! କେଡ଼େ ନଟକୂଟିଆ ହୋ ତମେ- । କେତେ ଖେଳ ନଖେଳୁଛ- । ଶୁଣିଛି ତମର କେତେ ଭିଆଣ । କାହାଣୀ । ଭକ୍ତମାନେ ଶୁଣେଇ ଶୁଣେଇ କାନ୍ଦିପକାନ୍ତି । ଫେଏଣ ନାଚି ପକାନ୍ତି । କାହିଁକି ଏତେ ସୁନ୍ଦର ଲଗେଇଛ ? ତିନଛ ମହାପାତ୍ର, ଦାସିଆ ବାଉରୀ, ସାଲବେଗ, ଶ୍ରୀୟା ଚଣ୍ଡାଳୁଣୀ, ଚାଖୀ ଖୁଣ୍ଟିଆ ପାଇଁ ତ ତମେ ଜଗବନ୍ଧୁ, ଦୀନବନ୍ଧୁ । ଭକ୍ତତ୍ରାଣ ! ମୋ ବେଳକୁ କଣ ଛେନା ଗୁଡ଼ ପାଚେ଼ଲା କଦଳୀ । ମୋ କଲା କାମର ମୂଲଦେବାକୁ ତେମେ ଭଗତ୍‌ଟାଏ ଜନ୍ମ କଲ ନାହିଁ । ଖାଲି ପେଖନିଆ କଥା । ସୁନ୍ଦରିଆ କଥା । ତମର ଏଇଟା ଭଲ । ତମର ସେଇଟା ଅଲଗା ଆହା- କଣ କଲ ହେ- । କଣ ଦେଖେଇଲ ହେ- । ପକା ବେକରେ ଗାମୁଛା ! ଓଡ଼ ଶାଲ । ଧଅ ଫଳକ । ନେ ଉପାଧି । ଖାଲି ଜୟ ଜୟ ଜୟକାର । ହେଲେ ମୁଣ୍ଡ ଉପରେ ଛପରଟେ ଥୋଇଲ ନି କିଆଁ ? କି ବନ୍ଧୁ ହୋ ତେମେ ?

୧୯୪୧ ରୁ ୧୯୫୭ ଯାଏ, ତମର କୋଟି କୋଟି ଭଗତଙ୍କ ଭିତରୁ ଏମିତି ଓଡ଼ିଶା ଓ ତା'ବାହାର ରାଇଜକୁ ମୋ ପରି କାହାକୁ ବୁଲେଇ ବୁଲେଇ ଦେଖେଇଛ କି ? ସେଇଠି ପାଠ ପଢ଼େଇଲ । ବିଦ୍ୟା ଦେଲ । ଏମିତି ଓଡ଼ିଶା ଦେଶଟେ ଭିଆଣ କରି, ଏତେ ରଂଗ, ତାଳ, ଲୟ, ଭଙ୍ଗୀ ଓ ଦୁରୁଶ ଦେଖେଇ ମତେ କାହିଁକି ନାହିଁନଥିବା ସୁନ୍ଦର ଦେଖେଇଲ । ସବୁଦିନ ପାଇଁ ଆକସ୍ମିକ ଭାବରେ ମୋ' ବାପାଙ୍କୁ ମୋ'ଠୁ ଛଡ଼େଇ ନେଇଗଲ ? ଘରେ ସେତେବେଳେ ଏଗାରଟା ପୁଅଝିଅ ମୁଁ ସବୁଠାରୁ ବଡ଼ ପୁଅ । ସବୁଠାରୁ ଉଚ୍ଚଶିକ୍ଷିତ । ବାକି ସମସ୍ତେ ସ୍କୁଲ କଲେଜ ପିଲା । ୪୭ ବର୍ଷର ବିଧବା ମା', ପୈତୃକ ଘର, ଗାଁର ପାଞ୍ଚ ଏକର ଜମି ହେଉଛି ପରିବାରର ତଥା ମୋର ଏକମାତ୍ର ସମ୍ବଳ । ଚାକିରିଟିଏ ନକଲେ ଘରେ ଚୁଲି ଜଳିବନି ବୋଲି, ଚାରିଆଡ଼େ ଦଉଡ଼ି ହେଲି । ପୁଣି ଖେଳିଲ ପେଞ୍ଚ ! ହଇହୋ ମୁଁ ପ୍ରୟାଗ ବିଶ୍ୱବିଦ୍ୟାଳୟର ଉଚ୍ଚ ଡିଗ୍ରୀଧାରୀ ଲୋକ । ମୋତେ ତମେ ସିନେମାର ଆକ୍ଟରଟେ କରିଦେଲ । ତମକୁ ବା କାହାକୁ ତ କିଛି ସେମିତି କହି ନଥିଲି । ଆସିକାର ତମର କେତେ

ଭକ୍ତ ଶ୍ରୀୟା ଚଣ୍ଡାଳୁଣୀ ଚରିତ୍ରକୁ ନେଇ "ଶ୍ରୀଶ୍ରୀ ମହାଲକ୍ଷ୍ମୀ ପୂଜା" ସିନେମା କଲେ । ସେଠି ମୋର ଖବର ଅନ୍ତର କେମିତି ପହଞ୍ଚିଲା ? ଆସିକାରୁ କଟକ ଓ ତା'ପରେ କଲିକତାରେ ପ୍ରଥମଥର ପାଇଁ ଥିଏଟରରେ ଅଭିନୟ କରିନଥିବା ପ୍ରଥମ ଅଭିନେତା ଭାବରେ ମୋତେ ତେମେ ପୁରେଇ ଦେଲ ? ମୋ' ଆଡ଼କୁ କାହିଁକି ଦୋଷ ଲଦୁଛ ? ତମ ଭଳିଭଳିକା ମୁଚୁକୁନ୍ଦ ହସ, ହୁନ୍ଦରିଆ ଆଖି, ସବୁ କାଣି କିଛି ନଜାଣିବା ଢ଼ଙ୍ଗ, ଠାଣିମାଣିରୁ ଯାହା ତମେ ମାଣବସା ଗୁରୁବାର ଓଷାରେ ନିକେ ଭିଆଣକରି ଲୋକଙ୍କୁ ଯୁଗଯୁଗ ହେଲା ଶୁଣେଇ ଆସୁଥିଲ- ତାକୁ ମୋତେ ଟିକିଏ ଟିକିଏ ଶିଖେଇ ଦେଲନି ? ତାକୁ ଦେଖି ଲୋକେ ଭୁଲିଗଲେ । ମୋତେ କେହି ଆଉ ଚିହ୍ନିଲେ ନାହିଁ । ତମର ସବୁ ନନ୍ଦର ଫନ୍ଦରିଆ, ହୁନ୍ଦରିଆ, ପେଖନା ଡଙ୍ଗର ଲୋକଟୋ ବୋଲି ମୋ' ମୁଣ୍ଡରେ ନଡ଼ିଆ ବାଡ଼େଇ ଦେଲେ ଯେ ଆଜିଯାଏ କେହି ଭୁଲୁନାହାଁନ୍ତି । କି ଲାଜ କଥା- । ମୋର ଏ ସତୁରି ବଅସ ବୟସରେ ବି ବୁଢ଼ୀମାନେ ମନେପକେଇ ନାଲି ପଡି ଯାଉଛନ୍ତି । କାହିଁକି ଏ ଅର୍ଗଳିରେ ପକେଇଲ ? କି ସାଂଘାତିକ ପରିଚୟଟାଏ ଦେଲ ମୋତେ ? ଖାଲି ତୁମ ନାଁରେ ଯଶ, ଖ୍ୟାତି, ମାନ ଦେଲ ଅଥଚ଼ ଧନ ଓ ଲକ୍ଷ୍ମୀଙ୍କ ଘରଟି ଶୂନ୍ୟ କରି ରଖିଦେଲ । ଏଇଟା ତୁମର କି ଦାତା ପଣ କହିଲ !

ମା'ର ହାତଧରି ଠୁକୁରୁ ଠୁକୁରୁ ପାଦରେ ତୁମ ମହୋଦଧି ଆଗରେ ପ୍ରଥମେ ଯେଉଁଦିନ ଠିଆହେଲି ମୋ ହଂସା ଉଡ଼ିଗଲା । ତମ ସମୁଦ୍ର ଆଉ ଆକାଶର ଏତେ ରଂଗ ! ମୋ ହାତ ଯୋଡ଼ିକ ବୋଇଲେ ସେଥିରେ ଖେଳନ୍ତେ କି ? ମୋ ଆଖି ଯୋଡ଼ିକ ସେମିତି ତୁମ ଆଖିପରି ଡ଼େମା ଡ଼େମା ହୋଇ ତୁମ ରଂଗ ରୂପକୁ ସବୁବେଳେ ଦେଖିବାକୁ ମନ କରୁଛି । ଗୋଟିଏ ସିନେମାରେ ଆକ୍ଟର ହେଇ ଅନ୍ୟକିଛି କରିବାକୁ ମନ ବଳେଇଲା । ତେଣୁ ମାଷ୍ଟର ଚାକିରିଟେ ଯଚେଇଲା ପରି ଧରେଇ ଦେଲ । ଏମିତି ଏ ଚାକିରିରେ ରଂଗ ରୂପକୁ ନେଇ ଖେଳିବାକୁ ସମୟ ମିଳିବ ବୋଲି ମୋର ଧାରଣା ଥିଲା । ସେଠି ମଧ୍ୟ ଷେଣ୍ଢ ପୁରେଇ ଦେଲ ତମେ ! ଗୋଟାଏ ପଟେ ଆକ୍ଟର ହେବାପାଇଁ ବାଟ ଖଞ୍ଜିଦେଲ । କାନରେ ପୁଣି ମନ୍ତ୍ର ଫୁଙ୍କିଲ "ଯା- ବିଦ୍ୟାରଣ ସୁଝିବୁ ଯା- ।" କେତେ କାଳଯାଏ ଏ ଲୀଳା ଲଗେଇବ କେଜାଣି ? ସେଇ ମାଷ୍ଟର ଚାକିରିଟା କାହିଁକି ଲୁଚେଇ ରଖିଲ ସମସ୍ତଙ୍କ ଆଖିରୁ । ଚଉତିରିଶ ବର୍ଷଯାଏ ଘରୋଇ କଲେଜ ମାଷ୍ଟରର ଯନ୍ତ୍ରଣା ଓ ପରମ ଉଚ୍ଛ୍ୱାସକୁ ଖେଳିବାକୁ ସୁଯୋଗ ଦେଲ । ଗୋଟିଏ ଗ୍ରାମୀଣ କଲେଜକୁ ମୂଳରୁ ନିଜହାତରେ ଗଢ଼ିତୋଳିବାର ଆହ୍ୱାନ ମୋ ଆଗରେ ଥୋଇଛ । ସେଠିକା ମାଟି, ପାଣି, ପବନକୁ ଚିହ୍ନି ହଜାର ହଜାର ଗ୍ରାମୀଣ କଲେଜ ପିଲାଙ୍କ ଭବିଷ୍ୟତ ଗଢ଼ିବାର ଉପାଦାନ ଖଞ୍ଜିବାକୁ ସୁଯୋଗ ଦେଲ । ଚ଼ବିଶ ବର୍ଷଯାଏ ଗୋଟିଏ କଲେଜର ଅଧ୍ୟକ୍ଷ ଓ ସଂପାଦକ ହୋଇ ରହିବାର ପୁରସ୍କାର କିଛିଦେଇ ନାହଁ । ସେମିତି ତ

ଦୁଇହଜାର କଲେଜ ଓଡ଼ିଶାରେ ପ୍ରତିଷ୍ଠିତ । ସେ ବୋଝରୁ ମୁକ୍ତିଦେଲ ୧୯୯୪ ମସିହାରେ । ଦଶବର୍ଷ ଯାଏ ମୋର ପେନସନ୍ ଗଣ୍ଡାକ ଧାର୍ଯ୍ୟ ହୋଇ ପାରିଲାନି । ଆକ୍ଟରର ସମ୍ମାନ କିନ୍ତୁ ସବୁବେଳେ ବେକରେ ଗାମୁଛା ଗଳେଇ ଦେଇ ଚାଲିଛ । ଏଇଟା ତମର କେଉଁ ସଂପର୍କର ସୂତ୍ର ? ସେଠି ଯେତେ ଝାଳନାଳ ହେଲି କେହି ଦେଖିଲେନି । ଖାଲି ଦେଖୁଥିଲେ ମୋର ତିରିଶ ବର୍ଷର ଛାତ୍ରଛାତ୍ରୀମାନେ ! ସେଇମାନେ ଦେଇଥିବା ଉପାଧି "ଶରତ୍ ସାର" ଓ "ପୂଜାରୀ ଆଜ୍ଞା" ଯୋଗୁ ସର୍ବଶ୍ରେଷ୍ଠ ସମ୍ମାନ ଭାବରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ମୋତେ ଦେଲେ ଡି.ଲିଟ୍. ଉପାଧି ୨୦୦୬ ମସିହାରେ ଓ ସେହି ମସିହାରେ ସର୍ବଭାରତୀୟ "ନାକ୍" କମିଟି କଲେଜ ପରିଦର୍ଶନ କରି ୧୯୬୪ ମସିହାରୁ ପ୍ରତିଷ୍ଠିତ ହୋଇଥିବା ଏ ଗ୍ରାମୀଣ କଲେଜକୁ ତା'ର ଛାତ୍ର ଶିକ୍ଷକ ସଂପର୍କ, ଶାନ୍ତ, ସବୁଜ ପରିବେଶ, ଉଚ୍ଚଶିକ୍ଷାର ସମସ୍ତ ଉପାଦାନ ଚିକିନିଖି ପରୀକ୍ଷା କରି ଲେଖିଲେ ଏହା ଆଧୁନିକ କଲେଜ ପରି ପ୍ରତୀୟମାନ ନହୋଇ ଏକ "ଗୁରୁକୁଳ" ପରି ହୃଦବୋଧ ହେଉଛି !! ମୁଁ ଏହା ମଧ୍ୟ ଜାଣେ ସାରା ଭାରତରେ ଶିକ୍ଷକ ସମାଜ ଅବହେଳିତ ଓ ତାଚ୍ଛଲ୍ୟର ଶିକାର; ତଥାପି ଜୀବନର ଶେଷ ଭାଗରେ ମୋତେ ଯାହା ଶିକ୍ଷକ ଭାବରେ ପ୍ରାପ୍ତ ହେଲା ତାହାହିଁ ପରମାନନ୍ଦ ହେଉଛି । ଏ ସଂପର୍କର ସୂତ୍ରଟାକୁ ମୋ ଆସନ୍ତା ପିଢ଼ିଙ୍କ ଆଗରେ ଟିକିଏ ବଡ଼କରି "ଡିଜିଟାଲ" ପ୍ରଚାର କରନ୍ତନି ବନ୍ଧୁ ?

ମା'ର ଆଙ୍ଗୁଠି ଧରି ତୁମର ସମୁଦ୍ର ଆଉ ଆକାଶର ରଂଗ ପୁଣି ଦେଖିବାକୁ ପ୍ରବଳ ମନ ବଳାଉଛି । ଯାଜପୁରିଆ ବନ୍ଧୁଙ୍କୁ ରାତି ଅଧଟାରେ ଯେମିତି "ଯାଜପୁରିଆ ବନ୍ଧୁ କାହିଁଗଲ ?" ବୋଲ ଡାକିଥିଲା, ସେମିତି ମୋ ପେଇଁ "ହଇହୋ ପଶ୍ଚିମା ବନ୍ଧୁ" ବୋଲି କୁହାଟଟେ ଛାଡ଼ନ୍ତନି । ମୁଁ ତିନିଶହ କିଲୋମିଟରିଆ ରଡ଼ିଟେ ଛାଡ଼ନ୍ତି ଯେ ତମ ସମୁଦ୍ର ଓ ଆକାଶ ରଂଗସବୁ ଉଛୁଳି ପଡ଼ନ୍ତା ଆଉ ସବୁ ଅଦେଖା ରଂଗ ଛିଟିକି ଆସି ମୋ' ରଂଗବାକ୍ସ ପୋତି ହେଇ ଯାଆନ୍ତା । ମୋ' ହାତ ଯୋଡ଼ିକରେ ତାକୁ ସାଲୁବାଲୁକରି ତମ ସୁନ୍ଦରିଆ ପ୍ରଦେଶଟିକୁ ନୂଆକରି ରଂଗେଇ ଦିଅନ୍ତି । ଆଖିଯୋଡ଼ିକ ଭଲକରି ଦେଖି ପାରୁଛି ବୋଲି ଏବେଯାଏ ଚିତ୍ର ଆଙ୍କି ଚାଲିଛି । ଥରେ ଖାଲି, "କଉଁଠି ଅଛ, ହଇଓ ପଶ୍ଚିମା ବନ୍ଧୁ !" ରଡ଼ିଟେ ଛାଡ଼ନ୍ତନି ବନ୍ଧୁ । "ଏଇ ସଂପର୍କର ସୂତ୍ର" ମୋତେ ସବୁ ରୋଗ, ଶୋକ, ଦୁଃଖ ଭିତରେ ଏବେ ଭୋଗୀ କରି ପକେଇଛି । ସବୁ ଓଡ଼ିଶାର ମାଷ୍ଟ୍ରଙ୍କୁ ଏ "ସଂପର୍କର ସୂତ୍ର"ଟା ଗୁଡ଼େଇ ହେଇ ଯାଆନ୍ତା କି ?



